# ନିସ୍ତବ୍ଧ ଗୋଧୂଳି

( ବୈଜ୍ଞାନିକ ଉପନ୍ୟାସ )

ଡକ୍ଟର ଗୋକୁଳାନନ୍ଦ ମହାପାତ୍ର

ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

NISTABDA GODHULI

( A Scientific Novel )

by Dr. Gokulananda Mohapatra

Publishers : Vidyapuri, Cuttack 753002

( The story dealt in the above novel is entirely fictitious, though true names of some well known institutions have been used to make it more believable. All characters are imaginary and do not resemble to any of reality. )



ପ୍ରଥମ ପ୍ରକାଶ, ଜୁଲାଇ ୧୯୯୩

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ବେଙ୍କଟେଶ୍ୱର ପ୍ରିଣ୍ଟର୍ସ
ବାଖରାବାଦ, କଟକ ୭୫୩୦୦୨

ମୂଲ୍ୟ—ଟ ୭୫-୦୦
ସାଧା ବନ୍ଧେଇ—ଟ ୭[illegible]-୦୦

# ମୁଖବନ୍ଧ

'ନିସ୍ତବ୍ଧ ଗୋଧୂଳି' ଏକ ନୂଆ ଧରଣର ବୈଜ୍ଞାନିକ ଉପନ୍ୟାସ । ଉପନ୍ୟାସର ବିଭିନ୍ନ ଚରିତ୍ର ମାଧ୍ୟମରେ ଭିନ୍ନ ଭିନ୍ନ ବୈଜ୍ଞାନିକ ତଥ୍ୟ ପରିବେଷଣ କରାଯିବାର ପ୍ରୟାସ କରାଯାଇଛି । ଉପନ୍ୟାସଟି ପଢ଼ି ସାରିଲେ ପାଠକ ପାଠିକା-ମାନେ ନିଶ୍ଚିତ ଭାବରେ ବହୁ ନୂଆ ନୂଆ ବୈଜ୍ଞାନିକ ତତ୍ତ୍ୱ ଓ ଆବିଷ୍କାରର ସୂଚନା ଯେ ପାଇପାରିବେ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଓଡ଼ିଶାର ଅବହେଳିତ ଦୁଃସ୍ଥ ଗ୍ରାମ ତଥା ଏହାର ଅଧିବାସୀମାନଙ୍କୁ ଉନ୍ନତ କରାଇବାର ଏକ ସୁଚିନ୍ତିତ ଯୋଜନାର ରୂପରେଖ ଏହି ଉପନ୍ୟାସରେ ଦିଆଯାଇଛି । ମୋର ପୂର୍ବ ପ୍ରକାଶିତ ଗ୍ରାମଦାନ ଉପନ୍ୟାସର ଗ୍ରାମ ଉନ୍ନତି ଯୋଜନାକୁ ଏଥିରେ ପୁନଃ ପ୍ରସାର କରାଯାଇଛି । ଉଦ୍ଦେଶ୍ୟ ଏହା କିପରି ଆମ ଅବହେଳିତ ଗ୍ରାମବାସୀମାନଙ୍କର ଦୃଷ୍ଟିକୁ ଆସିବ ଓ ସେମାନେ ଏହିଭଳି ଯୋଜନା ଦିଆଣ କରି କାର୍ଯ୍ୟରେ ଲଗାଇ ନିଜ ଦୁଃସ୍ଥ ଗ୍ରାମଗୁଡ଼ିକର ଉନ୍ନତି କରିପାରିବେ । ମଲ ମଣିଷ ବଞ୍ଚିବାଠାରୁ ଆରମ୍ଭ କରି ଗ୍ରହାନ୍ତରକାଶ ଯନ୍ତ୍ରର ଯେଉଁ ଯୋଜନା ଏଥିରେ ସ୍ଥାନ ପାଇଛି, ତାହା ବର୍ତ୍ତମାନ ପାଇଁ ଅସମ୍ଭବ ଜଣାପଡ଼ିଲେହେଁ, ଏହା ହେଉଛି ଆସନ୍ତାକାଲିର ସତ୍ୟ ।

ଚଳିତ ଶତାବ୍ଦୀର ଶେଷଆଡ଼କୁ ଉପନ୍ୟାସ ସାହିତ୍ୟରେ ପ୍ରେମ, ବିରହ, ହିଂସା ସମ୍ବଳିତ ବିଷୟବସ୍ତୁର ଲୋକପ୍ରିୟତା କମି ଆସୁଥିବାବେଳେ ବିଜ୍ଞାନ, ଗବେଷଣା ତଥା ଯୋଜନା ସମ୍ବଳିତ ଉପନ୍ୟାସ ଯେ ଜନମାନସକୁ ଆକୃଷ୍ଟ କରିବ ଏହି ଆଶାରେ ଏହି ନୂଆ ଧରଣର ଉପନ୍ୟାସ ଲେଖିବାକୁ ପ୍ରୟାସ କଲି । ଏହା ମୋ ପାଇଁ ଏକ ପରୀକ୍ଷା । ଏହି ସୃଷ୍ଟିଟି ପାଠକ ପାଠିକାମାନଙ୍କ ଦ୍ୱାରା କିପରି ଆଦୃତ ହେବ, ତାହାର ଅପେକ୍ଷାରେ ରହିଲି ।

ରଜ ସଂକ୍ରାନ୍ତି
ତା ୧୪ । ୬ । ୯୩

ଲେଖକ

# ଏକ

"ସାର୍, ସାର୍, ମୁଁ ଭିତରକୁ ଆସିପାରେ କି ?"

ଦେବସ୍ମାନର ଗବେଷଣା କକ୍ଷର ଦୁଆରକୁ ଅଳ୍ପ ମେଲା କରି ଭିତରକୁ ଆସିବା ପାଇଁ ଅନୁମତି ଭିକ୍ଷା କରୁଥିଲା ଷଷ୍ଠ ବାର୍ଷିକ ବିଜ୍ଞାନ ଶ୍ରେଣୀର ଛାତ୍ରୀ କୁମାରୀ ମଧୁସ୍ମିତା ମହାପାତ୍ର । ମଧୁସ୍ମିତା ଓଡ଼ିଶା ରାଜ୍ୟ ଡି.ପି.ଆଇ. ଡକ୍ଟର ଶାନ୍ତନୁ ମହାପାତ୍ରଙ୍କ ଜ୍ୟେଷ୍ଠା କନ୍ୟା, ରେଭେନ୍‌ସା କଲେଜର ରସାୟନ ବିଜ୍ଞାନର ଏମ୍.ଏସ୍‌ସି. ଛାତ୍ରୀ । ମଧୁସ୍ମିତା ସୁନ୍ଦରୀ, ସୌନ୍ଦର୍ଯ୍ୟର ଅଗଣିତ ବୀଚିମାଳା ତା'ର ଦେହେ ଦେହେ ଫୁଟି ଉଠୁଛି । ପ୍ରଥମ ଯୌବନର ତରଳ ସ୍ବପରେ ତା'ର ପଦ୍ମପଲାଶନନ୍ଦୀ ମୁଖମଣ୍ଡଳ ସେଦିନ ଆରକ୍ତ ହୋଇ ଉଠିଥାଏ ଅତି ଆକର୍ଷଣୀୟ ଭାବରେ ଯୁବମାନସକୁ ପାଗଳ କରିବା ଭଙ୍ଗୀରେ ।

ସେତେବେଳକୁ ସନ୍ଧ୍ୟା ଆସନ୍ନ ପ୍ରାୟ । ଅସ୍ତଗାମୀ ସୂର୍ଯ୍ୟଙ୍କର ସୁନେଲି କିରଣରେ ଉଦ୍‌ଭାସିତ ହୋଇ ଉଠୁଥାଏ ରେଭେନ୍‌ସା କଲେଜର ରକ୍ତବାଦାମୀ ବର୍ଣ୍ଣର ସୌଧରାଜି । କଲେଜର ଛାତ୍ର ଛାତ୍ରୀମାନେ କେତେବେଳୁଁ ବିଦାୟ ନେଇ ଗଲେଣି ସେମାନଙ୍କ ଅଧ୍ୟୟନ ମନ୍ଦିରରୁ । ମଧୁସ୍ମିତା ଘରକୁ ନ ଯାଇ ବୁଝିପାରି ନ ଥିବା କେତେକ ପାଠକୁ ଆଉ ଟିକିଏ ଭଲ ଭାବରେ ବୁଝିବା ପାଇଁ ଯୁବକ ଅଧ୍ୟାପକ ଦେବସ୍ମାନ ଦାସଙ୍କ ରୁମ୍‌କୁ ଆସିବା ପାଇଁ ଅନୁମତି ଭିକ୍ଷା କରୁଥିଲା ଦୁଆର ପାଖରେ ଠିଆ ହୋଇ ।

କବାଟ ଫାଙ୍କରେ ଝିଅଟିକୁ ଦେଖି ଦେବସ୍ମାନ ଡାକିଲା, "କିଏ ମଧୁସ୍ମିତା ? ଭିତରକୁ ଆସ । ହଠାତ୍ ଏ ଅବେଳଟାରେ କୁଆଡ଼େ ଚାଲି ଆସିଲ ଶୁଣେ ? କଲେଜ ତ କେତେବେଳୁ ଛୁଟି ହୋଇଗଲାଣି । ତୁମ ସାଙ୍ଗସାଥୀମାନେ ତ ଘରକୁ ଚାଲିଯିବେଣି ? ତୁମେ ଏ ପର୍ଯ୍ୟନ୍ତ ଘରକୁ ଯାଇନାହଁ କାହିଁକି ?"

"ନାହିଁ ସାର୍, ଯାଇନି । ଆପଣଙ୍କଠାରୁ ଗୋଟିଏ ବିଷୟ ବୁଝିବା ପାଇଁ ରହିଗଲି । ଆପଣ ସକାଳେ ମର୍‌ଫିନ୍‌ର ଯେଉଁ ଷ୍ଟେରିଓକେମିଷ୍ଟ୍ରି ବୁଝାଉଥିଲେ, ତାହାକୁ ମୁଁ ଭଲ ଭାବରେ ବୁଝିପାରିନି ସାର୍ ।"

"କାହିଁକି ? ତୁମେ କ'ଣ ଅନ୍ୟମନସ୍କ ଥିଲ ?"

"ନାହିଁ ସାର୍, ଅନ୍ୟମନସ୍କ ନ ଥିଲି । ବୁଝୁଁ ବୁଝୁଁ ଗୋଟିଏ ଷ୍ଟେପ୍ କେମିତି ଧରି ପାରିଲିନି । ତେଣୁ ତା ପର ପର ଷ୍ଟେପ୍‌ଗୁଡ଼ିକ ଅବୋଧ୍ୟ ରହିଗଲା ।"

"ତୁମେ ଯଦି ବୁଝି ପାରିଲନି, ଠିକ୍ କ୍ଲାସ୍ ପରେ ମୋତେ ପଚାରିଲନି କାହିଁକି ? କଲେଜ ତ କେତେବେଳୁଁ ଛୁଟି ହୋଇଗଲାଣି । ମୁଁ ତ ବର୍ତ୍ତମାନ ଘରକୁ ବାହାରିଲିଣି । ବୁଝିବ କେତେବେଳେ ?"

"ନାହିଁ ସାର୍, ମୋତେ ଟିକିଏ ଦୟାକରି ବୁଝାଇ ଦେଇ ଯାଆନ୍ତୁ । ବେଶି ଡେରି ହେବନି ଆପଣଙ୍କର ।" କହୁଁ କହୁଁ ନୋଟ୍ ଖାତା ବାହାରକରି ଯେଉଁ ଯାଗାରେ ବୁଝିପାରି ନ ଥିଲା, ସେତକ ବୁଝାଇ ଦେବା ପାଇଁ ଅନୁରୋଧ ଜଣାଇଲା ଅତି ବିନମ୍ର କଣ୍ଠରେ ।

ବୁଝାଇ ଦେଉଁ ଦେଉଁ ଦେବସ୍ମାନ କହିଲା, "ଦେଖ ମଧୁସ୍ମିତା, ତୁମେ ବୋଧହୁଏ ଅନର୍ସ ବେଳୁଁ ଷ୍ଟେରିଓକେମିଷ୍ଟ୍ରିରେ କଞ୍ଚା ରହି ଯାଇଛ ? ନଚେତ୍ ତୁମେ ଏତେ ସହଜିଆ ଷ୍ଟେପ୍‌ଟାକୁ ଧରିପାରିଲନି କେମିତି ?"

ମଧୁସ୍ମିତା ଦେବସ୍ମାନଠାରୁ ସବୁ ଟିକିନିଖି ବୁଝିସାରି ଘରକୁ ବାହାରିଲା । ତାକୁ ଯିବା ଦେଖି ଦେବସ୍ମାନ କହିଲା, "ଦେଖ ମଧୁସ୍ମିତା, ତୁମେ ଯଦି କୌଣସି ବିଷୟ କ୍ଲାସ୍‌ରେ ବୁଝି ନ ପାରିବ, ତେବେ ମୋତେ କ୍ଲାସ୍ ପରେ ସଙ୍ଗେ ସଙ୍ଗେ ପଚାରିବ । ଏଭଳି ଅଖାଡ଼ୁଆ ବେଳେ ଆଉ ବୁଝିବାକୁ ଆସିବନି । ଦେଖ, ଡିପାର୍ଟମେଣ୍ଟରୁ ସମସ୍ତେ ଚାଲିଗଲେଣି । ପିଲାଙ୍କ ଶିକ୍ଷକ କେହି ଜଣେହେଲେ ନାହାନ୍ତି । ଏମିତିବେଳେ ତମେ ଏକା ମୋ'ଠାକୁ ପାଠ ବୁଝିବାକୁ ଆସିବା ଉଚିତ ହୋଇନି । ତୁମେ ଯୁବତୀ, ସୁନ୍ଦରୀ, ପୁଣି ବଡ଼ ଅଫିସରଙ୍କ ଝିଅ, ସମାଜରେ ତୁମର ଓ ତୁମ ବାପାଙ୍କର ପ୍ରତିପତ୍ତି ଓ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଅଛି । କିଏ ଯଦି ତୁମକୁ ମୋ ରୁମ୍‌ରେ ଏଭଳି ଏକାଟିଆ ଅବସ୍ଥାରେ ଦେଖି ଅନ୍ୟ କିଛି ଭାବେ, ତେବେ ତାକୁ ଦୋଷ ଦେଇହେବନି । ଫଳରେ ତୁମର ହେବ ଦୁର୍ନାମ ।"

"ହେଉ ସାର୍, ଏବେ ଏଣିକି ସେହି କ୍ଲାସ୍ ପରେ ପରେ ପଚାରିବି ।" ଏତିକି କହିଦେଇ ତର ତର ହୋଇ ବାହାରିଗଲା ମଧୁସ୍ମିତା ।

ମଧୁସ୍ମିତା ଚାଲିଗଲା ପରେ ଦେବସ୍ମାନ ଭାବିଲା, "କି ଆଶ୍ଚର୍ଯ୍ୟ, ଏମାନଙ୍କ କେରିୟରରେ ଗ୍ରୁପ ମାର୍କ ହୋଇଛି ଗୋଟିଏ ପ୍ରକାର, ଅଥଚ ଏମାନଙ୍କର ମେଧାଶକ୍ତି ଅନ୍ୟ ଏକ ପ୍ରକାରର । ଝିଅଟି କ'ଣ ସବୁ ପରୀକ୍ଷାରେ ଫାର୍ଷ୍ଟ କ୍ଲାସ୍ ଫାର୍ଷ୍ଟ ହୋଇ ଆସିଛି, ପୁଣି ଜାତୀୟ ବୃତ୍ତି ବି ପାଉଛି ? ଏ ତ ସେଭଳି ଉଚ୍ଚକୋଟୀ ମେଧାଶକ୍ତି ଥିବା ପିଲା ନୁହେଁ । ତା'ହେଲେ କ'ଣ ଶିକ୍ଷା ବିଭାଗରେ ବି ଦୁର୍ନୀତି ? ହଁ, ବାପା ଯେତେବେଳେ ଉଚ୍ଚ ପଦବୀରେ ଅଛନ୍ତି, ଝିଅର ପ୍ରଥମଶ୍ରେଣୀ କେରିୟର ନ ହେବ କାହିଁକି ? ଲୋକେ ତ ଉପରେ ପଡ଼ି ଭଲ କେରିୟର ତିଆରି କରିଦେବାକୁ ଆଗେଇ ଆସିବେ । ପରୀକ୍ଷକମାନଙ୍କ ଉପରେ ପ୍ରଭାବ ପକାଇ ସେମାନଙ୍କ କେରିୟର ଗଢ଼ି ଦେବାକୁ କେତେବେଳ ବା ଲାଗିବ ? ଏମାନଙ୍କ ପାଇଁ ପରୀକ୍ଷା ଏକ ପ୍ରହସନ ଯିନା ! ଧନ୍ୟ ଏ ଦେଶ, ଧନ୍ୟ ଏ ଦେଶର ରୀତି !

ତହିଁ ପରଦିନ ।

ଦେବସ୍ମାନ ନଅଟା ବାଜିଲାବେଳକୁ ପ୍ରତିଦିନ ଗବେଷଣା କରିବା ପାଇଁ କଲେଜକୁ ଚାଲିଆସେ । ସେ ଘରୁ ଆସି ନିଜ ଗବେଷଣାଗାରରେ ପଶିଛି କି ନାହିଁ, ଏକ କାର୍ ଆସି ଲାଗିଲା ରସାୟନ ବିଭାଗର ଗେଟ୍ ପାଖରେ । କାର୍‌ରୁ ଓହ୍ଲାଇଲେ ଓଡ଼ିଶା ଶିକ୍ଷାମନ୍ତ୍ରୀଙ୍କ କନ୍ୟା ଶାନ୍ତା ମହାନ୍ତି । ସେ କାର୍‌ରୁ ଓହ୍ଲାଇ ମରାଳଗମନ ଗତିରେ ଆଗେଇ ଚାଲିଲେ ଅଧ୍ୟାପକ ଦେବସ୍ମାନ ଦାସଙ୍କ ଗବେଷଣା ପ୍ରକୋଷ୍ଠ ଆଡ଼କୁ । ଉତ୍ତର ଦିଗର ସ୍ନିଗ୍ଧ ସମୀରଣ ତା'ର ଆଲୁଳାୟିତ କେଶର ଚୂର୍ଣ୍ଣକୁନ୍ତଳ ସହିତ ଲୁଚକାଳି ଖେଳିବା ଆରମ୍ଭ କରିଦେଇଥାଏ । ଶାନ୍ତା ସୁନ୍ଦରୀ, ଅତି ସୁନ୍ଦରୀ, ଦେଖିଲେ ମନେହେବ, ସୌନ୍ଦର୍ଯ୍ୟ ସାଗରରେ ସେ ଯେମିତି ଛନ୍ଦସ୍ପନ୍ଦ ମରାଳ ଟିଏ । ସେତେବେଳକୁ କଲେଜକୁ କାଁ ଭାଁ ଗୋଟିଏ ଦୁଇଟି ପିଲା ଆସିଥାନ୍ତି କି ନାହିଁ ସନ୍ଦେହ । ବିଭିନ୍ନ ବିଭାଗର ବହୁ ଘର ପ୍ରାୟ ଖୋଲା ହୋଇ ନ ଥାଏ । ଟିଅଟି ଆସି ଦେବସ୍ମାନର ଗବେଷଣା କକ୍ଷ ଦୁଆରମୁହଁରେ ଠକ୍ ଠକ୍ କଲା । ସେତେବେଳକୁ ଦେବସ୍ମାନ ନିଜ ଗବେଷଣା ପାଇଁ ଗୋଟିଏ ଯନ୍ତ୍ରକୁ ଆଉ ଏକ ଯନ୍ତ୍ର ସହିତ ଲଗାଉଥିଲା । ଠକ୍ ଠକ୍ ଶବ୍ଦ ଶୁଣି କହିଲା, "କିଏ ? ଭିତରକୁ ଆସିପାର ।"

ଭିତରକୁ ପଶି ଆସିଲା ଶାନ୍ତା । ଶାନ୍ତାକୁ ଅନାଇ ଦେଇ କିଞ୍ଚିତ୍ ଅନ୍ୟମନସ୍କ ହୋଇ ପୁଣି ନିଜ କାଚ ଯନ୍ତ୍ରଟିକୁ ଲଗାଇଲାବେଳକୁ ଉପର ଯନ୍ତ୍ରଟି ଦେବସ୍ମାନ ହାତରୁ ହଠାତ୍ ଖସିପଡ଼ିଲା ତଳକୁ । ଦେବସ୍ମାନ ପାଟିକରି ଉଠିଲା, "ଧରି ପକାଅ, ଧରି ପକାଅ ଶାନ୍ତା ।" ଶାନ୍ତା ଦୌଡ଼ିଯାଇ ହଠାତ୍ ଧରି ପକାଇଲା ସେହି କାଚ ଯନ୍ତ୍ରଟିକୁ, ଫଳରେ ଯନ୍ତ୍ରଟି ତଳେପଡ଼ି ଭାଙ୍ଗିଯିବାରୁ ଅଳ୍ପକେ ରକ୍ଷା ପାଇଗଲା ।

"ତୁମେ ଆଜି କେଡ଼େବଡ଼ ମୂଲ୍ୟବାନ୍ ଯନ୍ତ୍ରଟିକୁ ରକ୍ଷା କଲ ଉପଲବ୍ଧି କରିପାରୁଛ ଶାନ୍ତା ?"

"ହଁ ସାର୍, ଧରି ପକାଇ ନ ଥିଲେ ତଳେ ପଡ଼ି ଭାଙ୍ଗି ଯାଇଥାନ୍ତା ।"

"ହେଉ, ଭଲ କଲ, ଅଶେଷ ଧନ୍ୟବାଦ । ହଠାତ୍ ଏତେ ସକାଳୁ କୁଆଡ଼େ ଚାଲି ଆସିଲ ଯେ ?"

"ସାର୍, ଟିକିଏ ବୁଝିବାକୁ ଚାଲି ଆସିଲି ।"

"କ'ଣ ମୋ ଠାକୁ ?"

"ହଁ, ସାର୍ ।"

"କେଉଁ ବିଷୟ ?"

"କୋଲେଷ୍ଟେରଲ୍‌ର ସଂଶ୍ଲେଷଣ ଓ ଷ୍ଟେରିଓ କେମିଷ୍ଟ୍ରି ।"

"ଏ ତ ବହୁତ ସମୟ ଲାଗିଯିବ । ମୋତେ ତ ବର୍ତ୍ତମାନ ବେଳ ନାହିଁ । ବର୍ତ୍ତମାନ କ୍ଲାସ୍‌କୁ ଯିବ । ସେଥିପାଇଁ ଏକାଦିକ୍ରମେ ଦୁଇ ତିନି ଘଣ୍ଟାରୁ ତ କମ୍ ଲାଗିବନି ବୁଝାଇବାକୁ ? ତୁମେ କ'ଣ କ୍ଲାସ୍‌ରେ ପଢ଼ା ହେଲାବେଳେ ନ ଥିଲ ?"

"ନାହିଁ ସାର୍, ନ ଥିଲି । ଥିଲେ ମୁଁ ଆପଣଙ୍କୁ ଟ୍ୟୁଇସନ କରିବାକୁ ଆସିଥାନ୍ତି କାହିଁକି ?"

"ଦେଖ ଶାନ୍ତା, ତୁମେ ମଧୁସ୍ମିତା ନୋଟ୍ ଦେଖିନଥ । ତା ନୋଟ୍ ଦେଖୁଥିଲି ସେଦିନ । ସେ ବେଶ୍ ଭଲ ଭାବରେ ନୋଟ୍ କରିଛି ।"

"ମଧୁସ୍ମିତା କ'ଣ ମୋତେ ତା' ନୋଟ୍ ଦେଖାଇବ ସାର୍ ? ଆପଣ କ'ଣ ଜାଣିନାହାନ୍ତି ? ସେ ପରା ମୋର ପ୍ରଧାନ··· ···"

"ଓଃ, ବୁଝିଲି ଏଥର । ଏମ୍.ଏସ୍‌ସି.ରେ ତୁମ ଦି'ଜଣଙ୍କ ଭିତରୁ କିଏ ଫାଷ୍ଟ୍‌କ୍ଲାସ୍ ଫାଷ୍ଟ୍ ହେବ, ତୁମ ଦୁହିଁଙ୍କ ଭିତରେ ପରା ପ୍ରତିଯୋଗିତା ଚାଲିଛି ! ଏ ପ୍ରତିଯୋଗିତା ତା'ହେଲେ ଶିକ୍ଷାମନ୍ତ୍ରୀ ଓ ଡି.ପି.ଆଇ.ଙ୍କ ଭିତରେ ? ଶିକ୍ଷାମନ୍ତ୍ରୀ ତ ସବା ଉପରେ ? ତାଙ୍କୁ ଟପାଇବ କିଏ ?" ହସି ହସି କହିଲି ଦେବସ୍ମାନ ।

"ହଁ, ସାର୍, ଆପଣଙ୍କର ସବୁବେଳେ ସେହିଭଳି ଥଟ୍ଟା । ସେ ଆପଣଙ୍କଠାରୁ ସବୁ ବୁଝିନେଇ ଭଲ ଭାବରେ ନୋଟ୍ କରି ପକାଇଛି । ଆପଣ ତା ନୋଟ୍ ସବୁ ଦେଖି ସଂଶୋଧନ କରି ଦେଇଛନ୍ତି । ସେ ଏଥର ଇଉନିଭର୍‌ସିଟିରେ ଫାଷ୍ଟ୍ ହେବ ।"

"ନା, ନା, ମୁଁ ତ ତା' ନୋଟ୍ ମୋଟେ ଦେଖିନି କି ସଂଶୋଧନ କରିନି । ତୁମକୁ ସେ ଭୁଲ୍ ଖବର ଦେଲା କିଏ ?"

"ଦେବେନ୍ଦ୍ର କହୁଥିଲା ।"

"ସେ ତୁମକୁ ନର୍ଭସ୍ କରିଦେବା ପାଇଁ ମିଛରେ ସେମିତି କହି ଦେଇଛି ଶାନ୍ତା । ଦେବେନ୍ଦ୍ରକୁ ତୁମେ କ'ଣ ଚିହ୍ନିନ ? ସେ ପରା ଭାରି ଚଗଲା ପିଲା ।"

"ତା'ହେଲେ ମୋତେ ବୁଝାଇଦେବେ କେତେବେଳେ ସାର୍ ?"

"ସମୟ ଦେଖିବାକୁ ପଡ଼ିବ ।"

"ସାର୍, ଆପଣଙ୍କ ଘରକୁ ଆଜି ସନ୍ଧ୍ୟାବେଳେ ଗଲେ ? ଆପଣ ତ ସନ୍ଧ୍ୟାବେଳେ ନିଶ୍ଚୟ ଘରେ ରହୁଥିବେ ? ସେଠି ମୋତେ ଟିକିଏ ବୁଝାଇଦେବେନି ? ମୋ ପାଇଁ ଏତିକି ଟିକିଏ କଷ୍ଟ କରନ୍ତୁ ସାର୍ ।"

"ତୁମ ମଥା ଠିକ୍ ଅଛି ଶାନ୍ତା ? ତୁମେ ସନ୍ଧ୍ୟାବେଳେ ମୋ ବସାକୁ ଆସିବ ? ତୁମେ ଜାଣିଛ ମୁଁ ବସାରେ ଏକା ରହେ । ତୁମେ ଜଣେ ଯୁବତୀ । ସନ୍ଧ୍ୟାବେଳେ ଜଣେ ଯୁବତୀ ଯଦି ଜଣେ ଯୁବକର ଘରକୁ ଆସେ, ପୁଣି ଯୁବକଟି ଅବିବାହିତ, ଘରେ ଏକା ରହୁଥାଏ, ଏହାକୁ ଦେଖି ଲୋକେ କ'ଣ କହିବେ ସେ ଆଡ଼କୁ ଟିକିଏ ନଜର ଅଛି ତ ?"

"ଆପଣ ଗୁରୁ, ମୁଁ ଛାତ୍ରୀ, ଏଥିରେ କାହାର କିଛି ତ ଭାବିବାର ନାହିଁ ସାର୍ ।"

"ତୁମେ ପିଲା ହୋଇଯାଅନି ଶାନ୍ତା । ଟିକିଏ ଚିନ୍ତା କର । ତୁମେ ତ ଶ୍ରେଷ୍ଠ ଛାତ୍ରୀଟିଏ ହୋଇନାହଁ, ଏଭଳି ଉତ୍ତର ତୁମ ମୁହଁରୁ ଶୋଭା ପାଇବ ? ମୁଁ ଜଣେ ଅବିବାହିତ ଯୁବକ, ତୁମେ ଜଣେ ଅବିବାହିତା ଯୁବତୀ, ପୁଣି ସୁଶ୍ରୀ । ଗୋଟିଏ ଘରେ ପାଠ ପଢ଼ିବାର ଓ

ପାଠ ପଢ଼ାଉଥିବାର ଦେଖିଲେ ଆମ ଦେଶର ଲୋକେ ଏହାକୁ ପବିତ୍ର ଗୁରୁ-ଛାତ୍ରୀ ସମ୍ପର୍କ ବୋଲି ଭାବବେନି ଶାନ୍ତା । ତୁମ ଓ ମୋ ନାଁରେ ତହିଁ ପରଦିନ କୁତ୍ସାରଟନା ଏହି ସହରର ସାରା ବ୍ୟାପିଯିବ ।"

"ତା'ହେଲେ ମୁଁ କେମିତି ବୁଝିବି ସାର୍ ?"

"ମୁଁ ସେଇଆ ଭାବୁଛି ଶାନ୍ତା । ତେବେ ଗୋଟିଏ କାମ କର । ମୁଁ ଦିନେ ତୁମ ଘରକୁ ଯାଇ ସେହି ବିଷୟଟି ବୁଝାଇ ଦେଇ ଆସିବି । କେଉଁଦିନ ମୋତେ ସୁବିଧା ହେବ, ଆଜି କଲେଜରୁ ଗଲାବେଳେ ମୋ'ଠାରୁ ବୁଝିଯିବ ।"

"ଅଶେଷ ଧନ୍ୟବାଦ ସାର୍ । ମୁଁ ଏଥିପାଇଁ ଆପଣଙ୍କଠାରେ ଋଣୀ ହୋଇ ରହିବି ।" ଏତକ କହି ଚାଲିଗଲା ଶାନ୍ତା ।

ଏକ ଦକ୍ଷ ଓ ପ୍ରିୟ ଅଧ୍ୟାପକ ଭାବରେ ଦେବସ୍ମାନର ଖ୍ୟାତି ସାରା ରସାୟନ ବିଜ୍ଞାନ ବିଭାଗରେ ସବୁଠାରୁ ବେଶି । ପିଲାମାନଙ୍କୁ ସେ ଭଲ ପଢ଼ାଏ ଓ ସେମାନଙ୍କୁ ଭଲ ବୁଝାଇପାରେ ବୋଲି ସବୁ କଷ୍ଟ କଷ୍ଟ ବିଷୟକୁ ପଢ଼ାଇବା ପାଇଁ ତାକୁ ଦାୟିତ୍ୱ ଦିଆ-ଯାଇଥାଏ । ବହୁ ପୁଅ ଝିଅ ତା'ଠାରୁ ପାଠ ବୁଝିବାକୁ ଆସନ୍ତି ବହୁ ସମୟରେ ।

ଦେବସ୍ମାନ ଉତ୍କଳ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ରମାନଙ୍କ ଭିତରୁ ଜଣେ । ମେଟ୍ରିକ୍ୟୁଲେସନ୍ ପରୀକ୍ଷାଠାରୁ ଆରମ୍ଭ କରି ଏମ୍.ଏସ୍‌ସି. ପରୀକ୍ଷା ପର୍ଯ୍ୟନ୍ତ ସବୁ ପରୀକ୍ଷାରେ ସେ ପ୍ରଥମ ହୋଇ ଆସିଛି । ଜୀବନରେ ଦ୍ୱିତୀୟ ହେବାର ଦୁର୍ଭାଗ୍ୟ ତା'ର କେବେ ହୋଇନି । ପୂରାପୂରି ବୃତ୍ତିପାଇ ପଢ଼ି ଆସିଛି ସେ ।

ବାପା ନାରାୟଣବାବୁ ବାଲେଶ୍ୱର କଲେଜରେ ପ୍ରିନ୍‌ସପାଲ । ତା ପଢ଼ା ପଛରେ ବାପାଙ୍କର ଗୋଟିଏ ବୋଲି ପଇସା ଖର୍ଚ୍ଚ ହୋଇନି । ଯାହା ବୃତ୍ତି ପାଏ ସେତିକରେ ସେ ଚଳିଯାଏ । ଅତ୍ୟଧିକ ମିତବ୍ୟୟୀ । ବାପାଙ୍କ ପାଖରୁ କଦବା କେମିତି ଟଙ୍କା ଆଣେ । ପୋଷାକପତ୍ରରେ ସେମିତି କିଛି ଷ୍ଟାଇଲ ନାହିଁ । ପୂରାପୂରି ସାଦାସିଧା । ସିନେମା ଥିଏଟର କିଛି ନାହିଁ । ପାନ ସିଗାରେଟ୍ ଆଦିର ସେ ଧାର ଧାରେନି ।

ଏମ୍.ଏସ୍‌ସି. ପାସ୍ କରିବା ସଙ୍ଗେ ସଙ୍ଗେ ମେଧାବୀ ଛାତ୍ର ବୋଲି ସଙ୍ଗେ ସଙ୍ଗେ ରେଭେନ୍‌ସା କଲେଜରେ ଲେକ୍‌ଚରର ଚାକିରି ପାଇଗଲା । ପୁଅ ଲେକ୍‌ଚରର ହୋଇଯିବା ଶୁଣି ବାପାଙ୍କର ମନ କୁଣ୍ଢେ ମୋଟ । ଦେବସ୍ମାନ ଖାଲି ଅଧ୍ୟାପକ ନୁହେଁ, ଏକ ସୁଲେଖକ ମଧ୍ୟ । ଜଟିଳ ବିଜ୍ଞାନ ବିଷୟକୁ ସରଳ କରି ଗପ ଛଳରେ ଲେଖିବାରେ ଧୁରନ୍ଧର । ଶିଶୁ ବିଜ୍ଞାନ ଲେଖିବାରେ ସାରା ଓଡ଼ିଶାରେ ଅଦ୍ୱିତୀୟ । ବିଜ୍ଞାନ ବିଷୟରେ ଭାଷଣ ଦେଲେ ଶୁଣିଲାବାଲାର ପାଦ ବକ୍ତୃତାସ୍ଥାନରୁ ଉଠେନି । ମଝିରେ ମଝିରେ କରତାଳିର ଘନ ଘନ ଗୁଞ୍ଜରଣ କେତେଥର ଯେ ଉଠେ ତା'ର କଳନା ନାହିଁ । ଚାକିରିରେ ଯୋଗଦେବା ଦିନରୁ ଏକାଧିକ ଲୋକପ୍ରିୟ ବିଜ୍ଞାନ ପୁସ୍ତକର ସେ ରଚୟିତା ।

## ଦୁଇ

"ଠକ୍ , ଠକ୍ , ଠକ୍ ।"

"କିଏ ? ଭିତରକୁ ଆସିପାର । ଦୁଆର ଖୋଲା ଅଛି ।" ଫିଲ୍‌ଟର୍ ଯନ୍ତ୍ରରେ ଏକ ଜୈବ ଦ୍ରବଣକୁ ଫିଲ୍‌ଟର କରୁ କରୁ ଦେବସ୍ମାନ କହି ଉଠିଲା ।

"ନମସ୍କାର ଦେବସ୍ମାନବାବୁ ?" କହୁ କହୁ ହସ ହସ ମୁହଁରେ ଭିତରକୁ ପଶି ଆସିଲେ ରେଭେନ୍‌ସା କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପିକା କୁମାରୀ ରେଖା ମହାନ୍ତି । ରେଖା ମହାନ୍ତି ପଦାର୍ଥ ବିଜ୍ଞାନର ଅଧ୍ୟାପିକା ଭାବରେ ଯେତେ ପ୍ରସିଦ୍ଧ ନୁହଁନ୍ତି, କଲେଜର ଅଧ୍ୟାପିକାମାନଙ୍କ ଭିତରେ ସବୁଠାରୁ ସୁନ୍ଦରୀ ବୋଲି ବେଶି ଖ୍ୟାତ । ତା'ଛଡ଼ା ଏକ ଦକ୍ଷ ଅଧ୍ୟାପିକା ଭାବରେ ତାଙ୍କର ସୁଖ୍ୟାତି ଥିବାରୁ ତାଙ୍କ କ୍ଲାସ୍‌ରେ ପିଲାମାନେ କେବେ ଗଣ୍ଡଗୋଳ କରିବାର ଦେଖାଯାଏନି । ତାଙ୍କ କଥାବାର୍ତ୍ତା ଚାଲିଚଳଣି ଖୁବ୍ ଧୀରସ୍ଥିର, ପିଲାମାନଙ୍କୁ କେବେ କଡ଼ାକରି ପଦେ କହିବାର କେହି ଦେଖି ନାହାନ୍ତି । କେତେକଙ୍କ ମତରେ ଯେଉଁ କଥା ଅଛି 'ଭଲ ପଢ଼ାଉଥିବା ସୁନ୍ଦରୀ ଅଧ୍ୟାପିକାମାନଙ୍କର କ୍ଲାସ୍‌ରେ ଛାତ୍ରୀ ପିଲା ହେଲେବି ଗୋଲମାଲ କରିବେନି', ଏହାର ସାକ୍ଷ୍ୟପ୍ରମାଣ ହେଉଛନ୍ତି ରେଖାଦେବୀ ।

"ନମସ୍କାର, ନମସ୍କାର, ଆରେ ଆପଣ ଯେ ? ବସନ୍ତୁ, ବସନ୍ତୁ । ଅମାବାସ୍ୟାରେ ଚନ୍ଦ୍ର ଉଇଁଲେ ନା କଅଣ ?" ଦେବସ୍ମାନ ହସି ହସି କହି ଉଠିଲା ।

"ପୂର୍ଣ୍ଣିମାରେ ତ ଆପଣଙ୍କ ଭଳି ଚନ୍ଦ୍ର କେବେ ଉଆଁନ୍ତି ନାହିଁ । ଅମାବାସ୍ୟାର ଚନ୍ଦ୍ର କଥା କ'ଣ ପଚାରୁଛନ୍ତି ?"

"ସତରେ ମ, ରେଖାଦେବୀ । ବସନ୍ତୁ, ବସନ୍ତୁ । ଆପଣଙ୍କ ସହିତ ଢେରଦିନ ହେଲା ସାକ୍ଷାତ ହୋଇନି । ଏଇ ପାଖ ଡିପାର୍ଟମେଣ୍ଟରେ ଅଛନ୍ତି, ଅଥଚ ଅମାବାସ୍ୟାର ଚନ୍ଦ୍ର ଆକାଶରେ ଥାଇ ଅଦୃଶ୍ୟ ହେଲାଭଳି ଆପଣ ଆମକୁ ଅଦୃଶ୍ୟ ରହୁଛନ୍ତି ।"

"ଆପଣମାନେ ହେଲେ କାର୍ଯ୍ୟବ୍ୟସ୍ତ ଲୋକ । ଗବେଷଣା ହେଲା ଆପଣମାନଙ୍କ ଜୀବନ । ଆମେ ଆପଣଙ୍କୁ ବାରମ୍ବାର ଦେଖାଦେଲେ ଆପଣମାନଙ୍କ ବହୁମୂଲ୍ୟ ସମୟ ନଷ୍ଟ ହେବନି ? ଏହି ଭୟରେ ଆପଣଙ୍କ ରୁମ୍‌କୁ ଆସିବାକୁ ଡର ଲାଗେ ।"

"ଆଁ, ଡରଲାଗେ ?" ଦେବସ୍ମାନ ରେଖାଦେବୀଙ୍କ କଥା ଶୁଣି ଖିଲଖିଲ ହସିଦେଲା ।

"ଡର ଲାଗିବନି କେମିତି ? ଆପଣମାନେ କେଡ଼େ ଭାଗ୍ୟବାନ୍ ଲୋକ ନୁହନ୍ତି ତ ? ଏମ୍.ଏସ୍‌ସି. ପାସ୍ କରୁ କରୁ ଗବେଷଣାରେ ଲାଗିପଡ଼ିଲେ । କି ସୁନେଲି ଭବିଷ୍ୟତ । ଦେଖୁ ନାହାନ୍ତି, ଆମର ଗବେଷଣା ଅଛି ନା ଫବେଷଣା ଅଛି । ଆମେ ଖାଲି ଛାତ୍ରୀଙ୍କ ଭଳି ଘୂରି ବୁଲୁଛୁ ।"

"ଆରେ, ଆପଣମାନଙ୍କ ଭଳି ଭାଗ୍ୟ କାହାର ଅଛି ? କି ମୁକ୍ତ ଜୀବନ ! କିଛି ଦାୟିତ୍ୱ ନାହିଁ । ଲେକ୍‌ଚର୍ ଦି'ଟା ଦେଇ ଦେଲ, ବେଶ୍ କାମ ସରିଲା । ଇଚ୍ଛା ହେଲା, ଯୁଆଡ଼େ ଗଲ । ଆମ ଭଳି ଗୋଟିଏ ଯାଗାରେ ବନ୍ଧାହୋଇ ପଡ଼ିଥିବେ ନା କଅଣ ? ଗବେଷଣାଗାରରୁ କ୍ଲାସ୍ , କ୍ଲାସ୍‌ରୁ ଗବେଷଣାଗାର । ଜୀବନରେ ଆଉକିଛି ନାହିଁ । ପୁଣି ଡିପାର୍ଟମେଣ୍ଟ ହେଡ୍‌ଙ୍କ କଡ଼ା ତାଗିଦ୍, ଅଧ୍ୟାପନା ସଙ୍ଗେ ସଙ୍ଗେ ଗବେଷଣା ଯଦି ନ କରିବ, ତେବେ ଏ କଲେଜରେ ସ୍ଥାନ ନାହିଁ । ଏ କଲେଜ ଛାଡ଼ି ଅନ୍ୟ କଲେଜକୁ ଚାଲିଯାଅ । ଯେଉଁମାନେ ଗବେଷଣା କରିବାକୁ ଚାହୁଁଛନ୍ତି, ସେମାନଙ୍କୁ ଏଠାକୁ ଆସିବାକୁ ବାଟ ଛାଡ଼ିଦିଅ । ଆପଣଙ୍କ ଡିପାର୍ଟମେଣ୍ଟରେ କି ମଜା । ତାଗିଦ୍ ନାହିଁ କି ଫାଗିଦ୍ ନାହିଁ । ମନଇଚ୍ଛା କ୍ଲାସ୍ ନେଲ । କ୍ଲାସ୍ ନାହିଁ ଏଣେତେଣେ ବୁଲିବୁଲି କଲ ।"

"ଆମେ ଖାଲି ବୁଲି ବୁଲି ସମୟ ନଷ୍ଟ କରୁଛୁ ନା, ଆଉ କ'ଣ କରୁଛୁ ? ବେଳେ ବେଳେ ମୋର କ'ଣ ମନେହୁଏ ଜାଣନ୍ତି ଦେବସ୍ମାନବାବୁ ? ଆପଣଙ୍କ ଭଳି ଗବେଷଣା କରିବାକୁ ମୋତେ ସୁବିଧା ମିଳନ୍ତା କି ? ବେଳେ ବେଳେ ଭାବେ, ଫିଜିକ୍‌ସ ନ ପଢ଼ି ମୁଁ କେମିଷ୍ଟ୍ରି ପଢ଼ିଲିନି କାହିଁକି ? ଆପଣଙ୍କ ଭଳି ଗବେଷଣାର କେତେ ସୁଯୋଗ ପାଇଥାଆନ୍ତି । ଭଗବାନ ଆମ ଭାଗ୍ୟରେ ଗବେଷଣା କ'ଣ ଲେଖି ନାହାନ୍ତି । ଆପଣମାନେ ଗବେଷଣା କରି ଯେଉଁ ସୁନାମ ଅର୍ଜ୍ଜନ କଲେଣି, ସେମିତି ଭାଗ୍ୟ କ'ଣ ଆଉ କାହାର ଅଛି ?"

"ଛାଡ଼ନ୍ତୁ ଆମ ନାଁ କରିବା କଥା । ସେ ନାଁରୁ ଛାଉ ମିଳିବ । ଆରେ, ମୁଁ ଶିଷ୍ଟାଚାର ଭୁଲି ଗଲିଣି । ଆପଣ କେତେବେଳୁଁ ଆସିଲେଣି, ଅଥଚ ମୁଁ ଆପଣଙ୍କୁ ଆସିବା କାରଣ ପଚାରିପାରିନି ? ଆପଣଙ୍କ ସହିତ ଏ ଝିଅ ଦୁଇଜଣ କିଏ ?"

"ସେମାନେ ହେଲେ ଶୈଳବାଳା ମହିଳା କଲେଜର ଛାତ୍ରୀ ମିତା ଓ ଗୀତା ।"

"ସେମାନେ ଦୁଇ ଭଉଣୀ ନା କଅଣ ? ଏମିତି ନାଁ ହୋଇଛି ଯେ ।"

"ନା, ନା, ସେମାନେ ଦୁଇ ଭଉଣୀ ନୁହନ୍ତି, ଏକା କ୍ଲାସ୍‌ରେ ପଢ଼ନ୍ତି । ଜଣକ ନାଁ ମିତା ନାଏକ, ଅନ୍ୟଜଣଙ୍କ ନାଁ ଗୀତା ପ୍ରଧାନ । ଏମାନେ ହେଉଛନ୍ତି ସେଠା କଲେଜର ବିଜ୍ଞାନ ସଂସଦର ସେକ୍ରେଟେରି ଓ ଜଏଣ୍ଟ୍ ସେକ୍ରେଟେରି । ଆପଣଙ୍କ ସହିତ କାମ ଅଛି ବୋଲି ଆସିଛନ୍ତି । ମୋତେ ଓକିଲାତି କରିବା ପାଇଁ ସଙ୍ଗରେ ଡାକି ଆଣିଛନ୍ତି ।"

"ଏତେବଡ଼ ଉପକ୍ରମଣିକା ନ ଦେଇ କୁହନ୍ତୁ ମ, କ'ଣ କାମ ଅଛି । କ'ଣ ପାଇଁ ଆପଣମାନେ ଏଠାକୁ ଆସିଛନ୍ତି ? ମୋ'ଠାରେ ଏ ଝିଅ ଦୁଇଟିଙ୍କର କିଛି କାମ ଥିଲାଭଳି ତ ଜଣାପଡୁନି ।"

"ଆମ୍ଭମାନଙ୍କୁ ଦେଖି ଆପଣ କ'ଣ କିଛି ଅନୁମାନ କରିପାରୁ ନାହାନ୍ତି ଦେବସ୍ମାନ ବାବୁ ? ଆପଣ ଏତେ ବ୍ରିଲିଯାଣ୍ଟ ଷ୍ଟୁଡେଣ୍ଟ ହୋଇ କେମିତି ଜାଣିପାରୁ ନାହାନ୍ତି ଆମେ କ'ଣ ପାଇଁ ଆସିପାରିଥାଉଁ ?"

"ଅନୁମାନ କରିପାରୁଥିଲେ ପଚ୍ଚରନ୍ତି କାହିଁକି ରେଖାଦେବୀ ?"

"ଆପଣ ଜାଣନ୍ତି ଶୈଳବାଳା ମହିଳା କଲେଜର ପ୍ରିନ୍‌ସପାଲ ମିସ୍ ପଣ୍ଡାଙ୍କୁ ? ସେ କିଛିଦିନ ତଳେ ଆମ ଏହି କଲେଜରେ ଅଧ୍ୟାପିକା ଥିଲେ । ଆମ କ୍ଲାସ୍ ନେଉଥିଲେ ? ଆପଣ ବୋଧହୁଏ, ତାଙ୍କ ପାଖରେ ପଢ଼ି ନାହାନ୍ତି । ସେ ଆପଣଙ୍କର କ୍ଲାସ୍ ନେଉ ନ ଥିଲେ । ତାଙ୍କର ଏକାନ୍ତ ଅନୁରୋଧ, ଆପଣ ତାଙ୍କ କଲେଜର ବିଜ୍ଞାନ ସମିତିର ବାର୍ଷିକ ଅଧିବେଶନରେ ପ୍ରଧାନ ଅତିଥି ଭାବରେ ଯୋଗଦେଲେ ସେ ଅତ୍ୟନ୍ତ ଖୁସି ହୁଅନ୍ତେ ।"

"ମୁଁ ଯିବି ପ୍ରଧାନ ଅତିଥି ହୋଇ ? ପୁଣି ଶୈଳବାଳା ମହିଳା କଲେଜକୁ ? ଦେଖନ୍ତୁ ରେଖାଦେବୀ, ମୋର ପ୍ରଧାନ ଅତିଥି ହେବା ବୟସ ହୋଇନି । ଆମ ଡିପାର୍ଟ-ମେଣ୍ଟରେ ବହୁତ ସିନିୟର ଅଧ୍ୟାପକ ଅଛନ୍ତି, ସେମାନଙ୍କୁ ନ ଡାକି ମୋତେ ଡାକୁଛନ୍ତି କାହିଁକି ? ସେମାନେ ତ ଗଲେ ସେମାନଙ୍କ ସମିତିର ସମ୍ମାନ ବଢ଼ିବ । ସେମାନେ ଥାଉଁ ଥାଉଁ ମୋ ଭଳି ଜଣେ ଅନାମଧେୟଙ୍କୁ ଡାକି ଭୁଲ୍ କରନ୍ତୁନି ରେଖାଦେବୀ ।"

"ମିସ୍ ପଣ୍ଡା ମୋ'ଠାକୁ ଚିଠି ଲେଖି ଆପଣଙ୍କୁ ଅନୁରୋଧ କରି ରାଜି କରାଇବା ପାଇଁ ମୋତେ ବିଶେଷକରି କହିଛନ୍ତି ଦେବସ୍ମାନବାବୁ । ଆପଣ ଏମିତି ବାହାନା ଦେଲେ କ'ଣ ଚଳିବ ? ସେ କ'ଣ ରେଭେନ୍‌ସା କଲେଜର ଷ୍ଟାଫ୍‌ମାନଙ୍କୁ ଜାଣି ନାହାନ୍ତି ? ସେମାନେ ଥାଉଁ ଥାଉଁ ସେ ଯେତେବେଳେ ଆପଣଙ୍କୁ ବାଛିଛନ୍ତି, ସେଥିରେ କିଛି ଯଥାର୍ଥତା ଥିବ ନିଶ୍ଚୟ ।"

"ହଁ ସାର୍, ଆମ କାର୍ଯ୍ୟକାରୀ କମିଟିରେ କେବଳ ଆପଣଙ୍କ ନାଁ ଉଠିଥିଲା । ଆଉ କାହା ନାଁ ଉଠିନି । ତେଣୁ ଆପଣ ନ ଗଲେ କେମିତି ହେବ ସାର୍ ? ଆମ କଲେଜର ପିଲାମାନଙ୍କୁ ନିରାଶ ନ କରିବା ପାଇଁ ଏକାନ୍ତ ଅନୁରୋଧ ।"

"ଇଏ ବଡ଼ ଅନ୍ୟାୟ ହେଉଛି ରେଖାଦେବୀ, ମୋତେ ଏଥିରେ ରାଜି ହେବା ପାଇଁ ଭଲ ଲାଗୁନି ।"

"ଆପଣମାନେ ଓଡ଼ିଆ ସାହିତ୍ୟରେ ଲୋକପ୍ରିୟ ବିଜ୍ଞାନ ସୃଷ୍ଟି କରି ଯେଉଁ ସୁଖ୍ୟାତି ଅର୍ଜନ କରିଛନ୍ତି, ଇଏ ହେଉଛି ତାହାର ପୁରସ୍କାର ଦେବସ୍ମାନବାବୁ । ଆଜି ସାରା ଓଡ଼ିଶାରେ ସମସ୍ତଙ୍କ ମୁହଁରେ କାହାର ପ୍ରଶଂସା ? ଆପଣଙ୍କ ପ୍ରଶଂସା ତ । ଓଡ଼ିଶାରେ ସବୁଠୁ ବଡ଼ ବୈଜ୍ଞାନିକ କିଏ ବୋଲି ପଚ୍ଚରିଲେ ସମସ୍ତେ କାହା ନାମକୁ ଉଚ୍ଚାରଣ କରୁଛନ୍ତି ? ଆପଣ ଓଡ଼ିଶାରେ ସବୁଠାରୁ ବଡ଼ ବୈଜ୍ଞାନିକ ହୁଅନ୍ତୁ ବା ନ ହୁଅନ୍ତୁ ସମସ୍ତେ ଆପଣଙ୍କର ନାମକୁ ହିଁ କହିବେ । ଆପଣମାନେ ସ୍କୁଲ କଲେଜର ପିଲାମାନଙ୍କୁ ସେମାନଙ୍କ ମନଲାଖି ବିଜ୍ଞାନ ବିଷୟ ଯେପରି ପ୍ରାଞ୍ଜଳ ଭାବରେ କହିପାରିବେ, ଅନ୍ୟମାନେ ପାରିବେନି । ସେଥିପାଇଁ ଆପଣଙ୍କୁ ଡାକିବା । ସିନିୟର ଅଧ୍ୟାପକମାନେ ଗଲେ ସେମାନେ ଗବେଷଣା ବିଷୟରେ ଏତେକଥା କହିବେ ଯେ ପିଲାମାନେ କିଛି ବୁଝି ନ ପାରି ଆଳୁ ଖାଇଲା ଭଳି ମୁହଁକରି ଛାତର କଡ଼ି ବରଗାକୁ ଗଣିବାରେ ଲାଗିଯିବେ । ଆପଣଙ୍କୁ ରାଜି କରାଇବା

ଦାୟିତ୍ୱ ମିସ୍ ପଣ୍ଡା ମୋତେ ଦେଇଛନ୍ତି । ମୁଁ ଯେତେବେଳେ ଆସିଛି, ଅନ୍ତତଃ ମୋ ଖାତିରରେ ଦୟାକରି ରାଜି ହୋଇଯା'ନ୍ତୁ ଦେବସ୍ମାନବାବୁ ।"

"ଆପଣ ମୋତେ ବଡ଼ ଦ୍ୱିଧାରେ ପକାଇଲେ ରେଖାଦେବୀ । ହେଉ, ତେବେ ତାରିଖ କେବେ କହିଲେ ?"

"ସାର୍, ମାର୍ଚ୍ଚ ମାସ ନଅ ତାରିଖ ।" ଝିଅ ଦୁଇଟି ଏକ ସ୍ୱରରେ କହି ପକାଇଲେ ।

"ତା ମାନେ, ଏଇ ଆସନ୍ତା ଶନିବାର ? ଆରେ ସେଦିନ ତ ମୋର ବି.ଜେ.ବି. କଲେଜରେ ବକ୍ତୃତା ଅଛି । ସେଦିନ ତ ହୋଇପାରିବନି ।"

"ହେଉ, ତେବେ ଆପଣ ତାରିଖ କହନ୍ତୁ, କେଉଁଦିନ ଆପଣଙ୍କ ସୁବିଧା ହେବ । ସେହି ତାରିଖ ଅନୁସାରେ ଆମେ ଆମ ପ୍ରୋଗ୍ରାମ୍ କରିବୁ । ଆପଣ ତହିଁ ପର ସୋମବାର ଦିନ ଯାଇପାରିବେ ଆଜ୍ଞା ?"

"ତହିଁପର ସୋମବାର ? ମାନେ ଏଗାର ତାରିଖ ? ହେଉ ସେ ଦିନଟିକୁ ରଖନ୍ତୁ । ସେଦିନ ମୋର ଅନ୍ୟ କେଉଁଠି ବକ୍ତୃତା ନାହିଁ । ଦେଖନ୍ତୁ ରେଖାଦେବୀ, ଗୋଟିଏ ସର୍ତ୍ତରେ ମୁଁ ଏହି ତାରିଖକୁ ଗ୍ରହଣ କରିବି ।"

"ସର୍ତ୍ତ ? କି ସର୍ତ୍ତ ?"

"ସର୍ତ୍ତ ହେଉଛି, ଆପଣ ସେଦିନ ମୋ ସହିତ ସେ ମିଟିଂକୁ ଯିବେ । ମୋତେ ଝିଅମାନଙ୍କ କଲେଜକୁ ଏକା ଯିବାକୁ ଖରାପ ଲାଗିବ । ମୋର ସେଠି କେହି ଜଣାଶୁଣା ନାହାନ୍ତି । କଥାବାର୍ତ୍ତା ହେବ କାହା ସହିତ ?"

"ହଁ, ହଁ, ମେଡେମ୍, ଆପଣ ନିଶ୍ଚୟ ଆସିବେ । ଆପଣ ଯେତେବେଳେ ଦେବସ୍ମାନବାବୁଙ୍କୁ ରାଜି କରାଇଛନ୍ତି, ଆପଣ ନ ଆସିଲେ ହେବନି । ଆମେ ସେଦିନ ଗାଡ଼ି ନେଇ ଆସିବୁ । ଆପଣ ଦୁଇଜଣଙ୍କୁ ନେଇକରି ଯିବୁ ।"

"ଦେବସ୍ମାନବାବୁଙ୍କୁ ଯାହା ଦ୍ୱିଧାରେ ପକାଇଲ ଛୁଡ଼ି, ସେଥିସହିତ ମୋତେ ବି ? ହେଉ, ମେଡେମ୍‌ଙ୍କୁ କହିଦେବ ଆମ ଯିବା କଥା ।"

"ହେଉ, ତାହାହେଲେ ଆମେ ଆସୁଛୁ ମେଡେମ୍ ।" ଏତକ କହି ଉଭୟଙ୍କୁ ନମସ୍କାର ଜଣାଇ ବିଦାୟ ନେଲେ ଝିଅ ଦୁଇଟି ।

"ଆପଣ ବସନ୍ତୁ ନା ରେଖାଦେବୀ । ସେମାନେ ତ ଗଲେଣି । ଆପଣ ଡେର୍ ଦିନପରେ ଆମ ଡିପାର୍ଟମେଣ୍ଟକୁ ଆସିଛନ୍ତି । ଚା' ଖାଇବେନି ? ଆରେ କିଏ ଅଛ, ଶୀଘ୍ର ଦୁଇ କପ୍ ଚା'ଆଣିଲ ।"

× × × ×

ଦେବସ୍ମାନବାବୁ ଓ ରେଖାଦେବୀ କାର୍‌ରୁ ଓହ୍ଲାଇଛନ୍ତି କି ନାହିଁ ପ୍ରିନ୍ସପାଲ ମିସ୍ ପଣ୍ଡା କାର୍‌ଠାକୁ ଦୌଡ଼ି ଆସିଲେ । ସେମାନଙ୍କୁ ସ୍ୱାଗତ ଜଣାଇ ନିଜ ଅଫିସ୍ କକ୍ଷରେ

ବସାଇ ବସାଇ କହିଲେ, "ଆଜି ଆମର ବଡ଼ ଭାଗ୍ୟ, ଦେବସ୍ମାନବାବୁ ଆମ କଲେଜକୁ ଆସିଛନ୍ତି ବୋଲି । ବିଜ୍ଞାନରେ ଲୋକପ୍ରିୟ ବକ୍ତା ଭାବରେ ଦେବସ୍ମାନବାବୁଙ୍କ ଯେଉଁ ଅପୂର୍ବ ସୁଖ୍ୟାତି ତାହା ସାରା ଓଡ଼ିଶାରେ ଗୁଞ୍ଜରିତ ହେଉଛି । ଆମର ବଡ଼ ସୌଭାଗ୍ୟ, ଆମେ ତାଙ୍କ ଭଳି ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ବକ୍ତାଙ୍କୁ ପାଇପାରିଛୁ । ଲୋକପ୍ରିୟ ବିଜ୍ଞାନ ଲେଖକ ତଥା ବକ୍ତାଭାବରେ ସେ ଯେଉଁ ପ୍ରସିଦ୍ଧି ଅର୍ଜନ କରିଛନ୍ତି, ସେଭଳି ପ୍ରସିଦ୍ଧି ଓଡ଼ିଶାରେ କାହିଁକି, ସାରା ଭାରତରେ ବି ବିରଳ । ସେ ଆଜି ଆମ କଲେଜର ବିଜ୍ଞାନ ସଂସଦର ବାର୍ଷିକ ଅଧିବେଶନରେ ଯୋଗଦେବାକୁ ଆସିଥିବାରୁ ଆମେ ସମସ୍ତେ ଖୁସି । ଆପଣ ଯେଉଁଭଳି ଭାବରେ ବିଜ୍ଞାନକୁ ଲୋକପ୍ରିୟ କରି ଚାଲିଛନ୍ତି ଦେବସ୍ମାନବାବୁ, ତାହା ଆହୁରି ପ୍ରସାରଲାଭ କରୁ ଏତିକି ମାତ୍ର ଆମର ଭଗବାନଙ୍କଠାରେ ପ୍ରାର୍ଥନା ।"

ପ୍ରିନ୍‌ସପାଲଙ୍କ ଅଫିସରେ ଏମିତି କଥାବାର୍ତ୍ତା ଚାଲିଛି, ସମିତିର ସେକ୍ରେଟେରୀମାନେ ପହଞ୍ଚିଗଲେ । ସଙ୍ଗେ ସଙ୍ଗେ ସଭାକାର୍ଯ୍ୟ ଆରମ୍ଭ କରିବାକୁ ପ୍ରିନ୍‌ସପାଲଙ୍କୁ ଅନୁରୋଧ ଜଣାଇଲେ । ସେମାନଙ୍କ ଅନୁରୋଧରେ ଦେବସ୍ମାନବାବୁ, ରେଖାଦେବୀ, ପ୍ରିନ୍‌ସପାଲ ଓ ଅନ୍ୟ ଅଧ୍ୟାପିକାମାନେ ସେଠାରୁ କଲେଜ ହଲ୍ ଅଭିମୁଖେ ଚାଲିଲେ । ହଲ୍‌ରେ ପହଞ୍ଚିବାକ୍ଷଣି ଘନ ଘନ କରତାଳିରେ ସଭାଗୃହ କମ୍ପି ଉଠିଲା । ମଞ୍ଚ ଉପରେ ସମସ୍ତେ ବସିଛନ୍ତି କି ନାହିଁ ପ୍ରିନ୍‌ସପାଲ ମିସ୍ ପଣ୍ଡା ଦେବସ୍ମାନବାବୁଙ୍କୁ ଛାତ୍ରୀମାନଙ୍କ ସହିତ ପରିଚିତ କରାଇଦେବା ପାଇଁ ଯାହା କହିଲେ ସେଥିରେ ଘନ ଘନ କରତାଳି ସିନା ହେଲା, ଅନ୍ୟମାନେ କିଛି ଶୁଣିପାରିବାଭଳି ଜଣାପଡ଼ିଲାନି । ତେବେ ସେ ଦେବସ୍ମାନବାବୁଙ୍କୁ ଏତେ ଟିକେ ପ୍ରଶଂସାକଲେ ଯେ, ଝିଅମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ସେକ୍ରେଟେରୀମାନେ ବାର୍ଷିକ ରିପୋର୍ଟ ପଢ଼ି ସାରିବାପରେ ଦେବସ୍ମାନବାବୁଙ୍କୁ ଭାଷଣ ଦେବା ପାଇଁ ମିସ୍ ପଣ୍ଡା ଅନୁରୋଧ ଜଣାଇଲେ । ଦେବସ୍ମାନବାବୁ ଭାଷଣ ଦେବା ପାଇଁ ଠିଆ ହୋଇଛନ୍ତି କି ନାହିଁ, ପୁଣି ଘନ ଘନ କରତାଳିରେ ସଭାକକ୍ଷ କମ୍ପି ଉଠିଲା । ଦେବସ୍ମାନବାବୁଙ୍କ ମୁହଁରୁ ବକ୍ତୃତା ଶୁଣିବା ପାଇଁ ଛାତ୍ରୀମାନଙ୍କର ଯେଉଁ ଅପୂର୍ବ ଆଗ୍ରହ, ତାହା ସେମାନଙ୍କ ମୁଖମଣ୍ଡଳ ଓ ଘନ ଘନ କରତାଳିରୁ ଜଣାପଡୁଥାଏ । ଦେବସ୍ମାନବାବୁ ଏକ ଅତି ଆଧୁନିକ ବିଷୟ "ଏକବିଂଶ ଶତାବ୍ଦୀର ବିଜ୍ଞାନ" ଉପରେ ଭାଷଣ ଦେବା ପାଇଁ ସ୍ଥିର କରିଥିବାରୁ ବିଷୟଟି ଛାତ୍ରୀମାନଙ୍କୁ ମୋହିତ କରିଥାଏ । ସେ ନୂଆ ନୂଆ କଥା କ'ଣ କହିବେ ଶୁଣିବା ପାଇଁ ପିଲାମାନେ ଉତ୍ସୁକ ହୋଇ ଅନାଇ ରହିଥାନ୍ତି ।

ଦେବସ୍ମାନବାବୁ ଆରମ୍ଭ କଲେ, "ଆପଣମାନେ ଆଜି ସନ୍ଧ୍ୟାରେ ମୋତେ ଆପଣମାନଙ୍କ ସମିତିର ବାର୍ଷିକ ଅଧିବେଶନରେ ଯୋଗଦେବାର ସୁଯୋଗ ଦେଇଥିବାରୁ ମୁଁ ଆପଣଙ୍କ ପ୍ରିନ୍‌ସପାଲ ତଥା ସମିତିର କର୍ମକର୍ତ୍ତାମାନଙ୍କୁ ଧନ୍ୟବାଦ ନ ଜଣାଇ ରହିପାରୁନି । ମୁଁ ଆଜି ଯେଉଁ ବିଷୟରେ କହିବା ପାଇଁ ସ୍ଥିର କରିଛି, ତାହା ବର୍ତ୍ତମାନ ସମୟ ପାଇଁ ଏକ ଯୁଗୋପଯୋଗୀ ବିଷୟ । ବିଂଶ ଶତାବ୍ଦୀ ଯାଉଛି, ଏକବିଂଶ ଶତାବ୍ଦୀ ଆସୁଛି । ଏହି

ଘଡ଼ସନ୍ଧି ବେଳେ ଆସନ୍ତା ଶତାବ୍ଦୀରେ ମଣିଷ ସମାଜର ରୂପରେଖ ଜାଣିବା ପାଇଁ ସମସ୍ତେ ଉତ୍ସୁକ ହେବା ସ୍ୱାଭାବିକ । ଆଜି ଧର୍ମ ନାମରେ ଭାରତରେ ବାଡ଼ଆପିଟା ଚାଲିଛି, କିନ୍ତୁ ସେହି ଧର୍ମ ଯେ ଆଉ କେଇବର୍ଷ ଭିତରେ ଅପଚରା ହୋଇଯିବ, ଏହା କେହି ଚିନ୍ତା କରୁ ନାହାନ୍ତି । ଆସନ୍ତା ଶତାବ୍ଦୀରେ ଧର୍ମ ବୋଲି କିଛି ଗୋଟାଏ ନ ଥିବ । ଈଶ୍ୱରଙ୍କୁ ନେଇ ସିନା ଧର୍ମର ସୃଷ୍ଟି । ସେତେବେଳେ ଆମ ଭିତରେ ଈଶ୍ୱର ବିଶ୍ୱାସ ଏତେ କମିଯାଇଥିବ ଯେ ଧର୍ମ ନାଁରେ ଆଜିକାଲି ଯେଉଁ ଅନ୍ୟାୟ, ଅତ୍ୟାଚାର ଚାଲିଛି, ସେ ଯୁଗରେ ସେସବୁ କିଛି ନ ଥିବ । ସେତେବେଳେ ଦେବ ଦେବୀ, ମନ୍ଦିର, ମସଜିଦ୍ ସବୁ ଅଦରକାରୀ ହୋଇପଡ଼ିବ । ଦେବପ୍ରତିମାମାନେ ମିଉଜିୟମ୍‌ର ଦର୍ଶନୀୟ ବସ୍ତୁ ଭାବରେ କେବଳ ମନ୍ଦିରରେ ଶୋଭା ପାଇବେ । ଲୋକେ ଅତୀତଯୁଗର ଭାସ୍କର୍ଯ୍ୟ, କାରୁକାର୍ଯ୍ୟ ନେଇ ମନ୍ଦିର, ମସଜିଦ୍, ଚର୍ଚ୍ଚ ଗୁଡ଼ିକୁ ତନ୍ନ ତନ୍ନ କରି ପରୀକ୍ଷାନିରୀକ୍ଷା କରିବେ । ପୂଜା କରିବାର କେହି ନାଁ ଧରିବେନି । ଲୋକେ ସେ ଯୁଗରେ ଧର୍ମ ନାଁରେ ବାଡ଼ଆପିଟା ନ ହୋଇ ଧର୍ମର ପ୍ରକୃତ ଅର୍ଥ ଖୋଜିବାକୁ ଲାଗିପଡ଼ିବେ । ଧର୍ମ ହେଉଛି ସମାଜକୁ ଧରି ରଖିବାର ଶକ୍ତି, ବାଡ଼ିଆପିଟା କରି ଭାଙ୍ଗି ପକାଇବାର ଶକ୍ତି ନୁହେଁ । ତେଣୁ ଲୋକେ ଏହା ହିଁ ଉପଲବ୍ଧି କରି ପରସ୍ପର ମଧ୍ୟରେ ଭାତୃଭାବ ସୃଷ୍ଟି କରି ସହାବସ୍ଥାନ କରିବେ ।

ଆଧୁନିକ ବିଜ୍ଞାନ ବର୍ତ୍ତମାନ ଯେଉଁ ବେଗରେ ଆଗେଇ ଚାଲିଛି ଓ ଆମର ଦୈନନ୍ଦିନ ଜୀବନକୁ ଯେପରି ଭାବରେ ପ୍ରଭାବିତ କରିଛି, ସେଥିରୁ ଜଣାପଡ଼େ ଯେ, ବିଜ୍ଞାନର ପ୍ରଗତି ସହିତ ଆମ୍ଭମାନଙ୍କ ଜୀବନ ଧାରଣ ରୀତି ଓ ଚଳଣି ଓତଃପ୍ରୋତଃ ଭାବରେ ଜଡ଼ିତ । ଆଜକୁ ଦୁଇଶହ ବର୍ଷ ତଳେ ବିଜ୍ଞାନ ଯେତେବେଳେ ବର୍ତ୍ତମାନ ପରି ଏତେ ପ୍ରସାର ଲାଭ କରି ନ ଥିଲା, ସେତେବେଳେ ଆମ ଚଳଣି ଓ ରୀତି ବର୍ତ୍ତମାନ ଯୁଗପରି ସେତେ ଉନ୍ନତ ନ ଥିଲା । ସେ ଯୁଗରେ ଯାନବାହାନର ଯଥେଷ୍ଟ ବିକାଶ ହୋଇ ନ ଥିବାରୁ ଦୂର ଦେଶକୁ ଯିବା ଅତ୍ୟଧିକ ସମୟସାପେକ୍ଷ ଓ ଆୟାସସାଧ୍ୟ ଥିଲା । ରୋଗ ମହାମାରୀ, ବନ୍ୟା, ମରୁଡ଼ି ଆଦିରେ ଲୋକେ ମଶାମାଛି ଭଳି ମରୁଥିଲେ । ଆଧୁନିକ ବିଜ୍ଞାନର ପ୍ରସାର ଫଳରେ ଆମେ ସମୟ ଓ ଦୂରତାକୁ ପୂରାପୂରି ଜୟ କରି ପାରିଛୁ । ୟୁରୋପରୁ ଭାରତକୁ ଆସିବାକୁ ଭାସ୍କୋଡ଼ାଗାମାଙ୍କୁ ଲାଗିଥିଲା ଛଅମାସ, ଆମେ ବର୍ତ୍ତମାନ ଛଅ ଘଣ୍ଟାରେ ୟୁରୋପରେ ପହଞ୍ଚି ପାରୁଛୁ । ସମୟ ଓ ଦୂରତାର କି ଶୋଚନୀୟ ପରାଜୟ କହିଲେ ? ରୋଗ, ମହାମାରୀ, ବନ୍ୟା, ମରୁଡ଼ିକୁ ଆମେ ବର୍ତ୍ତମାନ ପୂରାପୂରି ଆମ ଅକ୍ତିଆରକୁ ନେଇ ଆସିଲୁଣି । ପୂର୍ବଭଳି ସେମାନଙ୍କ ପ୍ରକୋପ ଆଉ ସେତେ ନାହିଁ । ମହାମାରୀ ନା ଶୁଣିଲେ ଆଗେ ଲୋକେ ଘରଦ୍ୱାର ଛାଡ଼ି ପଳାଉଥିଲେ । ଗାଁ ଗଣ୍ଡା ଖାଲି ପଡ଼ି ଯାଉଥିଲା । ଆଜିକାଲି ଆଉ କ'ଣ ତାହା ଅଛି ? ମଣିଷ ପୃଥିବୀରୁ ଯାଇ ଚନ୍ଦ୍ରଲୋକରେ ପହଞ୍ଚି ସେଠୁ ଫେରିଆସି ପାରିଲାଣି । ପ୍ରକୃତି ଆଉ ପୂର୍ବଭଳି ଆମ ଉପରେ ପ୍ରାଧାନ୍ୟ ବିସ୍ତାର କରିପାରୁ ନାହିଁ । ଏଇ ମାତ୍ର 'ଦୁଇଶହ ବର୍ଷର ବିଜ୍ଞାନର ପ୍ରଗତି ଫଳରେ ମଣିଷ ଯଦି ଏତେ ଦୁଃସାଧ୍ୟ କାର୍ଯ୍ୟ

ସମ୍ପାଦନ କରିପାରୁଛୁ, ତେବେ ଆଉ ଶହେବର୍ଷ ପରେ ମଣିଷ ବିଜ୍ଞାନ ସାହାଯ୍ୟରେ ଅନେକ ଡେଉର୍ ଅସାଧ୍ୟ ସାଧନ ଯେ କରିପାରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଆମେ ବର୍ତ୍ତମାନ ଆଲୋଚନା କରିବା ଏକବିଂଶ ଶତାବ୍ଦୀରେ ବିଜ୍ଞାନର କି କି ଉନ୍ନତି ସାଧିତ ହୋଇଥିବ ଓ ମଣିଷ ସମାଜ ଉନ୍ନତି କରି କେଉଁ ସ୍ତରରେ ଯାଇ ପହଞ୍ଚିଥିବ ।

ଦେଖନ୍ତୁ, ମଣିଷର ପ୍ରଧାନ ଶତ୍ରୁ ହେଉଛି ରୋଗ ଓ ବାର୍ଦ୍ଧକ୍ୟ । ବର୍ତ୍ତମାନ ମାତ୍ର ଦୁଇ ଚାରୋଟି ରୋଗକୁ ଛାଡ଼ିଦେଲେ ଆଉ ସବୁ ରୋଗ ମଣିଷର ପ୍ରାୟ କରାୟତ୍ତ ହୋଇ ସାରିଲାଣି । ବସନ୍ତ, କଲେରା, କୁଷ୍ଠ, ଟାଇଫଏଡ୍, ପ୍ଲେଗ୍, ମେଲେରିଆ, ଯକ୍ଷ୍ମା, ନିମୋନିଆ ଆଦି ମଣିଷମାରା ବ୍ୟାଧି ପୃଥିବୀର ବହୁ ଦେଶରୁ ପୁରାପୁରି ନିର୍ମୂଳ ହୋଇଗଲାଣି । କର୍କଟ, ରକ୍ତଚାପ, ହୃଦ୍‌ବ୍ୟାଧି ଆଦି ମାତ୍ର କେଇଗୋଟି ରୋଗ ବର୍ତ୍ତମାନ ଆମର ଯାହାକିଛି ଦୁଃଖର କାରଣ ହୋଇ ରହିଛି । ଆଶା କରାଯାଉଛି, ଆଉ କୋଡ଼ିଏ ପଚିଶ ବର୍ଷ ଭିତରେ କର୍କଟରୋଗ ଆମର ପୁରାପୁରି କରାୟତ୍ତ ହୋଇପାରିବ । କର୍କଟ ରୋଗରୁ ଲୋକେ ଆଉ ଆଜକାଲିକା ଭଳି ମରିବେନି । ହୃଦ୍‌ବ୍ୟାଧି ଆଦି ମଣିଷର ଅକ୍ତିଆରକୁ ଚାଲି ଆସିବ । ଅବସ୍ଥା ଏମିତି ହେବ, ଲୋକେ ଆଉ ରୋଗରେ ମରିବେନି । ରୋଗ ବ୍ୟାଧିକୁ ଆମେ ପୁରାପୁରି ଜୟ କରିପାରିବୁ ।

ହୋଇପାରେ ସେ ଯୁଗରେ ଏମିତି ଏକ ଅଜଣା ବ୍ୟାଧି ବାହାରିବ, ଯାହାର କିଛି ଚିକିତ୍ସା ନ ଥିବ । ଆଜକାଲି ଯେମିତି ଏଡ଼ସ୍ ରୋଗ ବାହାରିଛି ଯାହାର କିଛି ଚିକିତ୍ସା ନାହିଁ । ସେ ଯୁଗରେ ରୋଗୀ କ'ଣ ଏଭଳି ରୋଗରୁ ଚିକିତ୍ସା ନ ପାଇ ଆଜକାଲିକା ଭଳି ମରିଯିବ ? ନାଁ, ତା ହେବନି । ରୋଗୀକୁ ସେ ଯୁଗର ଡାକ୍ତରମାନେ ଏମିତି ଅସହାୟ ଅବସ୍ଥାରେ ମରିବାକୁ ଦେବେନି । ଔଷଧ ନାହିଁ ବୋଲି ଯେ ରୋଗୀ ଅସହାୟ ହୋଇ ମରିଯିବ, ଏହା ସେ ଯୁଗର ଚିକିତ୍ସକମାନେ କଦାପି ଚିନ୍ତା କରିବେନି । ସେମିତି ରୋଗ ହେଲେ ଡାକ୍ତରମାନେ ରୋଗୀକୁ କ୍ଷଣିକ ମୃତ୍ୟୁ କରାଇ ଅତି ନିମ୍ନତାପ ପ୍ରକୋଷ୍ଠରେ ରଖିଦେବେ, ସେହି ରୋଗର ଅବ୍ୟର୍ଥ ଔଷଧ ବାହାରିବା ପର୍ଯ୍ୟନ୍ତ । ରୋଗର ଔଷଧ ଯେତେବେଳେ ବାହାରିବ, ରୋଗୀକୁ ନିମ୍ନତାପ ପ୍ରକୋଷ୍ଠରୁ ବାହାରକରି ଆଣି କ୍ଷଣିକ ମୃତ୍ୟୁରୁ ପୁନର୍ବାର ଜୀବିତ କରାଇ ଚିକିତ୍ସା କରିବେ । ଫଳରେ ସେ ଭଲ ହୋଇ ପୁଣି ସଂସାରକୁ ଫେରି ଆସିବ ଓ ସୁଖରେ ଘର-ସଂସାର କରିବ । ତେବେ ଏହି ଚିକିତ୍ସାରେ ଏକ ଅସୁବିଧା ହେବ, ଯାହାଫଳରେ ଆମ ସମାଜ ଏକ ଅସ୍ୱାଭାବିକ ପରିସ୍ଥିତିର ସମ୍ମୁଖୀନ ହେବ । ଯେଉଁମାନେ କ୍ଷଣିକ ମୃତ୍ୟୁପରେ ନିମ୍ନ ତାପକ୍ରମରେ ସାଇତା ହୋଇ ରହିବେ, ସେମାନଙ୍କ ବୟସ ମୋଟେ ବଢ଼ିବନି । ମନେକର, ୨୫ ବର୍ଷ ବୟସ ବାପର କୋଡ଼ିଏବର୍ଷ ବୟସର ସ୍ତ୍ରୀ ଓ ବର୍ଷକର ପୁଅ ଅଛି । ଏକ ଅସାଧ୍ୟ ରୋଗ ଯୋଗୁଁ ବାପର କ୍ଷଣିକ ମୃତ୍ୟୁ କରି ଦିଆଯାଇ ନିମ୍ନ ତାପକ୍ରମରେ ରଖି ଦିଆଗଲା । ମନେକର୍ ୫୦ ବର୍ଷ ପରେ ସେ ରୋଗର ଔଷଧ ବାହାରିଲା । ତେଣୁ ଯେତେବେଳେ ନିମ୍ନ ତାପକ୍ରମରୁ ସେ ରୋଗୀକୁ

ବାହାର କରି ଚିକିତ୍ସା କରି ତା ନିଜ ସଂସାରକୁ ଫେରାଇ ଆଣିଲି । ବର୍ତ୍ତମାନ ତା ସଂସାରରେ କି ଅବସ୍ଥା ଉପୁଜିବ ଦେଖିବା । ସେହି ଲୋକକୁ ୨୫ ବର୍ଷ ବୟସ ହୋଇଥିବା-ବେଳେ ତା'ର ସ୍ତ୍ରୀକୁ ୭୦ ବର୍ଷ ବୟସ ଓ ପୁଅକୁ ୫୧ ବର୍ଷ ବୟସ ହୋଇଥିବ । ୨୫ ବର୍ଷ ବୟସର ଲୋକର ପୁଅ ଯଦି ୫୧ ବର୍ଷ ବୟସ ହୁଏ ଓ ସ୍ତ୍ରୀ ୭୦ ବର୍ଷ ବୟସର ହୁଏ, ତେବେ ସେ ଲୋକ ସେଭଳି ପୁଅ ଓ ସ୍ତ୍ରୀକୁ ନେଇ କେମିତି ଘର-ସଂସାର କରିବ ଚିନ୍ତା କରିବା କଥା । ନିଜ ଜନ୍ମିତ ପୁଅ ଯଦି ନିଜ ବୟସଠାରୁ ଦି'ଗୁଣ ହେଲା, ସ୍ତ୍ରୀ ଯଦି ତିନିଗୁଣ ହେଲା ସେମାନେ ବାପ-ପୁଅ, ସ୍ୱାମୀ-ସ୍ତ୍ରୀ ଭାବରେ କେମିତି ଚଳିବେ ଭାବିବା କଥା । ସେତେବେଳେ ଏହି ପଦ୍ଧତି ଯୋଗୁଁ ଏହିଭଳି ସାମାଜିକ ପରିବର୍ତ୍ତନ ଘଟିଲେ, ଆମକୁ ଚଳାଇନେବାକୁ ହେବ । ସେଭଳି ପୁଅ ଓ ସ୍ତ୍ରୀକୁ ନେଇ ଚଳିବାକୁ ପଡ଼ିବ । ସେଥିପାଇଁ ଆମ୍ଭମାନଙ୍କର ମାନସିକ ପ୍ରସ୍ତୁତି ଦରକାର ।" ଘନ ଘନ କରତାଳିରେ ସଭାକକ୍ଷ କମ୍ପି ଉଠିଲା । ପିଲାମାନେ ଦେବସ୍ନାନବାବୁଙ୍କ ଭାଷଣରେ ଏତେ ମୁଗ୍‌ଧ ହୋଇ ଯାଇଥିଲେ ଯେ ତାହା ଏହି କରତାଳିରୁ ଜଣାପଡ଼ୁଥିଲା । କିଛି ସମୟ ପରେ ଦେବସ୍ନାନବାବୁ ପୁଣି ଆରମ୍ଭ କଲେ :

ସେ ଯୁଗରେ ମଣିଷ ବୁଢ଼ା ହେବନି କି ଅଳ୍ପାୟୁ ହେବନି । ମଣିଷ କାହିଁକି ବୁଢ଼ା ହୁଏ, କାହିଁକି ଅଳ୍ପାୟୁ ହୁଏ, ବିଜ୍ଞାନ ଏହାର ପ୍ରକୃତ କାରଣ ବର୍ତ୍ତମାନ ବାହାର କରିବା ଉପରେ । ତେଣୁ କ'ଣ କଲେ ମଣିଷ ଆଉ ବୁଢ଼ା ହେବନି କି ଅଳ୍ପାୟୁ ହେବନି, ବାହାର କରିବାକୁ ଅଧିକ ଦିନ ଲାଗିବନି । ଆମେ ସମସ୍ତେ ଜାଣୁ ଆମ ଦେଶରେ ଲୋକେ ସାଧାରଣତଃ ଷାଠିଏ ପଞ୍ଚଷଠୀ ବର୍ଷ ବଞ୍ଚିଲାବେଳକୁ ସୋଭିଏଟ୍ ରୁଷିଆର ଏକ ପାର୍ବତ୍ୟ ଅଞ୍ଚଳର ଲୋକେ ଦେଢ଼ଶହ, ଶହେ ସତୁରିବର୍ଷ ପର୍ଯ୍ୟନ୍ତ ବଞ୍ଚୁଛନ୍ତି । ସେଠାରେ ଶହେରୁ ଅଧିକ ବର୍ଷ ବଞ୍ଚିଥିବା ଲୋକମାନଙ୍କର ଯେଉଁ କ୍ଲବ ଅଛି, ଦେଖିଲେ ଆଶ୍ଚର୍ଯ୍ୟ ହେବାଛଡ଼ା ଅନ୍ୟ ଉପାୟ ନାହିଁ । ସେହି କ୍ଲବରେ ସେମାନେ ନାଚ, ଗୀତଠାରୁ ଆରମ୍ଭ କରି ନାନାଦି ଖେଳ କସରତ ଏପରି ଭାବରେ କରୁଛନ୍ତି, ଆମ ଦେଶର ଟୋକାମାନେ ବି ତାହା ପାରିବେ ନାହିଁ । ଆମର ଯେଉଁ କଥା 'କଳିଷଠା ଷାଠିଏ' କି ଆମ ଲୋକଙ୍କ ଆଶୀର୍ବାଦ "ଶତୋ ବିଂଶୋଉତ୍ତରି ପରମାୟୁ" ତାହା ବର୍ତ୍ତମାନ ଯୁଗ ପାଇଁ ନିରର୍ଥକ ହୋଇପଡ଼ିବ । ଏକବିଂଶ ଶତାବ୍ଦୀ କଥା ତ ଅଛି, ବର୍ତ୍ତମାନ ବୈଜ୍ଞାନିକମାନେ ନିର୍ଧାର୍ଯ୍ୟ ଭାବରେ ବାହାର କରିବାକୁ ଯାଉଛନ୍ତି, ଅଳ୍ପାୟୁର କାରଣ ଓ ଲୋକ କାହିଁକି ବୁଢ଼ା ହୁଏ । ଏହି କାରଣ ଜଣାପଡ଼ିଲେ ଏଭଳି ବ୍ୟବସ୍ଥା କରାହେବ ଯେପରିକି ଲୋକେ ବୁଢ଼ା ହେବେନି କି ଅଳ୍ପାୟୁ ହେବେନି । ଆସନ୍ତା ଶତାବ୍ଦୀରେ ଲୋକମାନଙ୍କର ଆୟୁଷ ନିର୍ଧାର୍ଯ୍ୟ ଭାବରେ ଦେଢ଼ଶହରୁ ଦୁଇଶହ ବର୍ଷକୁ ବଢ଼ି ଯାଇଥିବ । ଲୋକମାନେ ଯୁବାବସ୍ଥା ବହୁଦିନ ପର୍ଯ୍ୟନ୍ତ ଉପଭୋଗ କରିପାରିବେ । ସେମାନଙ୍କୁ ଶହେବର୍ଷ ହେଲେ ବି ସେମାନଙ୍କ ମୁଣ୍ଡବାଳ ଧଳା ହୋଇ ନ ଥିବ କି ଦାନ୍ତ ପଡ଼ି ନ ଥିବ କି ସେମାନଙ୍କ ମାଂସପେଶୀ ଦୁର୍ବଳ ହୋଇ ନ ଥିବ କି ଚମ ଧୂଡ଼ୁଧୂଡ଼ୁ ହୋଇ ନ ଥିବ । ଆଜିକାଲିକାର ଟୋକାମାନଙ୍କ ଭଳି ସେମାନେ ଶହେବର୍ଷ

ବୟସରେ ମଧ୍ୟ ମାଟିହାଣି ପାରୁଥିବେ, ନଈ ପହଁରି ପାରୁଥିବେ, ହଳକରି ପାରୁଥିବେ, କାଠହାଣି ପାରୁଥିବେ, ଘୋଡ଼ାଚଢ଼ି ପାରୁଥିବେ, ଏମିତକି ମହଣ ମହଣ ଜିନିଷ ଅକ୍ଳେଶରେ ଟେକିନେଇ ପାରୁଥିବେ ।’’ ଘନ ଘନ କରତାଳିରେ ସଭାମଞ୍ଚ କମ୍ପି ଉଠିଲା ।

କିଛି ସମୟପରେ ଦେବସ୍ନାନବାବୁ ପୁଣି ଆରମ୍ଭ କଲେ— ଆଉ ଶହେବର୍ଷ ପରେ ଆଜିକାଲିକାର ଭଳି ଅକାଳ ମୃତ୍ୟୁ ନ ଥିବ । ମଟରଗାଡ଼ି, ରେଲଗାଡ଼ି, ଏରୋପ୍ଲେନ୍ ଆଦିରେ ଆଜିକାଲି ଯେମିତି ଦୁର୍ଘଟଣା ହେଉଛି ଓ ସେହି ଦୁର୍ଘଟଣା ଯୋଗୁଁ ବହୁ ଲୋକଙ୍କର ଅପମୃତ୍ୟୁ ଘଟାଉଛି, ଆସନ୍ତା ଶତାବ୍ଦୀବେଳକୁ ତାହା ପ୍ରାୟ ନ ଥିବ । ମଟର, ବସ୍, ରେଲଗାଡ଼ି ଆଦିରେ ଦୁର୍ଘଟଣାରୋଧୀ ରେଡ଼ାର ଓ କଂପ୍ୟୁଟର ଆଦି ଯନ୍ତ୍ରର ଉପଯୋଗ ଯୋଗୁଁ ଓ ସ୍ଥାନେ ସ୍ଥାନେ ଯାନ୍ତ୍ରିକ ଚାଳକର ପ୍ରବର୍ତ୍ତନ ଫଳରେ ଦୁର୍ଘଟଣା ପ୍ରାୟ ନ ଥିବ । ଯଦିବା କେଉଁଠି ଦୁର୍ଘଟଣା ଘଟି କାହାର ହାତ ଭାଙ୍ଗିଗଲା, କି ଗୋଡ଼ ଭାଙ୍ଗିଗଲା, କି କଲିଜା ଫାଟିଗଲା, କି ହୃତ୍ପିଣ୍ଡ ଅକାମୀ ହୋଇଗଲା, କି ଆଖି ଫୁଟିଗଲା, ଲୋକେ ଅକାମୀ ହୋଇସିବେନି କି ମୃତ୍ୟୁବରଣ କରିବେନି । ଶରୀରର ଯେଉଁ ଅଙ୍ଗଟି ନଷ୍ଟ ହୋଇଗଲା, ସେହି ଅଙ୍ଗକୁ ଦେଶର ସ୍ଥାନେ ସ୍ଥାନେ ଖୋଲାଯାଇଥିବା ‘ଅଙ୍ଗପ୍ରତ୍ୟଙ୍ଗ ବ୍ୟାଙ୍କ’ରୁ ଆଣି ନିଜ ଦେହରେ ଲଗାଇ ଭଲ ହୋଇ ପାରିବେ । ହାତ ବ୍ୟାଙ୍କ, ଆଖି ବ୍ୟାଙ୍କ, ହୃତ୍ପିଣ୍ଡ ବ୍ୟାଙ୍କ, ବୃକ୍କ ବ୍ୟାଙ୍କ ଆଦି ଅସଂଖ୍ୟ ପ୍ରକାର ‘ଅଙ୍ଗପ୍ରତ୍ୟଙ୍ଗ ବ୍ୟାଙ୍କ’ ପ୍ରାୟ ସବୁ ଡାକ୍ତରଖାନାରେ ଥିବ । ଯାହାର ଯାହା ଭାଙ୍ଗିଗଲା, ସଙ୍ଗେ ସଙ୍ଗେ ବେଙ୍କରୁ ଆଣି ଦେହରେ ଲଗାଇ ଆହତ ବ୍ୟକ୍ତିକୁ ଭଲ କରି ହେବ । ଏଥିରେ ବେଳେବେଳେ ଅସୁବିଧା ହୁଏ, ଯେ ଶରୀର ଅନେକ ସମୟରେ ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗ ବେଙ୍କ ବା ଅନ୍ୟଠାରୁ ଆଣିଥିବା ଅଙ୍ଗକୁ ଗ୍ରହଣ କରେନି । କାରଣ ଏହା ବାହାରର ଅଙ୍ଗ, ନିଜ ଶରୀରର ନୁହେଁ । ସେଥିପାଇଁ ବୈଜ୍ଞାନିକମାନେ ଭାବୁଛନ୍ତି, ତା’ ନ କରି ମଣିଷ ଯୁବା ହେଲାବେଳଠୁଁ ନିଜ ଶରୀରର ଅଧିକା ଅଙ୍ଗପ୍ରତ୍ୟଙ୍ଗ ଟିସୁ କଲଚର୍ ପଦ୍ଧତିରେ ସୃଷ୍ଟିକରି ସାଇତି ରଖିବ । ଭବିଷ୍ୟତରେ ନିଜ ଶରୀରର କୌଣସି ଅଙ୍ଗ ଅକାମୀ ହୋଇଗଲେ ଏଇ ସୃଷ୍ଟି ହୋଇ ରହିଥିବା ଅଙ୍ଗକୁ ଆଣି ଦେହରେ ଲଗାଇ ଭଲ ହୋଇପାରିବ । ଯେହେତୁ ସେ ଅଙ୍ଗ, ନିଜ ଦେହର, ଏହାକୁ ଆଉ ଶରୀର ପରିତ୍ୟାଗ କରିବନି । ଏହି ପଦ୍ଧତି ସାହାଯ୍ୟରେ ହାତ, ଗୋଡ଼, ଆଖି, କାନ, ନାକ, ହୃତ୍ପିଣ୍ଡ, ବୃକ୍କ, ଫୁସ୍ଫୁସ୍ ଆଦି ସବୁକିଛି ପ୍ରସ୍ତୁତ କରିହେବ ଓ ଦୁର୍ଘଟଣା ସମୟରେ ସେଗୁଡ଼ିକୁ ଶରୀରକୁ ଯୋଗାଇହେବ ।

ଆସନ୍ତା ଶତାବ୍ଦୀବେଳକୁ ଗଛର ଡାଳକୁ କାଟିଦେଲେ ଯେମିତି କଟା ଡାଳରେ କୁଆଁ ମାରୁଛି, ସେ ଯୁଗରେ ଏମିତି ହେବ ଯା’ ଫଳରେ ହାତ ଗୋଡ଼ କଟିଗଲେ ସେହି ସ୍ଥାନରେ କଟାଯାଇଥିବା ହାତଗୋଡ଼ ପୁଣି କଅଁଳି ଉଠି କିଛିଦିନ ପରେ ବଢ଼ି ପୂର୍ବ ହାତ ଭଳି ହୋଇଯିବ । ତାହା ନ ହେବ କାହିଁକି ? ଝିଟିପିଟିର ଲାଞ୍ଜ କଟିଗଲେ, ଏହା ପୁଣି ବଢ଼ି ସମାନ ହୋଇଯାଉଛି । ଆମ ଶରୀରର ଯକୃତକୁ କାଟି ଦେଲେ, ଏହା ପୁଣି

ବଢି ଯାଉଛି । ବର୍ତ୍ତମାନ ଏହି ଦିଗରେ ଗବେଷଣା ଖୁବ୍ ଜୋରସୋରରେ ଚାଲିଛି । ଆଶା କରାଯାଉଛି, ଶହେବର୍ଷ ଭିତରେ ଏହା ନିଶ୍ଚିତ ଭାବରେ କୃତକାର୍ଯ୍ୟ ହୋଇ-ପାରିଥିବ । କଣ୍ଟା ହାତ ଗୋଡ଼ ଯାଗାରେ ନୂଆ ହାତ ଗୋଡ଼ କଅଁଳିଲେ କେତେ ମଜା ନ ଲାଗିବ ଦେଖିବାକୁ ?

ସଭାମଞ୍ଚରେ ଏକ ହାସ୍ୟରୋଳ ଓ ସେଥିସହିତ ଘନ ଘନ କରତାଳି ଶବ୍ଦ ଉଠିଲା । ଦେବସ୍ନାନବାବୁ ସହାସ୍ୟ ବଦନରେ ଚାରିଆଡ଼କୁ ଅନାଇ ପୁଣି ଆରମ୍ଭ କଲେ—

ଆଉ ପନ୍ଦର କୋଡ଼ିଏବର୍ଷ ପରେ ମଣିଷର ପୁଅ ଝିଅ ହେବା ନିଜ ଅକ୍ତିଆରକୁ ଚାଲି ଆସିବ । ଆମେ ପୁଅ ଚାହିଁଲେ ପୁଅ ହେବ, କି ଝିଅ ଚାହିଁଲେ ଝିଅ ହେବ । ଆଜିକାଲି ଯେମିତି ଲୋକେ ଭାଗ୍ୟକୁ ଆଦରି ରହୁଛନ୍ତି, ଝିଅ ପରେ ଝିଅ ହୋଇ ସାତଝିଅରେ ପହଞ୍ଚିଲଣି ସେମିତି ହେବନି । ଆଜିକାଲି ଯେମିତି ଜନ୍ମ ନିୟନ୍ତ୍ରଣ ଜେଲି ବଜାରରେ ବିକ୍ରି ହେଉଛି ସେମିତି ପୁଅ ଝିଅ ପାଇଁ ଅଲଗା ଅଲଗା ଜେଲି ବିକ୍ରି ହେଉଥିବ । ପୁଅ ପାଇଁ ଥିବା ଜେଲି ବ୍ୟବହାର କଲେ ପୁଅ ହେବ, ଝିଅ ଜେଲି ବ୍ୟବହାର କଲେ ଝିଅ ହେବ । ଭାଗ୍ୟରେ ଅଛି ଝିଅ ହେଲା ଏହା ଆଉ ନ ଥିବ । ଯେହେତୁ ସେତେବେଳର ସରକାର ଜନସଂଖ୍ୟା ବୃଦ୍ଧିକୁ ରୋକିବା ପାଇଁ ପ୍ରତ୍ୟେକ ପରିବାର ପାଇଁ ଗୋଟିଏ ପିଲା ମଞ୍ଜୁର କରିବେ, ତେଣୁ କାହାର ପୁଅ ହେବ କାହାର ଝିଅ ହେବ, ତାକୁ ଠିକ୍ କରିବା କଷ୍ଟକର ହୋଇପଡ଼ିବ । ପୁଅଟିଏ କି ଝିଅଟିଏ ପାଇଁ ସରକାରଙ୍କଠାରେ ଦରଖାସ୍ତ ପେଶ୍ କରିବାକୁ ପଡ଼ିବ । ବହୁ ବିଚାର ଆଲୋଚନା ପରେ ଫଇସଲା ହେବ । ତା'ପରେ ସେମାନେ ପୁଅ କି ଝିଅ ପାଇଁ ଅନୁମତି ପାଇବେ । ସେତେବେଳେ ସମସ୍ତଙ୍କ ଆଖିରେ ପୁଅ ଝିଅ ସମାନ ଥିବ ।

ଆଜିକାଲି ମା'ମାନେ ଯେମିତି ପେଟରେ ପିଲାକୁ ବଢ଼ାଇ ଦଶମାସ କଷ୍ଟ ପରେ ପିଲାକୁ ଜନ୍ମ ଦେଉଛନ୍ତି, ସେ ଯୁଗରେ ସେଭଳି ହେବନି । ଆସନ୍ତା ଶତାବ୍ଦୀରେ ସ୍ତ୍ରୀ ଲୋକ-ମାନେ ବର୍ତ୍ତମାନ ଭଳି ପୁରୁଷ ମୁଖାପେକ୍ଷୀ ହୋଇ ରହିବେନି । ସେ ଯୁଗର ସ୍ତ୍ରୀ ଲୋକ ଯଥେଷ୍ଟ ଅଧିକ ସ୍ୱାଧୀନ ହେବେ, ଫଳରେ ନିଜ ସନ୍ତାନକୁ ନିଜ ଗର୍ଭ ଭିତରେ ବଢ଼ାଇବାକୁ ଇଚ୍ଛା କରିବେନି । ଯେହେତୁ ପିଲାଟି ପାଖରେ ବାପ ମା' ସମାନ, ପିଲାଟିର ସୃଷ୍ଟି ପାଇଁ ମା' ଏକା ଏତେ କଷ୍ଟ ଭୋଗ କରିବ କାହିଁକି ? ବାପ ବିନା କଷ୍ଟରେ ପିଲାଟି ପାଇଁ କ'ଣ ବାହାବା ନେବ ? ତେଣୁ ସେ ଯୁଗରେ ମା' ବାପମାନେ ପିଲାକୁ ଜନ୍ମ ଦେବେ ସତ, କିନ୍ତୁ ମା' ନିଜ ପେଟରେ ବଢ଼ାଇ ଜନ୍ମ ଦେବନି । ପିଲା ସୃଷ୍ଟି ହେବ 'ଟେଷ୍ଟ୍‌ଟିଉବ୍ ବେବି' ଭାବରେ ଏକ ଜଟିଳ ଯନ୍ତ୍ର ଭିତରେ । ପିଲା ସୃଷ୍ଟି ପାଇଁ ସେ ଯୁଗରେ ଜେନେଟିକ୍ ଇଞ୍ଜିନିଅରମାନେ ନିଜ ନିଜର କ୍ଲିନିକ୍‌ମାନ ଖୋଲି ବସିଥିବେ । ମା' ବାପ ସେଠାକୁ ଯିବେ ପୁଅ କି ଝିଅ ସେମାନଙ୍କର ଦରକାର ତାଙ୍କୁ କହିବେ, ଦରକାର ପଡ଼ିଲେ ସରକାରଙ୍କଠାରୁ ପାଇଥିବା ଅନୁମତି ପତ୍ର ଦେଖାଇବେ । ଜେନେଟିକ୍ ଇଞ୍ଜିନିଅର ବାପଠାରୁ ଶୁକ୍ରାଣୁ ଓ ମା'ଠାରୁ ଡିମ୍ବାଣୁ ସଂଗ୍ରହ କରି ନିଜ ଯନ୍ତ୍ରରେ ସେଗୁଡ଼ିକୁ କୃତ୍ରିମ

ଉପାୟରେ ନିଷେକ କରାଇ ନିଷିକ୍ତ ଡିମ୍ବାଣୁଟିକୁ ନିଜ କ୍ଲିନିକ୍‌ରେ ଥିବା ଏକ ଯନ୍ତ୍ର ଭିତରେ ବଢିବାକୁ ଦେବ, ଠିକ୍ ମା' ପେଟ ଭିତରେ ପିଲାଟି ବଢ଼ିଲା ଭଳି ।

ଖାଲି ସେତିକି ନୁହେଁ, ଯାହାର ଯେଉଁ ପ୍ରକାରର ପିଲା ଦରକାର, ସେ ସେହି ଅନୁସାରେ ବରାଦ ଦେଲେ ଜେନେଟିକ୍ ଇଞ୍ଜିନିଅରମାନେ ବରାଦ ମୁତାବକ ଶୁକ୍ରାଣୁ ଓ ଡିମ୍ବାଣୁରୁ ଆବଶ୍ୟକୀୟ ପିଲା ସୃଷ୍ଟି କରିପାରିବେ । ଆମେ ଦରଜି ଦୋକାନକୁ କନା ଦେଇ ତାକୁ ଯେମିତି ବିଭିନ୍ନ ପ୍ରକାରର ପେଣ୍ଟ, କୋଟ, ସାର୍ଟ କରିବାକୁ ବରାଦ କରୁଁ ଓ ଦରଜି ସେଇ ଗୋଟିଏ କନାକୁ ବିଭିନ୍ନ ଢଙ୍ଗରେ କାଟି ଆମ ପାଇଁ ବିଭିନ୍ନ ରକମର ପୋଷାକ ତିଆରି କରେ, ଏ ଠିକ୍ ସେଇମିତି । ଜଣେ ଯଦି କହିବ, ତା ପୁଅ ଚଳଚ୍ଚିତ୍ର ଅଭିନେତା ଭଳି ସୁନ୍ଦର ହେବ, କି ଭଲ ଖେଳୁଆଡ଼ ହେବ, କି ଭଲ ପାଠ ପଢିବ, ଭଲ ଇଞ୍ଜିନିଅର ହେବ, କି ଭଲ ଡାକ୍ତର ହେବ, କିଏ ଯଦି ଚାହିଁଲା ତା ଝିଅ ଅନିନ୍ଦ୍ୟ ସୁନ୍ଦରୀ ହେବ, ତନୁପାତଳୀ ହେବ, ଗଜଗମନୀ ହେବ, ଭଲ ନର୍ତ୍ତକୀ ହେବ, କି ଭଲ ଗାୟିକା ହେବ, କି ମେଡେମ୍ କ୍ୟୁରି ଭଳି ଜଣେ ବଡ଼ ବୈଜ୍ଞାନିକ ହେବ, ତେବେ ସେ ସେହି ଅନୁସାରେ ବରାଦ ଦେଇପାରିବ । ଯେହେତୁ ମଣିଷର ଗୁଣ ଶୁକ୍ରାଣୁ ଓ ଡିମ୍ବାଣୁରେ ଥିବା ଡି.ଏନ୍.ଏ. ଦ୍ୱାରା ନିୟନ୍ତ୍ରିତ ହୁଏ, ଜେନେଟିକ୍ ଇଞ୍ଜିନିୟରମାନେ ନାନା ଉପାୟରେ ଶୁକ୍ରାଣୁ ଓ ଡିମ୍ବାଣୁ ଭିତରେ ଏମିତି ମିଳନ କରାଇବେ, ଯେମିତିକି ବରାଦ ହୋଇଥିବା ଗୁଣସବୁ ପିଲାଟିଠାରେ ଫୁଟି ଉଠିବ । ଏହି ନିଷିକ୍ତ ଡିମ୍ବାଣୁଟି ଦଶମାସ ଧରି ବଢ଼ିବ ସେହି ଯନ୍ତ୍ର ଭିତରେ । ବାପ ମା'ମାନେ ପ୍ରତି ସପ୍ତାହରେ କି ପ୍ରତି ମାସରେ ଥରେ ଲେଖାଏଁ ସେହି କ୍ଲିନିକ୍‌କୁ ଯାଇ ଦେଖି ଆସୁଥିବେ ସେମାନଙ୍କ ପିଲାଟି କେମିତି ବଢ଼ୁଛି । କେଉଁଦିନ ତା'ର ହାତ ଗୋଡ଼ ହେଲା, କେଉଁଦିନ ଆଖି, ନାକ, କାନ ହେଲା, କେଉଁଦିନ ରକ୍ତ ସଞ୍ଚାଳନ ଆରମ୍ଭ ହେଲା, ସବୁକିଛି ବାପ ମା' ସେହି ଯନ୍ତ୍ରର କାଚ ପରଦାରେ ଦେଖି ପାରୁଥିବେ । ଯେଉଁଦିନ ଦଶମ ମାସର ଦଶଦିନ ହେବ, ପିଲାଟିକୁ ଜେନେଟିକ୍ ଇଞ୍ଜିନିଅର ଯନ୍ତ୍ରରୁ ବାହାର କରି ବାପ ମା'ଙ୍କ ହାତରେ ଦେବ । ସେହିଦିନ ହେବ ପିଲାଟିର ଜନ୍ମ । ବାପ ମା' ମହା ଆନନ୍ଦରେ ପିଲାଟିକୁ ନେଇ ଘରକୁ ଆସିବେ । ଘରେ ଆସି ଦେଖିବେ, ପିଲାଟି ସେମାନଙ୍କ ବରାଦ ଅନୁସାରେ ହୋଇଛି କି ନାହିଁ । ସେତେବେଳେ କି ମଜା ଲାଗୁ ନ ଥିବ ବାପ ମା'ଙ୍କୁ, କି ଆନନ୍ଦ ହେଉ ନ ଥିବ ସେମାନଙ୍କ ମନ । ଇଏ ହେବ 'ଟେଲର୍ଡ଼ ବେବି' । ଘନ ଘନ କରତାଳିରେ ହଲ୍ କମ୍ପି ଉଠିଲା ।

ଦେବସ୍ନାନବାବୁ ପୁଣି ଆରମ୍ଭ କଲେ, "ଆସନ୍ତା ଶତାବ୍ଦୀରେ ପିଲାମାନେ ସ୍କୁଲ କଲେଜରେ ପାଠ ପଢିବା ଦରକାର ନାହିଁ । ପିଲାମାନଙ୍କୁ ପାଠ ପଢ଼ିବା ପାଇଁ କମ୍ପା ଡିଗ୍ରୀଟାଏ ପାଇଁ ଆଜକାଲିକା ଭଳି ଝାଳନାଳ ବୁହାଇବାକୁ ପଡ଼ିବ ନାହିଁ କି ଶିକ୍ଷକ ଶିକ୍ଷୟିତ୍ରୀଙ୍କଠାରୁ ଗାଳିମାଡ଼ ସହିବାକୁ ପଡ଼ିବ ନାହିଁ । ଆଜକାଲି ଯେଉଁ ମେମୋରି ମଲିକ୍ୟୁଲ୍ ବାହାରିଲାଣି, ତାହା ଆମର ସବୁ ପାଠପଢ଼ା ସମସ୍ୟାର ସମାଧାନ କରିଦେବ ।

ବୈଜ୍ଞାନିକମାନେ ପରୀକ୍ଷା କରି ଦେଖିଛନ୍ତି, ଆମେ ପାଠପଢ଼ିବା ଦ୍ୱାରା ଯେଉଁ ଜ୍ଞାନ ଆହରଣ କରୁଁ ତାହା ମସ୍ତିଷ୍କର ଏକ ମଟର ଦାନା ଆକାରର ଅଂଶରେ ସଞ୍ଚିତ ହୋଇ ରହେ । ଜଣେ ପାଠପଢି ଡାକ୍ତର ହେଉ କି ଇଞ୍ଜିନିୟର ହେଉ ବା ପ୍ରୋଫେସର ହେଉ, ତାହାର ପିଲାଟି ଦିନରୁ ଡିଗ୍ରୀ ପାଇବା ପର୍ଯ୍ୟନ୍ତ ଅର୍ଜନ କରିଥିବା ସମସ୍ତ ଜ୍ଞାନ ମେମୋରି ମଲିକ୍ୟୁଲ୍ ଭାବରେ ମସ୍ତିଷ୍କରେ ଲିପିବଦ୍ଧ ହୋଇ ରହେ । ସେହି ମେମୋରି ମଲିକ୍ୟୁଲ୍ ଅଂଶଟିକୁ ଜଣକ ମସ୍ତିଷ୍କରୁ ବାହାର କରି ନେଇ ପାଠ ପଢି ନ ଥିବା ଆଉଜଣେ ଲୋକର ମସ୍ତିଷ୍କରେ ଲଗାଇଦେଲେ, ସେହି ଅପାଠୁଆ ଲୋକଟି ପାଠ ପଢ଼ିଥିବା ଲୋକର ସମସ୍ତ ଜ୍ଞାନ ଦେଖାଇ-ପାରିବ । ମନେକର, ଜଣେ ବୈଜ୍ଞାନିକ ଏକ ଦୁର୍ଘଟଣାରେ ମରିଗଲେ । ସେ ମରିଯିବା ସଙ୍ଗେ ସଙ୍ଗେ ତାଙ୍କ ମସ୍ତିଷ୍କକୁ ଅପରେସନ କରି ସେହି ମେମୋରି ମଲିକ୍ୟୁଲ୍‌କୁ ବାହାର କରି ଅନ୍ୟଜଣେ ଲୋକର ମସ୍ତିଷ୍କରେ ପୂରାଇଦେଲେ ସେହି ଲୋକଟି ଏହି ମୃତ ବୈଜ୍ଞାନିକର ସମସ୍ତ ଜ୍ଞାନ ଓ ପାରଦର୍ଶିତାର ଅଧିକାରୀ ହୋଇପାରିବ । ଏହାଫଳରେ କ'ଣ ହେବ ଜାଣ ?

ପୃଥିବୀରୁ କୌଣସି ପ୍ରତିଭାର ଆଉ ତିରୋଧାନ ହେବନି । ପୃଥିବୀରେ ବଡ଼ ବଡ଼ ଦାର୍ଶନିକ, ସାହିତ୍ୟିକ, ବୈଜ୍ଞାନିକଙ୍କ ତିରୋଧାନ ପରେ ବେଳେ ବେଳେ ସେପରି ଲୋକ ପାଇବା କଷ୍ଟକର ହୋଇପଡ଼େ । ସେମାନଙ୍କ ଜ୍ଞାନ ଓ ପାରଦର୍ଶିତାରୁ ମଣିଷ ସମାଜ ଯେଉଁ ଉପକାର ପାଇପାରିଥାନ୍ତା ତାହା ପାଇପାରେନି । ସେଭଳି କ୍ଷେତ୍ରରେ ଆମେ ଯଦି ସେହି ଦାର୍ଶନିକ, ସାହିତ୍ୟିକ କି ବୈଜ୍ଞାନିକର ଦେହାବସାନ ପରେ ପରେ ତାଙ୍କ ମେମୋରି ମଲିକ୍ୟୁଲ୍‌ଟିକୁ ବାହାର କରି ବ୍ଲଡ଼୍ ବ୍ୟାଙ୍କ୍‌ରେ ରକ୍ତ ସାଇତି ରଖିଲା ଭଳି ମେମୋରି ମଲିକ୍ୟୁଲ୍ ବ୍ୟାଙ୍କରେ ସାଇତି ରଖିଥାନ୍ତୁ, ତେବେ ସେହି ମେମୋରି ମଲିକ୍ୟୁଲ୍‌କୁ ଅନ୍ୟ ଏକ ମସ୍ତିଷ୍କରେ ଖଞ୍ଜି ସେହି ଲୋକର ବିରାଟ ପ୍ରତିଭାକୁ ପୁଣି ଉଦ୍ଧାର କରି ପାରନ୍ତୁ । ଭବିଷ୍ୟତରେ ପୃଥିବୀରେ ଯେକୌଣସି ପ୍ରତିଭାର ତିରୋଧାନ ହେଲେ ଆମେ ସେପରି ଲୋକର ମେମୋରି ମଲିକ୍ୟୁଲ୍‌କୁ ଅଲଗା କରି ମେମୋରି ମଲିକ୍ୟୁଲ ବେଙ୍କରେ ବହୁଦିନ ଧରି ସାଇତି ରଖିପାରନ୍ତୁ ଓ ଦରକାର ପଡ଼ିଲେ ଉପଯୁକ୍ତ ଲୋକର ମସ୍ତିଷ୍କରେ ସଂଯୋଗ କରି ଆମେ ସେହି ପ୍ରତିଭାବାନ୍ ବ୍ୟକ୍ତିକୁ ପୁନରୁଦ୍ଧାର କରିପାରନ୍ତୁ । ପ୍ରତିଭାବାନ୍ ବ୍ୟକ୍ତି ମରିଗଲେ ମଧ୍ୟ ତାଙ୍କ ପ୍ରତିଭା ପୃଥିବୀରୁ ଲୋପ ପାଆନ୍ତାନି ।

ବୈଜ୍ଞାନିକମାନେ ଆହୁରି ପରୀକ୍ଷା କରି ଦେଖୁଛନ୍ତି ଏହି ମେମୋରି ମଲିକ୍ୟୁଲ୍ କିଅଣ ଓ ଏହା କିଭଳି ମଣିଷଜ୍ଞାନକୁ ମସ୍ତିଷ୍କ ଭିତରେ ଲିପିବଦ୍ଧ କରି ରଖୁଛି । ମଣିଷର ମସ୍ତିଷ୍କ ଭିତରେ ଅନ୍ୟୁନ୍ୟ ଶହେକୋଟି ଜୀବନ୍ତ କୋଷ ରହିଛି । ସେଥିରୁ କେତେକ କୋଷ ମେମୋରି ବା ସ୍ମୃତି ବା ମନେରଖିବା କାମ କରନ୍ତି । ଆମେ ମନେରଖୁ କେମିତି ? ଦୁଇରେ ଦୁଇ ଗୁଣିଲେ ଚାରି ହେଲା, ପିଲାଟିଦିନରୁ ଏହା ଘୋଷି ଘୋଷି ମନେରଖିଛୁ । ଏହି କଥାଟି ଆମ ମସ୍ତିଷ୍କର କୋଷ ଭିତରେ ଲିପିବଦ୍ଧ ହୋଇ ରହି ଯାଇଛି । ତେଣୁ ଆମକୁ

ଯଦି କେହି ପଚ୍ଚାରିଲା, ଦୁଇରେ ଦୁଇ ଗୁଣିଲେ କେତେ ହେବ, ଆମେ ଚଟ୍‌କରି କହି ଦେଉଛୁ ଚ୍ଚାରି । କେତେକ ବୈଜ୍ଞାନିକଙ୍କ ମତରେ ମସ୍ତିଷ୍କକୋଷରେ ଥିବା କେତେକ ପଲିପେପ୍‌ଟାଇଡ୍ ବା ଏମିନୋ ଏସିଡ୍ ଅଣୁ ଏହି ଧାରଣାଟିକୁ କୋଷ ଭିତରେ ଲିପିବଦ୍ଧ କରି ରଖନ୍ତି । ଏହିଭଳି ଭାବରେ ଆମର ସମସ୍ତ ଜ୍ଞାନ ମେମୋରି ମଲିକ୍ୟୁଲ୍ କୋଷରେ ଲିପିବଦ୍ଧ ହୋଇ ରହିଥାଏ ଅସଂଖ୍ୟ ପଲିପେପ୍‌ଟାଇଡ୍ ଅଣୁ ଦ୍ୱାରା ।

ଆମେ ସେହି ପଲିପେପ୍‌ଟାଇଡ୍ ଅଣୁକୁ କୃତ୍ରିମ ଭାବରେ ଠିକ୍ ସେହି ଗଠନରେ ଲିପିବଦ୍ଧ କରିପାରିଲେ ଆମେ ଯେକୌଣସି ଜ୍ଞାନକୁ ଲିପିବଦ୍ଧ କରିପାରିବୁ । ଆଶା କରାଯାଉଛି ଆସନ୍ତା ଶତାବ୍ଦୀ ଭିତରେ ଆମେ ମେମୋରି ମଲିକ୍ୟୁଲ୍‌ର ସବୁକିଛି ରହସ୍ୟ ଉଦ୍‌ଘାଟନ କରି ଆମ ମନମୁତାବକ ସଂଶ୍ଲେଷଣ କରିପାରିବୁ । ତାହାଯଦି ହୁଏ, ମେମୋରି ମଲିକ୍ୟୁଲ୍ କୃତ୍ରିମ ଭାବରେ ସଂଶ୍ଲେଷିତ ହୋଇ ପ୍ରସ୍ତୁତ ହୋଇପାରିବ । ମେଟ୍ରିକ୍‌ଠାରୁ ଆରମ୍ଭ କରି ବି.ଏ., ଏମ୍.ଏ., ଏମ୍.ଏସ୍‌ସି. ଡାକ୍ତରୀ ବା ଇଞ୍ଜିନିଅରିଂ ଡିଗ୍ରୀର ସମସ୍ତ ଜ୍ଞାନ କୃତ୍ରିମ ଭାବରେ ସଂଶ୍ଲେଷଣ କରି ମେମୋରି ମଲିକ୍ୟୁଲ୍ ଭାବରେ ପ୍ରସ୍ତୁତ ହୋଇ ବଜାରରେ ବିକ୍ରୟ ହୋଇପାରିବ । ଯାହାର ଯେଉଁ ଡିଗ୍ରୀ ଦରକାର, ସେ ବଜାରରୁ ସେହି ମେମୋରି ମଲିକ୍ୟୁଲ୍ କିଣି ଆଣି ଡାକ୍ତରଙ୍କ ଦ୍ୱାରା ନିଜ ମସ୍ତିଷ୍କରେ ପୂରାଇଦେଲେ ସେହି ଜ୍ଞାନର ଅଧିକାରୀ ହୋଇପାରିବ । ପିଲାଏ ଆଉ ଏତେ କଷ୍ଟ କରି ପାଠ ପଢ଼ିବା ଦରକାର ନାହିଁ । ସ୍କୁଲ, କଲେଜର ବା ଆବଶ୍ୟକତା କଅଣ ? ବାପ ମା'ମାନେ ଠିକ୍ କରିବେ ସେମାନଙ୍କ ପୁଅ କ'ଣ ହେବ ? ପିଲାକୁ ପାଠ ନ ପଢ଼ାଇ ବଜାରରୁ ମନମୁତାବକ ମେମୋରି ମଲିକ୍ୟୁଲ୍ କିଣି ଆଣି ମସ୍ତିଷ୍କରେ ଖଞ୍ଜିଦେଲେ ସେ ଡାକ୍ତର କି ଇଞ୍ଜିନିଅର ହୋଇଯିବ, ଫଳରେ ସେ ଡାକ୍ତର ବା ଇଞ୍ଜିନିଅର ଭଳି କାର୍ଯ୍ୟ କରିପାରିବ । ମୋଟେ ଅଙ୍କ ଜାଣି ନ ଥିବା ଲୋକ ମଧ୍ୟ ଶ୍ରେଷ୍ଠ ଗଣିତଜ୍ଞ ବା ଇଞ୍ଜିନିଅର ହୋଇପାରିବ । ତା'ର ଆଉ ଡାକ୍ତରୀ ବା ଇଞ୍ଜିନିଅରିଂ ବା ଗଣିତ ପାଠ ପଢ଼ିବା ଦରକାର ନାହିଁ ।

ଘନ ଘନ କରତାଳିରେ ସଭାକକ୍ଷ କମ୍ପି ଉଠିଲା । ଦେବସ୍ନାନବାବୁ ପରିଶେଷରେ କହିଲେ, "ଏହି ବିଷୟଟି ଏତେ ବିରାଟ ଯେ ଏହା ଉପରେ ଘଣ୍ଟା ଘଣ୍ଟା ଧରି କହିଲେ ମଧ୍ୟ ସରିବ ନାହିଁ । ମୁଁ ଆଉ ଅଧିକ କହି ଆପଣମାନଙ୍କ ସମୟ ନେବାକୁ ଚାହୁଁନି । ତେବେ ଏତିକି କହି ବିଦାୟ ନେଉଛି, ଆସନ୍ତା ଶତାବ୍ଦୀ ହେବ ମଣିଷ ସମାଜ ପାଇଁ ଏକ ସୁଖବହି ଶତାବ୍ଦୀ । ଏଥିରେ ଦୁଃଖ ବୋଲି କିଛି ରହିବନି । ମୁଁ ଏତିକି କହି ଆପଣମାନଙ୍କ ଠାରୁ ବିଦାୟ ନେଉଛି । ଧନ୍ୟବାଦ ।" ପୁଣି ଘନ ଘନ କରତାଳି ।

ଦେବସ୍ନାନବାବୁଙ୍କ ଭାଷଣର ସମାପ୍ତି ପରେ ସମସ୍ତଙ୍କ ମୁହଁରେ ବକ୍ତାଙ୍କର ଅପୂର୍ବ ପ୍ରଶଂସା । ସମସ୍ତଙ୍କ ମୁହଁରେ ଗୋଟିଏ କଥା, ଶୈଳବାଳା ମହିଳା କଲେଜକୁ ଏତେ ବକ୍ତା ଆସିଛନ୍ତି, କିନ୍ତୁ ଦେବସ୍ନାନବାବୁଙ୍କ ଭଳି ଜମେଇକରି ଜ୍ଞାନଗର୍ଭକ ବକ୍ତୃତା କେହି ଦେଇ ନାହାନ୍ତି । ଧନ୍ୟ ଦେବସ୍ନାନବାବୁ, ଧନ୍ୟ ତାଙ୍କ ବକ୍ତୃତା, ଧନ୍ୟ ତାଙ୍କ ଜ୍ଞାନ ଗରିମା ।

## ତିନି

ଦିନେ ଦେବସ୍ମାନବାବୁଙ୍କ ବାପା ନାରାୟଣବାବୁ ବିଶ୍ୱବିଦ୍ୟାଳୟ କାମରେ ଭୁବନେଶ୍ୱର ଆସି କଟକ ଦେଇ ବାଲେଶ୍ୱର ଫେରୁଥିଲେ । ଗଲାବେଳେ ପୁଅକୁ ଦେଖାକରି ଉପଦେଶ ଦେଇଗଲେ, "ଦେଖ ବାପ ଦେବ ! ତୁ ଏଠି ଗବେଷଣା କରୁଛୁ ବୋଲି ଶୁଣିଲି, ତା'ଛଡ଼ା ଓଡ଼ିଆରେ ଭଲ ଲେଖାଲେଖି କରୁଛୁ ମଧ୍ୟ । ଗବେଷଣା ଓ ଲେଖାଲେଖି ଅବଶ୍ୟ ଭଲ କଥା । ତେବେ ତୋ ଭଳି ମେଧାବୀ ପିଲା ବର୍ତ୍ତମାନ ଗବେଷଣା ବା ଲେଖାଲେଖିରେ ସମୟ ବ୍ୟୟ ନ କରି ଆଇ.ଏ.ଏସ୍. ପରୀକ୍ଷା ପାଇଁ ପ୍ରସ୍ତୁତ ହେବା ଦରକାର । ଏହି ପରୀକ୍ଷା ଦେବା ପାଇଁ ଏକ ନିର୍ଦ୍ଦିଷ୍ଟ ବୟସ ସୀମା ରହିଛି । ତେଣୁ ସେ ଦିଗରେ ତୁ ସର୍ବପ୍ରଥମ ଚେଷ୍ଟାକର ବାପ । ଯଦି କୃତକାର୍ଯ୍ୟ ହେଲୁ ଭଲ କଥା । ଯଦି ନ ହେଉ, ତେବେ ଗବେଷଣା କି ଲେଖାଲେଖି ଦିଗରେ ମନ ବଳାଇବୁ । ତୁ ବର୍ତ୍ତମାନ ଗବେଷଣା ବା ଲେଖାଲେଖି କରି ତୋ କେରିୟରକୁ ନଷ୍ଟ କରିବା ମୁଁ ଉଚିତ ମଣୁନି ବାପ । ତୋ ଭଳି ମେଧାବୀ ଓ ପରିଶ୍ରମୀ ପିଲା ଯେ ଏହି ପରୀକ୍ଷାରେ କୃତକାର୍ଯ୍ୟ ନ ହେବ, ତାହା ମୁଁ ଭାବିପାରୁନି । ମୋର ପୂରା ବିଶ୍ୱାସ ତୁ ଏ ଦିଗରେ ଲାଗିପଡ଼ିଲେ ଏହି ପରୀକ୍ଷାରେ ନିଶ୍ଚୟ କୃତକାର୍ଯ୍ୟ ହେବୁ ।

ବାପାଙ୍କ ଉପଦେଶକୁ ଶିରୋଧାର୍ଯ୍ୟ କରି ଆଗେଇଗଲା ଦେବସ୍ମାନ । ଦିନ ରାତି ପରିଶ୍ରମ କରି ପଢ଼ାପଢ଼ି କଲା ଆଇ.ଏ.ଏସ୍. ପରୀକ୍ଷା ପାଇଁ । ପ୍ରଥମଥର ପରୀକ୍ଷାରେ ସେ ଆଶାତୀତ ଭାବରେ ସଫଳତା ହାସଲ କଲା । ସର୍ବ ଭାରତୀୟ ପରୀକ୍ଷାରେ ସେ ଦ୍ୱିତୀୟ ସ୍ଥାନ ଅଧିକାର କରି ଓଡ଼ିଶାରେ ଚହଳ ଖେଳାଇ ଦେଲା । ସାରା ଭାରତରେ ତା'ର ଖ୍ୟାତି ବଢ଼ିଗଲା ଆଶାତୀତ । ଉଭୟ ଆଇ.ଏ.ଏସ୍. ଓ ଆଇ.ଏଫ୍.ଏସ୍.ରେ ଯୋଗଦାନ କରିବା ପାଇଁ ନିମନ୍ତ୍ରଣ ପାଇଲା ଭାରତ ସରକାରଙ୍କଠାରୁ ।

ବାପାଙ୍କ ଉପଦେଶରେ ସେ ଗ୍ରହଣ କଲା ଆଇ.ଏ.ଏସ୍., ଛାଡ଼ିଦେଲା ଆଇ.ଏଫ୍.ଏସ୍. । ବାପାଙ୍କ ମତ ଆଇ.ଏଫ୍.ଏସ୍. ଚାକିରି ପୁଅ ପାଇଁ ସୁବିଧାଜନକ ନୁହେଁ । ଏହି ଚାକିରିରେ ସାରା ଜୀବନ ବିଦେଶରେ କଟାଇବାକୁ ପଡ଼ିବ । ସେ ତାଙ୍କର ଗୋଟିଏ ବୋଲି ପୁଅ । ନିଜେ ବୁଢ଼ା ହୋଇ ଅବସର ନେଲେ କାହା ପାଖରେ ରହିବେ ? ପୁଅ ଯଦି ବିଦେଶରେ ଥାଏ ବୁଢ଼ାକାଳକୁ ସେମାନଙ୍କ ଚଳାଚଳରେ ବଡ଼ ଅସୁବିଧା ଉପୁଜିବ । ଆଉ ଗୋଟିଏ ପୁଅ ଥାଆନ୍ତା, ଏ ପୁଅ ବିଦେଶରେ ରହିଲେ କିଛି ଅସୁବିଧା ହୁଅନ୍ତା ନାହିଁ ।

ତା'ଛଡ଼ା ଆଇ.ଏଫ୍.ଏସ୍. ଚାକିରିରେ ମାନସମ୍ମାନ କାହିଁ ? କିଏ ତୁମକୁ ଜାଣିବ ନା କିଏ ପଚାରିବ ? ଆଇ.ଏ.ଏସ୍. ହେଲା ଗୋଟାଏ ଚାକିରି ଭିତରେ ଚାକିରି । ସେ

ଶୃଙ୍ଖଳାରେ ଯେଉଁ ମାନସମ୍ମାନ ଅଛି, ଯେଉଁ କ୍ଷମତା, ଯେଉଁ ଆଧିପତ୍ୟ, ତାହା କ'ଣ ଅନ୍ୟ କେଉଁ ଶୃଙ୍ଖଳାରେ ମିଳିବ ?

ନାରାୟଣବାବୁ ଏହିସବୁ କଥା ବିସ୍ତାର କରି ପୁଅକୁ ଆଇ.ଏ.ଏସ୍. ହେବା ପାଇଁ ଉପଦେଶ ଦେଲେ । ତାଙ୍କ ମତରେ ଏହି ଶୃଙ୍ଖଳାରେ ମାନସମ୍ମାନ ସବୁକିଛି ଅଛି । କ୍ଷମତା ଅଛି । ହାକିମାତି ବି ଅଛି । ରାଜାରାଜୁଡ଼ା ଚାଲିଗଲା ପରେ ଏମାନେ ହେଲେ ଆମ ଦେଶର ନୂଆ ରଜା । ବିଗତଯୁଗର ରାଜାମାନଙ୍କର ଯେଉଁ ସମ୍ମାନ, ଆଧିପତ୍ୟ ଥିଲା ବର୍ତ୍ତମାନ ଯୁଗରେ ଆଇ.ଏ.ଏସ୍.ମାନଙ୍କର ତାଠୁଁ କିଛି କମ୍ ନାହିଁ । ଜାଣ ପୁରୁଣା ରଜା ଗଲେ, ନୂଆ ରଜା ଆଇଲେ । ସାନ ସାନ ମନ୍ତ୍ରୀମାନେ ବେଳେବେଳେ ଏହି ଆଇ.ଏ.ଏସ୍.ଙ୍କୁ ଖୁବ୍ ମାନ ଖାତିର କରନ୍ତି । ଶାସନ ଡୋରି ପୁରାପୂରି ସେହିମାନଙ୍କ ହାତରେ । ମନ୍ତ୍ରୀମାନେ ଜାଣ ଖାଲି ବାଡ଼କୁ ବତା ଭଳି ।

ଅଧ୍ୟାପକ ହୋଇ ଆଇ.ଏ.ଏସ୍. ପାଇଗଲେ ଅଧ୍ୟାପକ ହିସାବରେ ମାନ ଖାତିର ଢେର୍ ବଢ଼ିଯାଏ । ଆଇ.ଏ.ଏସ୍. ଫଳ ବାହାରିଲା ଦିନରୁ ତା' ପାଖକୁ ଝିଅମାନଙ୍କ ଆଗମନ ଆଗ ଅପେକ୍ଷା ବଢ଼ିଗଲା । ମଧୁସ୍ମିତା ଓ ଶାନ୍ତାର ଆଗମନ ତା'ଠାକୁ ହେଲା ଆଗ ଅପେକ୍ଷା ଢେର୍ ବେଶି । ଶାନ୍ତାର ବାପା ବୋଉଙ୍କ ଇଚ୍ଛା ଦେବସ୍ମାନକୁ ଜୋଇଁ କରିବେ । ମଧୁସ୍ମିତା ବାପା ବୋଉଙ୍କ ଇଚ୍ଛା ଦେବସ୍ମାନ ତାଙ୍କ ଝିଅ ପାଇଁ ସବୁଠାରୁ ଉପଯୁକ୍ତ ପାତ୍ର । ଦେବସ୍ମାନ ଦେଖିବାକୁ ସୌମ୍ୟକାନ୍ତ, ରୂପବାନ୍, ବଳିଷ୍ଠ ଚେହେରା । ବ୍ୟବହାର ଅତ୍ୟନ୍ତ ମଧୁର । ଟାଣ କରି କାହାକୁ ପଦେ କହେନି । କାହା ଉପରେ କେବେ ରାଗ କରିବାର କେହି ଦେଖି ନାହାନ୍ତି । ଖରାପ ଅଭ୍ୟାସ ବୋଲି କିଛି ନାହିଁ । ଏଭଳି ଉପଯୁକ୍ତ ପାତ୍ରକୁ ହାତରୁ ଛାଡ଼େ କିଏ ? ମଧୁସ୍ମିତା ହାତରେ ତା' ମା ଦେବସ୍ମାନକୁ ଘରକୁ ଡକାଇ ପଠାନ୍ତି ଝିଅକୁ ପଢ଼ାରେ ସାହାଯ୍ୟ କରିବା ବାହାନାରେ । ବେଳେବେଳେ ଝିଅକୁ ଦେବସ୍ମାନ ପାଖରେ ଛାଡ଼ିଦେଇ ପଡ଼ିଶାଘରକୁ ବୁଲି ଚାଲିଯାନ୍ତି । ଇଚ୍ଛା, ଉଭୟଙ୍କ ଭିତରେ ସମ୍ପର୍କ ଟିକିଏ ଘନିଷ୍ଠ ହେଉ ।

ଶାନ୍ତା ମା' ଗାଡ଼ି ପଠାଇ ଦେବସ୍ମାନକୁ ନିଜ କୋଠିକୁ ଡକାଇ ନିଅନ୍ତି । କଥାବାର୍ତ୍ତା ଖିଆପିଆ ଖୁବ୍ ଜୋରସୋରରେ ଚାଲେ । ଦେବସ୍ମାନ ଉପରେ ମନ୍ତ୍ରୀଙ୍କର ଖୁବ୍ ଭଲ ଧାରଣା । ଦେବସ୍ମାନ ଗୋଟିଏ ସୁନାମୁଣ୍ଡା । କଲେଜର ଅଭାବ ଅସୁବିଧା କଥା ପଦେ କହିଲେ ସଙ୍ଗେ ସଙ୍ଗେ ସେହି ଅଭାବ ଅସୁବିଧା ଦୂର ହୋଇଯାଏ । ନ ହେବ ବା କେମିତି ? ମନ୍ତ୍ରୀଙ୍କ ଝିଅ ଯେଉଁ କଲେଜର ଛାତ୍ରୀ, ସେ କଲେଜରେ କିଛି ଅଭାବ ଅସୁବିଧା କ'ଣ କେବେ ରହିପାରେ ?

ଝିଅ ଦୁଇଟିଙ୍କ ପରିବାର ପରସ୍ପରର ଅଜଣାରେ ଦେବସ୍ମାନକୁ କେମିତି ନିଜର କରିବାକୁ ଚେଷ୍ଟା କରୁଥାନ୍ତି, ଏହାକୁ କେହି ଜାଣିନ୍ତିନି ? ଡ଼.ପି.ଆଇ. ଥରକୁଥର ବାଲେଶ୍ୱର କଲେଜକୁ ଟୁର୍ ପକାଇ ଦେବର ବାପାଙ୍କ ହାତରେ ରଖିବାକୁ ଚେଷ୍ଟା

କରନ୍ତି । ମନ୍ତ୍ରୀ ତ ଡ଼.ପି.ଆଇ.ଙ୍କ ଉପରେ । ସେ ହଁ। କହିଦେଲାକ୍ଷଣି କେତେ ପ୍ରିନ୍‌ସିପାଲ ଦୌଡ଼ି ଆସିବେ ।

ଦେବସ୍ମିନଙ୍କୁ ପାଇବା ପାଇଁ ଦୁଇ ପରିବାରର ଆପ୍ରାଣ ଚେଷ୍ଟା ଦେବସ୍ମିନଙ୍କୁ ଅଜଣା ରହିଲା ନାହିଁ । ଘରକୁ ଗଲେ ବୋଉ ଏ ଦୁଇ ଝିଅଙ୍କ କଥା ପଚାରନ୍ତି । ସେମାନଙ୍କ ଭିତରୁ କାହାକୁ ପୁଅର ଅଧିକ ପସନ୍ଦ, ଜାଣିବାକୁ ଚେଷ୍ଟା କରନ୍ତି ସୀମନ୍ତିନୀ ଦେବୀ । ପୁଅର ବିଭାଘର ପାଇଁ ଯେତେବେଳେ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କ ଘରୁ ପ୍ରସ୍ତାବ ଆସିଲାଣି, ପୁଅର ମତ ନେଇ ଗୋଟିକୁ ସିଦ୍ଧାନ୍ତ ନ କରିବେ କାହିଁକି ? ଦେବକୁ ପଚାରିଲେ ସେ ନୀରବ ରହେ, ସତେ ଯେମିତି ଦୁଇ ପରିବାରର ପ୍ରତିଯୋଗିତା ବିଷୟରେ ସେ କିଛି ଜାଣେନି ।

ପୁଅ ଆଇ.ଏ.ଏସ୍. ହେଲେ ବାପ ମା'ଙ୍କର ମନ କୁଣ୍ଢେ ମୋଟ ହୋଇଯାଏ । ମନେ ମନେ ଭାବନ୍ତି ପୁଅ ଏ ଖଣ୍ଡମଣ୍ଡଳରେ ରଜା ହେଲା । ସୀମନ୍ତିନୀ ଦେବୀ କିନ୍ତୁ ଏହାର ଠିକ୍ ଓଲଟା । ସେ ଶୁଣିଛନ୍ତି, ଆଇ.ଏ.ଏସ୍. ଚାକିରିରେ ନୂଆ ନଆ ଝଟଣି ବେଶି । ସବୁବେଳେ ଟୁର୍ । ଦିନ ନାହିଁ, ରାତି ନାହିଁ, ଏଠିକି ଯାଅ, ସେଠିକି ଯାଅ । ବଡ଼ ସାହେବଙ୍କ ହୁକୁମ ତାମିଲ କର । ନୋହିଲେ ଚାକିରି ଗଲା । ବଡ଼ ଖୋସାମତିଆ ଚାକିରି, ନିଜତ୍ୱ ବୋଲି କିଛି ନାହିଁ । ସବୁବେଳେ ହଁ ସାର୍, ହଁ ସାର୍ ହୋଇ ଜୀବନ ଯିବ । ମନ୍ତ୍ରୀ, ଏମ୍.ଏଲ୍.ଏ.ଙ୍କ ପଛରେ ଗୋଡ଼ାଇ ଗୋଡ଼ାଇ ନିଜ ଯୋତା ଛିଡ଼ିବ । ସୀମନ୍ତିନୀ ଦେବୀ ମନେ ମନେ ଆଇ.ଏ.ଏସ୍. ଚାକିରିକୁ ଭଲ ପାଆନ୍ତିନି ।

ତାଙ୍କ ମତରେ ଲେକ୍‌ଚରର ଚାକିରି ସବୁଠାରୁ ଭଲ । ଏଥିରେ ଧୂଳିମଳି କିଛି ନାହିଁ । ପିଲାଗୁଡ଼ାଙ୍କୁ ବାପ ମା'ମାନେ ଅଯଥା ପାଗଳ କରି ଦେଇ ଏହି ଆଇ.ଏ.ଏସ୍. ଆଡ଼କୁ ମୁହାଁଇ ଦେଉଛନ୍ତି । ସେ କହନ୍ତି ମେଧାବୀ ପିଲାମାନେ ଲେକ୍‌ଚରର ହେବା ଉଚିତ । ଗୁଣ୍ଡା, ଛତରା ପିଲାଏ ଆଇ.ଏ.ଏସ୍. ହେବାକୁ ଯୋଗ୍ୟ । ଆଇ.ଏ.ଏସ୍. ଚାକିରିରେ କେଉଁଠି ମଥା ଖଟାଇ କିଛି କାମ କରିବାର ନାହିଁ । ଯେଉଁଠି ମଥା ଖଟାଇବାର ଦରକାର ପଡ଼େ, ସେଠି ଅଧସ୍ତନ କିରାଣୀଙ୍କ ମଥାରେ କାମ ଚାଲିଯାଏ । ଚାକିରି ହେଉଛି ଖାଲି ଯିଏକୁ ଆରେଷ୍ଟ କର, ତାକୁ ବାନ୍ଧି ପକାଅ, କେଉଁଠି ଗୁଣ୍ଡାମି କାରବାର ହେଲା ତାକୁ ରୋକ । ଚୋର, ଡକାୟତ, ଗୁଣ୍ଡାମାନଙ୍କୁ ଆୟତ୍ତରେ ରଖ । କେଉଁଠି ମାଡ଼ପିଟ୍ କର ବା ଗୁଳି ଫାଏର କରି ଗ୍ରୁପ ଧର୍ମଘଟକୁ ଦବାଅ । ଏସବୁ କଅଣ ଭଦ୍ରଘରର ଶାନ୍ତ ଶିଷ୍ଟ ପିଲାମାନଙ୍କ କାମ ? ତାଙ୍କ ମତ ହେଉଛି ସରକାର ଏମିତି ଆଇନ କରିଦେବା ଉଚିତ ଯେମିତି କି ଭଦ୍ର ଶାନ୍ତ ଶିଷ୍ଟ ମେଧାବୀ ପିଲାମାନେ ଆଇ.ଏ.ଏସ୍. ପରୀକ୍ଷା ଦେଇପାରିବେ ନାହିଁ, କି ଆଇ.ଏ.ଏସ୍. ହୋଇ ପାରିବେନି ।

କିନ୍ତୁ ସୀମନ୍ତିନୀ ଦେବୀଙ୍କ ମତକୁ କେହି ପଚାରନ୍ତି ନାହିଁ । ତାଙ୍କ କଥାକୁ ଯିଏ ଶୁଣିବ, ସେ ହସି ଦେବ । କହିବ ଏ ଗୋଟାଏ ପୁଣି କଥା । ସୀମନ୍ତିନୀ ଦେବୀ କାହାରି ଉପରେ ନିଜ ମତକୁ ଜାହିର କରିବାକୁ ଚେଷ୍ଟା କରନ୍ତିନି ।

ପୁଅର ଭବିଷ୍ୟତ ମା ଗୋଟିଏ ଦୃଷ୍ଟିକୋଣରୁ ଦେଖିଲାବେଳକୁ ବାପା ଦେଖନ୍ତି ଆଉ ଏକ ଦୃଷ୍ଟିକୋଣରୁ । ଦୁଇଟି ଦୃଷ୍ଟିକୋଣ ପରସ୍ପରର ସୁସ୍ପୂର୍ଣ ବିପରୀତ । ନାରାୟଣ-ବାବୁଙ୍କ ଦୃଷ୍ଟିକୋଣ ହିଁ ଠିକ୍ ବୋଲି ପ୍ରତିପାଦିତ ହୁଏ । ଦେବସ୍ମାନ ଆଇ.ଏ.ଏସ୍. ଚାକିରି ଗ୍ରହଣ କରି ଟ୍ରେନିଂକୁ ଯାଏ । ଟ୍ରେନିଂରୁ ଫେରି ତା'ର ପୋଷ୍ଟିଂ ହୁଏ କଟକ ସହରରେ, କଟକଜିଲ୍ଲାର ଆଡ଼ିସନାଲ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଭାବରେ ।

ଚାକିରିରେ ଯୋଗ ଦେବାର ଅଳ୍ପ କେତେଦିନ ଭିତରେ ଦେବସ୍ମାନର ଉପରେ ପଡ଼େ କଟକ ସହରର ରାଭେନ୍ସା କଲେଜରେ ହେଉଥିବା ଏକ ଛାତ୍ର ଆନ୍ଦୋଳନକୁ ଆୟତ୍ତ କରିବା ପାଇଁ । କଲେଜର ଗୋଟିଏ ଝିଅକୁ କେନ୍ଦ୍ର କରି ଏହି ଧର୍ମଘଟ ଚାଲିଥାଏ । ଜଣେ ପାଶ୍ଚାତ୍ୟ ଫେରନ୍ତା ଯୁବ ଅଧ୍ୟାପକ ନୂଆ କରି କଲେଜରେ ଯୋଗ ଦେଇଥାନ୍ତି । ଜଣେ ଝିଅ ତାଙ୍କ ପାଖକୁ ପାଠ ବୁଝିବା ପାଇଁ ଆସିଥିଲେ । ଝିଅଟିର ଅତ୍ୟାଧୁନିକ ଅର୍ଦ୍ଧ ଉଲଗ୍ନ ବିଦେଶୀ ବେଶ ଦେଖି ଯୁବକ ଅଧ୍ୟାପକ ଜଣକ ନିଜକୁ ସମ୍ଭାଳି ନ ପାରି ଶିଷ୍ଟାଚାର ବହିର୍ଭୂତ କ'ଣ ଟିକିଏ ଅସଦାଚରଣ କରି ପକାଇଥିଲେ । କିନ୍ତୁ ପ୍ରକୃତ କଥା କେହି ବୁଝିଲେ ନାହିଁ । ହେଲା ଧର୍ମଘଟ । ଛାତ୍ରମାନଙ୍କ ସିଦ୍ଧାନ୍ତ ହେଲା ଅଧ୍ୟାପକଙ୍କର ଶିଷ୍ଟାଚାର ବହିର୍ଭୂତ କାର୍ଯ୍ୟ ଯୋଗୁଁ ସେ ଝିଅଟିର ଗୋଡ଼ତଳେ ପଡ଼ି କ୍ଷମା ମାଗନ୍ତୁ । ନୋହିଲେ ଧର୍ମଘଟ ଚାଲୁ ରହିବ । ଅଧ୍ୟାପକ ଛାତ୍ରୀଙ୍କ ଗୋଡ଼ତଳେ ପଡ଼ିବ, ମା', ମା', ମୋତେ କ୍ଷମାଦିଅ କହି କ୍ଷମାଭିକ୍ଷା କରିବ । କି ଅଜବ ଦାବୀ ? ଟୋକାଟାକଳିଆ ମନ, ଯାହାକୁ ଯାହା ଆସିଲା ଦାବୀ କରି ବସିଲେ ।

ରାଜ୍ୟରେ ଛାତ୍ର ଧର୍ମଘଟମାନେ ଭଙ୍ଗାରୁଜା କାରବାର । ବସ୍‌ପୋଡ଼ାଠାରୁ ଆରମ୍ଭ କରି ସାଇକେଲ ରିକ୍‌ସା ଭାଙ୍ଗିବା ପର୍ଯ୍ୟନ୍ତ । ସେହି ଆନ୍ଦୋଳନକୁ ଦବାଇବା ଦାୟିତ୍ୱ ଦିଆଯାଇଥିଲା ଦେବସ୍ମାନକୁ । ଦେବସ୍ମାନ ଦିନାକେତେ ରେଭେନ୍‌ସାରେ ଅଧ୍ୟାପକ ଥିଲା । କଟକ ସହରରେ ଛାତ୍ର ଛାତ୍ରୀମାନଙ୍କ ମନୋବୃତ୍ତି ତାକୁ ବେଶ୍ ଭଲ ଭାବରେ ଜଣା । ତେଣୁ ତାକୁ ଏ ଦାୟିତ୍ୱ ।

ଦେବସ୍ମାନ ଦିନେ କଟକର ଲାଲବାଗ ଥାନାରେ ବସି ପୋଲିସ ଅଫିସରମାନଙ୍କ ସହିତ ଧର୍ମଘଟ ସମ୍ପର୍କରେ ପରାମର୍ଶ ଚଳାଇଥାଏ, ହଠାତ୍ ଗୋଟିଏ ଝିଅ ଗୋଟିଏ ଟୋକାର କାନ ଧରି ଟାଣି ଟାଣି ଥାନାକୁ ଆଣିଲା । ଝିଅଟି ସୁନ୍ଦରୀ, ଅତ୍ୟାଧୁନିକା । ବଡ଼ଲୋକୀର ଛାପ ତା'ର ଦେହେ ଦେହେ ଫୁଟି ଉଠୁଛି । ଆଧୁନିକ ଷ୍ଟାଇଲରେ ପୋଷାକ-ପତ୍ରର ସ୍ୱଳ୍ପତା ତା'ର ଅପରୂପ ସୌନ୍ଦର୍ଯ୍ୟକୁ ଠିକ୍ ଭାବରେ ସଂଯତ କରି ରଖିପାରିନି । ଉନ୍ନତ ବକ୍ଷ କୋରକରୁ ଝରି ପଡୁଛି ଅଗଣିତ ପୁଷ୍ପରାଜି । ମସ୍ତକର ଆଲୁଳାୟିତ କୃଷ୍ଣ କେଶଗୁଚ୍ଛ ଅଯତ୍ନ ଭାବରେ ଲମ୍ବି ଆସିଛି ବକ୍ଷ ପର୍ଯ୍ୟନ୍ତ, ଯେତେ ଯେମିତି ଚୁମ୍ବନ କରୁଛି ବକ୍ଷର ସ୍ଫୀତୋନ୍ନତ ସୌନ୍ଦର୍ଯ୍ୟ ଯୁଗଳକୁ । ଗୋଟିଏ ହାତରେ ଟୋକାଟିର କାନ, ଅନ୍ୟ ହାତରେ ନିଜ ଗୋଡ଼ର ଚଟି ପଟେ । ଥାନାର ବାହାର ରୁମ୍‌ରେ ଉପସ୍ଥିତି କରୁଥିବା

ଇନ୍‌ସପେକ୍ଟରଙ୍କ ରୁମ୍‌କୁ ସେ ଟୋକାଟାକୁ ଟାଣି ଟାଣି ନେଇଯାଇ ଠିଆ କରାଇଦେଇ କହିଲା, "ଦେଖନ୍ତୁ ସାର୍, ଏହି ଛତରାଟା ସେହି ଆମ୍ବଗଛମୂଳେ ଠିଆ ହୋଇ ମୋତେ ଦେଖି ସିଟି ମାରୁଥିଲା । ଆଉ ଗୀତ ଗାଉଥିଲା, "ହାମ୍ ତୁମ୍, ଏକ୍ କମ୍‌ରେମେଁ ବନ୍ଦ ହୋ ।" ଏ ଟୋକାଟା ଏଡ଼େ ଛତରା, ମୋତେ ଦେଖି କମେଣ୍ଟ ମାରୁଛି ଆଉ ଅଶ୍ଳୀଳ ଇଙ୍ଗିତ ମଧ୍ୟ ଦେଉଛି ।

ଡ଼ଉଟିରେ ଥିବା ପୋଲିସ ଅଫିସରଜଣକ ନାଲି ନାଲି ଆଖି କରି ଟୋକାଟାକୁ ପଚାରିଲେ, "ଆବେ ଶଳା, ତୋର ନାଁ କ'ଣବେ ? ଶଳା ତୁ ଏହାଙ୍କୁ ଦେଖି ହୁଇସିଲ ମାରୁଥିଲୁ । ଅଶ୍ଳୀଳ ଇଙ୍ଗିତ ମଧ୍ୟ ଦେଉଥିଲୁ, ଗୀତ ବି ଗାଉଥିଲୁ । ଶଳାର ପ୍ରେମଖଣ୍ଡ ଉଛୁଳି ପଡ଼ୁଛି କିରେ ? ଶଳା ତୋ ଘର କେଉଁଠି ବେ ?"

ପିଲାଟିକୁ ଚୁପ୍ ରହିବା ଦେଖି ପୋଲିସ ଅଫିସରଜଣକ କହିଲେ, "ଆସ୍ତେ ହାବିଲଦାର, ଏଯାକୁ ହାଜତରେ ଭରତି କରିଦିଅ । ଏହାର ପ୍ରେମଖଣ୍ଡ କେତେ ଉଛୁଳି ପଡ଼ୁଛି, ଦେଖିବା । ଶଳା ନବରଙ୍ଗ ଲଗାଇଛି ଏଠି ।"

ସେତେବେଳକୁ ଥାନା ଗେଟ୍ ପାଖରେ ବହୁତଗୁଡ଼ିଏ ଲୋକ ଜମା ହୋଇଗଲେଣି ଏହି ଘଟଣା ଦେଖି । ଟୋକାଟାର କାନ ଧରି ଝିଅଟିଏ ଟାଣି ଟାଣି ଆଣୁଥିବାର ଦୃଶ୍ୟ ଦେଖି ସମସ୍ତେ ତାଟଙ୍କା । ଥାନା ଗେଟ୍ ପାଖରେ ଗୋଳମାଳ ଶବ୍ଦ ଶୁଣି ଦେବସ୍ମାନ ଚାଲି ଆସିଲା ଗେଟ୍ ପାଖ ସାମନା କୋଠରୀକୁ । ଝିଅଟି ସେଠି ଠିଆ ହୋଇ ଟୋକାଟା ବିରୁଦ୍ଧରେ ତା ଅଭିଯୋଗ ଜଣାଉଥିଲା ପୋଲିସ ଅଫିସରଙ୍କୁ ।

ଝିଅଟିଆଡ଼କୁ ଅନାଇ ତା'ର ଅର୍ଦ୍ଧ ଉଲଗ୍ନ ଆଧୁନିକ ଷ୍ଟାଇଲର ବେଶ ଦେଖି ଦେବସ୍ମାନ ଟିକିଏ ଇତଃସ୍ତତଃ ହେଲାଭଳି ଜଣାପଡ଼ିଲା ।

ତେବେ ଟୋକାଟାର କାନ ଧରି ଥାନାକୁ ଆଣିବାର ସାହସ ଦେଖି ମନେ ମନେ ଝିଅଟିକୁ ତାରିଫ୍ ନ କରି ରହି ପାରିଲାନି । ଝିଅଟି ପାଖକୁ ଚାଲିଯାଇ କହିଲା, "ଦେଖନ୍ତୁ ଦେଖନ୍ତୁ, ଭଉଣୀ ।

"ମୋ ନାଁ ଆଜ୍ଞା ଭଉଣୀ ନୁହେଁ ।" ଝିଅଟି କହିଲା ।

"ହଁ ହଁ, ଦେଖନ୍ତୁ···ଦେଖା !"

"ମୁଁ ଆଜ୍ଞା ଦେଖା ଫେଖା ନୁହେଁ, ମୋ ନାଁ ଶୁଭ୍ରା ସାମନ୍ତରାୟ ।"

"ହଁ ହଁ, ଦେଖନ୍ତୁ ମିସ୍ ଶୁଭ୍ରା ସାମନ୍ତରାୟ । ଆପଣଙ୍କ ସାହସ ଦେଖି ମୁଁ ଆପଣଙ୍କୁ ଧନ୍ୟବାଦ ନ ଜଣାଇ ରହିପାରୁନି । ଝିଅମାନେ ଯଦି ଆପଣଙ୍କ ଭଳି ସାହସୀ ହୁଅନ୍ତେ, ତେବେ ଏହି ସହରରେ ବର୍ତ୍ତମାନର ଯେଉଁ ପ୍ରଧାନ ପୋଲିସ ସମସ୍ୟା ହୋଇଛି, ଟୋକାମାନେ ଝିଅମାନଙ୍କୁ ଖରାପ ବ୍ୟବହାର ଦେଖାଉଛନ୍ତି, ତାହା ପୁରାପୁରି ବନ୍ଦ ହୋଇ ଯାଆନ୍ତା ।"

"ବାଃ, ଭାରି ବଢ଼ିଆ କଥା ? ଝିଅମାନେ ଟୋକାମାନଙ୍କୁ ଆସ୍କୃଷ୍ଟ କରନ୍ତେ, ଆଉ ଆପଣମାନେ ଏଠି ବସି କ'ଣ କରନ୍ତେ ? ଖଞ୍ଜଣି ବଜାନ୍ତେ ?"

ଝିଅଟିର କଡ଼ା ଜିଜ୍ଞାସ ଦେଖି ଟିକଏ ଦବଗଲା ଦେବସ୍ମାନ । ତାକୁ ଟିକଏ ଥଣ୍ଡା କରିବା ପାଇଁ ହାଜତରେ ଥିବା ଟୋକାଟା ପାଖକୁ ଧାଇଁଯାଇ ତାକୁ ଧମକାଇ ଦେଇ ପଚାରିଲା, "ତୁମେ ଏହାଙ୍କୁ ଅଶ୍ଲୀଳ ଇଙ୍ଗିତ ଦେଉଥିଲ ?"

ଟୋକାଟା କିଛି ଉତ୍ତର ନ ଦେଇ ତଳକୁ ମୁହଁପୋତି ଠିଆ ହୋଇ ରହିଲା ।

"ସେ ଭାରି ଗୁଣ୍ଡା ପିଲା ସାର୍ । ଦେଖନ୍ତୁ ନାହାନ୍ତି କେମିତି ତଳକୁ ମୁହଁପୋତି ଠିଆ ହୋଇଛି । ତା ଚେହେରା ସେତେବେଳେ ଆପଣ ଦେଖିଥିଲେନା ଆପଣଙ୍କ ରକ୍ତ ଗରମ ହୋଇ ଯାଇଥାନ୍ତା । ସେ ମୋତେ ଦେଖି ଯେଉଁ ହୁଇସିଲ ମାରୁଥିଲା, ଯେଉଁ ଫିଲ୍ମ ଗୀତ ଗାଉଥିଲା, ଭାବୁଥିଲା ସେ ଯେମିତି ଫିଲ୍ମରେ ଏକ୍ଟିଙ୍ଗ୍ କରୁଛି । ସେ ହିରୋ ଆଉ ମୁଁ ହିରୋଇନ୍ ।"

"ହୁଁ, କମ୍ ସାହସ ନୁହେଁ ଟୋକାଟାର ?" ଦେବସ୍ମାନ ପୁଣି ଟୋକାଟାଆଡ଼କୁ କଡ଼ା ଦୃଷ୍ଟିରେ ଅନାଇ କହିଲା ।

ଆଉଜଣେ ପୋଲିସ ଅଫିସର ତା' କାନ ପାଖରେ ଆସି କହିଦେଇଗଲେ, "ସାର୍, ଇଏ ହେଉଛି ସେଇ ଝିଅ, ଯା' ପାଇଁ ଆଜି ୱାଏଷ୍ଟ୍ କଲେଜରେ ଧର୍ମଘଟ ଚାଲିଛି ।"

ଦେବସ୍ମାନ ଚମକି ପଡ଼ିଲା ଏଇକଥା ଶୁଣି । ଆଁ, ଏହାରି ପାଇଁ ଧର୍ମଘଟ ? ତେବେ ଇଏ ହେଉଛି ସେହି ନାଟକର ପ୍ରଧାନ ଅଭିନେତ୍ରୀ ? ଝିଅଟି ସହିତ କଥା ହେବୁ ହେବୁ ଏକ ନିଭୃତ ସ୍ଥାନକୁ ଡାକି ନେଇ ଦେବସ୍ମାନ କହିଲା, "ଦେଖନ୍ତୁ ମିସ୍ ସାମନ୍ତରାୟ, ଆପଣ ଜଣେ ସମ୍ଭ୍ରାନ୍ତବଂଶର ଝିଅ, ଅବଶ୍ୟ ଆପଣ କାହା ଝିଅ ମୁଁ ଜାଣେନା । ଆପଣ ଯେଉଁଭଳି ପୋଷାକ ପିନ୍ଧି ବାହାରକୁ ଆସୁଛନ୍ତି ତାହା କ'ଣ ଉଚିତ ? ଦେଖନ୍ତୁ, ଅଣ୍ଡର-ଓ୍ୱାର ଭଳି ଗ୍ଲେଟ ପେଣ୍ଟିଟିଏ, ତା'ପରେ ଏଡ଼କ ଟାଇଟ୍ ଗ୍ଲେଟିଆ ଜାକେଟ୍‌ଟିଏ, ମୁଣ୍ଡରେ ଏଡ଼େବଡ଼ ମାଛଧରା ଟୋପି ଭଳି ଟୋପି । ଦେଖନ୍ତୁ, ଆପଣଙ୍କ ଶରୀରର ସବୁକିଛି ଅଙ୍ଗପ୍ରତ୍ୟଙ୍ଗ ବେଶ୍ ପରିଷ୍କାର ଭାବରେ ବାହାରକୁ ଫୁଟି ଉଠୁଛି । ଆପଣ ଏକେ ଯୁବତୀ, ପୁଣି ସୁଶ୍ରୀ, ଆପଣ ଏଭଳି ପୋଷାକ ପିନ୍ଧି ବାହାରକୁ ବୁଲି ଆସିଲେ ଟୋକାମାନେ ସିଟି ନ ମାରି ଆଉ କ'ଣ ମନ୍ତ୍ର ପଢ଼ି, ମନ୍ଦିର ଘଣ୍ଟି ବଜାଇବେ ? ଆପଣ ଏ ପାଶ୍ଚାତ୍ୟ ଢଙ୍ଗରେ ପୋଷାକ ନ ପିନ୍ଧି ଆମ ଦେଶର ଶାଢ଼ୀ ପିନ୍ଧିଥିଲେ ତ ଏ ସମସ୍ୟା ଉଠି ନ ଥାନ୍ତା । ଆପଣଙ୍କର ଯେଉଁ ଅପରୂପ ସୌନ୍ଦର୍ଯ୍ୟ, ତାହା ଶତଗୁଣିତ ହୋଇଥାନ୍ତା ଶାଢ଼ୀଟିଏ ପିନ୍ଧିଥିଲେ ।"

"ଦେଖନ୍ତୁ ଆଜ୍ଞା, ପୋଷାକ ପିନ୍ଧିବା ମୋ ବ୍ୟକ୍ତିଗତ ମାମଲା । ମୋ ପୋଷାକ ପିନ୍ଧା ଉପରେ କମେଣ୍ଟ୍ କରିବାକୁ ଆପଣ କିଏ ?"

"ନା ନା, ମୁଁ କମେଣ୍ଟ୍ ମାଗୁନି ଶୁଭ୍ରାଦେବୀ । ମୁଁ ମିନତି କରି କହୁଛି, ଆପଣ ପୋଷାକପିନ୍ଧାରେ ଝିକଏ ଶ୍ଳୀଳତା ଆଣନ୍ତୁ ।" ହଁ, ମୁଁ ମଧ୍ୟ ଆହୁରି ଶୁଣିବାକୁ ପାଉଛି, ଆପଣଙ୍କୁ କେନ୍ଦ୍ର କରି ଝାଏଷ୍ଟ୍ କଲେଜରେ କାଲେ ଧର୍ମଘଟ ଚାଲିଛି, ଏହା କ'ଣ ସତ ?"

"ହଁ, ସତ ।"

"କଲେଜର ସେହି ଯୁବକ ଅଧ୍ୟାପକ ଆପଣଙ୍କ ପ୍ରତି କ'ଣ ଅସଦାଚରଣ କରିଥିଲେ ?"

"ହଁ ।"

"ଆପଣ କ'ଣ ସେଦିନ ସେହି ଅଧ୍ୟାପକଙ୍କୁ ଭେଟିବାକୁ ଯାଇଥିଲେ ?"

"ହଁ, ଯାଇଥିଲି ।"

"କାହିଁକି ?"

"ପାଠ ବୁଝିବାକୁ ।"

"ବେଳ କେତେ ହେବ ?"

"ସକାଳ ବେଳା, ନଅଟା ପାଖାପାଖି ହେବ ।"

"କଲେଜକୁ ସେତେବେଳକୁ ପିଲାମାନେ କ'ଣ ଆସିଲେଣି ?"

"ନା, ଆସି ନ ଥାନ୍ତି ।"

"କଲେଜ ପ୍ରାୟ ଶୂନ୍‌ଶାନ୍ ଥାଏ ?"

"ହଁ ।"

"ସେଦିନ କ'ଣ ଆଜିକାର ପୋଷାକ ଭଳି ପୋଷାକ ପିନ୍ଧିଥିଲେ ?"

"ହଁ, ପିନ୍ଧିଥିଲି । ମୁଁ ତ ସବୁବେଳେ ଏହିଭଳି ପୋଷାକ ପିନ୍ଧେ ।"

"ଆପଣ ଯେତେବେଳେ ତାଙ୍କ ପାଖକୁ ଯାଇଥିଲେ, ସେତେବେଳେ ଏକା ଯାଇଥିଲେ ନା ଆଉ କେହି ସାଙ୍ଗରେ ଥିଲେ ?"

"ନା, ମୁଁ ଏକା ଯାଇଥିଲି ।"

"ରୁମ୍‌ରେ କ'ଣ ସେ ଏକା ଥିଲେ ?

"ହଁ, ସେ ଏକା ଥିଲେ ।"

"ସେ ତୁମକୁ ଦେଖି ପ୍ରଥମେ କ'ଣ କହିଲେ ?"

"ସେ ପ୍ରଥମେ ମୋ ପୋଷାକକୁ ଦେଖି ଖୁବ ତାରିଫ୍ କଲେ । କହିଲେ, ମୁଁ କାଲେ ଏହି ପୋଷାକରେ ଖୁବ ସୁନ୍ଦର ଦିଶୁଛି । ଆମେରିକାରେ ତାଙ୍କର ଜଣେ ବାନ୍ଧବୀ ଥିଲେ, ସେ ଏହିଭଳି ପୋଷାକ ପିନ୍ଧୁଥିଲେ । ଏହି ପୋଷାକ କାଲେ ଆମେରିକାରେ ସେମାନଙ୍କର ଖଣ୍ଡବାଦିଆ ପୋଷାକ ।"

"ତା'ପରେ ସେ କ'ଣ କହିଲେ ?"

"ସେ କହିଲେ, ଖାଲି ଆମେରିକାନ୍ ପୋଷାକ ପିନ୍ଧିଲେ ହେବ ନାହିଁ । ସେମାନଙ୍କ ସାମାଜିକ ଚଳଣିକୁ ଗ୍ରହଣ ନ କଲେ କି ଲାଭ ? ସେ ଦେଶରେ ପୁଅ ଝିଅମାନେ ନିଜ ନିଜ ଭିତରେ ଯେମିତି ମିଶନ୍ତି, ସେମିତି ଆମ ଦେଶରେ ମିଶିବା ଉଚିତ୍ ।"

"ତୁମେ କ'ଣ କହିଲ ?"

"ଆମେରିକାର ପୁଅ ଝିଅମାନେ କେମିତି ମିଶନ୍ତି ବୋଲି ପଚାରିଲି । ସେ ମୋତେ ଦେଖାଇ ଦେବା ପାଇଁ ମୋ କାନ୍ଧ ଉପରେ ହାତରଖି ମୋତେ ତାଙ୍କ ଆଡ଼କୁ ଟିକିଏ ଟାଣିନେଲେ ।"

"ତୁମେ ସେଥିରେ ବାଧା ଦେଇ ନ ଥିଲ ?"

"ଦେଇଥିଲି । ମୋ କାନ୍ଧରୁ ତାଙ୍କ ହାତ ବାହାର କରିଦେଇ ମୁଁ ତାଙ୍କଠାରୁ ଦୂରେଇଯାଇ ଠିଆ ହୋଇଥିଲି ।"

"ସେ ତୁମକୁ ପାଠ ବୁଝାଇ ଦେଇଥିଲେ ?"

"ମୁଁ ଦୂରେଇଯିବା ଦେଖି କହିଲେ, ତୁମେ ପରା ପାଠ ବୁଝିବାକୁ ଆସିଥିଲ ? ଏମିତି ଦୂରେଇଯାଇ ସେଠି କ'ଣ ଠିଆ ହୋଇଛ ? ହେଉ, ଏହି ଚେୟାରରେ ବସ । ବାହାର କରି କେଉଁଠି ବୁଝିପାରୁନ ଦେଖିବା ?"

"ମୁଁ ପାଖ ଚେୟାରରେ ବସି ବହି ବାହାରକରି ବୁଝିପାରି ନ ଥିବା ବିଷୟଟି ଦେଖାଇଦେଲି ।"

"ସେ ସେଠୁ କ'ଣ କହିଲେ ?"

"କହିଲେ, ତୁମେ ଏଡ଼େ ସହଜ ବିଷୟଟା କ'ଣ ବୁଝିପାରୁନ ? ହେଉ, ମୁଁ ବୁଝାଇ ଦେଉଛି ଶୁଣ । ବୁଝାଉ ବୁଝାଉ ସେ ପୁଣି ତାଙ୍କ ବାମହାତ ମୋ କାନ୍ଧ ଉପରେ ପକାଇ ଅଳ୍ପ ଅଳ୍ପ ଚାପ ପ୍ରଦାନ କଲେ ।"

"ତୁମକୁ କେମିତି ଲାଗୁଥିଲା ?"

"ମୋତେ ଭାରି ଖରାପ ଲାଗୁଥିଲା । କାଳେ କିଏ ଦେଖିଦେଲେ କ'ଣ ଭାବିବ ଏହି ଭୟରେ ମୁଁ ବ୍ୟତିବ୍ୟସ୍ତ ହେଉଥିଲି । ମୁଁ ପୁଣି ହାତ ବାହାର କରିଦେବାକୁ ଚେଷ୍ଟାକଲାରୁ ସେ କହିଲେ, "ମୁଁ କେମିତି ପାଠ ବୁଝାଉଛି ଶୁଣ । ତୁମେ ଏମିତି ଅସ୍ଥିର ହେଉଛ କାହିଁକି ? ପାଠ ବୁଝାଇବା ଭିତରେ ସେ ଧୀରେ ଧୀରେ ମୋତେ ତାଙ୍କ ଗୁଡ଼ିଆଡ଼କୁ ଟାଣି ନେଇଥିଲେ । ଅଜାଣତ ଅଜାଣତ ତାଙ୍କ ମୁହଁ ମୋ କପୋଳଆଡ଼କୁ ପାଖେଇ ଆସିଲା । ପାଠପଢ଼ା ଭିତରେ ଏକ ଅସତ୍ ଉଦ୍ଦେଶ୍ୟ ସାଧନ ନିମିତ୍ତ ତାଙ୍କର ଏହା ଏକ ହୀନ ଚେଷ୍ଟା ବୋଲି ଜାଣି ସେ ମୋତେ ଆହୁରି ପାଖକୁ ନେବା ପୂର୍ବରୁ ମୁଁ ତାଙ୍କ ଗାଲ ଉପରେ ଶକ୍ତ ଚାପୁଡ଼ାଟାଏ ବସାଇ ଦେଇ ଚେୟାରରୁ ଉଠି ପଳେଇ ଆସିଲି । ସେ ଏଥିରେ ସ୍ତମ୍ଭୀଭୂତ ହୋଇ ମୋ ହାତ ଛାଡ଼ି ଦେଇଥିଲେ ।"

"ଆପଣ ଠିକ୍ କହୁଛନ୍ତି ମିସ୍ ସାମନ୍ତରାୟ । ଏହିଭଳି ବ୍ୟବହାରକୁ ଏହିଭଳି ପୁରସ୍କାର । ଆପଣଙ୍କ ପଦକ୍ଷେପକୁ ମୁଁ ସ୍ୱାଗତ କରୁଛି । ମୁଁ ମୁକ୍ତକଣ୍ଠରେ ସ୍ୱୀକାର କରିପାରେ ଆପଣ ଜଣେ ଖୁବ୍ ସାହସୀ ଝିଅ । ଆପଣଙ୍କ ଭଳି ସାହସ ଅନ୍ୟ ଝିଅମାନଙ୍କର ଥିଲେ ସେମାନଙ୍କ ଉପରୁ କେହି ସହଜରେ ଫାଇଦା ଉଠାଇ ପାରନ୍ତେନି ।"

କିନ୍ତୁ ଗୋଟାଏ କଥା ମିସ୍ ସାମନ୍ତରାୟ, ଆପଣ ଯଦି ଏହିଭଳି ପୋଷାକ ପିନ୍ଧି ଜଣେ ଯୁବକ ଅଧ୍ୟାପକଙ୍କ ପାଖକୁ କେହି ନ ଥିଲାବେଳେ ଏକା ଯାଆନ୍ତି, ତେବେ ଆପଣଙ୍କ ଏ ପୋଷାକରେ ଆଧୁନିକତା ନାଆଁରେ ଯେଉଁ ଅଶ୍ଳୀଳତା ଅଛି, ସେଥିରେ ସେ ଅସଦାଚରଣ କଲେ ବୋଲି ତାଙ୍କୁ ଦୋଷ ଦେଇ ହେବ ନାହିଁ । ମଣିଷ ଯେତେ ସଂଯମୀ ହେଲେ ବି ସଂଯମର ଏକ ସୀମା ଅଛି । ଆପଣ ଜଣେ ସୁଶ୍ରୀ ଯୁବତୀ ହୋଇ ଏଭଳି ଅଧା ଲଙ୍ଗଳା ପୋଷାକରେ ଗଲେ କେଉଁ ଯୁବକ ଯେ ସଂଯମ ରକ୍ଷା କରି ଆପଣଙ୍କ ସହିତ କଥାବାର୍ତ୍ତା କରିପାରିବ ମୁଁ ଭାବି ପାରୁନି ମିସ୍ ସାମନ୍ତରାୟ ।

"ଆପଣ ଦୋଷୀକୁ ଦଣ୍ଡ ଦେବେ ନା ମୋ ଆଗରେ ଖାଲି ଆଦର୍ଶ ବଖାଣିବେ । ଆପଣମାନେ ଖାଲି ଆଦର୍ଶ ବଖାଣି ବଖାଣି ସାରା ଦୁନିଆଁକୁ ଭୁଆଁ ବୁଲାଉଛନ୍ତି ।"

"ଏଥିରେ ଅଧିକ ଦୋଷ କାହାର ଜାଣନ୍ତି ମିସ୍ ସାମନ୍ତରାୟ ? ଏଥିରେ ଦୋଷ ବେଶି ଆପଣଙ୍କର । ଆପଣ ଏଭଳି ଅଶ୍ଳୀଳ ପୋଷାକ ପିନ୍ଧିଥିଲେ ବୋଲି ସିନା ସେ ଏମିତି ଆଗେଇଲେ । ଆପଣ ଯଦି ଠିକ୍ ଭାବରେ ପୋଷାକ ପିନ୍ଧିଥାନ୍ତେ, ଏମିତି କିଛି ହୋଇ ନ ଥାନ୍ତା ।"

"ଆପଣ ଭଲ ବାଗରେ କଥାବାର୍ତ୍ତା । ସେ ଅସଦାଚରଣ କଲେ, ଦୋଷ ତାଙ୍କର ନୁହେଁ । ମୁଁ ପୋଷାକ ପିନ୍ଧିଲି, ଦୋଷ ମୋର ହେଲା । ଭଲ ନ୍ୟାୟ ଆପଣଙ୍କର । ହେଉ, ଧନ୍ୟବାଦ ।" ଏତକ କହି ବାହାରି ଯାଉଥିଲା ଶୁଭ୍ରା ।

ହଠାତ୍ ମିଷ୍ଟର ଦାସ ଇନ୍‌ସପେକ୍ଟରଙ୍କୁ ଡାକି କହିଲେ, "ଦେଖ ଇନ୍‌ସପେକ୍ଟର ଅଶ୍ଳୀଳ ପୋଷାକ ପିନ୍ଧିଥିବା ହେତୁ ଏହାଙ୍କୁ ବର୍ତ୍ତମାନ ଆରେଷ୍ଟ କରି ମହିଳା ହାଜତକୁ ପଠାଇଦିଅ ।"

ଆଉଜଣେ ପୋଲିସ ଅଫିସର ଆସି ଦେବସ୍ନାନବାବୁଙ୍କ କାନ ପାଖରେ କହି-ଦେଇଗଲେ, "ନାହିଁ ସାର୍ ଏହାଙ୍କୁ ଆରେଷ୍ଟ କରନ୍ତୁନି । ଏହାଙ୍କ ବାପା ଓଡ଼ିଶାର ଏକ ବିରାଟ ସ୍ମଗ୍‌ଲର । ସବୁ ବଡ଼ ବଡ଼ ଅଫିସର, ମନ୍ତ୍ରୀ ତାଙ୍କ ହାତମୁଠାରେ । ବିଦେଶୀ ଜିନିଷ ଆଣି ବଡ଼ବଡ଼ିଆଙ୍କୁ ଯୋଗାଇ ହାତରେ ରଖିଛନ୍ତି । ଆପଣ ଏହାଙ୍କୁ ଆରେଷ୍ଟ କରିବାକୁ ଆଦେଶ ଦେଲେ, ଆପଣ ଜନେ ହଇରାଣରେ ପଡ଼ିଯିବେ ସାର୍ ।"

"ଏହାଙ୍କୁ ହାଜତରେ ପୂରାଇ ଏହାଙ୍କ ବାପାଙ୍କ ପାଖକୁ ଖବର ଦିଅ । କହିଦିଅ ସେ ବର୍ତ୍ତମାନ ଏହି ଥାନାକୁ ଆସି ମୋତେ ଦେଖା କରନ୍ତୁ ।"

ମଦ୍ମହଲା ହାଜତକୁ ନେଉଥିବା ଇନ୍‌ସପେକ୍ଟରଙ୍କୁ ଅନାଇ ଶୁଭ୍ରା ପଚ୍ଚରିଲା, "ଏହି ଟୋକା ଅଫିସରଜଣକ କିଏ ଇନ୍‌ସପେକ୍ଟର ?"

ଏ ହେଉଛନ୍ତି ଏଠାକାର ଅତିରିକ୍ତ ଜିଲ୍ଲା ମାଜିଷ୍ଟ୍ରେଟ୍ ଦେବସ୍ମାନ ଦାସ, ଆଇ.ଏ.ଏସ୍. ।"

"ଓଃ, ଆଇ.ଏ.ଏସ୍. ? ନୂଆ ହୋଇ ଏଠାକୁ ଆସିଛନ୍ତି ବୋଧହୁଏ ?"

"ହଁ, ଏଇ ଅଳ୍ପ କେଇଦିନ ତଳେ ଜଏନ୍ କରିଛନ୍ତି ଏଠି ।"

"କମ୍ ସାହସ ତ ନୁହେଁ ମୋତେ ଆରେଷ୍ଟ କରିବାକୁ ? ମୋତେ ଚିହ୍ନି ନାହାନ୍ତି ବୋଧହୁଏ ? କୋର୍ଟ, କଚେରୀ କୁଆଡ଼େ ଉଠିଗଲାଣି ନା କଅଣ ?"

## ତିନି

ଜାଏଣ୍ଟ କଲେଜରେ ପିଲାମାନଙ୍କର ବିରାଟ ସଭା ବସିଥାଏ । ସଭାର ଗୋଟିଏ ପ୍ରାନ୍ତରେ ଶୁଭ୍ରା ତା'ର ନିତିଦିନିଆ ପୋଷାକ ପିନ୍ଧି ଅତି ଦର୍ପରେ ଠିଆ ହୋଇଥାଏ । ଯୁବକ ଅଧ୍ୟାପକଜଣକ ତା'ଠାରୁ ଦୂରେଇ ଆଉ ଏକ ସ୍ଥାନରେ ଠିଆ ହୋଇଥାନ୍ତି । ଦେବସ୍ମାନ ପିଲାମାନଙ୍କ ଭିତରେ ମିଳାମିଶା କରାଇ ଧର୍ମଘଟକୁ ଭାଙ୍ଗିଦେବା ଉଦ୍ଦେଶ୍ୟରେ ପିଲାମାନଙ୍କ ସହିତ ଆଲୋଚନା ଚଳାଇଥାଏ ।

ସେ ପିଲାମାନଙ୍କଠାରୁ ସବୁ ଯୁକ୍ତି ଶୁଣିଲା । ଅଧ୍ୟାପକ ଜଣକ କ'ଣ ଅସଦାଚରଣ କଲେ ତା ବି ଶୁଣିଲା । ଶୁଭ୍ରା ଦର୍ପର ସହିତ ସେହି ଅଧା ଲଙ୍ଗଳା ପୋଷାକରେ ଠିଆ ହୋଇ ସବୁକଥା ଶୁଣୁଥାଏ ସମସ୍ତଙ୍କ ସାମନାରେ ।

ଦେବସ୍ମାନ ପିଲାମାନଙ୍କୁ ଅନାଇ କହିଲା, "ଆପଣମାନେ ଦେଖନ୍ତୁ, ଆମ ଦେଶ ହେଲା ଭାରତବର୍ଷ । ଆମ ଦେଶର ଏକ ବିରାଟ ପରମ୍ପରା ଅଛି । ଆମର ସଂସ୍କୃତି ଅତି ପ୍ରାଚୀନ । ଆମ ସଂସ୍କୃତି ଓ ପରମ୍ପରା ଅନୁସାରେ ପୋଷାକ ପିନ୍ଧିବାରେ ଏକ ଶ୍ଳୀଳତା ଅଛି । ଭାରତୀୟ ପରମ୍ପରା ହେଉଛି ସାରା ଦେହକୁ ଆବୃତ କରି ପୋଷାକ ପିନ୍ଧିବା । ଦେହର କୌଣସି ଅଂଶ ବାହାରକୁ ଦିଶି ଅନ୍ୟମାନଙ୍କ ମନରେ ବିକାର ଜନ୍ମାଇବାରେ ଯେପରି ସାହାଯ୍ୟ ନ କରେ, ସେଥିପ୍ରତି ଦୃଷ୍ଟିଦେବା ହେଲା ଆମ ସଂସ୍କୃତି । ଆମର ପାଶ୍ଚାତ୍ୟ ସଂସ୍କୃତି ହୋଇନି ଯେ, ଶରୀରର ଗୁରୁତ୍ୱପୂର୍ଣ୍ଣ ଅଙ୍ଗକୁ ଅର୍ଦ୍ଧ ଆଚ୍ଛାଦିତ କରି ବାହାରକୁ ଦେଖାଇ ଆଧୁନିକତା ନାଁରେ ଆନନ୍ଦ ପାଇବୁ । ମୁଁ ଯାହା କହୁଛି- ଠିକ୍ କହୁଛି ନା ଭୁଲ୍ କହୁଛି, ଆପଣମାନେ କହନ୍ତୁ ।"

ପିଲାମାନଙ୍କ ଭିତରୁ ପାଟି ଉଠିଲା, "ଠିକ୍, ଆପଣ ଯାହା କହୁଛନ୍ତି, ଠିକ୍ ।"

ବର୍ତ୍ତମାନ ଆପଣମାନେ ଶୁଭ୍ରାଦେବୀଙ୍କ ଆଡ଼କୁ ଅନାନ୍ତୁ । ସେ ଯେଉଁ ପୋଷାକ ପିନ୍ଧି ଆସିଛନ୍ତି, ତାହା କ'ଣ ଭାରତୀୟ ମହାନ୍ ସଂସ୍କୃତି ତଥା ପରମ୍ପରାର ପ୍ରତୀକ ?

ପିଲାମାନେ କିଛି ନ କହି ଚୁପ୍ ରହିଲେ ।

ଦେବସ୍ନାନ ଶୁଭ୍ରାଆଡ଼କୁ ଅନାଇ କହିଲା, "ଦେଖନ୍ତୁ ଶୁଭ୍ରାଦେବୀ, ଆପଣ ଏହି ପୋଷାକ ପିନ୍ଧି ପ୍ରତିଦିନ କ'ଣ କଲେଜକୁ ଆସନ୍ତି ?"

"ହଁ, ଆସେ ।" ବେଖାତିର ଭାବରେ ଉତ୍ତର ଦେଲା ଶୁଭ୍ରା ।

"ଆପଣଙ୍କ ପ୍ରିନ୍‌ସିପାଲ କି ପ୍ରଫେସର ଏହି ପୋଷାକ ପାଇଁ କ'ଣ କିଛି କହନ୍ତି ନାହିଁ ?"

"ପ୍ରିନ୍‌ସିପାଲ ମୋତେ କେବେ ଦେଖି ନାହାନ୍ତି । ଆମ ପଦାର୍ଥ ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର ବେନେର୍ଜି ମୋତେ ଏ ପୋଷାକରେ ଦେଖି ଦିନେ ତାଙ୍କ ରୁମ୍‌କୁ ଡାକିନେଇ କହିଲେ, "ଦେଖ୍ ଝିଅ, ଏମିତି ପୋଷାକରେ ତୋର କଲେଜକୁ ଆସିବା ଉଚିତ୍ ନୁହେଁ । ଏମିତି ପୋଷାକ ପିନ୍ଧିଲେ ତୁମ ସାଙ୍ଗମାନଙ୍କ ଆଖିକୁ ଭଲ ଦିଶିପାରେ, କିନ୍ତୁ ଆମ ଅଧ୍ୟାପକମାନଙ୍କୁ ଏହା ରୁଚିକର ହେଉନି । ଝିଅମାନେ ଯଦି କଲେଜକୁ ଏଭଳି ପୋଷାକ ପିନ୍ଧି ଆସନ୍ତି, ତେବେ ଆମ ପକ୍ଷରେ ଛାତ୍ରମାନଙ୍କୁ ଆୟତ୍ତ କରିବା କଷ୍ଟକର ହୋଇପଡ଼ିବ । ତୁମ୍ଭମାନଙ୍କୁ ଏଭଳି ପୋଷାକରେ ଦେଖିଲେ ଆମକୁ ବଡ଼ ଅଶ୍ୱସ୍ତି ଲାଗୁଛି ମା' । ତୁମ ବାପାଙ୍କୁ ମୁଁ ଭଲ ଭାବରେ ଜାଣେ । ଏଭଳି ପୋଷାକରେ ତୋତେ କଲେଜକୁ ନ ପଠାଇବା ପାଇଁ ମୁଁ ତାଙ୍କୁ ଉପଦେଶ ଦେବି ।"

"ଡକ୍ଟର ବେନେର୍ଜି ଆପଣଙ୍କ ବାପାଙ୍କୁ ଏକଥା କହିଥିଲେ ?"

"ହଁ, କହିଥିଲେ ।"

"ଆପଣଙ୍କ ବାପା କ'ଣ କହିଲେ ?"

କହିଲେ, "ସାର୍, ଆପଣମାନଙ୍କ ଯୁଗ ଚାଲିଗଲାଣି । ବର୍ତ୍ତମାନ ଏହା ହେଲା ନୂତନ ଯୁଗ । ପାଶ୍ଚାତ୍ୟଦେଶର ପ୍ରଭାବ ପଡ଼ିବା ଫଳରେ ଆମ ସଂସ୍କୃତି ଓ ପରମ୍ପରା ଧୀରେ ଧୀରେ ପରିମାର୍ଜିତ ହେଉଛି । ତାକୁ ବାଧା ଦେଲେ ଚଳିବନି । ଏ ପୋଷାକ ତ ହେଲା ଆଧୁନିକ ଯୁଗର ପ୍ରତୀକ । ଏହାକୁ ଆପଣମାନେ ବନ୍ଦ କଲେ ମୋ ଝିଅ ପାଇଁ ଆମେରିକାରୁ ଯେଉଁ ସାତ ଆଠ ପ୍ରକାର ପୋଷାକ ଆଣିଛି ସେସବୁ କ'ଣ ହେବ ?"

"ତେଣୁ ଆପଣ ଓ ଆପଣଙ୍କ ବାପା ଡକ୍ଟର ବେନେର୍ଜିଙ୍କ ଉପଦେଶ ମାନିଲେନି । କ'ଣ ନା ସେ ପୁରୁଣା କାଳିଆ ଲୋକ । ଆଧୁନିକ ଯୁଗର ପ୍ରଭାବ ତାଙ୍କ ଉପରେ ପଡ଼ିନି ।" ଦେଖନ୍ତୁ ଶୁଭ୍ରାଦେବୀ, ଆପଣ ଏହି ପୋଷାକ ପିନ୍ଧି କଲେଜକୁ ଆସିଲେ ଆପଣଙ୍କ ସାଙ୍ଗ ପିଲାମାନେ ଖୁସି ହୁଅନ୍ତି ?"

"ହଁ, ଖୁସି ହୁଅନ୍ତି ?"

"ଆପଣ କେମିତି ଜାଣନ୍ତି, ସେମାନେ ଖୁସି ହୁଅନ୍ତି ବୋଲି ।"

"ସେମାନେ ମୋତେ ଦେଖିଲେ ସିଟି ମାରନ୍ତି, ମଉଜିଆ କମେଣ୍ଟ୍ ମାରନ୍ତି, କେତେ ପ୍ରକାର ଗୀତ ଗାଆନ୍ତି, ମୋତେ ଖୁବ ଭଲ ଲାଗେ ସେସବୁ ।"

"ସେଦିନ କାହିଁକି ସେ ଟୋକାଟାର କାନ ଧରି ଥାନାକୁ ଆଣିଥିଲେ ? ତା'ର ଦୋଷ କ'ଣ ଥିଲା ? ସେ ତ ଯୁବକ । ସେ ସିଟି ମାରିଥିଲା, ସେ କମେଣ୍ଟ ମାରିଥିଲା, ଗୀତ ବି ଗାଇଥିଲା । ଆପଣ ତା ବିରୁଦ୍ଧରେ କାହିଁକି ଅଭିଯୋଗ କରିଥିଲେ ଥାନାରେ ? ଆପଣ କାହିଁକି ଏଇ କଲେଜ ପିଲାମାନଙ୍କ ବିରୁଦ୍ଧରେ ଅଭିଯୋଗ କରୁ ନାହାନ୍ତି ?"

"ଆରେ ବାଃ, ଏମାନେ ଯେ ମୋ ସାଙ୍ଗ, ସେମାନଙ୍କ ସିଟି ମାରିବା କି କମେଣ୍ଟ୍ ମାରିବା ମୋ ଷ୍ଟାଇଲ୍ ପ୍ରତି ତାରିଫ୍ । ସେ ପିଲାଟା ବଜାରି, ଛତରା ଟୋକା । ସେ ମୋତେ କମେଣ୍ଟ୍ ମାରିବ ?"

"ତେବେ ସାଙ୍ଗ ପିଲାମାନେ କମେଣ୍ଟ୍ ମାରିଲେ ଆପଣ ସହ୍ୟ କରନ୍ତି । ସେମିତି ଅଧ୍ୟାପକ ସ୍ୱାଇଁ ଆପଣଙ୍କ ନିଜ ଅଧ୍ୟାପକ, ବାହାର ଲୋକ ନୁହନ୍ତି । ଦେଖନ୍ତୁ, ଏଭଳି ଅଧା ଲଙ୍ଗଳା ପୋଷାକ ପିନ୍ଧି ଏକାକିଆ ଅନ୍ୟ କେହି ନ ଥିଲାବେଳେ ଆପଣ ଯଦି ଜଣେ ଯୁବକ ଅଧ୍ୟାପକଙ୍କ ପାଖକୁ ଆସନ୍ତି, ସେ ଯୁବକଟି ଯଦି ସିନା ଖୁବ୍ ସଂଯମୀ ହୋଇଥାନ୍ତି, ତେବେ ନିଜକୁ ସମ୍ଭାଳି ନେଇ ପାରିବେ । ଯଦି ନିଜକୁ ସମ୍ଭାଳି ନ ପାରି ଟିକିଏ ସାମାନ୍ୟ କ'ଣ ଅସଦାଚରଣ କରିଦେଲେ ତାହା କ'ଣ କ୍ଷମାଯୋଗ୍ୟ ନୁହେଁ ? ସମସ୍ତେ ତ ସମାନ ଭାବରେ ସଂଯମୀ ନୁହନ୍ତି । ଏମିତିକି ପୁରାକାଳର ମୁନିଋଷିମାନେ ବେଳେ ବେଳେ ଏହିଭଳି ପୋଷାକ ପିନ୍ଧିଥିଲେ ସଂଯମ ହରାଇଥିବାର ବହୁ ପ୍ରମାଣ ଆମ ଶାସ୍ତ୍ର ପୁରାଣରେ ରହିଛି । ସେହି ମୁନି ଋଷୀମାନଙ୍କୁ ଆମେ ଏବେବି ଦେବତା ବୋଲି କହି ପୂଜା କରୁଛୁ । ଆପଣ-ମାନେ ସମସ୍ତେ ବ୍ୟାସଦେବଙ୍କ ନାଁ ଶୁଣିଥିବେ ? ଶୁଣିଛନ୍ତି ନା ନାହିଁ ?" ଦେବସ୍ନାନ ପଚାରିଲା ।

ପିଲାଏ ଉତ୍ତର ଦେଲେ, "ହଁ ଶୁଣିଛୁ ।"

"ତାଙ୍କ ବାପା କିଏ ଜାଣନ୍ତି ?" ପଚାରିଲା ଦେବସ୍ନାନ ।

ପିଲାଏ ଚୁପ୍ ରହିଲେ ।

"ତାଙ୍କ ବାପା ହେଉଛନ୍ତି ପରାଶର ମୁନି । ସେ ଜଣେ ବଡ଼ ସଂଯମୀ ଋଷି । ତାଙ୍କ ଭଳି ସଂଯମୀ ଋଷି ଖୁବ୍ କମ୍ ଅଛନ୍ତି । ପରାଶର ଋଷି ଦିନେ ଗଙ୍ଗାନଦୀ ପାରି ହେଉଥିଲେ ନୌକାରେ । ନୌକାରେ ସେଦିନ ଏକା ଥାଇ ନୌକା ଚଲାଉଥିଲା ଧୀବରକନ୍ୟା ସତ୍ୟବତୀ, ମହାଭାରତର କୁରୁ ପାଣ୍ଡବ ହେଉଛନ୍ତି ଯାହାଙ୍କ ବଂଶଧର । ଝିଅଟି ଅସାମାନ୍ୟା ରୂପବତୀ । ଏଣେ ଦେହରେ ପୋଷାକପତ୍ରର ଏକାନ୍ତ ଅଭାବ । ଝିଅଟିର ସାରା ଦେହ ଯେତେ ଆବୃତ ହେବା କଥା ସେତେ ହୋଇପାରି ନ ଥିଲା ।

ଏଭଳି ସଂଯମୀ ଋଷି ଝିଅଟିର ସ୍ୱଳ୍ପ ବସନ ପରିହିତ ଅର୍ଦ୍ଧମୁକ୍ତ ଶରୀର ଭିତରୁ ଉଙ୍କି ମାରୁଥିବା ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ନିଜର ସଂଯମକୁ ରକ୍ଷା କରିପାରିଲେନି ।

ଝିଅଟି ଅସ୍ପୃଶ୍ୟା ହେଲେହେଁ ପରାଶର ଋଷି ନିଜକୁ ସମ୍ଭାଳି ନ ପାରି ନଦୀ ଭିତରେ ସେହି ନୌକା ଉପରେ ଝିଅଟିକୁ ଧର୍ଷଣ କଲେ । ସେହି ଧର୍ଷଣର ଫଳସ୍ୱରୂପ ଜନ୍ମ ହେଲେ ସତ୍ୟବତୀଙ୍କ ଗର୍ଭରୁ ବେଦ, ମହାଭାରତ, ଭଗବତ୍ ଗୀତା ଆଦି ବହୁ ପୁରାଣର ରଚୟିତା ମହର୍ଷି ବ୍ୟାସଦେବ, ଯାହାଙ୍କୁ ଆଜି ଆମେ ଦେବତା ରୂପରେ ପୂଜା କରୁଛୁ ।

ସେମିତି ତ କିଛି କୁକର୍ମ ହୋଇନି ଏଠି ଶ୍ରୁତିଦେବୀ । ଯଦି ଅଧ୍ୟାପକ ମହାଶୟ କିଛି ଅସଦାଚରଣ କରିଥାନ୍ତି, ତେବେ ତାହା ନ୍ୟୂନ ଧରଣର । ସେଥିପାଇଁ ସେ ତ ଉପଯୁକ୍ତ ଶାସ୍ତି ପାଇ ସାରିଛନ୍ତି ଆପଣଙ୍କଠାରୁ । ମୁଁ ତାଙ୍କ ତରଫରୁ ଆପଣଙ୍କଠାରୁ ଆଉଥରେ ମାଫି ମାଗି ନେଉଛି ।

"ନା, ନା, ଆପଣ ମାଫି ମାଗିଲେ ଚଳିବନି । ଅଧ୍ୟାପକ ନିଜେ ଆସି ମାଫି ମାଗନ୍ତୁ ।" ପିଲାମାନେ ପାଟି କରି ଉଠିଲେ ।

ଦେବସ୍ମିତାର ଇଙ୍ଗିତରେ ଅଧ୍ୟାପକ ସ୍ୱାଇଁ ଆସି ମାଫି ମାଗିଲେ । ସଙ୍ଗେ ସଙ୍ଗେ ଧର୍ମଘଟ ପ୍ରତ୍ୟାହୃତ ହୋଇଗଲା । ପାଖ ରୁମ୍‌ରେ ପ୍ରିନ୍‌ସପାଲ ଥାଇ ଏହି ଆଲୋଚନା ସବୁ ଶୁଣୁଥିଲେ । ସେ ବାହାରି ଆସି ଦେବସ୍ମିତା କାନ୍ଧରେ ଥାପୁଡ଼ାଇ କହିଲେ, "ଠିକ୍ ଭାବରେ ବାପ ସମସ୍ୟାଟିକୁ ସମାଧାନ କରି ଦେଇଛ । ଭଗବାନ ତୁମର ମଙ୍ଗଳ କରନ୍ତୁ ।"

ଝିଅଟି ଆଡ଼କୁ ଅନାଇ କହିଲେ, "ତୋତେ ମୋର ଏକାନ୍ତ ଅନୁରୋଧ ମା, ତୁ ଏହି ପୋଷାକ ପିନ୍ଧି ଆଉ ଯେମିତି କଲେଜକୁ ନ ଆସୁ । ଏହି ପୋଷାକ ହିଁ ସବୁ ଗଣ୍ଡଗୋଳ ମୂଳରେ । ଇଏତ ସାମାନ୍ୟ ଗଣ୍ଡଗୋଳ । କିଏ କହି ପାରିବ, ଏହି ପୋଷାକ ପାଇଁ ଏହାଠାରୁ ଆହୁରି ବଡ଼ ଗଣ୍ଡଗୋଳ ନ ହୋଇପାରେ ବୋଲି ? ମୋର ଶେଷ ଅନୁରୋଧ, ତୁ ଏ ବୁଢ଼ାଟାର କଥାକୁ ପକାଇଦେବୁନି ମା ।"

ଝାଏଷ୍ଟ କଲେଜର ଗୁରୁ ଗଣ୍ଡଗୋଳ ବେଶ୍ ଭଲ ଭାବରେ ସମାଧାନ ହୋଇଗଲା । ଏକ ଦକ୍ଷ ପ୍ରଶାସକ ଭାବରେ ଦେବସ୍ମିତାର ସୁଖ୍ୟାତି ଆଇ.ଏ.ଏସ୍. ଅଫିସରମାନଙ୍କ ଭିତରେ ଆଶାତୀତ ଭାବରେ ବଢ଼ିଗଲା । ସରକାରଙ୍କଠାରୁ ଏକ ପ୍ରଶଂସାପତ୍ର ମଧ୍ୟ ଚାଲି ଆସିଲା ଦେବସ୍ମିତାଠାକୁ ଏହି କାର୍ଯ୍ୟ ନିମିତ୍ତ ।

## ପାଞ୍ଚ

କଟକ ସାର୍କିଟ୍ ହାଉସ୍‌ର ଆଲୋଚନା କକ୍ଷ । ଗତ କେତେଦିନ ଧରି କଟକ ସହରରେ ଅସାମାଜିକ ଲୋକଙ୍କ ଦୌରାତ୍ମ୍ୟ ଆଶାତୀତ ଭାବରେ ବଢ଼ି ଯାଇଥିବାରୁ ଚାରିଆଡ଼େ ସରକାରଙ୍କ ବିରୁଦ୍ଧରେ କୁତ୍ସା ରଟନା ଚାଲିଥାଏ । ଏକ ପଙ୍ଗୁ ଓ ଛାଣୁ

ସରକାର ଦ୍ୱାରା ସହରର ଧନ ଜୀବନ ନିରାପଦ ନୁହେଁ ବୋଲି ଲୋକେ ଖୋଲାଖୋଲି କହି ବୁଲୁଥାନ୍ତି । କଟକ ସହରରେ ନାରୀ ଧର୍ଷଣ, କଲେଜ ଝିଅଙ୍କୁ ଅଶ୍ଳୀଳ ଇଙ୍ଗିତ, ଅନ୍ଧକାରରେ ପଥିକମାନଙ୍କଠାରୁ ଲୁଣ୍ଠନ, ଛୁରୀମାଡ଼, ହୋଟେଲମାନଙ୍କରେ ଜୁଆଖେଳ, ବେଶ୍ୟାବୃତ୍ତି ଆଦି ଅସାମାଜିକ କାର୍ଯ୍ୟକଳାପ ବିଶେଷଭାବରେ ବୃଦ୍ଧି ପାଇଥାଏ । ଏସବୁ ଅସାମାଜିକ କାର୍ଯ୍ୟକୁ ଯିଏ ଦେଖିବ, ସିଏ ଭାବିବ କି ସହରରେ ଯେମିତି କୌଣସି ସରକାର ନାହିଁ । ପୂରାପୂରି ଅରାଜକତା । ଏଗୁଡ଼ିକୁ କେମିତି ଆୟତ୍ତ କରି ସହରର ସୁସ୍ଥ ବାତାବରଣ ଫେରାଇ ଆଣି ହେବ, ତା'ର ପାଇଁ ଏହି ଆଲୋଚନା ଡକାଇଥାନ୍ତି ରାଜ୍ୟର ସ୍ୱରାଷ୍ଟ୍ରମନ୍ତ୍ରୀ ।

ସ୍ୱରାଷ୍ଟ୍ରମନ୍ତ୍ରୀ ଆଲୋଚନା ଆରମ୍ଭ କରୁ କରୁ ବଡ଼ ବିରକ୍ତ ହୋଇ କହିଲେ, "ଆପଣମାନେ ଯଦି ସହରର ଏହି ଅସାମାଜିକ କାର୍ଯ୍ୟକଳାପକୁ ବନ୍ଦ କରି ନ ପାରୁଛନ୍ତି, ରାଜ୍ୟରେ ଖାଲି ମୋ ବଦନାମ ହେଉନି, ଆପଣମାନଙ୍କ ସମ୍ମାନର ମଧ୍ୟ ଯଥେଷ୍ଟ ହାନି ହେଉଛି । ପୋଲିସ ବିଭାଗ ବର୍ତ୍ତମାନ ସବୁଠାରୁ ଅଧିକ ସମାଲୋଚନାର କେନ୍ଦ୍ର ହୋଇ ପଡ଼ିଛି । ମୋର ଏକାନ୍ତ ଅନୁରୋଧ, ଏହାକୁ ରୋକିବା ପାଇଁ ଆପଣମାନେ ଯେଉଁ କଡ଼ା ବ୍ୟବସ୍ଥା ଗ୍ରହଣ କରିବେ, ମୁଁ ତାହାକୁ ଅନୁମତି ଦେବାକୁ ପ୍ରସ୍ତୁତ ଅଛି । ମୁଁ ଚାହେଁ ଏହି କାର୍ଯ୍ୟକଳାପ ଯେମିତି ତୁରନ୍ତ ବନ୍ଦ ହେଉ ଓ ଏହି କାର୍ଯ୍ୟକଳାପରେ ସମ୍ପୃକ୍ତ ଲୋକମାନେ ଯେପରି କଠୋର ଶାସ୍ତି ପାଆନ୍ତୁ ।

ବହୁ ଆଲୋଚନା ପରେ ଏକ ଦକ୍ଷ ପ୍ରଶାସକ ଭାବରେ ଖ୍ୟାତି ଲଭିଥିବା କଟକର ଆଡିସନାଲ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ ଦେବସ୍ମିନ ଦାସ ଓ ନୂଆ ହୋଇ ଜଏନ୍ କରିଥିବା ପୋଲିସ ସୁପରିନ୍‌ଟେନ୍‌ଡେଣ୍ଟ ରସିକମୋହନ ପ୍ରହରାଜଙ୍କୁ ଏହାକୁ ଆୟତ୍ତ କରିବା ପାଇଁ ପୂରା ଦାୟିତ୍ୱ ଦିଆଗଲା । ସେମାନେ ଯେଉଁ ପଦ୍ଧତି ଉଚିତ ବୋଲି ମନେ କରିବେ ତାହା କରିପାରିବେ । ସରକାରଙ୍କର ସେମାନଙ୍କ ଉପରେ କିଛି କଟକଣା ରହିବ ନାହିଁ ।

ତହିଁ ପରଦିନ ପୋଲିସ ସୁପରିନ୍‌ଟେନ୍‌ଡେଣ୍ଟ ପ୍ରହରାଜ ସାହେବଙ୍କ ଆଲୋଚନା କକ୍ଷରେ ଏହା ଉପରେ ଗୁପ୍ତ ଆଲୋଚନା ଚାଲିଲା । ସହରର ପୋଲିସ ଇନ୍‌ସ୍‌ପେକ୍ଟର, ସି.ଆଇ.ଡି. ଅଫିସରମାନେ ଆଲୋଚନାରେ ଯୋଗ ଦେଇଥାନ୍ତି । ମିଷ୍ଟର ପ୍ରହରାଜଙ୍କ ପାଖକୁ ଲାଗି ବସିଥାଏ ଦେବସ୍ମିନ । ସାଦା ପୋଷାକପିନ୍ଧା ପୋଲିସ ଅଫିସରମାନଙ୍କୁ ସହରର ବିଭିନ୍ନ ସ୍ଥାନରେ ମୁତୟନ କରି ଏହି ଅସାମାଜିକ ଲୋକଙ୍କୁ ଧରିବା ପାଇଁ ଆଲୋଚନା ଚାଲିଲା । ଏହାଦ୍ୱାରା ଦୋଷୀମାନେ ଠିକ୍ ଭାବରେ ଧରା ପଡ଼ିବେ ନାହିଁ ବୋଲି ଅନେକେ ମତବ୍ୟକ୍ତ କଲେ । ଶେଷରେ ଠିକ୍ ହେଲା ସୁନ୍ଦରୀ ସୁନ୍ଦରୀ ଝିଅମାନଙ୍କୁ ମୁତୟନ କରି ସାଦା ପୋଷାକପିନ୍ଧା ପୋଲିସ ଅଫିସରମାନଙ୍କ ଦ୍ୱାରା ଏହି ଅସାମାଜିକ ଲୋକଙ୍କୁ ଧରିବାକୁ ହେବ । ସୁନ୍ଦରୀ ଝିଅ ନ ହେଲେ ସେମାନଙ୍କୁ ଧରିବା କଷ୍ଟକର ହୋଇପଡ଼ିବ ।

ଦିନରେ ଠିକ୍ କେଉଁ ସମୟରେ ଓ କେଉଁ କେଉଁ ସ୍ଥାନରେ ଏହି ଅଶ୍ଳୀଳ ଇଙ୍ଗିତ ଘଟଣା ବେଶି ଘଟେ, ନାନା ଆଲୋଚନା ଓ ସାକ୍ଷ୍ୟ ପ୍ରମାଣ ପରେ ସ୍ଥିର ହେଲା । ସେହିସବୁ ସ୍ଥାନରେ ଠିକ୍ ସେହି ସେହି ସମୟରେ ସୁନ୍ଦରୀ ସୁନ୍ଦରୀ ଝିଅମାନଙ୍କୁ ବୁଲିବା ପାଇଁ ଛାଡ଼ିଦେଇ ଅଦୂରରେ ସାଦା ପୋଷାକ ପିନ୍ଧା ପୋଲିସ ଅଫିସରମାନେ ଲୁଚି ରହିବା ଠିକ୍ ହେଲା । ଝିଅମାନଙ୍କ ପାଟି ଶୁଣିଲାକ୍ଷଣି ସେମାନେ ଦୌଡ଼ିଯାଇ ଟୋକାମାନଙ୍କୁ ଧରି ପକାଇବେ । ତଥାପି ବି ଏହି ବ୍ୟବସ୍ଥା କୃତକାର୍ଯ୍ୟ ହେବ କି କଅଣ କେତେକେ ସନ୍ଦେହ ପ୍ରକାଶ କରିଥିଲେ । କେଉଁ ଥାନାରୁ ଏ ଅଭିଯାନ ଆରମ୍ଭ ହେବ ଓ ଏକ ସଙ୍ଗରେ ସବୁ ସ୍ଥାନରେ ଆରମ୍ଭ ହେବ କି କଅଣ ସ୍ଥିରୀକୃତ ହୋଇ ସେ ଦିନର ମିଟିଂ ଶେଷ ହେଲା ।

ଯେଉଁ ଥାନାରୁ ଏହା ଆରମ୍ଭ ହେବା କଥା, ସେହି ଥାନାରେ ଯାଇ ସେଦିନ ଠିକ୍ ସମୟରେ ପହଞ୍ଚିଗଲା ଦେବସ୍ମାନ । ସେ ପହଞ୍ଚିଲାବେଳକୁ ପୋଲିସ ସାହେବ ପ୍ରହରାଜ ଚାଲି ଆସିଲେଣି । ଥାନାର ଗୋଟିଏ କକ୍ଷରେ ଝିଅଗୁଡ଼ିଏ ଭଲ ଭଲ ପୋଷାକ ପିନ୍ଧି ବସିବାର ଓ ସେମାନଙ୍କୁ ଜଣେ ଇନ୍‌ସପେକ୍ଟର ସେମାନଙ୍କ ଯୋଜନା କଥା ବୁଝାଉଥିବାର ଦେଖି ଆଶ୍ଚର୍ଯ୍ୟ ହେଲା ଦେବସ୍ମାନ । ତା ମନରେ ଆଶଙ୍କା ହେଲା ଏହି ଭଲ ଭଲ ଝିଅଗୁଡ଼ିକୁ ସେହି ଅସାମାଜିକ ଟୋକାଙ୍କ ଆଗକୁ ଠେଲିଦେବା କ'ଣ ଠିକ୍ ହେବ ? ଝିଅଗୁଡ଼ିକ ବେଶ୍ ସୁଶ୍ରୀ, ଦାମିକା ଦାମିକା ପୋଷାକ ଓ ମୂଲ୍ୟବାନ ଗହଣାପତ୍ର ସବୁ ଲଗାଇଛନ୍ତି । ଏଡ଼େ ସୁନ୍ଦର ଓ ସୁଦର୍ଶିନୀ ଝିଅଗୁଡ଼ିକୁ ସେହି ଗୁଣ୍ଡାମାନଙ୍କ ସମ୍ମୁଖକୁ ପଠାଇବାକୁ ମନ ହେଲାନି ଦେବସ୍ମାନର । କାଳେ କିଛି ଯଦି ହୁଏ, ଝିଅଗୁଡ଼ିକ ସବୁଦିନ ପାଇଁ ବଦନାମ ହୋଇଯିବେ ଯେ !

ଏତେଗୁଡ଼ିଏ ସୁନ୍ଦରୀ ଝିଅଙ୍କୁ କେଉଁଠୁ ଆଣିଲ ବୋଲି ପଚାରିଲା ଦେବସ୍ମାନ ସାଙ୍ଗ ପ୍ରହରାଜକୁ ।

ଦେବସ୍ମାନର ଏହି ପ୍ରଶ୍ନରେ ହସିଲା ପ୍ରହରାଜ, "ଆରେ, ଏମାନଙ୍କୁ ନ ଆଣିଲେ ଆମ ଯୋଜନା କାର୍ଯ୍ୟକାରୀ ହେବ କେମିତି ?

"ଏମାନେ ତ ଭଦ୍ର ଘରର ଝିଅ ଭଳି ଦିଶୁଛନ୍ତି । ଦାମିକା ପୋଷାକପତ୍ର, ମୂଲ୍ୟବାନ ଗହଣାଗାଣ୍ଠି ସବୁ ଲଗାଇଛନ୍ତି । ଏଡ଼େ ସୁନ୍ଦର ଭଦ୍ର ପରିବାରର ଝିଅଗୁଡ଼ାଙ୍କୁ ସେହି ଗୁଣ୍ଡାମାନଙ୍କ ସମ୍ମୁଖକୁ ପେଲିଦେବା ତୋର କ'ଣ ଉଚିତ ହେଉଛି ପ୍ରହରାଜ ? ମୋତେ ଖାରି ଖରାପ ଲାଗୁଛି ତୋ ଅବିବେକୀପଣିଆ ଦେଖି ।

ଏଥର ଆହୁରି ଜୋରରେ ହସିଲା ପ୍ରହରାଜ । "ତୁ ଏ ଝିଅଗୁଡ଼ାଙ୍କୁ ଯଦି ଏତେ ସୁନ୍ଦରୀ ବୋଲି କହୁଛୁ, ଏଥିଭିତରୁ ଗୋଟାକୁ ବାହା ହୋଇ ପଡ଼ୁନୁ କାହିଁକି ରେ ? ସ୍ୱାଙ୍କ ଭିତରୁ ବାଛ, କିଏ ତୋର ଅଧିକ ପସନ୍ଦ, କାହାକୁ ତୁ ବାହା ହେବୁ ? ଆଜି ତୋ ବାହାଘର ଏଇଠି କରିଦେବା ।"

"ଧେତ୍, ତୋର ସବୁବେଳେ ସେଇଭଳି କଥା । ମୁଁ ଏହି ଝିଅଗୁଡ଼ାଙ୍କ ବିପଦ କଥା ଭାବୁଛି । ତୋର ଖାଲି ଥଟ୍ଟା ।"

"ଆରେ, ତୁ କ'ଣ ଭାବୁଛୁ, ଏମାନେ ପ୍ରକୃତରେ ଭଦ୍ରଲୋକଙ୍କ ଘରର ଝିଅ ?"

"ଆଉ କ'ଣ ଏମାନେ ବଜାର ବେଶ୍ୟା ?"

"ନା, ତା ବି ନୁହେଁ ।"

"ତେବେ ।"

"ଆରେ, ସେମାନେ ଝିଅ କାହିଁକି ହେବେ ? ସେମାନେ ପରା ଟୋକାଗୁଡ଼ାଏ । ଏହି ସହରର ଅଳ୍ପ ବୟସର ଓ ଝିଅଭଳିଆ ଚେହେରା ଥିବା କେତେ ଯୁବକଙ୍କୁ ବାଛିଯାଇ ସେମାନଙ୍କୁ ଝିଅ ପୋଷାକ ପିନ୍ଧାଇ ଏଠାକୁ ଅଣାଯାଇଛି । ଏମାନଙ୍କ ଭିତରୁ କେତେକ ଯାତ୍ରାରେ ସ୍ତ୍ରୀ ପାର୍ଟ କରନ୍ତି । ସେମାନଙ୍କୁ ଯେ ପୋଷାକ ପିନ୍ଧାଇ ସଜାଇଛି, ତା'ର ଅଛି ବାହାଦୁରି । ତାହା ନ କରିଥିଲେ କେଉଁ ଭଦ୍ରଲୋକ ଘରର ଝିଅ ଏହି କାମ ପାଇଁ ବାହାରି ଆସିଥାନ୍ତେ କହିଲୁ ?

"କାହିଁକି ସାର୍, ମୁଁ ପ୍ରସ୍ତୁତ ଅଛି ଆପଣମାନଙ୍କର ଏହି କାର୍ଯ୍ୟରେ ସହଯୋଗ କରିବା ପାଇଁ ।" କହୁ କହୁ ଥାନା ଭିତରକୁ ପଶି ଆସିଲା ଶୁଭ୍ରା । ପୂର୍ବଭଳି ତା'ର ସେହି ଅର୍ଦ୍ଧଉଲଗ୍ନ ଆମେରିକାନ୍ ପୋଷାକ । ସାରା ଦେହଟି ଠିକ୍ ଭାବରେ ଆବୃତ ହୋଇ ନ ଥାଏ । ପୋଷାକପତ୍ରରୁ ବେଶ୍ ଆକର୍ଷଣୀୟ ଦିଶୁଥାଏ ଶୁଭ୍ରା, ଅସାମାଜିକ ଟୋକା-ମାନଙ୍କୁ ଆକୃଷ୍ଟ କଲାଭଳି ।

ଶୁଭ୍ରାକୁ ଦେଖି ଚମକିପଡ଼ିଲେ ଦେବସ୍ମାନ, "ଆପଣ କ'ଣ ଏଠି ମିସ୍ ସାମନ୍ତରାୟ ? ଆପଣ କ'ଣ ଆପଣଙ୍କର ସେହି ପୂର୍ବ ପୋଷାକ ଛାଡ଼ି ନାହାନ୍ତି ? ଆପଣଙ୍କୁ ସେଦିନ ପରା ମୁଁ ଏତେ ତାଗିଦ୍..."

"ନାହିଁ ସାର୍, ଛାଡ଼ିଛି । ହେଲେ ସେହି ଟୋକାମାନଙ୍କୁ ଧରିବା ପାଇଁ ଆଜି ମୋ ପୂର୍ବ ପୋଷାକ ପିନ୍ଧି ଆସିଛି ।"

"ଆପଣ କ'ଣ ଚାହାଁନ୍ତି ସେହି ଅସାମାଜିକ ଟୋକାଗୁଡ଼ାକ ସମ୍ମୁଖକୁ ଏମିତି ପୋଷାକ ପିନ୍ଧି ଯିବେ ? ନିଜ ପ୍ରତି ଯେଉଁ ବିପଦ... ?

ହସିଲା ଶୁଭ୍ରା ଏକ ଆକର୍ଷଣୀୟ ଭଙ୍ଗୀରେ । "ସେଥିପାଇଁ ଆପଣ ବ୍ୟସ୍ତ ହୁଅନ୍ତୁ ନା ସାର୍ । ଆପଣଙ୍କର କ'ଣ ମନେନାହିଁ ସେଦିନ ଲାଲବାଗ ଥାନାକୁ ଗୋଟିଏ ଟୋକାର କାନଧରି କେମିତି ଟାଣି ଟାଣି ଆଣିଥିଲି ? ସହରର ଯେଉଁ ସ୍ଥାନରେ ସବୁଠାରୁ ଅଧିକ ଗୋଳମାଳ, ମୋତେ ସେହିଠି ଛାଡ଼ି ଦିଅନ୍ତୁ । ଦେଖିବେ ମୁଁ କେମିତି ସେହି ଲଫଙ୍ଗା-ଗୁଡ଼ାଙ୍କୁ ଧରି ନ ଆଣିଛି ଆପଣଙ୍କ ପାଖକୁ ?

ଆମେ ଆପଣଙ୍କ ସାହସ ଦେଖି ଖୁବ୍ ଖୁସି ହେଉଛୁ ଶୁଭ୍ରାଦେବୀ । ଆମର ବିଶ୍ୱାସ ଆପଣ ସେ କାମକୁ ବେଶ୍ ଦକ୍ଷତାର ସହିତ କରି ପାରିବେ । ହେଲେ ଆପଣ ଜଣେ

ଭଦ୍ରଘରର ଝିଅ । ସେମାନଙ୍କୁ ଧରୁ ଧରୁ ସେମାନେ ଯଦି ଆପଣଙ୍କ ପ୍ରତି କିଛି ଖରାପ ବ୍ୟବହାର କରନ୍ତି ତେବେ ଆପଣଙ୍କର ସମ୍ମାନରେ ବାଧା ଆସିବ ନିଶ୍ଚୟ । ଆମ ହାତରେ ଅନ୍ୟ ଝିଅମାନେ ଅଛନ୍ତି, ଯେଉଁମାନଙ୍କ ପ୍ରତି ଅସଦାଚରଣ କଲେ କିଛି କ୍ଷତି ନାହିଁ ? ଜାଣିଶୁଣି ଆପଣଙ୍କୁ ସେଠାକୁ ପେଲି ଦେବାକୁ ଆମ ବିବେକ କହୁନି ଶୁଭ୍ରାଦେବୀ । ଏହି ବିପଦଜନକ କାର୍ଯ୍ୟ ପାଇଁ ଆପଣଙ୍କର ସ୍ୱତଃପ୍ରବୃତ୍ତ ସାହାଯ୍ୟ ଖୁବ୍ ଧନ୍ୟବାଦାର୍ହ ।

ଏତିକି କହି ଶୁଭ୍ରାକୁ ବିଦା କରିଦେଇ ପ୍ରହରାଜଙ୍କୁ ଧରି ଦେବସ୍ମାନ ଚାଲିଗଲେ ସେହି ଝିଅମାନେ ଅପେକ୍ଷା କରିଥିବା କୋଠରୀକୁ । ସେମାନଙ୍କୁ ଆହୁରି ଭଲଭାବରେ ଲକ୍ଷ୍ୟ କଲେ ଦେବସ୍ମାନ । ମନେ ମନେ ଭାବିଲେ, "ଆଃ ! ଏମାନେ ତ ପ୍ରକୃତ ଝିଅ ଭଳି ଦିଶୁଛନ୍ତି । ଏମାନଙ୍କୁ ଦେଖିଲେ କେହି ତ ଭାବି ପାରିବେନି, ଏମାନେ ଝିଅ ନୁହଁନ୍ତି ବୋଲି । ସତରେ ଏମାନଙ୍କୁ ତ ବିଭା କରିଦେଲେ ଲୋକେ ଝିଅ ବୋଲି ଭାବି ଆନନ୍ଦରେ ବିଭା ହୋଇଯିବେ । ବଡ଼ ଆଶ୍ଚର୍ଯ୍ୟ, ପୁଅମାନେ କ'ଣ ଏଡ଼େ ସୁନ୍ଦର ଝିଅ ଭଳି ସାଜି ପାରନ୍ତି ?

ମନେ ମନେ ପ୍ରହରାଜର କାମକୁ ତାରିଫ୍ କରୁ କରୁ ଦେବସ୍ମାନ କହିଲେ, "ତୋର ବୁଦ୍ଧି ବେଶ୍ ପ୍ରଖର ଦେଖୁଛି ପ୍ରହରାଜ । ଅସାମାଜିକ ଟୋକାମାନେ ଅଶ୍ଳୀଳ ଇଙ୍ଗିତ ଦେଲାକ୍ଷଣି ଏମାନେ ସେମାନଙ୍କ ପାଖକୁ ଚାଲିଯିବେ । ସେମାନେ ଏମାନଙ୍କ ପ୍ରତି କିଛି ଖରାପ ବ୍ୟବହାର ଆରମ୍ଭ କଲା କ୍ଷଣି ଏମାନେ ସେମାନଙ୍କୁ ଧରି ପକାଇବେ ଯେମିତିକି ସେମାନେ ଆଉ ଖସିଯାଇ ପାରିବେନି । ଅଦୂରରେ ଆମ ପୋଲିସ ଅଫିସରମାନେ ଲୁଚି ରହିଥିବେ । ଇସାରା ପାଇଲାକ୍ଷଣି ଟୋକାଗୁଡ଼ାକୁ ଆରେଷ୍ଟ କରି ହାତକଡ଼ି ପିନ୍ଧାଇ ବିଚ୍ ରାସ୍ତାରେ ଚଲାଇ ଚଲାଇ ଥାନାକୁ ଆଣିବେ । ଏହାଫଳରେ ଲୋକଙ୍କର ପୋଲିସ ଉପରେ ଆସ୍ଥା ବଢ଼ିବ, ଅସାମାଜିକ ଲୋକଙ୍କ ଭିତରେ ଆତଙ୍କ ଖେଳିଯିବ ।

ଅଶ୍ଳୀଳ ଇଙ୍ଗିତ ଯୋଗୁଁ ସେଦିନ ସହରର ବିଭିନ୍ନ ସ୍ଥାନରେ ଧରା ହେଲେ ପଚିଶ ଜଣ ଟୋକା । ସେମାନେ ସମସ୍ତେ ଉଚ୍ଚ ଶିକ୍ଷିତ, ଧନୀ ଓ ବଡ଼ ବଡ଼ ଅଫିସରଙ୍କ ପିଲା । ଥାନାକୁ ଆସିବାକ୍ଷଣି ସେମାନଙ୍କୁ ହାଜତରେ ପୁରାଇଦେବାକୁ ଆଦେଶଦେଇ ଦେବସ୍ମାନ ଚାଲିଗଲେ ନିଜ ବସାକୁ ।

ଦେବସ୍ମାନ ଯାଇ ବସାରେ ପହଞ୍ଚିଛି କି ନାହିଁ, ଆସିଲା ଘନ ଘନ ଟେଲିଫୋନ୍ ତା ବସାକୁ । ସବୁ ବଡ଼ ବଡ଼ ଅଫିସର, ବ୍ୟବସାୟୀଙ୍କ କାକୁତି ମିନତି । କିଏ କେତେ ପ୍ରକାର ଚାପ ପକାଇ ପିଲାଗୁଡ଼ାକୁ ମୁକୁଳାଇ ଦେବାକୁ ଅନୁରୋଧ କଲେ । ଏହାଦେଖି ଦେବସ୍ମାନ ସେଦିନ ଘରେ ରହିଲାନି । ଏ ବନ୍ଧୁ ଘର, ସେ ବନ୍ଧୁ ଘର ହୋଇ ଘୂରି ବୁଲିଲା ରାତିସାରା କଟକ ସହରରେ । ରାତି ଦୁଇଟାବେଳେ ଘରକୁ ଫେରି ଫୋନ୍‌କୁ ବାହାରକରି ଥୋଇଦେଇ ଆଉ ଗୋଟାଏ କୋଠରୀରେ ଶୋଇ ପଡ଼ିଲା । ବଡ଼ ବଡ଼ ଅଫିସର ଓ ଧନୀଘରର ପିଲାମାନେ ଏହିଭଳି କାର୍ଯ୍ୟ କରି ଆରେଷ୍ଟ ହୋଇ ଥାନା ହାଜତରେ ଅଛନ୍ତି

ବୋଲି ସବୁକଥା ସକାଳ ଖବରକାଗଜରେ ବାହାରିପଡ଼ିଲା । ତହିଁ ପରଦିନ ସେମାନେ ସମସ୍ତେ ଜାମିନରେ ଖଲାସ ହୋଇଗଲେ ସତ, କିନ୍ତୁ ସେହିଦିନଠାରୁ କଟକ ସହରରେ ଝିଅମାନଙ୍କୁ ଅଶ୍ଳୀଳ ଇଙ୍ଗିତ ଦେବା ବା ଖରାପ ବ୍ୟବହାର ଦେଖାଇବା ଘଟଣା ଆଉ କେଉଁଠି ଶୁଣାଗଲା ନାହିଁ ।

## ଛଅ

"ଦେବ, ଆଜି ରାତିରେ ହୋଟେଲ ଉର୍ବଶୀ ଘେରାଉ ହେବ । ମୁଁ ଖବର ପାଇଛି ସେହି ହୋଟେଲକୁ ପ୍ରତିଦିନ ବହୁତ କଲଗାର୍ଲ ଆସୁଛନ୍ତି । ଏମିତିକି କଲିକତାରୁ, ଖଡ଼ଗପୁରରୁ ସୁନ୍ଦରୀ ସୁନ୍ଦରୀ ଝିଅମାନେ ଆସୁଛନ୍ତି । ଗୋଟାଏ ରାତି ଘେରାଉ କରିଦେଲେ ପ୍ରକୃତ କଥା ଜଣାପଡ଼ିଯିବ । ଆଜି ଯୋଜନା ହୋଇଛି, ରାତି ଗୋଟାଏ ବେଳେ ଘେରାଉ ହେବ, ତୁ ଆମ ସାଙ୍ଗରେ ଯିବୁ ତ ? ପ୍ରହରାଜ ପଚାରିଲା ଦେବସ୍ମାନକୁ ।

"ଭାଇ, ସେସବୁ ଅଶ୍ଳୀଳ ଦୃଶ୍ୟ ଦେଖିବାକୁ ମୋତେ ଡାକନା । ତେବେ ଯଦି ଜଣେ ମାଜିଷ୍ଟ୍ରେଟ୍ ସେଠି ରହିବା ଏକାନ୍ତ ଦରକାର, ତେବେ ଆଉ କାହାକୁ ରାତି ଅଧରେ ହଇରାଣ ନ କରି ମୁଁ ନିଜେ ପଛେ ସେ କାମ ଚଳାଇଦେବି । ମାଜିଷ୍ଟ୍ରେଟ୍‌ମାନେ ଦିନସାରା ଖଟି ଖଟି ରାତିରେ ଘରେ ଶୋଇଥିବେ, ଘରୁ ସେମାନଙ୍କୁ ଉଠାଇ ହଇରାଣ କରି ଲାଭ କଅଣ ?"

ଠିକ୍ ରାତି ଗୋଟାକବେଳେ ହୋଟେଲ ଉର୍ବଶୀ ଘେରାଉ ହେଲା । ହୋଟେଲ ଚାରିପାଖରେ ପୋଲିସବାହିନୀ ଘେରିଯାଇ ସବୁ ରାସ୍ତା ଜଗିଗଲେ । ଦୁଇ ତିନିଜଣ ଇନ୍‌ସପେକ୍ଟରଙ୍କୁ ଧରି ହୋଟେଲ ଭିତରକୁ ପଶିଲା ନିଜେ ପ୍ରହରାଜ । ଦେବସ୍ମାନ ବାହାରେ ଠିଆ ହୋଇ ରହିଲା । ପ୍ରତ୍ୟେକ ରୁମ୍‌କୁ ଧଡ଼୍‌ଧାଡ଼୍ କରି ଖୋଲିଲେ ପୋଲିସ ଅଫିସରମାନେ । ଯେଉଁ ରୁମ୍‌ରୁ ସନ୍ଦେହଜନକ ଲୋକ ଥିବାର ଦେଖିଲେ ସେମାନଙ୍କୁ ଆରେଷ୍ଟ କରି ତଳକୁ ନେଇ ଆସିଲେ । ଧରା ପଡ଼ିଥିବା ଲୋକଗୁଡ଼ାକୁ ସ୍ତ୍ରୀ ପୁରୁଷ ହଳ ହଳ ଭାବରେ ହାତକଡ଼ା ଦେଇ ତଳକୁ ଆଣୁଥାନ୍ତି ପୋଲିସ ଅଫିସରମାନେ ।

ହଠାତ୍ ଦେବସ୍ମାନର ଜଣେ ପରିଚିତ ବନ୍ଧୁ ହାତକଡ଼ା ପିନ୍ଧି ଆସୁଥିବାର ଦେଖି ଦେବସ୍ମାନ ଅନ୍ଧାରରେ ଲୁଚିଗଲା । ବନ୍ଧୁଜଣକ ତାକୁ ଦେଖିଲେ କାଳେ ଲଜ୍ଜିତ ହୋଇପଡ଼ିବେ, ଏହି ଭୟରେ ଲୁଚି ଯିବାକୁ ବାଧ୍ୟ ହେଲା ସେ । ସେମାନେ ସବୁ ପୋଲିସ ଭେନ୍‌ରେ ବସିଲାପରେ ପ୍ରହରାଜ ଖୋଜିଲା ଦେବସ୍ମାନକୁ । ଦେବସ୍ମାନ ଅନ୍ଧାରରୁ ବାହାରି

ଆସି ପ୍ରହ୍ଲାଦଙ୍କୁ କହିଲା, "କ'ଣ ଶେଷ ହେଲା ପ୍ରହ୍ଲାଦ ? ଆଉ କିଛି ବାକି ନାହିଁ ତ ? ଏଥର ଆମେ ଯିବା ?"

"ନାହିଁରେ ଭାଇ, ଶେଷ ହେଲା କେଉଁଠି ? ଦୁଇଟି ରୁମ୍ ସନ୍ଦେହଜନକ ଭାବରେ ରହିଗଲା ଯେ !"

"କେମିତି ?"

"ପ୍ରତ୍ୟେକ ରୁମ୍‌ରେ ଜଣେ ଜଣେ ଭଦ୍ରଲୋକ ସେମାନଙ୍କ ସ୍ତ୍ରୀଙ୍କୁ ନେଇ ରହିଥିବାର କହିଲେ ।"

"ସେମାନେ ପ୍ରକୃତରେ ତାଙ୍କ ସ୍ତ୍ରୀ ବୋଲି ଜାଣିଲୁ କେମିତି ?"

"ଆରେ ଭାଇ, ସେଇତ ମୋ ସନ୍ଦେହ । ସେମାନେ ହୁଏତ ମିଛ କହିଦେଇ ଆମକୁ ଠକିବାକୁ ଚେଷ୍ଟା କରିଥାଇ ପାରନ୍ତି ।"

"ହୋଇପାରେ, ତେବେ ସେମାନଙ୍କ ରୁମ୍ ଦୁଇଜଣିଆ ନା ଜଣିକିଆ ?"

"ନା ଭାଇ, ଦୁଇଜଣିଆ ।"

"ତା'ହେଲେ ସେମାନେ ସ୍ୱାମୀ-ସ୍ତ୍ରୀ ହୋଇଥାଇ ପାରନ୍ତି ।"

"ହୋଇପାରେ । କାରଣ ଆମେ ଯେତେକଙ୍କୁ ଧରିଛୁ, ସେମାନେ ସମସ୍ତେ ଗୋଟିକିଆ ରୁମ୍‌ରେ କଲଗାର୍ଲମାନଙ୍କୁ ଧରି ରହିଥିଲେ । ଏମାନେ ହୁଏତ ସ୍ୱାମୀ-ସ୍ତ୍ରୀ ହୋଇଥାଇ ପାରନ୍ତି ।"

"ସେମାନେ ଯଦି ତୋଠୁଁ ଅଧିକ ଚାଲାଖ ହୋଇ ମୂଳରୁ ଦୁଇଜଣିଆ ରୁମ୍ ନେଇ ଏଇ କାଣ୍ଡ ଚଳାଇଥିବେ ?"

"ହୋଇପାରେ, ତେବେ ବର୍ତ୍ତମାନ ଉପାୟ ?"

"ଚିନ୍ତା କରନା, ମ୍ୟାନେଜରଙ୍କ ଖାତା ଦେଖିଦେଲେ କ'ଣ ଜଣା ପଡ଼ିଯିବନି ? ସେମାନେ ଯଦି ସ୍ୱାମୀ-ସ୍ତ୍ରୀ ହୋଇଥିବେ, ମୂଳରୁ ଖାତାରେ ଦୁଇଜଣଙ୍କ ନାମ ଲେଖାଥିବ ଓ ସେମାନେ ଦସ୍ତଖତ ମଧ୍ୟ କରିଥିବେ ।"

"ଠିକ୍ କଥା କହୁଛୁ ଦେବସ୍ମାନ । ଚାଲ, ମ୍ୟାନେଜରଙ୍କ ଖାତା ଦେଖିଦେବା ।"

ଦେବସ୍ମାନ ଓ ପ୍ରହ୍ଲାଦ ଯାଇ ହୋଟେଲ ଖାତା ତନଖି କଲେ । ପ୍ରକୃତରେ ରୁମ୍ ନମ୍ବର ଅଠର ଓ ଅ◌ଣତରିଶରେ ସ୍ୱାମୀ-ସ୍ତ୍ରୀ ଦୁହେଁ ଦସ୍ତଖତ କରିଛନ୍ତି । ସେମାନେ କଲଗାର୍ଲ ହୋଇଥିଲେ ଦୁ'ଜଣଙ୍କ ଦସ୍ତଖତ ଖାତାରେ କଦାପି ନ ଥାନ୍ତା ।

"ଆରେ, ମେନେଜରଙ୍କୁ ଆରେଷ୍ଟ କରିଛୁ ନା ନାହିଁ ?" ଦେବସ୍ମାନ ପଚାରିଲା ।

"ସେ କେତେବେଳୁ ଆରେଷ୍ଟ ହୋଇ ପୋଲିସ ଭେନ୍‌ରେ ବସି ସାରିଲେଣି ।"

ଆରେଷ୍ଟ ହୋଇଥିବା ଲୋକଗୁଡ଼ିକୁ ପୋଲିସ ଭେନ୍‌ରେ ଥାନାକୁ ପଠାଇଦେଇ ପ୍ରହ୍ଲାଦ ଓ ଦେବସ୍ମାନ ସେମାନଙ୍କ ଗାଡ଼ି ପାଖକୁ ଚାଲି ଆସିଲେ । ଆସୁ ଆସୁ ପ୍ରହ୍ଲାଦ ପଚାରିଲା, "ତୁ ସେତେବେଳେ ଅନ୍ଧାରରେ ଠିଆ ହୋଇ କ'ଣ କରୁଥିଲୁ କରେ ?"

"ଆରେ ଭାଇ, ଆଉ କରନ୍ତୁ କଅଣ ? ମୋର ଜଣେ ପରିଚିତ ବନ୍ଧୁ ଆରେଷ୍ଟ ହୋଇ ଯାଉଥିଲେ ପୋଲିସ ଭେନ୍‌କୁ । ମୋତେ ଦେଖିଲେ କାଳେ ଅପ୍ରସ୍ତୁତ ହୋଇ ପଡ଼ିବେ, ସେଥି ଭୟରେ ଅନ୍ଧାରରେ ମୁଁ ଲୁଚି ଯାଉଥିଲି ।"

"ଭଲ, ଅପରାଧ କରିବାଲାକୁ ଲାଜ ସରମ ନାହିଁ, ଦେଖିଲାବାଲାକୁ ଲାଜ । ଯୁଗ ଓଲଟା ହେଲା । ସିଏ କିଏ କରେ ?"

"ତୁ ଚିହ୍ନିନୁ ତାଙ୍କୁ ? ସେ ପରା ହେଉଛନ୍ତି ହୋମ୍ ଡେପୁଟି ସେକ୍ରେଟେରୀ, ମିଷ୍ଟର ସିହ୍ନା । ଗତ ମନ୍ତ୍ରିମଣ୍ଡଳରେ ତାଙ୍କ ଶ୍ୱଶୁର ଅବକାରୀ ମନ୍ତ୍ରୀ ନ ଥିଲେ ?"

"ଆଁ, ଏମିତି ? ଆରେ, ମୋତେ ଟିକିଏ ଚିହ୍ନାଇଦେଲୁନି ସେ ଭଦ୍ରଲୋକଙ୍କୁ । ବଡ଼ ସଉଖିନିଆ ଲୋକ ତ ! ଏଇଠି ଘର, ପୁଣି ଏଠା ହୋଟେଲରେ ଏତେ ରସିକାମୀ ?"

"ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ପ୍ରହରାଜ, ସେ ଭଦ୍ରଲୋକ ବିବାହିତ, ତାଙ୍କ ସ୍ତ୍ରୀ ପୁଣି ବେଶ୍ ସୁନ୍ଦରୀ ଓ ଆଧୁନିକା । ସେ ଭଦ୍ରଲୋକ ତାଙ୍କ ନିଜ ସୁନ୍ଦରୀ ସ୍ତ୍ରୀକୁ ଛାଡ଼ି ଏଠିକି କାହିଁକି ଆସିଛନ୍ତି ବୁଝି ହେଉନି । ତାଙ୍କ ସହିତ ହାତକଡ଼ା ଦିଆଯାଇ ସେଇ ଯେଉଁ ଯୁବତୀଟି ଯାଉଥିଲା, ସେ ତ ସେତେ ସୁନ୍ଦରୀ ନୁହେଁ । ତାଙ୍କ ନିଜ ସ୍ତ୍ରୀର ପାସଙ୍ଗରେ ପଡ଼ିବନି ।

"ତୁ ପିଲାଲୋକ ଦେବ, ବାହା ତ ହୋଇନୁ ଜାଣିବୁ କେମିତି ? ତୋର ସେସବୁର କାରଣ ନ ଜାଣିବା ହିଁ ଭଲ ।"

"ତୁ ବଡ଼ ହୋଇଛୁ ବୋଲି କ'ଣ ସବୁ ଜାଣିଛୁ ? ତୁ ଆଉ ଏତେ ବାବୁଫୁରସି ଦେଖାନା ।"

"ଆରେ, ଏହି ଦୁନିଆରେ ବହୁଲୋକ ଅଛନ୍ତି, ନିଜ ସୁନ୍ଦରୀ ସ୍ତ୍ରୀ ଥାଉଁ ଥାଉଁ ଅନ୍ୟ ସ୍ତ୍ରୀ ପ୍ରତି ମନ ବଳାନ୍ତି । ସେ ସ୍ତ୍ରୀଟି ନିଜ ସ୍ତ୍ରୀଠାରୁ ଅଧିକ ସୁନ୍ଦରୀ ହୋଇଥାଉ ବା ନ ହୋଇଥାଉ । କିଏ ଜାଣେ, ଏହା ତାଙ୍କ ପାଇଁ ହୁଏତ ଏକପ୍ରକାର'ସ୍ପ୍ରିଲାଞ୍ଚ ବି ହୋଇ ପାରିଥାଏ । ଆଜିକାଲି ଲୋକେ ତ କାମ ହାସଲ ପାଇଁ ଟଙ୍କା ସାଙ୍ଗକୁ ଏଭଳି'ଲାଞ୍ଚ ବି ତ ଦେଉଛନ୍ତି ।"

"ଯାହାକହି ପ୍ରହରାଜ, ମୋତେ ଏସବୁ କେମିତି କେମିତି ଜଣାପଡ଼ୁଛି । ବିବାହିତ ଲୋକ ନିଜ ସ୍ତ୍ରୀଙ୍କୁ ଛାଡ଼ି ଅନ୍ୟ ସ୍ତ୍ରୀ ପ୍ରତି..."

"ତୁ ପିଲାଲୋକ ଦେବ, ଏସବୁ ସମ୍ପର୍କରେ ଚିନ୍ତା ନ କରିବା ଭଲ । ବଡ଼ ହୋଇନୁ କି ବରଯାତ୍ରୀ ବି ଯାଇନୁ, ଜାଣିବୁ କେମିତି ?"

"ଥାଉ ଥାଉ, ତୁ ବଡ଼ ହୋଇଛୁ ବୋଲି ସ୍ୱର୍ଗରୁ ବୁଲି ଆସିଛୁ ବୋଲି ଭାବ ନା ।"

"ଦେଖ୍ ଦେବ, ତୋତେ ପ୍ରତିଦିନ ସନ୍ଧ୍ୟାବେଳେ ସକାଳେ ଖାଲି ରସଗୋଲା କି ସନ୍ଦେଶ ଖାଇବାକୁ ଦିଆଗଲା, ଦିନେ ନୁହେଁ ଦୁଇଦିନ ନୁହେଁ, ମାସ ମାସ ଧରି । କିଛିଦିନ ପରେ ଦେଖିବୁ ତୋତେ ରସଗୋଲା କି ସନ୍ଦେଶ ଆଉ ଭଲ ଲାଗିବନି ଖାଇବାକୁ । ତୋ

ମନ ହେବ, ରାଗ ରାଗ ତେଲଛଣା ବରା କି ପିଆଜି ମିଳନ୍ତା କି ଭଲ ଲାଗନ୍ତା । ହଇରେ, ରସଗୋଲା ସନ୍ଦେଶଠାରୁ ବରା କି ପିଆଜି କ'ଣ ଭଲ ଜିନିଷ ? ତେବେ ମନ ହୁଏ କାହିଁକି ? ଏଥର ଉତ୍ତର ପାଇଲୁ ତୋ ପ୍ରଶ୍ନର ?"

"ଥାଉ, ଥାଉ, ତୋର ସେସବୁ ଉପମା, ଅଳଙ୍କାର । ମୋର ସେସବୁ ଜାଣିବା ଦରକାର ନାହିଁ । ତୁ ଏବେ ଥାନାକୁ ଯାଆ । ମୁଁ ଘରକୁ ଯାଉଛି । ରାତି ଆସି ରଦଣ୍ଟା ହେଲାଣି । କାଲି ସକାଳେ ପୁଣି ଅଫିସ୍ ଅଛି ।"

ପ୍ରହରାଜ ଥାନାରେ ପହଞ୍ଚି ହଳ ହଳ ହୋଇ ହାତକଡ଼ି ଲାଗିଥିବା ପୁରୁଷ ଓ ସ୍ତ୍ରୀଙ୍କୁ ଅଲଗା କରି ପୁରୁଷଙ୍କୁ ପୁରୁଷ ହାଜତକୁ ଓ ସ୍ତ୍ରୀମାନଙ୍କୁ ସ୍ତ୍ରୀ ହାଜତକୁ ପଠାଇ-ଦେଲା । ସଙ୍ଗେ ସଙ୍ଗେ ଫୋନ୍ ଧରିଲା ଡେପୁଟି ସେକ୍ରେଟେରି ସିହ୍ନାଙ୍କ ଘରକୁ । ଉଦ୍ଦେଶ୍ୟ, ଖବର ଦେଇଦେଲେ ତାଙ୍କୁ ଜାମିନରେ ନେବା ବ୍ୟବସ୍ଥା ସକାଳ ହେବା ପୂର୍ବରୁ ଯେମିତି ହୋଇଯାଏ । ନଚେତ୍ ସବୁକଥା ପଦାରେ ପଡ଼ିଯିବ ।

ଫୋନ୍‌ରେ ତାଙ୍କ ସ୍ତ୍ରୀ କହିଲେ, "ଡେପୁଟି ସେକ୍ରେଟେରି ଟୁର୍‌ରେ ଯାଇଛନ୍ତି ଅନୁଗୁଳ । ଆସନ୍ତାକାଲି ଫେରିବେ ।"

ଏହାଶୁଣି ପ୍ରହରାଜ ନ ହସି ରହି ପାରିଲା ନାହିଁ । ଭାବିଲା, ଆହା, ଆମ ଦେଶର ସ୍ତ୍ରୀଗୁଡ଼ାକ କେଡ଼େ ସରଳା ସତେ ? ସ୍ୱାମୀ ଏଭଳି ଜଘନ୍ୟ କାର୍ଯ୍ୟରେ ଲିପ୍ତ, ଅଥଚ ସତୀ ସାଧ୍ୱୀ ସ୍ତ୍ରୀ ତାହା ଜାଣିପାରୁ ନାହାନ୍ତି । ସେମାନଙ୍କ ସ୍ୱାମୀ ଗୋଟାସାରା ସାଧୁପୁରୁଷ ବୋଲି କେତେ ପୂଜା କରୁ ନାହାନ୍ତି ସତେ ! ଏଡ଼େ ସରଳା ସ୍ତ୍ରୀଲୋକଙ୍କୁ ସେମାନଙ୍କ ସ୍ୱାମୀ କେତେ ପ୍ରତାରଣା କରୁ ନାହାନ୍ତି ପ୍ରକୃତରେ ? ବାଧହେଲା ସବୁକଥା ତାଙ୍କ ସ୍ତ୍ରୀଙ୍କୁ ଫୋନ୍‌ରେ ଫିଟାଇ କହିବାକୁ । ସକାଳ ହେବା ପୂର୍ବରୁ ତାଙ୍କ ଯାମିନର ବ୍ୟବସ୍ଥା ନ କଲେ ସବୁକଥା ପଦାରେ ପଡ଼ିଯିବ ବୋଲି ପ୍ରହରାଜ କହିଲା ।

ନିଜ ସ୍ୱାମୀ ଆରେଷ୍ଟ ହେବା କଥା ଶୁଣି ମିସେସ୍ ସିହ୍ନାଙ୍କ ମୁଣ୍ଡ ଖରାପ ହୋଇଗଲା । ସେ ଦୌଡ଼ିଲେ ପୋଲିସ ହାଜତକୁ । ବଡ଼ କାକୁତିମିନତି କଲେ ପ୍ରହରାଜ-ଠାରେ, ଖଲାସ କରିଦେବା ପାଇଁ । ଅନ୍ୟ ଲୋକମାନେ ହାଜତରେ ଥିଲାବେଳେ ଏହାଙ୍କୁ କେମିତି ସେ ଖଲାସ କରିଦେବ ରାଜି ହେଲାନି ପ୍ରହରାଜ । ଏହି ରାତି ଭିତରେ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଧରାଧରି କରି ଯାମିନ୍ ବ୍ୟବସ୍ଥା କରି ପାରିଲେ ସବୁଠାରୁ ଭଲ ହେବ ବୋଲି କହି ବିଦାୟ କରିଦେଲା ପ୍ରହରାଜ ।

ବଡ଼ ମନ କଷ୍ଟରେ ଫେରି ଆସିଲେ ମିସେସ୍ ସିହ୍ନା । ଏଭଳି ଏକ ଲଜ୍ଜାଜନକ କଥା ବାପାଙ୍କୁ କେମିତି ବା କହିବେ । ରାତି ଭିତରେ କେଉଁ ଉଚ୍ଚ ଅଫିସରଙ୍କ ଦୁଆରେ ଏଭଳି ଏକ ହୀନ କଥା ପାଇଁ ସାହାଯ୍ୟ ଭିକ୍ଷା କରିବେ ? ନିଜ ବଂଶର ଯାହାକିଛି ସମ୍ମାନ ଅଛି, ତାହା ଏଥିରେ ଧୂଳିସାତ୍ ହୋଇଯିବ । ସକାଳ ହେଲାକ୍ଷଣି ସବୁକଥା ପଦାରେ ପଡ଼ିଯିବ । ଲୋକଙ୍କୁ ସେ ଆଉ ମୁହଁ ଦେଖାଇ ପାରିବେନି । ଅସହାୟା ପାଗଳିନୀଙ୍କ ଭଳି

ସେ ବର୍ତ୍ତମାନ କ'ଣ କରିବେ ଭାବି ଠିକ୍ କରି ପାରିଲେନି । ଘରକୁ ଫେରିବେ କଅଣ, ଫେରିଲାବେଳେ ମାଲଗୋଦାମ ନିକଟରେ ଏକ ଚଳନ୍ତା ଟ୍ରେନ୍ ଆଗରେ ଡେଇଁପଡ଼ି ଆତ୍ମହତ୍ୟା କରି ସ୍ୱାମୀଙ୍କ ପାପର ପ୍ରାୟଶ୍ଚିତ୍ତ କଲେ ।

## ସାତ

ଏହି ଘଟଣାର ଠିକ୍ ଦୁଇଦିନ ପରେ । କଟକର ସୁବିଖ୍ୟାତ ଆଭିଜାତ୍ୟ ଭରା ହୋଟେଲ ଅପସରାରେ ହେଲା ପୋଲିସର ଚଢ଼ାଉ । ଏହି ହୋଟେଲ ଜୁଆଖେଳ ଓ କାବାରେଟ ନାଚ ପାଇଁ କଟକରେ ବିଖ୍ୟାତ । ବହୁ ଧନୀ ଘରର ପିଲାମାନେ ଏଠାକୁ ନାଚ ଦେଖିବାକୁ ଆସନ୍ତି । ଏହି ହୋଟେଲର ଭୂମିତଳ ଶୀତତାପ ନିୟନ୍ତ୍ରିତ ମହଲାରେ ଜୁଆଖେଳ ହୁଏ । ବହୁ ବଡ଼ ବଡ଼ ଲୋକ ଏପରିକି ଅଫିସରମାନେ ମଧ୍ୟ ଏହି ଜୁଆଖେଳରେ ଭାଗ ନେବାକୁ ଆସନ୍ତି ।

ଘେରାଉ ହେବା ସଙ୍ଗେ ସଙ୍ଗେ ପୋଲିସ ଅଫିସରମାନେ ହୋଟେଲର ତଳ ମହଲାରେ ପଶିଗଲେ । ସଙ୍ଗେ ସଙ୍ଗେ ଜୁଆଖେଳର ସାଜ ସରଞ୍ଜାମ ସହିତ ଜୁଆଖେଳରେ ଲିପ୍ତଥିବା ଲୋକମାନଙ୍କୁ ଧରି ପକାଇଲେ । ଉପର ମହଲାରେ କାବାରେଟ ନାଚ ଚାଲିଥାଏ । ବହୁ ଭଦ୍ରଲୋକ ଓ ମହିଳା ଏହି ନାଚ ଦେଖୁଥା'ନ୍ତି । ଦେବସ୍ନାନ ଏଥିପୂର୍ବରୁ କେବେ କାବାରେଟ ନାଚ ଦେଖିବାର ସୁଯୋଗ ପାଇ ନ ଥିଲା । ସେ ଓ ପ୍ରହରାଜ ନାଚ ଦେଖିବା ଆଶାରେ ହୋଟେଲ ଭିତରକୁ ପଶିଯାଇ ଗୋଟିଏ ଟେବୁଲ ପାଖରେ ବସି ଚା ମଗାଇଲେ । ପ୍ରହରାଜର ଦୃଷ୍ଟି ନିବଦ୍ଧ ଥାଏ କାବାରେଟ ନାଚ ଉପରେ ।

ନାଚ ଦେଖୁ ଦେଖୁ ପ୍ରହରାଜ କହିଲା, "ନାଚିଲାବାଲୀକୁ ଦେଖୁଛୁ କି ଦେବ ? କି ନାଚ ନାଚୁଛି ସତେ ? କି ଚେହେରା ଫିଗ୍ରେ ପାଇଛିରେ ସେ ଟୋକୀଟା ? ନାଚ ପରେ ଏମାନଙ୍କ କାମ କ'ଣ ଏଠି ଜାଣୁ ?"

"ଆଉ କି କାମ ?"

"ବଡ଼ ବଡ଼ ଲୋକଙ୍କୁ ସାନ୍ନିଧ୍ୟ ଦେବା । ହଜାର ହଜାର ଟଙ୍କା ଦେଇ ଲୋକମାନେ ଲାଇନ ଦେଇଛନ୍ତି ଆଜି ରାତି ପାଇଁ । ନାଚଟା କ'ଣ ଏମାନଙ୍କ ବଡ଼ କାମ ? ସେ ହେଲା ଏକ ବାହାନା ।"

ସେମାନଙ୍କଠାରୁ ଅଳ୍ପଦୂରରେ ଆଉ ଏକ ଟେବୁଲରେ କେତେଗୁଡ଼ିଏ ଝିଅଙ୍କୁ ଧରି ମଦ ଖାଉଥିଲା ଶୁଭ୍ରା । ଦେବସ୍ନାନ ଓ ପୋଲିସ ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଦେଖି ଶୁଭ୍ରା ଚାଲି

ଆସିଲା ସେମାନଙ୍କ ପାଖକୁ । ନମସ୍କାର ଜଣାଇ ପଚାରିଲା, "କ'ଣ ଆଜି, ଆପଣମାନେ ଏଠି ?

"କାହିଁକି ? ଆମେ କ'ଣ ଏଠାକୁ ଆସିବାକୁ ଯୋଗ୍ୟ ନୋହୁଁ ନା କଅଣ ?" ଦେବସ୍ମାନ କହିଲା ।

"ନା ସାର୍, ମୁଁ ତା କହୁନି । ତେବେ ଏଠାରେ ଆପଣମାନଙ୍କୁ କେବେ ଦେଖିନି ବୋଲି ପଚାରିଲି ।"

"ଓଃ, ତା'ହେଲେ, ଆପଣ ଏଠାକୁ ସବୁଦିନ ଆସନ୍ତି ଶୁଭ୍ରାଦେବୀ ?"

"ସବୁଦିନେ ନୁହେଁ, ଦିନେ ଦିନେ ମୋ ସଙ୍ଗୀମାନଙ୍କୁ ଧରି ଚାଲିଆସେ ।"

"ସଙ୍ଗୀ ନା ସଙ୍ଗିନୀ ?"

"ହଁ ସାର୍, ଭୁଲ ହୋଇଗଲା, ସଙ୍ଗିନୀ ।

ଏତକ କହୁଁ କହୁଁ ହଠାତ୍ କାବାରେଟ ନାଚ ବନ୍ଦ ହୋଇଗଲା । ଲୋକଙ୍କ ଭିତରେ ଇତସ୍ତତତା ଦେଖାଗଲା । ପୋଲିସ ପୋଲିସ ବୋଲି ଏକ ଅସ୍ପଷ୍ଟ ଶବ୍ଦ ଗୁଞ୍ଜରି ଉଠିଲା ହୋଟେଲ ଭିତରେ । ଭୂମିତଳ ମହଲାରୁ ଆରେଷ୍ଟ କରି ଜୁଆଡ଼ୀମାନଙ୍କୁ ଧରି ଆଣିଲେ ପୋଲିସ ଅଫିସରମାନେ । ସେମାନଙ୍କୁ ଆସିବାର ଦେଖି ଶୁଭ୍ରାଠାରୁ ବିଦାୟ ନେଇ ଚାଲିଗଲେ ଦେବସ୍ମାନ ଓ ପ୍ରହ୍ଲାଦ ।

ଶୁଭ୍ରା ଜାଣିନେଲା, ଏହି ଚଢ଼ାଉର ମୂଳରେ ଅଛି ଦେବସ୍ମାନ ଓ ତା'ର ବନ୍ଧୁ । ଶୁଭ୍ରା ଓ ତା'ର ସଙ୍ଗିନୀମାନେ ହୋଟେଲରୁ ବାହାରିଗଲାବେଳକୁ ବାଟରେ ଠିଆ ହୋଇ ଦେବସ୍ମାନ ଲକ୍ଷ୍ୟ କରୁଥିଲା ଏହି ଜୁଆଡ଼ୀମାନଙ୍କୁ । ଏଠି ବି ସେହି ବଡ଼ ବଡ଼ ଅଫିସର ଓ ଧନୀ ଲୋକଙ୍କର ପୁଅ ଝିଅମାନେ । କେତେ ଟୋକା ଅଫିସର ବି ଅଛନ୍ତି । ହୋଟେଲରୁ ବାହାରି ଯାଉ ଯାଉ ଜୁଆଡ଼ୀମାନଙ୍କୁ ଦେଖିବା ପାଇଁ ଶୁଭ୍ରା ମଧ୍ୟ ଦେବସ୍ମାନ ପାଖରେ କିଛି ସମୟ ପାଇଁ ଠିଆ ହୋଇଗଲା । ସେମାନଙ୍କୁ ଦେଖୁ ଦେଖୁ ପାଟିକରି ଉଠିଲା, "ସାର୍, ସାର୍, ସେହି ଯେଉଁ ଭଦ୍ରଲୋକ ଯାଉ ନାହାନ୍ତି ସେ ପରା ମୁଖ୍ୟମନ୍ତ୍ରୀଙ୍କ ପୁତୁରା, ସେ ଆର ଜଣକ ହେଉଛନ୍ତି ପୋଲିସ ଆଇ.ଜି.ଙ୍କ ସଢ଼ୁ । ସେ ଯେଉଁ ସ୍ତ୍ରୀଲୋକଟି ଯାଉ ନାହାନ୍ତି, ସେ ଏହି ସହରର ଜଣେ ବଡ଼ ବ୍ୟବସାୟୀ ।

"ତୁମେ ଜୁଆ ଖେଳନି ଶୁଭ୍ରା ?" ଧୀରକଣ୍ଠରେ ଶୁଭ୍ରାଆଡ଼କୁ ନ ଅନାଇ ପଚାରିଲା ଦେବସ୍ମାନ ।

"ନା ସାର୍ ।"

"କାହିଁକି ? ସ୍ତ୍ରୀ ଲୋକମାନେ ତ ଜୁଆ ଖେଳୁଛନ୍ତି । ତୁମେ ଖେଳିପାରଥା'ନ୍ତ ?"

"ନା ସାର୍, ମୋତେ ଜୁଆ ଖେଳିବାକୁ ଘୃଣା ଲାଗେ ।"

"ତୁମକୁ ଏ ହୋଟେଲଟା କ'ଣ ଘୃଣା ଲାଗେନି ?"

"ସାର୍, ଏଠାରେ କୁଆଖେଳ ହେଉଛି ଜାଣିଥିଲେ ମୁଁ ଏଠାକୁ କଦାପି ଆସି ନ ଥାନ୍ତି।"

"ନାଚଟା, ତୁମର ବୋଧହୁଏ ପସନ୍ଦ ?"

"ନା ସାର୍, ସେମିତି ନୁହେଁ।"

"ତେବେ ଏତେ ପଇସା ଖରଚ କରି ଏଠାକୁ ଆସ କାହିଁକି ?"

"ସାର୍, ପଇସା ତ ଅଛି। ଖରଚ କରିବାକୁ ପଡ଼ିବ, ଏ ଗୋଟାଏ ପ୍ରକାର ମନୋରଞ୍ଜନ।"

"ହେଉ, ତୁମେ ଥାଅ ଶୁଭ୍ରା, ମୁଁ ଆସୁଛି।" ଏତିକ କହିଦେଇ ଦେବସ୍ନାନ ବାହାରିଗଲି ସେଠୁ।

"ନାହିଁ ସାର୍, ଆମେ ବି ଯାଉଛୁ।"

ସହରରେ ଏହିଭଳି ଛିନୋଟି ଗୁଜବ ଚଢ଼ାଉ ହୋଇଯିବା ପରେ ସହର ପୁରିପୁରି ଅଣ୍ଡା ପଡ଼ିଗଲା। କାଁ ଭାଁ କେଉଁଠି ହିପ୍ପୀ ଟୋକାମାନେ ସନ୍ଧ୍ୟାବେଳେ ଅନ୍ଧାରିଆ ସ୍ଥାନ ଦେଖି ନିରୀହ ପଥିକଙ୍କଠାରୁ ଜିନିଷପତ୍ର, ସ୍ତ୍ରୀ ଲୋକଙ୍କ ବେକରୁ ସୁନାହାର, କାନରୁ ଗହଣା ଆଦି ଛଡ଼ାଇ ନେବାର ଘଟଣା ଶୁଣି ସେ ସବୁ ସ୍ଥାନରେ କଡ଼ା ପୋଲିସ ମୁତୟନ କରିଗଲା। ହିପ୍ପୀ, ଲମ୍ବାବାଳିଆ ଟୋକାଏ ଏହିସବୁ କାଣ୍ଡ ମୂଳରେ ଥିବାରୁ ଯେଉଁଠି ହିପ୍ପୀ ଟୋକାମାନଙ୍କୁ ଦେଖିଲେ ପଚରାଉଚରା କରିବା ପାଇଁ ଥାନାକୁ ଡାକି ନିଆଗଲା। ହିପ୍ପୀ ଟୋକାମାନେ ଆରେଷ୍ଟ ହେଉଛନ୍ତି ବୋଲି ଏକ ଗୁଜବ ରାଷ୍ଟ୍ର ହୋଇଗଲା ସାରା କଟକ ସହରରେ। ଏହାଦେଖି ଯିଏ ଯେଉଁଠି ହିପ୍ପୀ ଟୋକାଏ ଥିଲେ, ଆରେଷ୍ଟ ହେବା ଭୟରେ ବାଳସବୁ କାଟି ପକାଇଲେ। ସେଲୁନ୍‌ମାନଙ୍କରେ ଏତେ ଭିଡ଼ ହେଲା ଯେ ଜଣ ଜଣଙ୍କର ବାଳ କାଟିବା ପାଇଁ ବାରିକମାନେ ଦଶ ପନ୍ଦର ଟଙ୍କାରୁ କମ୍ ହେଲେ କାଟିବେନି ବୋଲି ଅଡ଼ି ବସିଲେ।

× × × ×

କଟକ ମ୍ୟୁନିସିପାଲିଟି ଆଲୋଚନା କକ୍ଷ। ସହରର ବିଶିଷ୍ଟ ନାଗରିକ ଓ ମ୍ୟୁନିସିପାଲିଟି କର୍ମକର୍ତ୍ତାମାନଙ୍କର ଏକ ମିଳିତ ଅଧିବେଶନ ବସିଥାଏ। ଜିଲ୍ଲାପାଳ କାର୍ଯ୍ୟୋପଲକ୍ଷେ ଅନୁପସ୍ଥିତ ଥିବାରୁ ତାଙ୍କ ପ୍ରତିନିଧିତ୍ୱ କରୁଥାନ୍ତି ଅତିରିକ୍ତ ଜିଲ୍ଲାପାଳ ଦେବସ୍ନାନବାବୁ। ଆଲୋଚନାର ବିଷୟବସ୍ତୁ ଥାଏ ସହରର ଯାନବାହାନ ସମସ୍ୟା। ସହରର ଲୋକସଂଖ୍ୟା ବୃଦ୍ଧି ହେତୁ ରେକ୍ସା ଆଦିର ଯାତାୟାତ ଭଡ଼ା ଅତ୍ୟଧିକ ବୃଦ୍ଧି ପାଇଥିବାରୁ ସହରର ନାଗରିକମାନେ ଅତିଷ୍ଠ ହୋଇ ପଡ଼ୁଥାନ୍ତି। ସହରର ଲୋକସଂଖ୍ୟା ଚାରିଲକ୍ଷରୁ ଅଧିକ। ହେଲେ ଏତେ ଲୋକଥିବା ସହର ଭିତରେ ଯିବା ଆସିବା ପାଇଁ ରେକ୍ସା ଛଡ଼ା ଅନ୍ୟ କିଛି ଯାନବାହାନ ନାହିଁ। ରିକ୍ସାମାନଙ୍କର ଯାତାୟାତ ଭଡ଼ା ଏତେ ଆକାଶଛୁଆଁ ହେଲାଣି ଯେ, ସାଧାରଣ ନାଗରିକମାନଙ୍କ ଶକ୍ତି ବାହାରେ। ତେଣୁ ଏ ପରିସ୍ଥିତିରେ

ସହରର ବର୍ଦ୍ଧିଷ୍ଣୁ ଜନ ସମାଜକୁ କିପରି ସମ୍ଭାଳିବାକୁ ହେବ, ସେହି ଥାଏ ଆଲୋଚନାର ବିଷୟବସ୍ତୁ । ସହରର ଗୋଟିଏ ଦୁଇଟି ରାସ୍ତାରେ ଟାଉନ୍‌ବସ୍ ପ୍ରଚଳନ ଧର୍ମକୁ ଆଖିଠାର ମାରିଲା ଭଳି ହୋଇଛି । ଏହା ସହରବାସୀଙ୍କ ଯାତାୟାତରେ ସେମିତି କିଛି ଉପକାର କରିପାରୁନି । ଗୋଟିଏ ଦୁଇଟି ଲାଇନ୍‌ରେ ଅଳ୍ପ କେତେଖଣ୍ଡ ଧଡ଼ଡ଼ା ଟାଉନ୍‌ବସ୍‌ର ପ୍ରଚଳନ ଥିବାରୁ ଏହା ଅନେକ ସମୟରେ ଖରାପ ହୋଇ ପଡ଼ୁଛି । ଯିବାଆସିବା ବେଳେ ଯାତ୍ରୀମାନଙ୍କୁ ଟ୍ରକ୍‌ରେ ବସ୍ତା ଲଦିଲାଭଳି ମଣିଷ ଉପରେ ମଣିଷ ଲଦି ନିଆଯାଉଛି । ସହରର ଏହି ଅଳ୍ପ କେତେଗୋଟି ଟାଉନ୍‌ବସ୍‌କୁ କେହି ଯଦି ଲକ୍ଷ୍ୟକରେ, ତେବେ ସେ ଲଜ୍ଜାରେ ମୁଣ୍ଡ ତଳକୁ କରିବ । ସେ ଭାବି ପାରିବନି ସେ ଏକ ସଭ୍ୟ ଦୁନିଆରେ ଅଛି କି କଅଣ ?

ଆଲୋଚନାରେ ସଭ୍ୟମାନେ କଟକ ସହରର ଯାନବାହାନ ନୀତିକୁ ନାନା ଭାବରେ କଟୁ ସମାଲୋଚନା କରି ଏହାର ଏକ ସ୍ଥାୟୀ ପ୍ରତିକାର ହେବା ଉଚିତ ବୋଲି ଦାବୀ କରି ବସିଲେ । ସେମାନଙ୍କ ଦାବୀ ଦେଖି ମ୍ୟୁନିସିପାଲିଟି କର୍ମକର୍ତ୍ତାମାନେ ନାଚାର । ସମସ୍ତେ ଦେବସ୍ନାନବାବୁଙ୍କ ଆଡ଼କୁ ଅନାଉଥାନ୍ତି । ସେ ତ ଜିଲ୍ଲାପାଳଙ୍କ ପ୍ରତିନିଧି । ଏକ୍‌ଜିକ୍ୟୁଟିଭ୍ ଅଫିସରଙ୍କ ଅନୁରୋଧକ୍ରମେ ଦେବବାବୁ ଏହାର ସମାଧାନ କେମିତି କରାଯାଇ ପାରିବ ସେ ସମ୍ପର୍କରେ ଏକ ଯୋଜନା ଉପସ୍ଥାପିତ କଲେ । ତାଙ୍କ ମତରେ ସହରର ସବୁ ପ୍ରଧାନ ପ୍ରଧାନ ରାସ୍ତାରେ ଟାଉନ୍‌ବସ୍‌ର ବ୍ୟାପକ ପ୍ରଚଳନ ହେବା ଉଚିତ । ଟାଉନ୍‌ବସ୍‌ରେ ଯାତ୍ରୀମାନଙ୍କୁ ବସ୍ତା ଲଦିଲାଭଳି ଭରିତ ନ କରି ଅନ୍ୟ ସହରରେ ବିଶେଷତଃ ବୋମ୍ବେ ସହରରେ ଯେମିତି ଭଦ୍ର ଭାବରେ ନିଆଯାଉଛି ସେମିତି ହେବା ଉଚିତ ବୋଲି କହିଲେ । ଠିଆ ହେବା ଲୋକଙ୍କ ସଂଖ୍ୟା ସୀମିତ ହେବା ଉଚିତ । ତା'ଛଡ଼ା ସହର ଭିତରେ ବ୍ୟାପକ ଭାବରେ ଟେକ୍‌ସି ଓ ଟେମ୍ପୋର ପ୍ରଚଳନ ହେବା ଆବଶ୍ୟକ । ଏ ସବୁଥିରେ ମିଟରର ପ୍ରଚଳନ ହେବା ଏକାନ୍ତ ବାଞ୍ଛନୀୟ । ବୋମ୍ବେ, ଦିଲ୍ଲୀ ଆଦି ସହରରେ ଯେମିତି ମିଟର ଲାଗିଥିବା ଟେମ୍ପୋ ଆଦିର ପ୍ରଚଳନ ରହିଛି, କଟକରେ ସେମିତି ହେବା ଦରକାର । କେତେ ଦୂରକୁ ଗଲେ ଟେମ୍ପୋ କି ଟେକ୍‌ସି କେତେ ନେବ ଚୁକ୍ତି କରିବା ଦରକାର ନାହିଁ । ମିଟରରେ ଯେତେ ଦୂରକୁ ଯିବ, ସେହି ଅନୁସାରେ ପଇସାର ପରିମାଣ ଉଠୁଥିବ । ନିଜ ଅଭିପ୍ରେତ ସ୍ଥାନରେ ଓହ୍ଲାଇଲ, ମିଟର ଦେଖି ପଇସା ଦେଲ । ଟେମ୍ପୋ କି ଟେକ୍‌ସିବାଲା ସହିତ ଝିକରଝାକର ନାହିଁ । ସେ ବେଶି ମାଗିବ ନାହିଁ କି ତୁମେ କମ୍ ଦେବନି । ଭଦ୍ରୋଚିତ କାରବାର । କଟକରେ ସେପରି ହେବା ଦରକାର । ପ୍ରତ୍ୟେକ ବଡ଼ ବଡ଼ ଛକରେ ଟେମ୍ପୋ ଓ ଟାକ୍‌ସି ରହିଥିବା ଉଚିତ । କଟକ, ଭୁବନେଶ୍ୱର ଓ ଚୌଦ୍ୱାର ଭିତରେ ଯିବା ଆସିବା ପାଇଁ ଉଭୟଯାକ ଯାନକୁ ଅନୁମତି ଦିଆଯିବା ଦରକାର । ଅନେକେ କହିପାରନ୍ତି, ମିଟର ଲାଗିଥିବା ଟେକ୍‌ସି କି ଟେମ୍ପୋ ପ୍ରଚଳନ କଲେ ଚଳେଇଲା-ବାଲାଙ୍କର ବିଶେଷ ଲାଭ ହେବନି, ଏପରିକି ସେମାନଙ୍କ ମଜୁରି ଓ ପେଟ୍ରୋଲ ଖର୍ଚ୍ଚ ଉଠିବ

କି ନାହିଁ ସନ୍ଦେହ । କିନ୍ତୁ ଏହା ଠିକ୍ ନୁହେଁ । ମିଟର ପଦ୍ଧତି ପ୍ରଚଳନ କଲେ ଏ ଦୁଇଟି-ଯାକ ଯାନ ଲାଭଜନକ ହେବ । ଟେମ୍ପୋର ପ୍ରଥମ କିଲୋମିଟର ଭଡ଼ା ଚାରିଟଙ୍କା କି ପାଞ୍ଚଟଙ୍କା ଓ ଟେକ୍ସିର ଭଡ଼ା ନଅ କି ଦଶଟଙ୍କା ରଖିଲେ ବହୁ ଲୋକ ଏହାକୁ ବ୍ୟବହାର କରିପାରିବେ । ଯେଉଁ ପଇସାବାଲା ଲୋକମାନେ ରେକ୍ସାରେ ଯାଉଛନ୍ତି ସେମାନେ ନିଶ୍ଚୟ ଟେମ୍ପୋ କି ଟେକ୍ସିରେ ସହରର ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାକୁ ଅଧିକ ପସନ୍ଦ କରିବେ । ମ୍ୟୁନିସିପାଲିଟି ତରଫରୁ ପ୍ରଥମତଃ ପଚାଶଗୋଟି ଟେକ୍ସି ଓ ପଚାଶଗୋଟି ଟେମ୍ପୋ ଶହାବ୍ଦି ଭଡ଼ାରେ ଆଗ୍ରହୀ ଚାଳକମାନଙ୍କୁ ଦିଆଯିବା ଦରକାର । ଯିବା ଆସିବା ରେଟ୍ ମ୍ୟୁନିସିପାଲିଟି ଠିକ୍ କରିବ । ଯଦି ଏହା ଲାଭଜନକ ହୁଏ, ଦେଖିବେ ଅନ୍ୟମାନେ ଏ ଦିଗରେ ପଇସା ଖଟାଇବା ପାଇଁ ବାହାରି ଆସିବେ । ଏହାଫଳରେ ଅନେକେ କହିପାରନ୍ତି, ସାଇକେଲ ରେକ୍ସାମାନେ ବେକାର ହୋଇପଡ଼ିବେ । ତା ହେବନି, କାରଣ ସେମାନେ ସହର ଭିତରେ ପାଖ ପାଖ ସ୍ଥାନମାନଙ୍କୁ ଯିବେ । ଦୂର-ସ୍ଥାନକୁ ଟେମ୍ପୋ ଆଦି ଯିବ । ଏହାଫଳରେ ସାଇକେଲ ରିକ୍ସାମାନଙ୍କ ଆୟ କମିବ ନାହିଁ । ସହରର ଦୂର ଦୂରାନ୍ତରକୁ ଯିବା ପାଇଁ ଲୋକେ ସୁବିଧାରେ ଓ କମ୍ ସମୟ ମଧ୍ୟରେ ଯାଇପାରିବେ । ମିଟରବାଲା ଟେମ୍ପୋ ଯଦି ଲାଭଜନକ ହୁଏ, ତେବେ ବହୁ ସାଇକେଲ ରିକ୍ସାଚାଳକ ବେଙ୍କ୍‌ରୁ ଟଙ୍କା କରଜ ନେଇ ନିଜ ନିଜର ଟେମ୍ପୋ ଖରିଦ କରି ଚଳାଇବେ । ଏହାଫଳରେ ସହରର ଯାନବାହାନ ସମସ୍ୟାର ପ୍ରକୃତ ସମାଧାନ ହେବ । ମ୍ୟୁନିସିପାଲିଟି ହାତରେ ଯଦି ଯଥେଷ୍ଟ ଟଙ୍କା ନାହିଁ, ତେବେ ଏହି ପ୍ରାରମ୍ଭିକ କାର୍ଯ୍ୟ ପାଇଁ ପ୍ରଥମରୁ କୌଣସି ରାଷ୍ଟ୍ରାୟତ୍ତ ବେଙ୍କ୍‌ରୁ କରଜ ଆଣି କାମ ଆରମ୍ଭ କରାଯାଇପାରେ ।

## ଆଠ

"ସାର୍, ଆମ ଇନ୍‌ଫର୍ମରମାନେ ଖବର ଦେଇଛନ୍ତି, କଟକରେ ବିଦେଶୀ ଘଡ଼ିର ସ୍ମଗ୍‌ଲିଂ ଖୁବ୍ ଜୋରସୋରରେ ଚାଲିଛି । ଓମେଗା, ଟିସଟ୍, ରୋଲେକ୍ସ ଆଦି ସୁଇସ୍ ଘଡ଼ି କଟକର କେତେକ ନିର୍ଦ୍ଦିଷ୍ଟ ପାନ ଦୋକାନରେ ବିକ୍ରି ହେଉଛି ।"

"ଆଁ, ପାନ ଦୋକାନରେ ସୁଇସ୍ ଘଡ଼ି ? ତୁମେ କ'ଣ ଯେ କହୁଛ ମୁଁ ବୁଝି-ପାରୁନି ଗୋବିନ୍ଦ ? ପାନ ଦୋକାନରେ ବିଦେଶୀ ଘଡ଼ି କୁଆଡ଼ୁ ଆସିବ ? ଆରେ, ସେସବୁ କୋମ୍ପାନୀ ଗ୍ରୁପମରା ନକଲି ଘଡ଼ି ନୁହେଁ ତ ? ।"

"ନାହିଁ ସାର୍, ଆମ ଇନ୍‌ଫର୍ମର କହୁଥିଲା, ସେସବୁ ଅସଲି ଘଡ଼ି, ନକଲି ଘଡ଼ି ନୁହେଁ । ଦାମ୍ ବି ଖୁବ୍ ଅଧିକ । ହଜାରେ, ବାରଶହରୁ କମ୍ ନୁହେଁ ।"

"ଗୋଟାଏ ସେମ୍ପଲ୍ ଆଣିପାରିବ ଗୋବିନ୍ଦ ? ଦେଖିବା ପ୍ରକୃତରେ ସେଗୁଡ଼ିକ ଅସଲି ଘଡ଼ି କି ନୁହେଁ ।"

"ସେ ଘଡ଼ି ସବୁଦିନେ ଆସୁନି ସାର୍ । ଆସିବା ସଙ୍ଗେ ସଙ୍ଗେ ଚାଲି ଯାଉଛି । ତେଣୁ ପାଇବା କଷ୍ଟ ।"

"ହେଉ, ଚେଷ୍ଟାକର, ଯଦି ଗୋଟାଏ ମିଳିଯାଇପାରେ ।"

"ଚେଷ୍ଟା କରିବି ସାର୍ । ତେବେ ନିଶ୍ଚିତ ଭାବରେ କହିପାରୁନି ପାଇବି କି କଅଣ ।"

× × × ×

କଟକର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ପ୍ରହ୍ଲାଦଜଙ୍କ ଅଫିସ୍‌କକ୍ଷକୁ ପଶି ଆସିଲେ ଇନ୍‌ସପେକ୍ଟର ଗୋବିନ୍ଦ ଦାସ । ହାତରେ ଗୋଟିଏ ଦାମିକା ବିଦେଶୀ ଘଡ଼ି । ଘଡ଼ିଟିକୁ ଏସ୍.ପି. ସାହେବଙ୍କ ଟେବୁଲ ଉପରେ ଥୋଇ ଥୋଇ କହିଲା, "ସାର୍, ଇଏ ହେଉଛି ଗୋଟିଏ ଓମେଗା ଘଡ଼ି । ମୋର ଜଣେ ବନ୍ଧୁ ଏହାକୁ ଝିଅ ବାହାଘରବେଳେ ଜୋଇଁକୁ ଦେବା ପାଇଁ ବକ୍‌ସିବଜାରର ଏକ ପାନ ଦୋକାନରୁ କିଣିଛି । ଦାମ୍ କିଛି କମ୍ ନୁହେଁ, ହଜାରେ ଟଙ୍କା ।"

"ତୁମେ ସେ ପାନ ଦୋକାନକୁ ଜାଣିଛ ?"

"ହଁ ସାର୍, ଜାଣିଛି ।"

"ତାକୁ ଧରି ପକାଉନି ? ଥାନାକୁ ନେଇ ଆସି ଉତ୍ତମ ମଧ୍ୟମ ଦେଲେ ବଳେ ସେ ସବୁକଥା କହି ପକାଇବ ।"

"ନା ସାର୍, ତାକୁ ଧରିବା ସେତେ ସହଜ ନୁହେଁ । ମାଲ ପହଞ୍ଚୁ ପହଞ୍ଚୁ ସଙ୍ଗେ ସଙ୍ଗେ ଚାଲି ଯାଉଛି । କେତେବେଳେ ଆସୁଛି, କେଉଁଠୁ ଆସୁଛି, କେମିତି ଆସୁଛି ଜାଣିବା କଷ୍ଟକର ।"

ଘଡ଼ିଟିକୁ ପରୀକ୍ଷା କରୁ କରୁ ପ୍ରହ୍ଲାଦଜ କହିଲା, "ହଁ, ହଁ, ଗୋବିନ୍ଦ, ଇଏତ ଅସଲି ଘଡ଼ି । ନକଲି ଘଡ଼ି ପରି ଦିଶୁନି । ଏହି ଘଡ଼ି ସେହି ପାନ ଦୋକାନରେ ମିଳୁଛି ? ସେମାନେ ଏ ଘଡ଼ି ପାଉଛନ୍ତି କେଉଁଠୁ ?"

"ସେମାନଙ୍କୁ ଜଣେ ସ୍ମଗଲର କଲିକତାରୁ ଆସି ଯୋଗାଇଦେଇ ଚାଲି ଯାଉଛି । ସେ ଆସୁଛି ଇଷ୍ଟକୋଷ୍ଟ ଟ୍ରେନ୍‌ରେ, ଫେରି ଯାଉଛି ମାଡ୍ରାସମେଲ୍‌ରେ । ଥରକେ ଚାଳିଶ ପଚାଶଟା ଘଣ୍ଟାରୁ ବେଶି ଆଣୁନି । ପ୍ରତ୍ୟେକ ଦୋକାନୀକୁ ଗୋଟିଏରୁ ଅଧିକ ଦେଉନି ।"

"ଟଙ୍କା କ'ଣ ସଙ୍ଗେ ସଙ୍ଗେ ଆଦାୟ କରି ନେଇ ଯାଉଛି ?"

"ନା, ସାର୍, ସେ ସଙ୍ଗେ ସଙ୍ଗେ ପଇସା ନେଉନି । ସେ ଖାଲି ଦେଇ ଯାଉଛି । ନେବାଲୋକ ଅଲଗା । କଟକ ସହରରେ ସେମାନଙ୍କ ଏଜେଣ୍ଟ ଅଛନ୍ତି । ସେମାନେ ଟଙ୍କା ଆଦାୟ କରି କଲିକତାରେ ଦେଇ ଆସୁଛନ୍ତି । ସେମାନେ କେଉଁଦିନ ଆସୁଛନ୍ତି କହି

ହେବନି । ବେଳେବେଳେ ସେମାନଙ୍କ ଲୋକ ଆସି କଟକର ବଡ଼ ବଡ଼ ହୋଟେଲରେ ରହୁଛନ୍ତି । ଟଙ୍କା ଆଦାୟ କରି ନେଇ ଯାଉଛନ୍ତି । ଏହି ଲୋକମାନେ ଏମିତି ପୋଷାକ ପରିଚ୍ଛଦରେ ଆସୁଛନ୍ତି, ଦେଖିଲେ ସହଜରେ ସନ୍ଦେହ କରି ହେବନି ସାର୍ ।"

"ଆଁ, ଏମିତି ?"

"ହଁ, ସାର୍ । ଆପଣଙ୍କ ମନେଥିବ, ଗତଥର ଏଠା ନାରୀସେବା ସଦନକୁ ଗୋଟିଏ ଶାଢ଼ୀ ପ୍ରଦର୍ଶନୀ ଆସିଥିଲା । ସେହି ପ୍ରଦର୍ଶନୀର ମେନେଜର ଭାବରେ ଆସିଥିଲେ ଦୁଇଟି ଅଳ୍ପ ବୟସର ସୁନ୍ଦରୀ ଝିଅ । ସେମାନେ ରହୁଥିଲେ କଟକର ଆଭିଜାତ୍ୟଭରା ହୋଟେଲ ଏମ୍ବାସେଡ଼ରରେ । ସେମାନଙ୍କ ପୋଷାକପତ୍ର ଚାଲିଚଳଣି ଦେଖିଲେ କେହି ସେମାନଙ୍କୁ ସନ୍ଦେହ କରିବନି । ସେମାନେ ବେଳେବେଳେ ସନ୍ଧ୍ୟାବେଳେ ସେହି ପ୍ରଦର୍ଶନୀରେ ବୁଲନ୍ତି । ଆପଣ ସେମାନଙ୍କୁ ଦେଖିଥିବେ ନିଶ୍ଚୟ । ଅତି ସୁନ୍ଦର ଚେହେରା । ସେମାନଙ୍କର ଅସଲ କାମ ହେଲା ଟଙ୍କା ଆଦାୟ କରିବା । ସେମାନେ ଏତେ ଷ୍ଟାଇଲରେ ଥା'ନ୍ତି, ଦେଖିଲେ ଧନୀଘରର ଝିଅ ବୋଲି ସମସ୍ତେ କହିବେ ।"

"ସେମାନେ ପ୍ରଦର୍ଶନୀ ସହିତ ନ ଆସି ଏକା ଏକା ଆସି ହୋଟେଲରେ ରହି ଟଙ୍କା ଆଦାୟ କରି ଫେରି ଯାଇପାରନ୍ତେ ? ପ୍ରଦର୍ଶନୀ ସହିତ ଆସିବା ଉଦ୍ଦେଶ୍ୟ ?"

"ସେମାନେ ପ୍ରକୃତରେ ଟଙ୍କା ଆଦାୟ ପାଇଁ କି ପ୍ରଦର୍ଶନୀ ପାଇଁ ଆସି ନ ଥାନ୍ତି ସାର୍ । ବାହାରକୁ କିଛି ଗୋଟାଏ ଧନ୍ଦା ଦେଖାଇବେ ତ ? ନ ହେଲେ ଅଯଥା ସନ୍ଦେହର ପାତ୍ର ହେବେନି ?"

"ତେବେ କ'ଣ ପାଇଁ ସେମାନେ ଆସିଥାନ୍ତି ?"

"ସେମାନଙ୍କ ଅସଲ କାମ ହେଲା ସୁନା ସ୍ମଗଲିଂ । ସେମାନେ ଆସିଲାବେଳେ ନିଜ ନିଜ ସୁଟ୍‌କେଶ୍‌ରେ ଗୁପ୍ତସୁନା ଆଣିଥାନ୍ତି । ଜଣକା ଚାରି ପାଞ୍ଚଟା ଲେଖାଏଁ ସୁଟ୍‌କେଶ୍ । ସେଥିରେ ଲୁଗା ଭିତରେ ସୁନା ବିସ୍କୁଟ ଥାଏ । ସେମାନେ ଦିନେ ଦୁଇଦିନ ଭିତରେ ଶେଷକରି ଫେରିଯାନ୍ତି । ଉପରକୁ ଦେଖାନ୍ତି ପ୍ରଦର୍ଶନୀ ପାଇଁ ସେମାନେ ଆସିଛନ୍ତି ବୋଲି ।"

"କଟକରେ ପରା ସୁନା ସ୍ମଗଲିଂ ହୁଏ ଲୁଗା ବେପାରୀଙ୍କ ଦ୍ୱାରା । ସେମାନଙ୍କ ଲୁଗାପେଟିରେ ସୁନା ବିସ୍କୁଟ ଆସିଥାଏ । ପୁଣି ସବୁ ପେଟିରେ ନୁହେଁ । ଗୋଟାଏ ଗୋଟାଏ ପେଟିରେ ?"

"ହଁ ସାର୍, ହେଉଥିଲା । ଦୁଇ ତିନିଥର ଧରାପଡ଼ିବା ପରେ ସେସବୁ ବନ୍ଦ ହୋଇ ଯାଇଛି ସାର୍ । ଆଉ ସେମାନେ ସାହାସ କରୁ ନାହାନ୍ତି । ଆଜିକାଲି ଅନ୍ୟ ପ୍ରକାରେ ଏହି ଉପାୟରେ ହେଉଛି ।"

"ସେମାନଙ୍କର ତ କମ୍ ସାହସ ନୁହେଁ ଗୋବିନ୍ଦ ? ସେମାନେ ଆମର ଖୋଦ୍ ଆଖି ସାମନାରେ ଏତେକାଣ୍ଡ କରି ଖସି ଯାଉଛନ୍ତି, ଅଥଚ ଆମେ ସେମାନଙ୍କୁ ଧରି ପାରୁନୁ ?"

"ପ୍ରଥମଥର ବୋଲି ଆମ ଇନ୍‌ଫର୍ମରମାନେ ଜାଣିପାରି ନ ଥିଲେ ସାର୍‌ । କଲିକତାର ଇନ୍‌ଫର୍ମରମାନେ ମଧ୍ଯ ଆମକୁ କିଛି ଖବର ଦେଇ ନ ଥିଲେ ।"

"କଲିକତାର ଇନ୍‌ଫର୍ମରମାନେ ଆମକୁ କେମିତି ଖବର ଦେଲେନି ? ସେଠା ପୋଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖକୁ ଏକ କଡ଼ା ଚିଠି ଲେଖ । ଏହା ଆଉ ଯେମିତି ରିପିଟ୍‌ ନ ହୁଏ, ସେଠା ଗୋଇନ୍ଦା ବିଭାଗକୁ ସେମାନେ ତାଗିଦ୍‌ କରିଦିଅନ୍ତୁ ।"

"ସେମାନେ କଲିକତାରୁ ଏମିତି ଭାବରେ ଆସନ୍ତି ଯେ, ସନ୍ଦେହ କରିବା କଷ୍ଟକର । ସେମାନେ ଉଚ୍ଚ ଶିକ୍ଷିତା, ଧନୀଘରର ଝିଅଭଳି ଜଣାପଡ଼ନ୍ତି । ସେମାନେ ଆସନ୍ତି ଫାର୍ଷ୍ଟ କ୍ଲାସ୍‌, ଏଆର କଣ୍ଡିସନ୍‌ଡ ଡବାରେ, ରହନ୍ତି ସବୁଠାରୁ ଦାମିକା ଆଭିଜାତ୍ୟଭରା ହୋଟେଲରେ । ଯିବାଆସିବା ପାଇଁ ଦାମିକା କାର୍‌ ସଦାସର୍ବଦା ହୋଟେଲରେ ଅପେକ୍ଷା କରି ରହିଥାଏ । ସେମାନେ ଥରକେ ବେଶି ସୁନା ଆଣି ନ ଥାନ୍ତି, ଜଣକା ଚାରି ପାଞ୍ଚ-କିଲୋରୁ ଅଧିକ ନୁହେଁ । ସେମାନଙ୍କୁ ଦେଖିଲେ କାହାର କାହିଁକି ସନ୍ଦେହ ହେବ ? ବେଶିଦିନ ପୁଣି ରହନ୍ତିନି । ଦୁଇ ଚାରିଦିନରେ କାମ ଶେଷ କରି ଫେରିଯାନ୍ତି ।

ଏହି ସ୍ତ୍ରୀ ଲୋକମାନେ ଯେଉଁ ସୁନା ଆଣିଥାନ୍ତି, ପ୍ରଥମଦିନରେ ତାହା ଶେଷ ହୋଇଯାଏ । ଦ୍ୱିତୀୟଦିନ ପାଇଁ ସେମାନଙ୍କୁ ପାରାଦ୍ୱୀପବାଟେ ଆସୁଥିବା ଚୋରାସୁନା ଯୋଗାଇ ଦିଆଯାଏ । ପାରାଦ୍ୱୀପଠାରୁ ସାତ ଆଠ କିଲୋମିଟର ଦୂରରେ ସମୁଦ୍ରକୂଳରେ ଗୋପୀନାଥପୁର ବୋଲି ଗୋଟିଏ ଗାଁ ଅଛି । ସେଠାର ମାଛ ବ୍ୟବସାୟୀମାନେ ସମୁଦ୍ରକୁ ଯାଇ ଦୂର ସମୁଦ୍ରରେ ଲଞ୍ଚରେ ଆସୁଥିବା ଚୋରା ସୁନାକୁ ମାଛ ଭିତରେ ଲୁଚାଇ କୂଳକୁ ଘେନି ଆସନ୍ତି । କୂଳରେ ଚୋରା ବେପାରୀଙ୍କ ଏଜେଣ୍ଟମାନେ ଥା'ନ୍ତି । ସେମାନେ ମାଛ ସହିତ ଚୋରା ସୁନାକୁ ନେଇ କଟକ ଚାଲାଣ କରନ୍ତି । ସେହି ଝିଅମାନେ ଦିନେ ଦୁଇଦିନ ଭିତରେ ଏହି ସୁନାକୁ କାରବାର କରି କଲିକତା ଚାଲିଯାନ୍ତି । ସେମାନେ ପୁଣି ଉପରେ ଉପରେ ପ୍ରଦର୍ଶନୀ କାମ କରୁଥାନ୍ତି । ସେମାନଙ୍କୁ ସନ୍ଦେହ କରିବାର ଅବକାଶ ନ ଥାଏ । ଆମେ ଆମ ଇନ୍‌ଫର୍ମରମାନଙ୍କଠାରୁ ଖବର ପାଇ ସେମାନଙ୍କୁ ସନ୍ଦେହ କଲାବେଳକୁ ସେମାନେ ଏଠାରୁ ଖସି ଯାଇଥାନ୍ତି । ସେମାନେ ଏଠାରେ ରହଣି ଭିତରେ ଦଶ ପନ୍ଦର କିଲୋ ସୁନାର କାରବାର କରି ଚାଲିଯାନ୍ତି ।"

"ଏତେ ସୁନା କଟକରେ କିଣେ କିଏ ? ଆମ ଏଠାରେ ବଡ଼ ବଡ଼ ଗହଣା ଦୋକାନୀଙ୍କ ସଂଖ୍ୟା ଦଶ ପନ୍ଦରରୁ ତ ଅଧିକ ନୁହେଁ ?" ପ୍ରହରାଜ ପଚାରିଲେ ।

"ସାର୍‌, ଏମାନଙ୍କଠାରୁ ସୁନା ନେବା ପାଇଁ ଦକ୍ଷିଣ ଓଡ଼ିଶା ଓ ଆନ୍ଧ୍ରରୁ ବେପାରୀମାନେ ଆସନ୍ତି । ଦଶ ପନ୍ଦର କିଲୋ ସୁନା ଏମିତି କେତେ କି ? ଜଣେ ଦୋକାନୀକୁ ତାହା ନିଅଣ୍ଟ ।"

"ସେମାନେ ଖୋଦ୍‌ କଟକ ସହରରେ ଆମ ଆଖି ଆଗରେ ଏତେକାଣ୍ଡ କରି ଚାଲିଯାନ୍ତି, ଆମେ ଜାଣିପାରୁନୁ କେମିତି ? ଆମ ଗୋଇନ୍ଦା ବିଭାଗ କରୁଛି କ'ଣ ?"

"ସାର୍, ଏଇ ନୂଆ ଧରଣର ସ୍ମଗଲିଂ ଓଡ଼ିଶାରେ ପ୍ରଥମ । ଥରେ ଦୁଇଥର ହୋଇଗଲେ ଯିନା ଆମ ଗୋଇନ୍ଦା ବିଭାଗ ଜାଣିପାରିବ ଓ ଆମେ ସେମାନଙ୍କ କାର୍ଯ୍ୟବିଧି ଜାଣି ପାରିବା । ଆମେ ଖବର ପାଉ ପାଉ ସେମାନେ ବ୍ୟବସାୟ ଶେଷକରି ଏଠୁ ଚମ୍ପଟ୍ ।"

"ଏବେ ଏଣିକି ଭଲ ଭାବରେ ଦୃଷ୍ଟି ରଖ ଗୋବିନ୍ଦ । ଏଥର ସେମାନେ ଯଦି ଖସିଯାନ୍ତି, ତେବେ ଆମର ବଦନାମ ହେବ ।"

"ଏଥର କ'ଣ ସେହି ଲୋକ ଆସିବେ ସାର୍ ? ଅଲଗା ଲୋକ ଆସିବେ । ସେମାନଙ୍କ ଧନ୍ଦା ପୁଣି ଅଲଗା ପ୍ରକାରର ହୋଇଥିବ ।"

× × × ×

"ଦେବସ୍ଥାନ, ଆଜ ହୋଟେଲ ଅନୁରାଧା ଘେରାଉ ହେବ । କଲିକତାରୁ ସୁନ୍ଦରୀ ସୁନ୍ଦରୀ ଝିଅମାନେ ଆସି ଏଠାରେ ସୁନା ସ୍ମଗଲିଂ କରୁଛନ୍ତି । ସ୍ମଗଲିଂ ପୁରାପୁରି ନୂଆ ଧରଣର । ସୁନା ଏଥର ସାବୁନ ଭିତରେ ପୋତା ହୋଇ ଆସିଛି । ଏକ ନୂଆ କୋମ୍ପାନୀର ସାବୁନକୁ ପ୍ରଚାର କରିବା ବାହାନାରେ ଏଇ ଝିଅମାନେ ଆସିଛନ୍ତି । ସେମାନଙ୍କ ସହିତ ଦୁଇ ଚାରି ଟ୍ରକ୍ ସାବୁନ ଆସିଛି । ସବୁ ସାବୁନରେ ସୁନା ନ ଥାଏ । ସେମାନେ ଗରାଖ ଦେଖି ସୁନା ଥିବା ସାବୁନ ବିକ୍ରୀ କରନ୍ତି । ପ୍ରଦର୍ଶନୀ ସାବୁନରେ ସୁନା ନ ଥାଏ । ସୁନାଥିବା ସାବୁନ ହୋଟେଲର ଏକ ଗୁପ୍ତ ସ୍ଥାନରେ ବିକ୍ରୀ ହୁଏ । ହୋଟେଲର ଏକ କକ୍ଷରେ ଏହି କୋମ୍ପାନୀର ବିଭିନ୍ନ ଜାତିର ସାବୁନର ପ୍ରଦର୍ଶନୀ ଚାଲିଛି । ଦର୍ଶକ ଭାବରେ ବଡ଼ ବଡ଼ ସୁନା ବ୍ୟବସାୟୀ ଓ ଗହଣା ଦୋକାନୀମାନେ ଜମା ହୋଇ ଏହି ସାବୁନ କ୍ରୟ କରୁଛନ୍ତି । କେତେକ ଖବର ଅନୁସାରେ ସରକାରୀ ଅଫିସରମାନେ ମଧ୍ୟ ଏହି ଚୋରା ସୁନା ପାଇଁ ସେ ହୋଟେଲକୁ ଯାଉଛନ୍ତି । ଝିଅମାନେ ମାତ୍ର ଦୁଇ ତିନିଦିନ ଭିତରେ ବ୍ୟବସାୟ ଶେଷ କରି ଚାଲିଯିବେ । ଆଜ ସେମାନଙ୍କୁ ଆରେଷ୍ଟ ନ କଲେ ଚଳିବନି । ବିକାଳିବାଲାଙ୍କ ସହିତ କିଣିଲାବାଲାଙ୍କୁ ମଧ୍ୟ ଆରେଷ୍ଟ କରିବାକୁ ପଡ଼ିବ । କାହିଁକି ନା, ସେମାନଙ୍କ ପାଖରେ ଚୋରା ସୁନା ମିଳିଯିବ ।"

"ତୁ କ'ଣ କହିଲୁ ପ୍ରହରାଜ ? ଝିଅମାନେ ସୁନା ସ୍ମଗଲିଂ କରିବା ପାଇଁ କଟକ ଆସିଛନ୍ତି । ତୁ ସେମାନଙ୍କୁ ଧରିବାକୁ ଯିବୁ ?"

"ହଁ ଦେବ, ସେମାନେ ପୁଣି ଅଳ୍ପ ବୟସର ଝିଅମାନେ । ବୟସ କମ୍ ହେଲେ କ'ଣ ହେବ, ଚୋରା ବ୍ୟବସାୟରେ ଖୁବ୍ ଧୁରନ୍ଧର ।"

"ମୋର ଯିବା କ'ଣ ନିହାତି ଦରକାର ?"

"ଆରେ, ତୁ ନ ଗଲେ କେମିତି ହେବ ? ଯଦି ଫାୟାରିଂ ଦରକାର ପଡ଼େ, ଅର୍ଡ଼ର ଦେବ କିଏ ? ଆଉ ସେ ଝିଅ ଦୁଇଟି ଏଡ଼େ ସୁନ୍ଦରୀ ଯେ, ତୁ ନ ଦେଖିଲେ ପରେ ଅବଶୋଷ କରିବୁ ।"

ହୋଟେଲ ଅନୁରାଧାରେ କାବାରେଟ ନାଚ ଖୁବ୍ ପ୍ରସିଦ୍ଧ । କଲିକତାର ପ୍ରସିଦ୍ଧ ନର୍ତ୍ତକୀମାନେ ଆସି ଏଠାରେ ନୃତ୍ୟ ପରିବେଷଣ କରନ୍ତି । ସେଦିନ ନାଚ ପାଇଁ କଲିକତାରୁ ଆସିଥିବା ଦୁଇଟି ଝିଅ ଏଡ଼େ ସୁନ୍ଦରୀ ଓ ମାର୍ଜିତ ରୁଚିସମ୍ପନ୍ନ ଯେ, ଦେଖିଲେ କେହି ଭାବିବ ନାହିଁ ସେମାନେ ସୁନା ସ୍ମଗଲର ବୋଲି । ସୁନ୍ଦରୀ ଝିଅମାନେ ସୁନା ସ୍ମଗଲିଂ କରୁଛନ୍ତି ଶୁଣିଲାବେଳକୁ ଦେବସ୍ମିତାଙ୍କୁ କେମିତିକା କେମିତିକା ଲାଗୁଥାଏ । ପ୍ରହରାଜଙ୍କର ଅନୁରୋଧରେ ସେ ଯାଇ ହୋଟେଲ ଅନୁରାଧାରେ ପହଞ୍ଚିଗଲେ । ସେତେବେଳକୁ ଅନୁରାଧାରେ କାବାରେଟ ନାଚ ଆରମ୍ଭ ହୋଇଗଲାଣି । ନାଚ ଦେଖିବା ପାଇଁ ହୋଟେଲରେ ପ୍ରାୟ ସବୁ ଟେବୁଲ ଦର୍ଶକ ଦ୍ୱାରା ଭରପୂର । ପ୍ରହରାଜ ଓ ଦେବସ୍ମିତା ଏକ କୋଣ ପାଖରେ ପଡ଼ିଥିବା ଏକ ଖାଲି ଟେବୁଲ ପାଖରେ ବସିଲେ । ପ୍ରହରାଜ କଫି ପାଇଁ ବରାଦ କରିଦେଇ ଆଖି-ବୁଲାଇ ଖୋଜି ବୁଲିଲେ ସେ ଝିଅ ଦୁଇଟି କେଉଁଠି ଅଛନ୍ତି । ଝିଅ ଦୁଇଟିକୁ ଠାବ କରିସାରି ଦେବସ୍ମିତାଙ୍କୁ କହିଲେ, "ଜାଣିଛୁ ଦେବ, ଏଠାରେ ତୁ ଯେଉଁମାନଙ୍କୁ ଦର୍ଶକ ଭାବରେ ଦେଖୁଛୁ ସେମାନେ ସମସ୍ତେ ଜଣେ ଜଣେ ଚୋରାସୁନା କିଣିଲାବାଲା ।"

"ଆଁ, ଏମାନେ ସବୁ କିଣିଲାବାଲା । ଏମାନେ କ'ଣ ଚୋରା ସୁନା ପାଇଁ ଏଠାକୁ ଆସିଛନ୍ତି ?"

"ଆଉ କ'ଣ ନାଚ ଦେଖିବାକୁ ଆସିଛନ୍ତି ? ସେଠାକୁ ଅନାଇଲୁ, ସେ ଯେଉଁ ଝିଅ ଦୁଇଟି ବସି ନାହାନ୍ତି ସେଠି, ସେମାନେ ହେଉଛନ୍ତି ଗଙ୍ଗ୍ ଲିଡର୍ । ସେମାନେ ହେଲେ ଅସଲ ଚୋରା ବେପାରୀ । ସେହି ଦୁଇଜଣଙ୍କୁ ଆରେଷ୍ଟ କରି ପକାଇଲେ ସବୁ ଧରା ପଡ଼ିଯିବ । ଏହି ଦର୍ଶକମାନଙ୍କ ଭିତରୁ ଅଧିକାଂଶ ସେମାନଙ୍କ ଗରାଖ । ଏମାନଙ୍କ ଭିତରେ ଢେର୍ ସରକାରୀ ଅଫିସର ଅଛନ୍ତି । ସେମାନେ ବି ଚୋରା ସୁନା କିଣିବାକୁ ଆସିଛନ୍ତି । ସୁନା ପ୍ରତି ଲୋଭ କାହାର ନାହିଁ ? କେତେକେ ମଧ୍ୟ କିଣି ସାରିଲେଣି । ବାହାରେ ଯେଉଁ ପ୍ରଦର୍ଶନୀ ସାବୁନ ଥୁଆ ହୋଇଛି ସେଥିରେ ସୁନାଫୁନା କିଛି ନାହିଁ । ସୁନା ଥିବା ସାବୁନତିକ ଭୂମିତଳ ମହଲରେ ଚୋରାରେ ବିକ୍ରୀ ଚାଲିଛି । ଦେଖଣାହାରୀଙ୍କ ଭିତରୁ ଅନେକେ ସେହି ସୁନା କିଣି ଯିବା ଉପରେ । ଏମାନଙ୍କୁ ସଙ୍ଗେ ସଙ୍ଗେ ଆରେଷ୍ଟ ନ କଲେ ଚଳିବନି ।"

"ତୁ ଯେଉଁ ଝିଅ ଦୁହିଁଙ୍କୁ ଚୋରା ବେପାରୀ ବୋଲି କହୁଛୁ, ସେମାନେ ତ ମୋତେ କାହିଁକି ସ୍ମଗଲର ଭଳି ଜଣାପଡ଼ୁ ନାହାନ୍ତି ରେ । ସେମାନେ ତ ଧନୀଘରର ଝିଅ ଭଳି ଦେଖାଯାଉଛନ୍ତି । ସେମାନଙ୍କ ଦେହରେ ଯେଉଁ ମୂଲ୍ୟବାନ ଗହଣାଗାଣ୍ଠି, ଶାଢ଼ୀ ଆଦି ଅଛି, କିଏ ସେମାନଙ୍କୁ ସ୍ମଗଲର ବୋଲି ଭାବିବ କହିଲୁ ? ତୁ ସେମାନଙ୍କୁ ଭୁଲରେ ମୋତେ ଚହ୍ନାଇ ଦେଉନାହୁଁ ତ ?"

"ଆରେ, ଲୋକେ ସନ୍ଦେହ କରିବେ ନାହିଁ ବୋଲି ତ ସେମାନେ ଏତେ ଜାକଜମକରେ ପୋଷାକପତ୍ର ପିନ୍ଧି ଆସିଛନ୍ତି । ଏକେ ତ କମ୍ ବୟସ, ସେଥିରେ ପୁଣି

ଏଭଳି ଦାମିକା ଦାମିକା ପୋଷାକ ପିନ୍ଧି ଆସିଲେ କଏ କାହିଁକି ବା ସନ୍ଦେହ କରିବ ? ହେଲେ ସେମାନଙ୍କ ସାହସ କମ୍ ନୁହେଁ । ହସଖୁସି କଥାବାର୍ତ୍ତା ଭିତରେ ସେମାନେ କୋଟି କୋଟି ଟଙ୍କାର ବ୍ୟବସାୟ କରି ଚାଲିଯିବେ ଆମ ସାମନାରେ, କମ୍ ବଡ଼ କଥା ?''

"ତୁ ଯାହାକହ ପ୍ରହଲ୍ଲାଦ, ଏ ଝିଅ ଦୁଇଟି ମୋତେ କାହିଁକି ଚୋରଙ୍କର ଭଳି ଜଣାପଡ଼ୁ ନାହାନ୍ତି । ସେମାନଙ୍କ ସୁନ୍ଦର ଚେହେରା, ଆକର୍ଷଣୀୟ ଅଙ୍ଗଭଙ୍ଗୀ, ମନମତାଣିଆ କଥାବାର୍ତ୍ତା, ଉଚ୍ଚ-ସଂସ୍କୃତି ସମ୍ପନ୍ନ ବ୍ୟବହାର, ତୁ କ'ଣ ଦେଖିପାରୁନୁ ? ସେମାନଙ୍କୁ ଆରେଷ୍ଟ କରିବା ସପକ୍ଷରେ ମୁଁ ମୋଟେ ନୁହେଁ ।''

"ଆରେ, ତୁ ତ ଚେହେରା ଦେଖି ଏତେ ମୁଗ୍‌ଧ ହୋଇ ପଡ଼ିଗଲୁଣି, ଶାସନ କରିବୁ କଅଣ ରେ ?''

"ନା ଭାଇ, ତୁ ଦେଖ୍, ସେ ଝିଅଗୁଡ଼ାକ କେଡ଼େ ସୁନ୍ଦର, ସେମାନଙ୍କ ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗରୁ ଝରି ପଡ଼ୁଛି କି ଅସରନ୍ତି ସୌନ୍ଦର୍ଯ୍ୟ, ସେମାନଙ୍କ କଥାବାର୍ତ୍ତା, ଭାବଭଙ୍ଗୀ କେଡ଼େ ମଧୁର, ସେଥିରେ ତୁ ସେମାନଙ୍କୁ ଆରେଷ୍ଟ କରିବାକୁ ଆଦେଶ ଦେଲୁ କେମିତି ? ତୋ ଅବିବେକୀପଣିଆ ଦେଖି ମୁଁ ଦୁଃଖ କରୁଛି ।''

"ଚେହେରା ଦେଖି ସେମାନଙ୍କ ପ୍ରେମରେ ପଡ଼ିଗଲୁଣି କିରେ ? ଏମିତି କଅଣ କହୁଛୁ ? ହେଉ, ବାଛ୍, ସେମାନଙ୍କ ଭିତରୁ କାହାକୁ ତୋର ଅଧିକ ପସନ୍ଦ । ଆଜି ଏଇ ସନ୍ଧ୍ୟାରେ ବାହାଘର, ରାତିରେ ମଧୁଶଯ୍ୟା, ସକାଳକୁ ଛାଡ଼ପତ୍ର । ତୁ ଯେଉଁ ଅବିବାହିତକୁ ସେହି ଅବିବାହିତ । ଏଣେ ବିବାହର ସମସ୍ତ ଅନୁଭୂତି ଏକାରାତିକେ ମିଳିଯିବ ତୋତେ ।''

"ଧେତ୍, ତୋର ସବୁବେଳେ ସେଇ ଖିଆଲିଆ କଥା । ପରିସ୍ଥିତିକୁ ଟିକିଏ ବୁଝ ଭଲ । ହଠାତ୍ ଆରେଷ୍ଟ କରିବାକୁ ଏତେ ତରବର ହେଉଛୁ କାହିଁକି ?''

"ସଙ୍ଗେ ସଙ୍ଗେ ଆରେଷ୍ଟ ନ କଲେ ଜଣ ଜଣ କରି ଖସିଯିବେ ଯେ ?''

କାବାରେଟ ନାଚ ଚାଲିଥାଏ । ହଠାତ୍ ପୋଲିସ ହୁଇସିଲ ବାଜି ଉଠିଲା । ହୁଇସିଲ ଶବ୍ଦ ଶୁଣି ନାଚ ଦପ୍‌କରି ବନ୍ଦ ହୋଇଗଲା । ପୋଲିସ ଅଫିସରମାନେ ଚାରିପାଖ ଘେରିଗଲେ । ଝିଅଦୁହିଁଙ୍କୁ ପୋଲିସ ଇନ୍‌ସପେକ୍ଟରମାନେ ଓ୍ୱାରେଣ୍ଟ ଦେଖାଇ ଆରେଷ୍ଟକରି ହାତକଡ଼ା ପିନ୍ଧାଇଦେଲେ । ତା'ପରେ ଚାଲିଲା ସେମାନଙ୍କ ରୁମ୍‌ର ଖାନ୍‌ତଲାସି । ସେଥି-ସହିତ ସାବୁନ ପେଟିଗୁଡ଼ାକ । ସେଦିନ ସାବୁନ ପେଟିରୁ ବାହାରିଲା ସାଢ଼େ ସତେଇଶ କିଲୋ ଗ୍ରେଟ ଗ୍ରେଟ ସୁନା ବିସ୍କୁଟ । ସୁନା ବିସ୍କୁଟଗୁଡ଼ାକ ଖଣ୍ଡ ଖଣ୍ଡ ସାବୁନ ଭିତରେ ପୋତା ହୋଇ ଆସିଥିଲା । ନାଚ ଦେଖୁଥିବା ଦର୍ଶକମାନଙ୍କଠାରୁ ମିଳିଲା ପ୍ରାୟ ସାତ ଆଠକିଲୋ ସୁନା । ଏମାନେ ସମସ୍ତେ ସାବୁନ ଖରିଦ ନାଁରେ ଚୋରା ସୁନା ଖରିଦ ପାଇଁ ଆସିଥିଲେ । ପ୍ରହଲ୍ଲାଦ ସମସ୍ତଙ୍କୁ ଆରେଷ୍ଟ କରି ହାଜତକୁ ପଠାଇଦେଇ ଦେବସ୍ମିତାକୁ ଧରି ନିଜ କ୍ୱାର୍ଟରକୁ ଫେରି ଆସିଲା । ଏହି ଆରେଷ୍ଟ ଭିତରେ ଥିଲେ ବହୁ ସରକାରୀ ଅଫିସର । ଚୋରାସୁନା ଲୋଭରେ ସେମାନେ ସମସ୍ତେ ଏଠାକୁ ଦୌଡ଼ି ଆସିଥିଲେ ।

ଆସିଲାବେଳେ ପ୍ରହ୍ଲାଦଙ୍କୁ ଦେବସ୍ମାନ କହିଲା, "ଯାହାକହ ପ୍ରହ୍ଲାଦ, ଏତେ ସୁନ୍ଦରୀ ଝିଅଗୁଡ଼ିଏ କ ଖରାପ କାମ କରୁ ନାହାନ୍ତି ସତେ ! ଏମାନେ ଖୁସିରେ ବାହାହୋଇ ଘରସଂସାର କରି ପାରନ୍ତେ । ଏମାନଙ୍କୁ ଏ ଦୁର୍ବୁଦ୍ଧି କିଏ ଦେଉଛି ମୁଁ ଭାବିପାରୁନି ?"

"ଆରେ, ଏଗୁଡ଼ାଙ୍କୁ ବାହାହେବ କିଏରେ ? ଏଗୁଡ଼ାକ ସବୁ ବେଶ୍ୟାଘରର ଝିଅ । ଏମାନେ ଏହିଭଳି କାମ ଛଡ଼ା ଆଉ କ'ଣ କରିପାରିବେ ? କଲିକତାର ବଡ଼ ବଡ଼ ସୁନା ସ୍ମଗଲରମାନେ ଏମାନଙ୍କୁ ଭଡ଼ାରେ ଆଣି ଏଥିରେ ଲଗାଇଛନ୍ତି । ଏମାନେ ସେମାନଙ୍କ ହାତରେ ଜାଣ ଖେଳଣାଭଳି ।"

ଝିଅ ଦୁଇଟି ଆରେଷ୍ଟ ହେବା ଖବର ସାରା ସହରରେ ବିଦ୍ୟୁତ୍‌ବେଗରେ ଖେଳିଗଲା । ସେମାନେ କେମିତି ଜାମିନ୍ ପାଇବେ, ସେମାନଙ୍କ ଏଜେଣ୍ଟମାନେ ଲାଗି ପଡ଼ିଲେ । କଲିକତାରୁ ସେମାନଙ୍କ ସଂସ୍ଥାର ଉଚ୍ଚ କର୍ମକର୍ତ୍ତାମାନେ ଚାଲି ଆସିଲେ । ସଙ୍ଗେ ସଙ୍ଗେ ନିର୍ବାଚନ ପାଣ୍ଠିକୁ ମୋଟା ରକମର ଦାନ ଓ କେତେ ଲୋକଙ୍କୁ ହାତଗୁଞ୍ଜା ଦେଇ ସେମାନଙ୍କୁ ଜାମିନରେ ଖଲାସ କରିନେଲେ । ସେହିଦିନଠାରୁ ସୁନା ସ୍ମଗଲିଂ ଓ ଘଡ଼ି ସ୍ମେଗ୍‌ବେପାର କଟକରେ କିଛିଦିନ ପାଇଁ ବନ୍ଦ ହୋଇଗଲା । ହେଲେ ବେଶିଦିନ ନୁହେଁ । ପୁଣି ଅନ୍ୟ ରୂପରେ ଏହି ଧନ୍ଦା ଆରମ୍ଭ ହେଲା । ଯେଉଁମାନେ ଚାରିଆଡ଼େ ଟଙ୍କା ପଇସା ଦେଇ ଏହି ଧନ୍ଦା ଚଳାଇଛନ୍ତି ସେମାନଙ୍କୁ ବନ୍ଦ କରିବ କିଏ ? ବରଂ ଯେଉଁମାନେ ସେମାନଙ୍କୁ ଧରାଧରି କରି ହଇରାଣ ହରକତ କରୁଛନ୍ତି, ସେମାନଙ୍କୁ କଟକରୁ ବିଦା କରିଦେଲେ ହେଲା । ସେଥିପାଇଁ ଚାଲିଲା ପ୍ରବଳ ଚେଷ୍ଟା ।

ଦେବସ୍ମାନ ଓ ପ୍ରହ୍ଲାଦଙ୍କ କାମ ସହରର ଅସାମାଜିକ ଲୋକଙ୍କଠାରୁ ଆରମ୍ଭକରି କେତେକ କୁଜନେତାଙ୍କ ଭିତରେ ଆତଙ୍କ ଖେଳାଇଦେଲା । ଏସବୁ କାଣ୍ଡ ମୂଳରେ ବଡ଼-ବଡ଼ଆଙ୍କ ପିଲାମାନେ ଓ କେତେକ କୁପଥଗାମୀ ଅଫିସର ଥିବାରୁ ସରକାରଙ୍କ ଉପରେ ଚାପ ପଡ଼ିଲା ଅସମ୍ଭବ ଧରଣର । ସେମାନଙ୍କ ଭିତରିଆ ଦାବୀ ହେଲା ଯେ, ସେ ଦୁଇଜଣଙ୍କୁ ଏଠୁ କେମିତି ଶୀଘ୍ର ହଟାଇବାକୁ । ନୋହିଲେ ରକ୍ଷା ନାହିଁ । ଦେବସ୍ମାନ ଜାଣିଥିଲା, ଏହି କାମ ପାଇଁ ସେ ପ୍ରଶଂସା ପାଇବ କଅଣ, ବହୁ ଲୋକଙ୍କର ଚକ୍ଷୁଶୂଳ ହେବା ହିଁ ସାର ହେବ । ତାହା ହିଁ ଶେଷରେ ହେଲା । ଦିନେ ହଠାତ୍ ଦେଖାଗଲା ପ୍ରହ୍ଲାଦ ଓ ଦେବସ୍ମାନଙ୍କୁ କଟକରୁ ଅନ୍ୟତ୍ର ବଦଳି କରି ଦିଆଯାଇଛି । ଦେବସ୍ମାନ ଯାଇଛି ବାଲେଶ୍ୱର ଓ ପ୍ରହ୍ଲାଦ ଯାଇଛି ପୁରୀ ।

# ନଅ

ଦେବସ୍ମାନ ଟୁରରେ ଯାଇଥାଏ ବାଲେଶ୍ୱର ଜିଲ୍ଲାର ଏକ ଗ୍ରେଟ ସହରକୁ । ବାଲେଶ୍ୱର ସହରଠାରୁ ୧୫।୨୦ ମାଇଲ ଦୂର ହେବ । ସେ ଯାଇ ସନ୍ଧ୍ୟାବେଳେ ଡାକବଙ୍ଗଲାରେ ପହଞ୍ଚି ଗୋଟିଏ ରୁମ୍‌ରେ ଟିକିଏ ବିଶ୍ରାମ ନେଉଥାଏ । ଖାନସମା ଆଣି ରାତ୍ରି ଭୋଜନ ଦେଇଗଲା । ସେ ରାତ୍ରି ଭୋଜନ ସାରି ବାରଣ୍ଡାରେ ଟହଲ ମାରୁଛି, ଦେଖିଲା ଗୋଟିଏ ଗାଡ଼ି ଆସି ପୋର୍ଟିକୋରେ ରହିଲା । ଆଉ କେହି ଅଫିସର ଆସିଲେ କି କଅଣ ଜାଣିବା ଉଦ୍ଦେଶ୍ୟରେ ଦୂରେଇଯାଇ ଗୋଟିଏ ଖୁଣ୍ଟକୁ ଆଡ଼େଇ ହୋଇ ଠିଆ ହେଲା ।

ଦେଖିଲା ରାଜ୍ୟର ଜଣେ ଉଚ୍ଚପଦସ୍ଥ ଅଫିସର ଗାଡ଼ିରୁ ଓହ୍ଲାଇଲେ । ତାଙ୍କ ସହିତ ଜଣେ ସୁଶ୍ରୀ ଯୁବତୀ । ଚେହେରାରୁ ସେ ତାଙ୍କ ସହଧର୍ମିଣୀ ବା ଆତ୍ମୀୟା ବୋଲି ଜଣାପଡ଼ୁ ନ ଥାନ୍ତି । ସେମାନେ ଦେବସ୍ମାନଠାରୁ ଦୁଇଟି କୋଠରୀ ଛାଡ଼ି ଗୋଟିଏ ରୁମ୍‌ରେ ରହିଲେ । ଏତେବଡ଼ ଜଣେ ସିନିୟର ଅଫିସର, ଅନ୍ୟଜଣେ ଯୁବତୀକୁ ନେଇ ରାତିରେ ଆସି ଏକ ନିକାଞ୍ଚନ ଡାକବଙ୍ଗଲାରେ ରହିବା ଦେଖି ଦେବସ୍ମାନର ମୁଣ୍ଡ ଗୋଲମାଲ ହୋଇଗଲା ।

କିଛି ସମୟପରେ ଡାକବଙ୍ଗଲାର ଚପରାଶୀ ଗୋଟିଏ ଟ୍ରେରେ ମଦ ବୋତଲ ଓ ଗିଲାସ ଧରି ସେହି କୋଠରୀଆଡ଼କୁ ଧାଇଁଲା । କଥା କ'ଣ ବୁଝିବା ପାଇଁ ଦେବସ୍ମାନ ଚପରାଶୀଟିକୁ ଡାକିଲା । ଚପରାଶୀ ଭାବିଲା, ଦେବସ୍ମାନର ମଧ୍ୟ ମଦ ଦରକାର । ସେଥିସହିତ ସାନ୍ନିଧ୍ୟ ବି— ? ସେ ଉତ୍ତରଦେଲା, "ଆଜ୍ଞା ଟିକିଏ ଅପେକ୍ଷା କରନ୍ତୁ, ମୁଁ ଆସୁଛି ସାହେବଙ୍କୁ ଦେଇ । ଆପଣଙ୍କୁ ଆଣିଦେବି ।"

କିଛି ସମୟପରେ ହଠାତ୍ ଜଣେ ସୁଶ୍ରୀ ଯୁବତୀ ଗୋଟିଏ ଟ୍ରେରେ ମଦ ବୋତଲ ଓ ସୁନ୍ଦର ସୁନ୍ଦର ମଦଗିଲାସ ଧରି ଦେବସ୍ମାନ ରୁମ୍‌କୁ ପଶି ଆସିଲା । ଯୁବତୀଟି ବେଶ୍ ଆଧୁନିକା ଧରଣର, ପୋଷାକପତ୍ର ବେଶ୍ ରୁଚିସମ୍ପନ୍ନ । ରାତିବେଳେ ଜଣେ ଅଜଣା ଯୁବତୀକୁ ନିଜ ରୁମ୍‌କୁ ପଶି ଆସିବା ଦେଖି ଦେବସ୍ମାନର ମୁଣ୍ଡ ଗୋଲମାଲ ହୋଇଗଲା । ଯୁବତୀଟି ରୁମ୍ ଭିତରକୁ ପଶି ଆସିବା ଦେଖି ଅନ୍ୟ ଦୁଆରଦେଇ ଚଟ୍‌କରି ଘରୁ ବାରଣ୍ଡାକୁ ବାହାରିଗଲା ସେ । ଜଣେ ଅଜଣା ଯୁବତୀକୁ ଅର୍ଦ୍ଧରାତ୍ରିରେ ନିଜ କୋଠରୀରେ ଦେଖି ସରମରେ ତା ଗୋଟାସାରା ଦେହ ଥରିବାକୁ ଆରମ୍ଭ କଲାଣି । ଝରକା ଫାଙ୍କଦେଇ ଲକ୍ଷ୍ୟକଲା ଯୁବତୀଟି ମଦ ବୋତଲ ଟ୍ରେ ଟିକୁ ଟିପୟ ଉପରେ ଥୋଇଦେଇ ପଲଙ୍କ ଉପରେ ଯାଇ ବସି ପଡ଼ିଲା । ଏ ଯୁବତୀଟି କିଏ, ସେ ଏଠାକୁ କ'ଣ ପାଇଁ ଆସିଛି ଦେବସ୍ମାନ ଭାବି ଭାବି ତା'ର କିଛି ଥଳକୂଳ ପାଇଲାନି । କି ଅସୁନ୍ଦର କଥା, ଯିଏ ଦେଖିବ ସେ କ'ଣ ଭାବିବ ସତେ ?

ଦେବସ୍ନାନ ବାରଣ୍ଡାରେ ଅପେକ୍ଷା କରିଥାଏ, ସେ ଚପରାଶୀଟି କେତେବେଳେ ଆସିବ । ସେ ନିଶ୍ଚୟ ଜାଣିଥିବ ଏ ଯୁବତୀଟି କିଏ ଓ କ'ଣ ପାଇଁ ଏତେ ରାତିରେ ତା ରୁମ୍‌କୁ ଆସିଛି ।

ଦେବସ୍ନାନ ଭାବୁ ଭାବୁ ଚପରାଶୀଟି ଆସି ତା ପାଖରେ ପହଞ୍ଚିଗଲା । ପହଞ୍ଚି ଯାଇ ଯାଇ କହିଲା, "ସାର୍, ଆପଣ କ'ଣ ଏଠି ଠିଆ ହୋଇଛନ୍ତି ? ଆପଣ ଯାହା ଚାହୁଁଥିଲେ ଆପଣଙ୍କ ରୁମ୍‌କୁ ତ ପଠାଇ ଦେଇଛି । ସେ କ'ଣ ଆପଣଙ୍କ ପସନ୍ଦ ହେଉନାହିଁ କି ଜାଣେ ?"

ଦେବସ୍ନାନ ଚପରାଶୀଟିକୁ ଏକ ନିକାଞ୍ଚନ ସ୍ଥାନକୁ ଡାକନେଇ କହିଲା, "ତୁମେ ମୋ ରୁମ୍‌କୁ ମଦ ବୋତଲ ଦେଇ ସେ ଯୁବତୀଟିକୁ ପଠାଇଦେଇଛ କାହିଁକି ଶୁଣେ ? ମୁଁ ତ ତୁମକୁ ସେସବୁ ପାଇଁ କିଛି କହି ନ ଥିଲି । ସେ କିଏ, ମୋ ରୁମ୍‌କୁ ଆସିଛି କାହିଁକି ?"

"ସାର୍, ଆପଣ ଯେତେବେଳେ ମୋତେ ଡାକଲେ, ମୁଁ ଭାବିଲି, ଆପଣଙ୍କର ମଦ ଆଉ ସାନ୍ନିଧ ଦରକାର । ତେଣୁ ମଦ ଦେଇ ତାକୁ ପଠାଇଦେଲି ।"

"ସେ ଯୁବତୀଟି କିଏ ? ମୋ ରୁମ୍‌କୁ ଏତେ ରାତିରେ କ'ଣ ପାଇଁ ଆସିଛି ?"

"ଆପଣ ତ ଏକା ଆସିଛନ୍ତି ସାର୍ । ନିଶ୍ଚୟ ଏକୁଟିଆ ଅନୁଭବ କରୁଥିବେ । ଆପଣଙ୍କୁ ସାଥୀ ଦେବା ପାଇଁ ତାକୁ ପଠାଇଦେଲି । ଆଜି ରାତିଟା ସେ ଆପଣଙ୍କଠାରେ ରହିବ । ସେ ଯୁବତୀଟି ଏହି ଡାକବଙ୍ଗଳାରେ ଏକା ଏକା ଆସୁଥିବା ଅଫିସରମାନଙ୍କୁ ସାନ୍ନିଧ ଦେବାରେ ଧୁରନ୍ଧର ।"

"ଦେଖ, ତୁମେ ବଡ଼ ଭୁଲ କରିଛ । ମୋର ସେମିତି ସାଙ୍ଗସାଥୀ ଦରକାର ନାହିଁ । ମୁଁ ସେଭଳି ବ୍ୟବସ୍ଥାକୁ ଭାରି ଘୃଣା କରେ ।"

"ସାର୍, କ୍ଷମା କରିବେ । ମୁଁ ଏହି ଡାକବଙ୍ଗଳାରେ ଆପଣଙ୍କୁ ଆଜି ସର୍ବପ୍ରଥମ ଦେଖୁଛି ଯେ କି ମଦ ଆଦିଠାରୁ ଏତେ ଦୂରରେ । ମୋର ବଡ଼ ଭୁଲ ହୋଇଛି ସାର୍, ମୋତେ କ୍ଷମା କରିବେ । ମୁଁ ସେ ଯୁବତୀଟିକୁ ବର୍ତ୍ତମାନ ଆପଣଙ୍କ ରୁମ୍‌ରୁ ଚାଲିଯିବାକୁ କହୁଛି ।"

"ହେଉ, ତା'ର ପାରିଶ୍ରମିକ ବାବଦ ତାକୁ ଏହି ଶହେଟଙ୍କା ଦେଇ ଦେବ ।"

"ନା, ସାର୍, ସେ ତ ଆପଣଙ୍କର କିଛି ସେବା କରିନି, ଏହି ପାରିଶ୍ରମିକ ନେବ କ'ଣ ପାଇଁ ?"

"ଏହା ପାରିଶ୍ରମିକ ନୁହେଁ, ଏହା ତାହାର ଯିବାଆସିବା ପରିଶ୍ରମର ମଜୁରି ।"

"ହେଇ, ଦେଖୁ ନାହାନ୍ତି ଆଜ୍ଞା, ସେହି ଯେଉଁ ବାବୁ ସେ ରୁମ୍‌ରେ ନାହାନ୍ତି ସାର୍, ସେ ଏକା ଆସିଲେ ଏହି ଯୁବତୀଟି ତାଙ୍କୁ ସାଥୀ ଦିଏ । ଆଜି ସିଏ ଆଉଜଣେ ଯୁବତୀକୁ ସଙ୍ଗରେ ଧରି ଆସିଥିବାରୁ ଏହାର ଆବଶ୍ୟକତା ସେ ଉପଲବ୍ଧି କରି ନାହାନ୍ତି । ଫଳରେ ଆଜି ସେ ବେକାର । ଆପଣ ଏକା ଆସିଛନ୍ତି ବୋଲି ଭୁଲରେ ଆପଣଙ୍କଠାକୁ

ପଠାଇଦେଲି । ମୋତେ କ୍ଷମା କରିବେ ସାର୍ । ଲୋକ ଚିହ୍ନିବାରେ ମୋର ଭୁଲ ହୋଇଗଲା ।"

ସେଦିନ ରାତିରେ ଦେବସ୍ମାନଙ୍କୁ ନିଦ ହେଲା ନାହିଁ । କିଛିଦିନ ତଳେ ଆଉ ଏକ ଡାକବଙ୍ଗଳାରେ ଜଣେ ଟୋକା ଅଫିସରଙ୍କ କୋଠରୀକୁ ମଧ୍ୟରାତ୍ରିର ଘନ ଅନ୍ଧକାର ଭିତରେ ଆସିଥିଲେ ଏହିଭଳି ଜଣେ‌କା ଯୁବତୀ । ସେହିଭଳି ମଦ ମାଂସର ଭୂରି ଭୂରି ଭୋଜନ ସଙ୍ଗେ ମଉଜ ମଜଲିସ୍‌ର ଅବାରିତ ମନ୍ଦାକିନୀ ବୋହି ଚାଲିଥିଲା ସେହି କୋଠରୀ ଭିତରେ । ଯେଉଁମାନେ ଦେଶ ଶାସନ ଓ ଦେଶ ରକ୍ଷଣ ଦାୟିତ୍ୱରେ ଅଛନ୍ତି ସେମାନେ ରକ୍ଷଣ କରୁ କରୁ ଯଦି ଭକ୍ଷଣ କରନ୍ତି, ତେବେ ସବୁ ଗଲା, ଦେଶ କ'ଣ ଆଉ ରହିବ ? ତା'ର ବଡ଼ ଘୃଣାଜାତ ହେଲା ଏହି ଚାକିରି ପ୍ରତି । କ୍ଷମତା ହାତରେ ଥିବାରୁ କେତେ ଲୋକ ସୁବିଧା ହାସଲ ପାଇଁ କେତେ ପ୍ରକାର ଲାଞ୍ଚ ନ ଦେଉଛନ୍ତି । କେଉଁଠି ଅର୍ଥ ଘୁସ୍ ଚାଲିଛି ତ କେଉଁଠି ଯୁବତୀ ଲାଞ୍ଚ ଚାଲିଛି । ଏଇଆ ଯଦି ଏ ଦେଶର ରୀତି ହୁଏ, ଦେଶ ଶାସକ ଯଦି ଏଭଳି ଭାବରେ ଅସାଧୁ ହୁଅନ୍ତି, ତେବେ ଏହି ଦେଶ ଶାସିତ ହେବ କିଅଣ ? ଜାଲ, ଜୁଆଚ୍ଚୋରି, କଳାପୋତେଇ, କଳାବଜାରୀ ଚାଲିବ ନାହିଁ ତ ଆଉ କ'ଣ ଚାଲିବ ଏ ଦେଶରେ ? ସେ ଯଦି ଏହି ଚାକିରିରେ ରହିବ, ତେବେ ସେ ବି ଦିନେ ଏହିଭଳି ଜୀବନର ଶିକାର ହୋଇପଡ଼ିବ । ବରଂ ତା'ର ଏହି ଚାକିରିରୁ ବିଦାୟ ନେଇଯିବା ଭଲ ।

ବଡ଼ ବଡ଼ ଅଫିସରମାନଙ୍କ ଦୈନନ୍ଦିନ କାର୍ଯ୍ୟକଳାପ ଦେବସ୍ମାନ ଆଖିରେ ଦିନକୁ ଦିନ ଅଧିକରୁ ଅଧିକ ପଡ଼ିଲା । ଯେଉଁ ଜୀବନକୁ ସେ ଅତ୍ୟଧିକ ଘୃଣା କରେ, ସେହି ଜୀବନକୁ ତା'ର ଭଲ ଅଫିସରମାନେ ଆନନ୍ଦରେ ଉପଭୋଗ କରୁଥିବାର ଦେଖି ତା'ର ଏହି ଚାକିରି ପ୍ରତି ଅତ୍ୟଧିକ ବିତୃଷ୍ଣା ଜାତ ହେଲା । ଏତେ କଳଙ୍କପୂର୍ଣ୍ଣ ଜୀବନଯାପନ କରି ଉପରକୁ ଶୁଦ୍ଧ ପବିତ୍ର ଜୀବନଯାପନ କରିବାର ଅଭିନୟ ମନେ ପଡ଼ିଗଲାରୁ ତା'ର କ୍ଷୋଭ ହେଲା । ସାରା ଦେଶରେ ଏହି ଧପ୍‌ପାବାଜୀ କ'ଣ ଏମିତି ସବୁଦିନେ ଚାଲିଥିବ ? ପ୍ରତ୍ୟେକ ଲୋକ ପ୍ରତ୍ୟେକଙ୍କୁ କ'ଣ ଏମିତି ଠକାଇ ଠକାଇ ଚାଲିଥିବେ ? ଏହାର ଅବସାନ କ'ଣ କେବେ ହେବନି ? ଯେତେ ସେ ଏହା ଉପରେ ଚିନ୍ତା କଲା ଏହି ଚାକିରି ଛାଡ଼ିବା ସିଦ୍ଧାନ୍ତ ତା ମନରେ ସେତେ ବଳବତ୍ତର ହେଲା । ବଡ଼ ବଡ଼ ଅଫିସରଙ୍କ କଳଙ୍କକାଳିମାପୂର୍ଣ୍ଣ ଗୁପ୍ତ ଜୀବନ ତା ଆଖିରେ ଯେତେ ପଡ଼ିଲା, ଏହି ଚାକିରିରୁ ପଳାଇବାର ଇଚ୍ଛା ତା ମନରେ ସେତେ ପ୍ରବଳ ହେଲା । ସେ ଭାବିଲା, ସେ ଯଦି ଏହି ଚାକିରିରେ ଆଉ କିଛିଦିନ ରହେ ତେବେ ସେ ଅଣନିଃଶ୍ୱାସୀ ହୋଇ ମରିଯିବ ବା ପାଗଳ ହୋଇ ଏଣେତେଣେ ଘୂରି ବୁଲିବ ।

ଏହି ସମୟରେ ସେ ଦିନେ ଇଂଲଣ୍ଡର କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଏକ ଚିଠି ପାଇଲା ଯେ, ସେ ରେଭେନ୍‌ସା କଲେଜରେ ଲେକ୍‌ଚରର ଥିଲାବେଳେ ଗବେଷଣା ପାଇଁ ଯେଉଁ ଦରଖାସ୍ତ କରିଥିଲା, ସେହି ଦରଖାସ୍ତ ଅନୁଯାୟୀ ସେ କେମ୍ବ୍ରିଜରେ ପିଏଇଚ.ଡି.

ପାଇଁ ଏକ ସିଟ୍ ପାଇ ଯାଇଛି । ତା'ର ଭଲ କ୍ୟାରିୟର ଯୋଗୁଁ ଭାରତ ସରକାର ଗବେଷଣା ପାଇଁ ତାକୁ ଏକ ବୃତ୍ତି ଦେଉଥିବାରୁ ତା'ର ସେହି ବିଶ୍ୱବିଦ୍ୟାଳୟରେ ଯୋଗଦେବାରେ କିଛି ବାଧା ନାହିଁ । ସେ ଯେତେଶୀଘ୍ର ଯୋଗଦିଏ, ସେତେ ଭଲ ।

ଯେଉଁ ଦିନ ସେ ଏହି ଗବେଷଣା ବୃତ୍ତି ପାଇଲା, ସେଦିନ ତା ମନର ଖୁସି କହିଲେ ନ ସରେ । ଏହି ଚାକିରିରୁ କେମିତି ଇସ୍ତଫା ଦେଇ ଗବେଷଣାରେ ଯୋଗଦେବ ତା'ର ସେହି ହେଲା ଏକମାତ୍ର ଚିନ୍ତା । ଯିବା ପାଇଁ ପାସ୍‌ପୋର୍ଟ, ଭିସା ଆଦି କରିସାରି କେମ୍ବ୍ରିଜ ଯିବା ପାଇଁ ଟିକେଟ କାଟି ଚାକିରିରୁ ଇସ୍ତଫା ଦେଇଦେଲା । ବାପା ମା'ଙ୍କ ପାଖରୁ ବିଦାୟ ନେବା ପାଇଁ ଯାଇ ଦିନେ ବାଲେଶ୍ୱର କଲେଜରେ ପହଞ୍ଚିଗଲା ।

ବାପାଙ୍କୁ ଚାକିରିରୁ ଇସ୍ତଫା ଦେଇଦେବା କଥା କହିନ୍ତେ, ସେ ରାଗି ଖପା ହୋଇଗଲେ । ତାଙ୍କୁ ନ ପଚାରି ପୁଅ ଏହି ସିଦ୍ଧାନ୍ତ ନେଇଥିବାରୁ ସେ ଭାରି ମନ କଷ୍ଟ କଲେ । ଆଇ.ଏ.ଏସ୍. ଚାକିରି ଭାଗ୍ୟରେ ଥିଲେ ମିଳେ । ଏଭଳି ଚାକିରିକୁ ଛାଡ଼ିଦେବା କମ୍ ଅବିବେକୀପଣିଆ ନୁହେଁ ।

କିନ୍ତୁ ପୁଅ ଆଇ.ଏ.ଏସ୍. ଚାକିରି ଛାଡ଼ିଦେବାରେ ମା' ଭାରି ଖୁସି । ତେବେ ମା'ଙ୍କ ମନ ଦୁଃଖ, ପୁଅ ଚାକିରି ଛାଡ଼ିଦେଇ ପୁଣି ଗବେଷଣା ପାଇଁ ବିଲାତ ଯାଉଛି । ସେଠି ଏକା ଏକା କେମିତି ଚଳିବ, କେମିତି ଖାଇବ, ସେଇ ତାଙ୍କର ଚିନ୍ତା । ପୁଣି ସେ ଦେଶରେ ଆମ ଦେଶର ଖାଇବା ମିଳେନି । ସେମାନଙ୍କ ଦେଶ ଖାଇବା, ଦେବସ୍ମାନକୁ କେମିତି ଲାଗିବ ସେଇ ଚିନ୍ତା ତାଙ୍କ ମନରେ ଅସ୍ଥିରତା ଆଣିଦେଲା । ସେଠି ଦେହପା' ଖରାପ ହେଲେ କିଏ ତା ଯତ୍ନ ନେବ, ସେହିକଥା ଭାବି ଭାବି ସେ ମ୍ରିୟମାଣ ହୋଇପଡ଼ିଲେ । ସେ କ'ଣ ଆମ ଦେଶ ହୋଇଛି ଯେ, ପୁଅ ଦେହ ଅସୁଖ ଶୁଣି ସଙ୍ଗେ ସଙ୍ଗେ ତା ପାଖକୁ ଚାଲିଯିବେ କି ତାକୁ ଘରକୁ ନେଇ ଆସିବେ । ଏତେ ଦୂରରେ ରହିଲେ ସେ କେମିତି ଚଳିବ, ଏହାହେଲା ସୀମନ୍ତିନୀ ଦେବୀଙ୍କ ସବୁଠାରୁ ବଡ଼ ଚିନ୍ତା ।

ପୁଅର ଅବିବେକୀପଣିଆ ଶୁଣିବାପରେ ନିଜ ଭାଗ୍ୟକୁ ଆଦରି ରହିଲେ ନାରାୟଣ ବାବୁ । ଏଡ଼େ ହତଭାଗା ପିଲାଟା ? ଚାକିରି ଛାଡ଼ିବା ପୂର୍ବରୁ ଟିକିଏ ଯଦି ପଚାରିଥାନ୍ତା, ତେବେ ତାକୁ ଏଡ଼େ ବଡ଼ ଭୁଲ କରିବାକୁ ସେ କଦାପି ଦେଇ ନ ଥାନ୍ତେ । ତାଙ୍କ ମନରେ କ୍ଷୋଭ ଏତେ ବଡ଼ ଚାକିରିଟି ଛାଡ଼ିଦେଲା, ବାପା ବୋଲି ଟିକିଏ ବି ପଚାରିଲା ନାହିଁ । ନାରାୟଣ ବାବୁ ମନରେ ଏତେ ଆଘାତ ପାଇଲେ ଯେ ପୁଅ ବିଦାୟ ହୋଇଗଲାବେଳେ ତାଙ୍କ ପାଟିରୁ ପଦିଏ କଥା ବି ବାହାରିଲା ନାହିଁ ।

ଦେବସ୍ମାନ କେମ୍ବ୍ରିଜରେ ଯାଇ ଛଅ ମାସ ରହିଲା ପର୍ଯ୍ୟନ୍ତ ନାରାୟଣବାବୁ ପୁଅଠାକୁ ଖଣ୍ଡିଏ ପତ୍ର ମଧ୍ୟ ଲେଖି ନାହାନ୍ତି । ତାଙ୍କ ମନ କଷ୍ଟ ପୁଅଟା କ'ଣ ନ ବୁଝିଲା ସତେ ? ଦେବସ୍ମାନ କିନ୍ତୁ ବାପାଙ୍କ ଠାକୁ ମାଆଙ୍କ ଠାକୁ ଚିଠି ଦେବାରେ ହେଲା କଲାନି । ମା ଚିଠିର ଠିକ୍ ଭାବରେ ଉତ୍ତର ଦିଅନ୍ତି । ଦିର କଥା ଲେଖନ୍ତି । ସେ ବିଦେଶରେ କେମିତି

ଚାଲୁଛି, ତା ଦେଢ଼ପା' କେମିତି ରହୁଛି ପ୍ରତି ଛଡିରେ ପର୍ଯ୍ୟବେଷଣ କରନ୍ତି । ମା'ଙ୍କ ଛଡିରୁ ବାପାଙ୍କ ଦେଢ଼ପା' କଥା ସେ ଶୁଣେ ।

ଦେବସ୍ମାନର ଗବେଷଣା କାର୍ଯ୍ୟ ଖୁବ୍ ଭଲ ଭାବରେ ଚାଲିଥାଏ କେମ୍ବ୍ରିଜରେ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ପ୍ରଧାନ ଅଧ୍ୟାପକ ଡକ୍ଟର ମେକ୍‌ଡୋନାଲ୍‌ଡଙ୍କ ଆଗ ଡାକ ହୋଇଥାଏ ଦେବସ୍ମାନ । ମେକ୍‌ଡୋନାଲ୍‌ଡ ଦେବସ୍ମାନର କାର୍ଯ୍ୟରେ ଖୁବ୍ ପ୍ରୀତ । ପଲିମର୍ ବିଜ୍ଞାନରେ ମେକ୍‌ଡୋନାଲ୍‌ଡଙ୍କ ପ୍ରସିଦ୍ଧି ସାରା ବିଶ୍ୱରେ ଖ୍ୟାତ । ତେଣୁ ତାଙ୍କ ଗାଇଡ ଭାବରେ କାମ କରୁଥିବାରୁ ତା'ର ଭବିଷ୍ୟତ ଯେ ଖୁବ୍ ଉଜ୍ଜ୍ୱଳମୟ ଏଥିରେ ସନ୍ଦେହ କରିବାର କିଛି ନାହିଁ । ଏକେତ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ, ତେଣେ ମେକ୍‌ଡୋନାଲ୍‌ଡଙ୍କ ଗାଇଡ ହୋଇଥିବାରୁ ଭାରତରେ ଉପରକୁ ଉଠିବା ବାଟ ପୁରାପୂରି ଖୋଲା, ତାଙ୍କୁ ଅଟକେଇବା ସାଧ୍ୟ ଆଉ କାହାର ନାହିଁ ।

ଦେବସ୍ମାନର କାର୍ଯ୍ୟ ଦେଖି ମେକ୍‌ଡୋନାଲ୍‌ଡ ବେଳେ ବେଳେ ଆଶ୍ଚର୍ଯ୍ୟ ହୁଅନ୍ତି । ଏତେ ମେଧାବୀ ପିଲା, ପୁଣି ସେଥିରେ ଏତେ ପରିଶ୍ରମୀ, ଏ ଦୁଇଟି ଗୁଣଥିବା ପିଲା ଇଂଲଣ୍ଡରେ ତ ବିରଳ । ତେଣୁ ଦେବସ୍ମାନର ଏ ଦୁଇଟି ଗୁଣ ଥିବାରୁ ସେ ଯେ ଭବିଷ୍ୟତରେ ଜଣେ ବଡ଼ ବୈଜ୍ଞାନିକ ହେବ, ଏ ଆଶା ତାଙ୍କୁ ଜଳ ଜଳ ଦିଶିଲା । ଦେବସ୍ମାନ ପ୍ରତି ସେ ଏତେ ଖୁସି ଯେ ବେଳେ ବେଳେ କହି ପକାନ୍ତି, ସେ ଦେବସ୍ମାନ ଭଳି ଗାଇଡ ତାଙ୍କ ଜୀବନରେ ଦେଖି ନାହାନ୍ତି । ସେ ଗବେଷକ ନୁହେଁ, ଗୋଟିଏ ସୁନା ମୁଣ୍ଡା ।

ଦେବସ୍ମାନ ଗବେଷଣା କରି ଯେଉଁ ନୂତନ ପଲିମରଟି ଆବିଷ୍କାର କରିଛି, ତାହା ଅତିପରିବାହୀ ଭାବରେ ନାହିଁ ନ ଥିବା ଦକ୍ଷତା ଦେଖାଇଛି । ଏଥିପୂର୍ବରୁ ଯେଉଁ କେତେଗୋଟି ଅତିପରିବାହୀ ଆବିଷ୍କୃତ ହୋଇଥିଲା ସେସବୁ ଅଜୈବ ସିରାମିକ୍ ଜାତୀୟ ପଦାର୍ଥ । ତେବେ ଶୁଷ୍କ ବରଫର ତାପମାତ୍ରାରେ ଦେବସ୍ମାନର ପଲିମର୍ ଭଳି କୌଣସିଟି ଅତିପରିବାହୀତା ପ୍ରକୃତି ଦେଖାନ୍ତିନ । ମେକ୍‌ଡୋନାଲ୍‌ଡ ପ୍ରଥମେ ପ୍ରଥମେ ଦେବସ୍ମାନର ଅତିପରିବାହୀ ଭାବରେ ପଲିମରର ଗବେଷଣା ପ୍ରତି ଆଗ୍ରହ ଦେଖାଉ ନ ଥିଲେ । ତାଙ୍କର ଧାରଣା ନ ଥିଲା ପଲିମର୍ ଜାତୀୟ ଜୈବ ପଦାର୍ଥ କେବେ ଅତିପରିବାହୀତା ପ୍ରକୃତି ଦେଖାଇପାରେ ବୋଲି । ଦେବସ୍ମାନର କାର୍ଯ୍ୟ ଏ ଦିଗରେ ଏକ ବ୍ୟର୍ଥ ପ୍ରୟାସ ବୋଲି ସେ ସର୍ବଦା ଭାବୁଥିଲେ । କିନ୍ତୁ ଯେଉଁଦିନ ଦେବସ୍ମାନ ଏହି ବ୍ୟର୍ଥ ଗବେଷଣାକୁ ଏକ ସାର୍ଥକ ଗବେଷଣାର ରୂପ ଦେଇପାରିଲା, ସେଦିନ ମେକ୍‌ଡୋନାଲ୍‌ଡଙ୍କ ଆନନ୍ଦ କହିଲେ ନ ସରେ । ସେ ଆନନ୍ଦରେ ଦେବସ୍ମାନକୁ କୁଣ୍ଢାଇ ପକାଇ କହିଥିଲେ, "ତୁମେ ଏକ ନୂତନ ଯୁଗର ଆରମ୍ଭ କଲ ଦେବସ୍ମାନ । ସାରା ପୃଥିବୀରେ ନାହିଁ ନ ଥିବା ପରିବର୍ତ୍ତନ ଆସିବ ତୁମର ଏହି ଆବିଷ୍କାରଟି ପାଇଁ । ତୁମେ ଖାଲି ଆମ ଗବେଷଣାଗାରର ଏକ ରତ୍ନ ନୁହଁ, ସାରା ପୃଥିବୀର ବିଜ୍ଞାନୀ ସମାଜର ମଉଡ଼ମଣି । ତୁମର ଏହି ଆବିଷ୍କାର ଯଦି ସାଧାରଣ ତାପକ୍ରମରେ କାର୍ଯ୍ୟକାରୀ ହୁଏ, ତେବେ ବିଦ୍ୟୁତ୍ର ଇତିହାସରେ ଆସିବ ନାହିଁ ନ ଥିବା ପରିବର୍ତ୍ତନ ।

ହଜାର ହଜାର ବିଦ୍ୟୁତ୍ ତଥା ଇଲେକ୍ଟ୍ରନିକ୍ ଯନ୍ତ୍ରପାତିରେ ଆସିବ ଏକ ଯୁଗାନ୍ତକାରୀ ରୂପାନ୍ତର । ହଜାର ହଜାର ବିଦ୍ୟୁତ୍ ତଥା ଇଲେକ୍ଟ୍ରନିକ୍ ଯନ୍ତ୍ରପାତିର ରୂପ ପୁରାପୁରି ବଦଳିଯିବ । ସେସବୁ ଯନ୍ତ୍ରର ରୂପ ବଦଳିଯିବା ସଙ୍ଗେ ସଙ୍ଗେ ସେମାନଙ୍କ କାର୍ଯ୍ୟଦକ୍ଷତା ବଢ଼ିଯିବ ଶହ ଶହ ଗୁଣ । ପୃଥିବୀ ପାଦ ଦେବ ପୁରାପୁରି ଏକ ନୂଆ ଯୁଗରେ ।

ମେକ୍‌ଡୋନାଲ୍‌ଡଙ୍କ ଇଚ୍ଛା ଦେବସ୍ମାନ ପିଏଇଚ୍.ଡି. ପାଇ ସାରିବାପରେ ତାକୁ ନିଜ ବିଶ୍ୱବିଦ୍ୟାଳୟରେ ଏକ ଅଧ୍ୟାପକ ଭାବରେ ନିଯୁକ୍ତ ଦେଇ ସବୁଦିନ ପାଇଁ ରଖି-ନେବାକୁ । ତା'ର ଯେଉଁ ଅପୂର୍ବ ପ୍ରତିଭା ଅଛି, ତାହା ଯଦି ବିକଶିତ ହୁଏ, ତେବେ ସେ ତାଙ୍କ ବୟସକୁ ଆସିଲାବେଳକୁ ତାଙ୍କଠାରୁ ଯଥେଷ୍ଟ ଅଧିକ ପ୍ରସିଦ୍ଧି ଅର୍ଜନ କରି ପାରିଥିବ । ଭାରତକୁ ଫେରିଯାଇ ସେ ତା'ର ପ୍ରତିଭାକୁ ଖାଲି ଅପଚୟ କରିବ ସିନା, ବିକଶିତ ହେବାକୁ ସୁଯୋଗ ପାଇପାରିବ ନାହିଁ । ପ୍ରଫେସର ମେକ୍‌ଡୋନାଲ୍‌ଡ ଦେବସ୍ମାନକୁ କେତେଥର ତାଙ୍କ ଅନ୍ତର୍ନିହିତ ଇଚ୍ଛାର ଆଭାସ ଦେଇଛନ୍ତି, କିନ୍ତୁ ତା'ଠାରୁ କିଛି ପ୍ରତ୍ୟୁତ୍ତର ପାଇ ନାହାନ୍ତି । ମନେ ମନେ ଧରି ନେଇଛନ୍ତି, ସମ୍ଭବତଃ ତାକୁ ଏ ଦେଶ ସୁହାଉ ନାହିଁ । ସେ ଦେବସ୍ମାନକୁ ଖୁବ୍ ପ୍ରଶଂସା କରି ତା ବାପାଙ୍କ ପାଖକୁ ଚିଠି ଲେଖନ୍ତି, ଇଚ୍ଛା ବାପା ଯଦି ତାକୁ ପ୍ରବର୍ତ୍ତାଇ ପାରନ୍ତେ, ତେବେ ସେ ଏ ଦେଶରେ ରହି ଯାଆନ୍ତା ।

ଦେବସ୍ମାନ ଆଇ.ଏ.ଏସ୍. ପଦ ଛାଡ଼ିବାଠାରୁ ପୁଅ ସମ୍ପର୍କରେ ନାରାୟଣବାବୁ ସର୍ବଦା ଚୁପ୍‌ଚାପ୍ । କେବେ କାହା ସହିତ ପୁଅ ବିଷୟରେ ଆଲୋଚନା କରନ୍ତିନି । ପ୍ରୋଫେସର୍ ମେକ୍‌ଡୋନାଲ୍‌ଡ଼ଙ୍କଠାରୁ ପୁଅର ପ୍ରଶଂସା ଓ କାର୍ଯ୍ୟଦକ୍ଷତା ଶୁଣି ମନେ ମନେ ଆନନ୍ଦିତ ହେଲେ । କେମ୍ବ୍ରିଜରେ ପୁଅର ସୁନାମ ଯେତେ ବଢ଼ୁଥାଏ, ନାରାୟଣବାବୁ ପୁଅର ପୂର୍ବ କାର୍ଯ୍ୟକୁ ସେତେ ପାଶୋରି ଦେଉଥାନ୍ତି ଓ ପୁଅଠାକୁ ଚିଠି ଲେଖିବା ପୁଣି ଆରମ୍ଭ କରନ୍ତି । ପ୍ରୋଫେସର ମେକ୍‌ଡୋନାଲ୍‌ଡ଼ଙ୍କ ଭିତରି ଇଚ୍ଛା ନାରାୟଣବାବୁ ଜାଣନ୍ତି, କିନ୍ତୁ ପୁଅକୁ କିଛି ଲେଖିପାରନ୍ତି ନି । କାରଣ ସେ ଜାଣନ୍ତି, ପୁଅ ବଡ଼ ସ୍ୱାଧୀନ ମତବାଦୀ । ସେ ନିଜ ଇଚ୍ଛାରେ ଯାହା ଭଲ ପାଇବ କରିବ, କାହା ଇଚ୍ଛାରେ ପରିଚାଳିତ ହେବା ପିଲା ସେ ନୁହେଁ । ତା'ର କେମ୍ବ୍ରିଜରେ ରହିବା ଇଚ୍ଛା ଯଦି ନ ଥିବ ମେକ୍‌ଡୋନାଲ୍‌ଡ଼ ବା ତା ବାପାଙ୍କ ଇଚ୍ଛା ଅଛି ବୋଲି ଯେ ସେ ରହିବ, ତାହା କଦାପି ନୁହେଁ ।

ପ୍ରୋଫେସର୍ ମେକ୍‌ଡୋନାଲ୍‌ଡ଼ ଓ ତାଙ୍କ ଝିଅ ବିନୀତାର ବହୁ ଅନୁରୋଧ ସତ୍ତ୍ୱେ ଦେବସ୍ମାନ କେମ୍ବ୍ରିଜରେ ରହିବାକୁ ଇଚ୍ଛା ଦେଖାଇଲା ନାହିଁ । ପିଏଇଚ୍.ଡି. ପାଇ ସାରିବା ସଙ୍ଗେ ସଙ୍ଗେ ନିଜର ଜୈବ ଅତିପରିବାହୀ ଗବେଷଣାକୁ ଅସମ୍ପୂର୍ଣ୍ଣ ରଖି ନିଜ ଦେଶକୁ ଫେରି ଆସିବା ଇଚ୍ଛା ପ୍ରୋଫେସରଙ୍କୁ ଜଣାଇଦେଲା । ପ୍ରୋଫେସର ପୋଷ୍ଟ ଡ଼କ୍ଟରେଟ୍ ବୃତ୍ତି ଦେଇ ତାକୁ ଆଉ କିଛିଦିନ କେମ୍ବ୍ରିଜରେ ରଖିବାକୁ ଚାହୁଁଥିଲେହେଁ ସେ ତାକୁ ପ୍ରତ୍ୟାଖ୍ୟାନ କରି ନିଜ ଦେଶକୁ ଫେରି ଆସିବାକୁ ଚାହିଁଲା ।

× × × ×

"ଏ କ'ଣ ବନୀତା, ତୁମ ଆଖିରେ ଆଜ ଲୁହ ? ମୋ ଭାରତ ଫେରଯିବାରେ ତୁମେ ସୁଖୀ ନୁହଁ ନା କଅଣ ?"

"କଏ କହିଲା ମୁଁ ସୁଖୀ ନୁହେଁ । ଅତି ସୁଖୀ । ତୁମ ସହିତ ମୋର କ ସମ୍ପର୍କ ଯେ ତୁମେ ଚାଲିଗଲେ ମୁଁ ଦୁଃଖ କରିବ ।"

"ମୁଁ ଚାଲିଗଲେ ତୁମେ ଦୁଃଖ କରିବନି ?"

"କାହିଁକି କରିବ ? ବାପାଙ୍କ ପାଖକୁ ବହୁତ ଛାତ୍ର ଛାତ୍ରୀ ଆସୁଛନ୍ତି, ଯାଉଛନ୍ତି । ମୁଁ କ'ଣ ସମସ୍ତଙ୍କ ପାଇଁ ଏମିତି ଦୁଃଖ କରୁଥିବ ?"

"ଅନ୍ତତଃ ମୋ ପାଇଁ କ'ଣ କରିବନି ?"

"ତୁମ ପାଇଁ କାହିଁକି କରିବ ?"

"ସେମାନେ ଯାହା, ମୁଁ କ'ଣ ସେଇଆ ?"

"ତା ନ ହୋଇଥିଲେ, ତୁମେ କ'ଣ ଏମିତି ମୋତେ ଛାଡ଼ି ଚାଲି ଯାଆନ୍ତ ?"

"ତୁମେ ଆମ ଦେଶ କଥା ଟିକିଏ ଭାବ ବନୀତା । ତୁମ ଦେଶ ବହୁଦିନ ଧରି ଆମ ଦେଶକୁ ପରାଧୀନ କରି ରଖିଥିଲା । ସେହି ପରାଧୀନତା ଭିତରେ ଆମ ଦେଶ ବୈଜ୍ଞାନିକ ଗବେଷଣାରେ ସେମିତି କିଛି ଖ୍ୟାତି ଅର୍ଜନ କରି ଆଗେଇପାରି ନ ଥିଲା । ଆମ୍ଭେମାନେ ଯେଉଁମାନେ ଅନ୍ୟ ଦେଶରେ ଗବେଷଣା କରି ଗବେଷଣାରେ ଦକ୍ଷତା ଅର୍ଜନ କଲୁ, ଆମେ ଯଦି ସେହି ଦକ୍ଷତାକୁ ଉପଯୋଗ କରି ଆମ ଦେଶର ବୈଜ୍ଞାନିକ ଗବେଷଣାକୁ ଉପରକୁ ନ ଉଠାଉଁ, ତେବେ ଆମ ଦେଶ ଏକ ଉନ୍ନତ ଦେଶ ଭାବରେ କ'ଣ କେବେ ପରିଗଣିତ ହୋଇପାରିବ ? ଭାରତରେ ଜନ୍ମ ହୋଇ ଭାରତମାତାର ଆମେ କି ପୂଜା କରି ପାରିଲୁ ସତେ ? ପ୍ରତିବର୍ଷ ବହୁତ ମେଧାବୀ ଛାତ୍ର ବିଲାତ, ଆମେରିକା ଆସି ଏଠି ରହି ଯାଉଛନ୍ତି । ଦେଶକୁ ଆଉ ଫେରୁ ନାହାନ୍ତି । ଭାରତମାତା ସେମାନଙ୍କ ଉଚ୍ଚ ମେଧାଶକ୍ତିରୁ ନିଜ ଦେଶର ଉନ୍ନତି ପାଇଁ କାଣିଚାଏ ବି ପାଇପାରୁନି । ତୁମେ କ'ଣ ଭାବୁଛ ବନୀତା, ମୁଁ ସେମାନଙ୍କ ସହ ସାମିଲ ହୋଇଯିବ ? ଆମ ଦେଶରେ ଯେଉଁ ଅତି କ୍ଷତିକର ବ୍ରେନ୍ ଡ୍ରେନ୍ ଚାଲିଛି, ମୁଁ ତାକୁ କ'ଣ ଅଧିକ ପ୍ରୋତ୍ସାହନ ଦେବ ?"

"ତୁମେ ଜଣେ ଲୋକ ଭାରତ ଫେରି କ'ଣ କରି ପାରିବ ଯେ ? ଭାରତରେ ଗବେଷଣା ପାଇଁ ଇନ୍‌ଫ୍ରାଷ୍ଟ୍ରକ୍‌ଚର୍‌ର ଯେଉଁ ଅଭାବ, ସେଠାରେ ତୁମେ ଗବେଷଣା କରି କ'ଣ କରିପାରିବ ଶୁଣେ ? ତୁମ ମେଧାଶକ୍ତି ଖାଲି ଅପଚୟ ହେବ ସିନା, ତୁମେ କିଛି କରି ପାରିବନି ସେଠି । ତୁମେ ଭାରତକୁ କେବଳ ତୁମ ଦେଶମାତୃକା ବୋଲି ନ ଭାବି ସାରା ପୃଥିବୀକୁ ଯଦି ଦେଶମାତୃକା ବୋଲି ଭାବନ୍ତ ଓ ସାରା ବିଜ୍ଞାନ ଜଗତ କିପରି ଆଗେଇ ପାରିବ ସେକଥା ଚିନ୍ତା କରନ୍ତ, ତେବେ ତାହା ହିଁ ଏ ପୃଥିବୀ ପାଇଁ ତୁମର ସବୁଠାରୁ ବଡ଼ ଦାନ ହୁଅନ୍ତା । ସେହି ସୁବିଧା ଯେଉଁଠି ପାଇବ, ସେଠି ରହି ଗବେଷଣା କଲେ ଏହି ପୃଥିବୀ କେତେ ଉପକୃତ ହୁଅନ୍ତା କହିଲ ?"

"ସେ କଥା ଆମେ ଖାଲି ଭାବିଲେ ଚଳିବ ନାହିଁ ବନୀତା ? ସାରା ପୃଥିବୀ ଯଦି ସେ କଥା ଭାବନ୍ତା, ତେବେ କିଛି ହୋଇପାରନ୍ତା । ସାରା ପୃଥିବୀ ଯଦି ନିଜକୁ ଏକ ବୋଲି ବିଚାରନ୍ତା, ପ୍ରତ୍ୟେକ ଦେଶର ଲୋକଙ୍କୁ ନିଜର ଭାଇ ବୋଲି ଭାବନ୍ତା, ତେବେ ପୃଥିବୀରେ ଉନ୍ନତ, ଅନୁନ୍ନତ, ଅର୍ଦ୍ଧ ଉନ୍ନତ ଭିନ୍ନ ଭିନ୍ନ ରାଜ୍ୟ ରହନ୍ତେ ନି । ଉନ୍ନତ ରାଜ୍ୟମାନେ ନିଜ ନିଜର ସ୍ୱାର୍ଥତ୍ୟାଗ କରି ଅନୁନ୍ନତ ରାଜ୍ୟର ଉନ୍ନତି କରି ନିଜ ଉନ୍ନତ ଅବସ୍ଥାକୁ ଆଣି ପାରନ୍ତେ । ସେ ମନୋଭାବ ଯଦି ପ୍ରତ୍ୟେକ ପୃଥିବୀବାସୀଙ୍କ ମନରେ ଆସନ୍ତା, ତେବେ ପୃଥିବୀରୁ ଯୁଦ୍ଧବିଗ୍ରହ ଚିରଦିନ ପାଇଁ ସମାଧି ଲଭନ୍ତା । ଆଜି ପୃଥିବୀରେ କେହି ଜଣେ ଖାଦ୍ୟାଭାବରୁ କିମ୍ବା ଚିକିତ୍ସା ଅଭାବରୁ ମରନ୍ତେ ନାହିଁ । ପୃଥିବୀରେ ସ୍ୱର୍ଗସୁଖ ବିରାଜମାନ କରନ୍ତା ।"

"ତୁମେ ଖାଲି ମୋତେ ସେହି ବଡ଼ ବଡ଼ ଆଦର୍ଶ କଥା କହି ଭୁଲାଇବାକୁ ଚେଷ୍ଟା କରନି ଦେବ । ମୋ ମନର ବେଦନାକୁ ବୁଝିବାକୁ ଟିକିଏ ଚେଷ୍ଟାକର ।"

"ମୁଁ ଏଥର ଭାରତ ଫେରିଯାଏ ବନୀତା । ଭାରତରେ ଉନ୍ନତ ଗବେଷଣା ପାଇଁ ଯଦି ସୁସ୍ଥ ପରିବେଶ ନ ପାଇବି, ତେବେ ମୁଁ ତୁମ ଦେଶକୁ ନିଶ୍ଚୟ ବାହୁଡ଼ି ଆସିବି ।"

"ସତ କହୁଛ ଦେବ, ତୁମେ ଫେରି ଆସିବ ?"

"ବିଜ୍ଞାନର ଉନ୍ନତି ମୋର ଯଦି ଲକ୍ଷ୍ୟ ହୋଇ ରହିଥିବ, ତେବେ ନିଶ୍ଚୟ ଫେରି ଆସିବି । ମୁଁ ଜାଣେ, ଗବେଷଣା ପାଇଁ ମୋତେ ଏଠି ପ୍ରଶସ୍ତ କ୍ଷେତ୍ର ମିଳିବ ।"

"ତା'ହେଲେ ପ୍ରମିଜ୍ ।" କହୁ କହୁ ହାତ ବଢ଼ାଇଦେଲା ବନୀତା ।

ଦେବସ୍ନାନ ବନୀତାର ଫୁଲିଲି ଫୁଲିଲି ଗୋରା ତକ ତକ ପାପୁଲି ସହିତ ହାତ ମିଳାଇ କହିଲା—"ପ୍ରମିଜ୍ ।"

"ତୁମେ ସତରେ କେଡ଼େ ସୁନ୍ଦର ଦେବ ।" ଏତକ କହୁ କହୁ ଦେବସ୍ନାନକୁ କୁଣ୍ଢାଇପକାଇ ତା'ର କପୋଳ ଉପରେ ଆଙ୍କିଦେଲା ମଧୁର ଚୁମ୍ବନର ଏକ ଅଲିଭା ଦାଗ । ଦେବସ୍ନାନକୁ ନିଜ ଗ୍ରୁଡି ସହିତ ଭିଡ଼ି ଧରି କହିଲା, "ଇଉ ଆର୍ ରିଅଲି ଗ୍ରେଟ୍ ଦେବ ।"

ସେତେବେଳକୁ କେମ୍ବ୍ରିଜର ସେହି ସେଣ୍ଟ୍ ହେଲେନା ପାର୍କରେ ଜନଗହଳି କମି ଆସିଲାଣି । ଶୀତର ମାତ୍ରା ଧୀରେ ଧୀରେ ବଢୁଥିବାରୁ ବନୀତା ଓ ଦେବସ୍ନାନ ଉଠିଲେ ନିଜ ନିଜ ଘରକୁ ଫେରିଯିବା ପାଇଁ ।

× × × ×

ଲଣ୍ଡନ ଉଡ଼ାଜାହାଜ ଘାଟିରୁ ମସ୍କୋ ଦେଇ ଦିଲ୍ଲୀରେ ପହଞ୍ଚି ସେଠୁ ଭୁବନେଶ୍ୱର ଆସିବା ଠିକ୍ ହୋଇଥାଏ । ଭୁବନେଶ୍ୱର ଉଡ଼ାଜାହାଜ ଘାଟିରେ ଦେବସ୍ନାନକୁ ସ୍ୱାଗତ କରିବା ପାଇଁ ନାରାୟଣବାବୁ, ତାଙ୍କ ସ୍ତ୍ରୀ ଓ ତାଙ୍କର ବନ୍ଧୁବାନ୍ଧବ, ଜ୍ଞାତି କୁଟୁମ୍ବମାନେ ଉଡ଼ାଜାହାଜ ଘାଟିରେ ଭିଡ଼ ଜମାଇଥାନ୍ତି ।

ଯଥା ସମୟରେ ଇଣ୍ଡିଆନ୍ ଏୟାର୍ ଲାଇନ୍‌ସର ବୋଇଂ ଉଡ଼ାଜାହାଜ ଭୁବନେଶ୍ୱର ଉଡ଼ାଜାହାଜ ଘାଟିରେ ଓହ୍ଲାଇଲା । ଧୀରେ ଧୀରେ ଜାହାଜରୁ ଯାତ୍ରୀମାନେ ଓହ୍ଲାଇଲେ । ଦେବସ୍ମାନ ଏକ ଧୋତି ପଞ୍ଜାବୀ ପିନ୍ଧି ଉଡ଼ାଜାହାଜରୁ ଓହ୍ଲାଇ ଆସିଲା । ସତେ ଯେମିତି ସେ ଦିଲ୍ଲୀ, ବୋମ୍ବେରୁ ଆସୁଛି । ବିଦେଶରୁ ଆସିବାର ଟିକିଏ ବି ଲକ୍ଷଣ ତା'ଠାରେ ନାହିଁ । ଫୁଲହାର, ଫୁଲତୋଡ଼ା ଧରି ବନ୍ଧୁବାନ୍ଧବମାନେ ଉଡ଼ାଜାହାଜ ଘାଟିର ଗେଟ୍ ପାଖକୁ ଦୌଡ଼ିଗଲେ । ଦେବସ୍ମାନ ଗେଟ୍‌ରୁ ବାହାରି ସବା ପହିଲେ ବାପା ବୋଉଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇ ଅନ୍ୟମାନଙ୍କୁ ସାଦର ପ୍ରଣାମ ଜଣାଇଲା । ତିନିବର୍ଷ ବିଚ୍ଛେଦ ପରେ ପୁଅକୁ ଦେଖି ନାରାୟଣବାବୁ ତାକୁ କୁଣ୍ଢାଇ ପକାଇଲେ ।

କଟକରେ ଦିନଟାଏ ରହି ନାରାୟଣବାବୁ ଓ ତାଙ୍କ ସ୍ତ୍ରୀ ପୁଅକୁ ଧରି ପୁରୀ ଚାଲି ଆସିଲେ । ପୁଅର ବିଲାତ ଦେଶର ଅଭିଜ୍ଞତା ଯାଇପଢ଼ିଶା, ବନ୍ଧୁବାନ୍ଧବ ଶୁଣୁ ଶୁଣୁ ସାତ-ଦିନ କାଳ ମହା ଆନନ୍ଦରେ କଟିଗଲା । ମା, ବାପ, ବନ୍ଧୁବାନ୍ଧବଙ୍କ ପାଇଁ ଯାହା ଯାହା ବିଦେଶୀ ଉପହାର ସବୁ ଆଣିଥିଲା ସେସବୁ ଦେଇସାରିଲା ପରେ ମୁଣ୍ଡରେ ଚିନ୍ତା ପଶିଲା, ଚାକିରି ତ ନାହିଁ ସେ ବର୍ତ୍ତମାନ କରିବ କ'ଣ ? ବିଲାତରୁ ଚାକିରି ପାଇଁ ଦିଲ୍ଲୀକୁ ଦେଇଥିବା ଚିଠି ଉପରେ କିଛି କାର୍ଯ୍ୟାନୁଷ୍ଠାନ କରାଯାଇନି । ନାରାୟଣବାବୁ ପୁଅକୁ ବେକାରରେ ବସିବାକୁ ନ ଦେଇ ଡି.ପି.ଆଇ.ଙ୍କୁ କହି ପୁରୀ କଲେଜରେ ଏକ ଅସ୍ଥାୟୀ ଲେକ୍‌ଚରର ଚାକିରି କରାଇ ଦେଲେ ।

ଇତିମଧ୍ୟରେ ରେଭେନ୍‌ସା କଲେଜରେ ରିଡ଼ର ଚାକିରି ଖୋଲିଗଲା । ପୁଅର ତ ବିଦେଶୀ ଡିଗ୍ରୀ, ଅତି ଉତ୍ତମ କେରିୟର, ସେହି ରିଡ଼ର ପୋଷ୍ଟ ମିଳିବାରେ କିଛି ଅସୁବିଧା ହେଲାନି ।

ନାରାୟଣବାବୁ ଓ ତାଙ୍କ ସ୍ତ୍ରୀଙ୍କର ମନ ଭାରି ଖୁସି, ପୁଅ ଯାହାହେଉ ଭଲ ଚାକିରିଟିଏ ପାଇଲା । ଏତେ ଅଳ୍ପ ବୟସରୁ ଯଦି ସେ ରିଡ଼ର ହୋଇଯାଏ ତେବେ ତା'ର ଭବିଷ୍ୟତ କମ୍ ଉଜ୍ଜ୍ୱଳ ନୁହେଁ । ଅନ୍ୟୂନ ପକ୍ଷେ ସେ ତ ଡି.ପି.ଆଇ. ହୋଇପାରିବ । ଇତିମଧ୍ୟରେ ନାରାୟଣବାବୁଙ୍କର ବଦଳି ଅର୍ଡ଼ର ଆସିଗଲାଣି । ସେ ପୁରୀ କଲେଜର ପ୍ରିନ୍‌ସିପାଲ ପୋଷ୍ଟ ଛାଡ଼ି ସମ୍ବଲପୁର କଲେଜରେ ପ୍ରିନ୍‌ସିପାଲ ହେବା କଥା ।

ରେଭେନ୍‌ସା କଲେଜରେ ଅବସ୍ଥାପିତ ହେବାପରେ ଦେବସ୍ମାନ କେମ୍ବ୍ରିଜରେ ଯେଉଁ ଗବେଷଣା କରୁଥିଲା, ସେହି ଗବେଷଣା ଏଠି ଆରମ୍ଭ କରିବାକୁ ଚେଷ୍ଟା କଲା । ସେଥିପାଇଁ ବିରାଟ ପରିମାଣର ଅର୍ଥ ଓ ଯନ୍ତ୍ରପାତି ଦରକାର । ସରକାରଙ୍କ ଗବେଷଣା ପରିଷଦକୁ ଆର୍ଥିକ ସାହାଯ୍ୟ ପାଇଁ ଯୋଜନା ଓ ଦରଖାସ୍ତ ପଠାଇଲା । ମନ୍ତ୍ରୀ ଓ ଡି.ପି.ଆଇ. ଦେବସ୍ମାନ ପ୍ରତି ଆଗଭଳି ଶୁଭଦୃଷ୍ଟି ଦେଇ ନ ଥିବାରୁ ସଙ୍ଗେ ସଙ୍ଗେ ଆର୍ଥିକ ସାହାଯ୍ୟ ମିଳି ପାରିଲାନି । ବିଦେଶରୁ ଆବଶ୍ୟକୀୟ ଯନ୍ତ୍ରପାତି ମଗାଇବା ଅସମ୍ଭବ ହେଲା । କେମ୍ବ୍ରିଜରେ ଯେଉଁ ଧରଣର ଗବେଷଣା ଚାଲିଛି, କଟକ ରେଭେନ୍‌ସା କଲେଜରେ ସେହି

ଧରଣର ଗବେଷଣା ସମ୍ଭବ ନ ହେବାରୁ ଦେବସ୍ମିନ ବାଧ୍ୟ ହୋଇ ଅନ୍ୟ ଗବେଷଣାରେ ମନୋନିବେଶ କଲା । ମନ ଭିତରର ଅଶାନ୍ତି ତାକୁ ତା'ର ଅଗ୍ରଗତିରେ ଚାଲେ ଚାଲେ ବାଧା ଦେଲା । ହେଲେ ସେ ସେଥିପ୍ରତି ଦୃଷ୍ଟି ନ ଦେଇ ନିଜ ଗବେଷଣାରେ ଆଗେଇବାକୁ ଚେଷ୍ଟାକଲା । ଅଧିକରୁ ଅଧିକ ଛାତ୍ର ତା'ଠାରେ ଗବେଷଣା କରିବାକୁ ଚାଲି ଆସିଲେ ।

ଦେବସ୍ମିନର ଅଧ୍ୟାପକ ଭାବରେ ଭଲ ସୁନାମ ଥିଲା, ବର୍ତ୍ତମାନ ଗବେଷଣାରେ ତା'ର ସୁନାମ ଅଧ୍ୟାପକମାନଙ୍କ ଭିତରେ ତା'ର ସ୍ଥାନ ଢେର୍ ଉପରକୁ ଉଠାଇଦେଲା ।

## ଦଶ

"ତୁମକୁ ମୁଁ କେଉଁଠି ଦେଖିଲା ଦେଖିଲା ଭଳି ମନେ ହେଉଛି । କିନ୍ତୁ ଠିକ୍ ମନେପଡ଼ୁନି କେଉଁଠି ତୁମକୁ ଦେଖିଥିଲି । କହିଲ, ତୁମକୁ ମୁଁ କେଉଁଠି ଦେଖିଥିଲି ।"

"ସାର୍, ମୋ ନାଁ ହେଉଛି ଶୁଭ୍ରା । ଢାଏଷ୍ଟ କଲେଜରେ ଆଜକୁ ଛଅ ସାତବର୍ଷ ତଳେ ଯେଉଁ ଛାତ୍ର ଧର୍ମଘଟ ହୋଇଥିଲା, ସେତେବେଳେ ଆପଣ ଲାଲବାଗ ଥାନାରେ···।"

"ହଁ, ହଁ, ଠିକ୍ ମନେପଡ଼ିଗଲା ଏଥର । ହଁ, ହଁ, ତୁମେ ଶୁଭ୍ରା ?"

କିନ୍ତୁ, ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଦୁଇ ତିନିଥର ଆଖି ବୁଲାଇଆଣି ଦେବସ୍ମିନ କହିଲା, "ତୁମ ପୋଷାକ ପରିଚ୍ଛଦ କ'ଣ ପୁରାପୁରି ବଦଳି ଯାଇଛି ? ତୁମର ସେ ଆମେରିକାନ୍ ପୋଷାକ ତ ଆଜି କ'ଣ ନାହିଁ ? ତୁମେ କ'ଣ ଭାରତୀୟ ପୋଷାକରେ ଗୋଟାସାରା ଦେହକୁ ଆଚ୍ଛାଦିତ କରି ଆସିଛ, ଭାରତୀୟ ସଂସ୍କୃତି ଓ ପରମ୍ପରାକୁ ଯଥେଷ୍ଟ ସମ୍ମାନ ଦେଇ ? ସେ ଶୁଭ୍ରା ଓ ଏ ଶୁଭ୍ରା ଭିତରେ ମୁଁ ଦେଖୁଛି ଆକାଶ ପାତାଳ ପ୍ରଭେଦ, ମାନେ ସୁମେରୁ ଆଉ କୁମେରୁ ?"

"ସାର୍, ସେତେବେଳେ ମୁଁ ଆପଣଙ୍କ ଉପଦେଶକୁ ମନେ ମନେ ହସୁଥିଲି । କିନ୍ତୁ ଧର୍ମଘଟର ଅବସାନ ପରେ ମୁଁ ଉପଲବ୍ଧି କଲି ଆପଣଙ୍କ ଉପଦେଶର ଯଥାର୍ଥତା । ବାସ୍ତବିକ ମୁଁ ଲଜ୍ଜିତ ସାର୍, ସେଭଳି ପୋଷାକ ଦିନେ ପିନ୍ଧୁଥିଲି ବୋଲି ।"

"ଭଲ ହୋଇଛି, ମିସ୍ ଶୁଭ୍ରା ସାମନ୍ତରାୟ ।"

"ସାର୍, ମୋତେ ଏମିତି କ'ଣ କହୁଛନ୍ତି ?"

"ତୁମର କ'ଣ ମନେ ନାହିଁ, ମୁଁ ତୁମକୁ ସେଦିନ ଥାନାରେ ଶୁଭ୍ରାଦେବୀ ବୋଲି ସମ୍ବୋଧନ କରିଥିବାରୁ ତୁମେ ମୋତେ ସଂଶୋଧନ କରି··· ।"

"ସାର୍, ଆପଣ କ'ଣ ସେ କଥା ମନେ ରଖିଛନ୍ତି ଏତେ ଦିନଯାଏ ? ମୁଁ ବଡ଼ ଲଜ୍ଜିତ ମୋର ସେ ବ୍ୟବହାର ପାଇଁ, ଅନୁତପ୍ତ ମଧ୍ୟ ।"

"ତୁମେ ଯେତେବେଳେ କଣୋର ଥିଲ ଶୁଭ୍ରା, ମୋ ଉପଦେଶର ଗୁରୁତ୍ୱ ଉପଲବ୍ଧ କରିପାରି ନ ଥିଲ । ବର୍ତ୍ତମାନ ତୁମେ ଯୁବତୀ, ବାସ୍ତବତାକୁ ବେଶ୍ ହୃଦୟଙ୍ଗମ କରିପାରିଛ ଶୁଣି ଖୁବ୍ ଖୁସି ହେଲି । ତେବେ ତୁମର ମୋଠାକୁ ଆସିବାର ଅଭିପ୍ରାୟ ?"

"ସାର୍, ମୁଁ ଆପଣଙ୍କ ଅଧୀନରେ ପିଏଇଚ୍.ଡି. ଡିଗ୍ରୀ ପାଇଁ ଗବେଷଣା କରିବା ପାଇଁ ଇଚ୍ଛୁକ ।"

ତୁମେ ପିଏଇଚ.ଡି. କରିବ ? ପିଏଇଚ.ଡି. ? ପିଏଇଚ.ଡି. ଗୋଟେ ଆହେ, ତୁମେ ତ ଅନ୍ୟଆଡ଼େ ?"

"ନା, ସାର୍, ମୁଁ ଗତବର୍ଷ ରେଭେନ୍ସା କଲେଜରୁ ରସାୟନ ବିଜ୍ଞାନରେ ଏମ୍. ଏସ୍‌ସି.ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଫାର୍ଷ୍ଟ କ୍ଲାସ୍ ଫାର୍ଷ୍ଟ ହୋଇ ପାସ୍ କରିଛି । ମୋତେ ଆପଣଙ୍କ ଗବେଷଣା ଛାତ୍ରୀ ଭାବରେ ଗ୍ରହଣ କଲେ, ମୁଁ ଅତ୍ୟଧିକ କୃତଜ୍ଞ ହେବି ସାର୍ ।"

"ତୁମେ ଫାର୍ଷ୍ଟ କ୍ଲାସ ଫାର୍ଷ୍ଟ ହୋଇଛ ଏମ୍.ଏସସି.ରେ ସାରା ବିଶ୍ୱବିଦ୍ୟାଳୟରେ ? ରସାୟନ ବିଜ୍ଞାନରେ ? ପୁଣି ଏହି କଲେଜରୁ ? ମୁଁ ସ୍ୱପ୍ନ ଦେଖୁନାହିଁ ତ ?"

"ନା, ସାର୍, ବିଶ୍ୱାସ ଆସୁନି ବୋଧହୁଏ ?"

"ତୁମେ ଫାର୍ଷ୍ଟ କ୍ଲାସ୍ ଫାର୍ଷ୍ଟ, ମାନେ ଗୋଲ୍ଡ ମେଡାଲିଷ୍ଟ ? ତୁମଭଳି ପିଲା କ'ଣ କେବେ ଗୋଲ୍ଡ ମେଡାଲିଷ୍ଟ ହୋଇପାରେ ?"

"ଆପଣଙ୍କର ମୋ ଉପରେ ଏକ ଖରାପ ଧାରଣା ମୂଳରୁ ରହିଯାଇଛି ସାର୍ ! ସେଥିପାଇଁ ବିଶ୍ୱାସ ହେଉନି ଆପଣଙ୍କର । ମୋର ପୂର୍ବ ବ୍ୟବହାରକୁ ମନେ ପକାଇ ଆପଣ ପଛାଉଛନ୍ତି ମୋତେ ଗ୍ରହଣ କରିବା ପାଇଁ । ମୋର ଏହା ଭିତରେ ଯଥେଷ୍ଟ ପରିବର୍ତ୍ତନ ହୋଇଯାଇଛି ସାର୍ । ମୁଁ ମୋର ସେହି ବିଗତ ଜୀବନ ପାଇଁ ବିଶେଷ ଭାବରେ ଅନୁତପ୍ତ । ଆପଣଙ୍କର ସେହି କଡ଼ା ତାଗିଦ୍ ମୋତେ ଠିକ୍ ବାଟକୁ ଆଣିପାରିଛି ସାର୍ ।"

"ତୁମେ ତ ଜାଣ ଶୁଭ୍ରା, ମୁଁ କୌଣସି ଝିଅପିଲାଙ୍କୁ ମୋ ଅଧୀନରେ ଗବେଷଣା କରିବା ପାଇଁ ନିଏନି । ତୁମେ ଏହା ଜାଣିଶୁଣି ମୋ ଠାକୁ କେମିତି ଆସିଛ, ମୁଁ ବୁଝି-ପାରୁନି । ମୁଁ ଯେଉଁ ଜୈବ ରସାୟନରେ ଗବେଷଣା କରୁଛି ସେହି ଜୈବ ରସାୟନରେ ଅଧ୍ୟାପକ ସିଂହ, ଅଧ୍ୟାପକ ପଟ୍ଟନାୟକ ଆଦି ତ କାମ କରୁଛନ୍ତି । ସେମାନେ ମୋ ଠାରୁ ବହୁତ ସିନିୟର । ତୁମେ ମୋ ଠାକୁ ନ ଆସି ସେମାନଙ୍କ ପାଖକୁ ତ ଯାଇ ପାରିଥାନ୍ତ ?"

ହସିଲି ଶୁଭ୍ରା, ଏକ ସରଳିଆ ହସ । କହିଲା, "ସାର୍, ମୋ ଏମ୍.ଏସ୍‌ସି. ଫଳ ବାହାରିଲା ଦିନଠାରୁ ଅଧ୍ୟାପକ ପଟ୍ଟନାୟକ ମୋତେ ବାଟରେ ଘାଟରେ ଯେଉଁଠି ଦେଖିଲେ, ତାଙ୍କଠାରେ ଗବେଷଣା କରିବା ପାଇଁ ଉପଦେଶ ଦେଲେ । ଇତିମଧ୍ୟରେ ଆମ ଘରକୁ ଯାଇ ବାପାଙ୍କୁ ପ୍ରବର୍ତ୍ତାଇଲେ, ମୁଁ ତାଙ୍କଠାରେ ଗବେଷଣା କରିବି ବୋଲି । ତାଙ୍କ-ଠାରେ ଗବେଷଣା କରିବା ଅର୍ଥ ଭଣ୍ଡାମୀ । କାମ କରିବା ଦରକାର ନାହିଁ । ଖାଲି ନାମ

ରେଜିଷ୍ଟ୍ରୀ କରିଦେଇ ନିଜ କାମରେ ଯାଅ । ଦୁଇବର୍ଷ ଶେଷ ହେଲାବେଳକୁ ଥିସିସ୍ ଲେଖା ହୋଇ ଥିଆ ହୋଇଥିବ । ଖାଲି ଏହି ଥିସିସ୍ ବାବଦକୁ ମାତ୍ର କେତେ ହଜାର ଟଙ୍କା ଦେଇଦେଲେ ହେଲା । ଏହାକୁ ଯାର୍ ଭଣ୍ଡାମୀ କୁହାଯିବ ନାହିଁ ତ ଆଉ କ'ଣ କୁହାଯିବ ?''

ତା'ଛଡ଼ା ଗବେଷଣା ବୃତ୍ତି ତାଙ୍କ ପାଖରେ ସବୁବେଳେ ଥିଆ । ଗବେଷଣା ବୃତ୍ତିର ଏକ-ଚତୁର୍ଥାଂଶ ତାଙ୍କୁ ଦେଇଦେଲେ ସଙ୍ଗେ ସଙ୍ଗେ ବୃତ୍ତି ମିଳିଗଲା । କଣ୍ଟିଜେନ୍ସି ଟଙ୍କାତକ ସବୁ ତାଙ୍କର । ଏସବୁ ବ୍ୟତୀତ ତାଙ୍କ ଘରର ବଜାର ସଉଦାଠାରୁ ଆରମ୍ଭକରି ପନିପରିବା କିଣା, ଗୋରୁଗାଈଙ୍କ ପାଇଁ ଖ୍ୟେକଡ଼, ଚୂନି ଆଦି ଗୋଖାଦ୍ୟ ଖରିଦ୍, ବେଳେ ବେଳେ ପିଲାପିଲିଙ୍କୁ ସ୍କୁଲ୍ ନେବା ଆଣିବା କାମ, ଏପରିକି ଦରକାର ପଡ଼ିଲେ ପିଲାମାନଙ୍କ ଜୋତା ମରାମତି କାମ କରାଇବାକୁ ପଡ଼ିବ । ଏସବୁ ହେଲା ଗୁରୁ ସମ୍ମାନର ପ୍ରତୀକ ।

ଯେଉଁ ଗବେଷକ ଏସବୁ କାମ କରିବାକୁ ପଛାଇବ, ତା'ର ଗୁରୁ ସମ୍ମାନ ନାହିଁ ବୋଲି ଧରି ନିଆଯିବ । ସେ କ୍ଷେତ୍ରରେ ଥିସିସ୍ ବାବଦ ପ୍ରାପ୍ୟ ଦୁଇଗୁଣକୁ ବଢ଼ିଯିବ । ଅବଶ୍ୟ ଝିଅ ପିଲାମାନଙ୍କୁ ଏସବୁ କରିବାକୁ ପଡ଼େନି । ତେବେ ଦୁଇ ତିନି ଦିନରେ ଥରେ ଲେଖାଏଁ ତାଙ୍କ ଘରକୁ ଯାଇ ତାଙ୍କ ମିସେସ୍‌ଙ୍କ ହାଲ ଚାଲ ଲଭ, ସୁବିଧା ଅସୁବିଧା ବୁଝିବାକୁ ପଡ଼ିବ । ଗଲାବେଳେ ଖାଲି ହାତରେ ନ ଯାଇ ତାଙ୍କ ପିଲାଙ୍କ ପାଇଁ ଚକୋଲେଟ୍, ବିସ୍କୁଟ ଆଦି ନେବାକୁ ପଡ଼ିବ, ପିଲାମାନଙ୍କୁ କାଖ କୋଳ କରି ଧୋ'ଥରେ ବାସ୍ଲା ଧୋ' କହିବାକୁ ପଡ଼ିବ ।

ତାଙ୍କଠାରେ ମୋ ସାଙ୍ଗ ଇତଣୀ ଏବେ କାମ କରୁଛି । ତାକୁ ଦିନେ ପଚାରିଲି ଅଧ୍ୟାପକ ପଟ୍ଟନାୟକଙ୍କ ପାଖରେ ସବୁବେଳେ ଗବେଷଣା ବୃତ୍ତି ମିଳୁଛି କେମିତି ?

ସେ ହସିଲା ମୋ ପ୍ରଶ୍ନରେ । କହିଲା, ''ଅଧ୍ୟାପକ ପଟ୍ଟନାୟକଙ୍କ ଭଳି ଯୋଗାଡ଼ି ଲୋକ ଖୁବ୍ କମ୍ ଅଛନ୍ତି ଆମ କଲେଜରେ । ସେ ପ୍ରତି ଦୁଇ ତିନି ମାସରେ ଥରେ ଲେଖାଏଁ ଦିଲ୍ଲୀ ଯାଇ ସେଠା ଅଫିସ୍‌ରେ ବସନ୍ତି । କାହାକୁ ହୋଟେଲରେ, କାହାକୁ ରେଷ୍ଟୁରେଣ୍ଟରେ ଖୁଆଇ, କାହାକୁ ସିନେମା ଦେଖାଇ, କାହାକୁ ବିଭିନ୍ନ ପାନୀୟ ପିଆଇ ବା କାହାକୁ କିଛି ଉପହାର ବା ହାତଗୁଞ୍ଜା ଦେଇ ଖୁସି କରନ୍ତି । ତା'ପରେ ଯେତୋଟି ବୃତ୍ତି ତାଙ୍କର ଦରକାର ଥିବ, ସେହି ବୃତ୍ତିର ଶତକଡ଼ା ଦଶଭାଗ ଅର୍ଥ ଆଗଭୁରା ନିଜ ପକେଟରୁ ଦେଇ ବୃତ୍ତିତକ ନେଇ ଆସନ୍ତି ।

ତା'ପରେ ଏଠାରେ ଶତକଡ଼ା ପଚିଶ ଲାଭରେ ଗବେଷଣା ଛାତ୍ରଙ୍କୁ ବୃତ୍ତିଗୁଡ଼ିକୁ ବିକି ଦିଅନ୍ତି । ତାଙ୍କ ଯୁକ୍ତି ହେଲା ସିଏତ ଏଥିପାଇଁ କିଛି ପଇସା ହାତରୁ ଖର୍ଚ୍ଚ କରିଛନ୍ତି । ତେଣୁ ସେ ନିଜେ ଏଥିରୁ କିଛି ଅର୍ଥ କାଟି ନ ନେଲେ ହେବ କେମିତି ? ଆମେ ପିଲାଏ ମଧ୍ୟ ସେଥିରେ ରାଜି ହୋଇଯାଉ । କାରଣ ଅନ୍ୟ କେଉଁଠି ତ ବୃତ୍ତି ପାଇ ନ ଥାନ୍ତୁ, ଯା'ହେଉ ଏଠିତ ମିଳି ଯାଉଛି ।

ଆଜ୍ଞ ଶୁଣିବେ ଡକ୍ଟର ପାଣିଗ୍ରାହୀଙ୍କ କଥା । ତାଙ୍କ ପାଖରେ ମୀତା ବୋଲି ଗୋଟିଏ ଝିଅ କାମ କରୁଥିଲା । ଅତି ମେଧାବୀ ଝିଅ । ମୀତା ତାଙ୍କ ଅଧୀନରେ ରେଜିଷ୍ଟ୍ରେସନ କରି କାମରେ ଆଗେଇଗଲା । ତା ଥିସିସ୍ କାମ ପ୍ରାୟ ସରିବା ଉପରେ । ମୀତାର ବାପା ତାଙ୍କ ପୁରୁଣା ମଟରଗାଡ଼ି ବିକିବାକୁ ଚାହିଁଲେ । ଡକ୍ଟର ପାଣିଗ୍ରାହୀ କେମିତି ଏକଥା ଜାଣି ପାରିଲେ । ସଙ୍ଗେ ସଙ୍ଗେ ମୀତାକୁ ଡାକି କହିଲେ, "ଦେଖ ମୀତା, ତୁମ ବାପାଙ୍କୁ କହିବ, ମୁଁ ତୁମ ଗାଡ଼ିଟି ଖରିଦ କରିବି । ଆଜି ସନ୍ଧ୍ୟାବେଳେ ଗାଡ଼ି ଦେଖିବାକୁ ଯିବି ।"

କଥାନୁସାରେ ସେ ମୀତା ଘରକୁ ଗଲେ । ତା ବାପା ତାଙ୍କୁ ଗାଡ଼ି ଦେଖାଇଲେ । ଆଗରୁ ଶୁଣିଥିଲେ ଗାଡ଼ିର ଦାମ୍ କେତେ ହୋଇଛି । ଅନ୍ୟମାନେ ମୂଲ କରିଥିବା ଦାମ୍‌ଠାରୁ ଦଶହଜାର ଟଙ୍କା କମ୍ ଦେଇ କିଣିବା ପାଇଁ କହିଲେ । ମୀତାର ବାପା ସେଥିରେ ରାଜି ନ ହେବାରୁ ମୀତାର କାମ ପ୍ରତି ଅବହେଳା ଦେଖାଇଲେ, ତା ଥିସିସ୍ ଦେଖିବାରେ ଟାଳଟୁଳ କଲେ । ସେ ବିଚାରୀ ଥିସିସ୍ କେମିତି ଦାଖଲ କରିବ, ସେହି ହେଲା ଚିନ୍ତା । ଡକ୍ଟର ପାଣିଗ୍ରାହୀ ତା କାମ ପ୍ରତି ଆଗ୍ରହ ନ ଦେଖାଇବାରୁ ମୀତା ବର୍ତ୍ତମାନ ଥିସିସ୍ କାମ ଛାଡ଼ି ଘରେ ବସିଛି । କେଡ଼େ ମେଧାବୀ ଛାତ୍ରୀ, କି ଦୁରବସ୍ଥା ନ ହେଉଛି ଝିଅ ? ଅଧ୍ୟାପକମାନେ ଯଦି ତାଙ୍କର ଛାତ୍ରୀଙ୍କଠାରୁ ଏମିତି ଫାଇଦା ଉଠାଇବାକୁ ଚେଷ୍ଟା କରିବେ, ତେବେ ଗବେଷଣା କେଉଁଆଡ଼େ ଯାଉଛି ଭାବିବା କଥା ।

"ଦେଖ ଶୁଭ୍ରା, ତୁମର ଗୁରୁମାନଙ୍କୁ ନିନ୍ଦା କରିବାର ଏକ ବଦଭ୍ୟାସ ଅଛି । ଯେତେହେଲେ ଡକ୍ଟର ପଟ୍ଟନାୟକ, ଡକ୍ଟର ପାଣିଗ୍ରାହୀ ତୁମର ଗୁରୁ । ସେମାନଙ୍କ ନିନ୍ଦା ଆସି ମୋ ଆଗରେ କହିବା କେତେ ଖରାପ, ତୁମେ ବୁଝିପାରୁନ ବୋଧହୁଏ ?

ତୁମେ ଆଜି ତାଙ୍କ ନିନ୍ଦା ମୋଠାରେ କରୁଛ, କାଲି ମୋ ନିନ୍ଦା ଯାଇ ଅନ୍ୟ କାହାଠାରେ କରିବ । ତେଣୁ ତୁମ ସଂସ୍ପର୍ଶରେ ଆସିବା ଅର୍ଥ ନିଜ ପ୍ରତି ବିପଦ ଟାଣି ଆଣିବା କଥା । ତୁମେ ଅତି ଶୀଘ୍ର ଏଠୁ ଗଲ ।"

"ସାର୍, ଆପଣଙ୍କ ନିନ୍ଦା କରିବାକୁ ବହୁତ କମ୍ ଲୋକଙ୍କର ସାହସ ଅଛି । ଯେଉଁ ଅଧ୍ୟାପକମାନଙ୍କର ଦୁର୍ବଳତା ଅଛି, ସେମାନଙ୍କୁ ସିନା କିଏ ନିନ୍ଦା କରିବ, ଯେଉଁମାନେ ଏହାଠାରୁ ତେର୍ ଉଚ୍ଚରେ ସେମାନଙ୍କୁ ନିନ୍ଦା କରିବାକୁ ସାହସ କାହାର ?"

"ତୁମେ ବେଶ୍ ବନେଇଚୁନେଇ କଥା କହିପାର । କେଉଁଠି କେଉଁ କଥା କୁହା ହେବା ଦରକାର, ତୁମକୁ ବେଶ୍ ଭଲ ଭାବରେ ଜଣା ।"

"ସାର୍, ଆପଣ ତ ସବୁବେଳେ ମୋ କଥାକୁ ପରିହାସ କରିବେ ।"

"ତୁମ ଗୁରୁମାନଙ୍କୁ ନିନ୍ଦା କରିବାକୁ ତୁମକୁ ଟିକିଏ ସଙ୍କୋଚ ଲାଗେନି ଶୁଭ୍ରା ?"

"ମୁଁ କହନ୍ତି ନାହିଁ ସାର୍, ସେମାନଙ୍କର ବ୍ୟବହାର ମୋତେ କହିବାକୁ ବାଧ୍ୟ କରୁଛି । ପ୍ରୋଫେସର ସିଂହଙ୍କ ଗବେଷଣାରେ ଯେଉଁ କୁଖ୍ୟାତ, ସେଥିରେ ସେ ଯାଇ

ବାପାଙ୍କ ପାଖରେ କହିଛନ୍ତି, ମୁଁ ତାଙ୍କଠାରେ ଗବେଷଣା କରିବ ବୋଲି । ତାଙ୍କର ଅସନ୍ତୁ ଚରିତ୍ର ଯୋଗୁଁ ତାଙ୍କ ପାଖ କେହି ଝିଅ ମାଡ଼ି ନାହାନ୍ତି । ସେଥିରେ ସେ ମୋତେ ନେବା ପାଇଁ କେମିତି ଯାଇ ବାପାଙ୍କୁ କହିଲେ, ମୁଁ ତାହା ହିଁ ଭାବି ଆଶ୍ଚର୍ଯ୍ୟ ହେଉଛି । ଆଜିକାଲି କୌଣସି ଭଦ୍ରଘରର ଝିଅ ତାଙ୍କୁ ସାକ୍ଷାତ କରିବାକୁ ଡରନ୍ତି, ଗବେଷଣା ତ ଦୂରର କଥା । ଗୁରୁ ହୋଇ ଛାତ୍ରୀମାନଙ୍କ ପ୍ରତି ତାଙ୍କ ବ୍ୟବହାର ଅତି ଅଶ୍ଳୀଳ ଓ ଜଘନ୍ୟ । ସେ ଚାହାନ୍ତି, ତାଙ୍କ ଗବେଷଣା-ଛାତ୍ରୀମାନେ ତାଙ୍କ ସହିତ ହୋଟେଲ ଯାଆନ୍ତେ, ସିନେମା ଯାଆନ୍ତେ, କ୍ଲବ୍ ଯାଆନ୍ତେ । ତା ଛଡ଼ା··· ।"

"ଥାଉ ଥାଉ ଶୁଭ୍ରା, ଫେର୍ ସେହି ଗୁରୁ ନିନ୍ଦା ! ଦେଖ, ତୁମେ ଏବେ ଏଣିକି କେଉଁ ଶିକ୍ଷକଙ୍କ ନାଁରେ ମୋଠାରେ କିଛି କହିବ ନାହିଁ । ଏହା ଭାରି ଖରାପ କଥା । ଗୁରୁ ନିନ୍ଦା ନର୍କେ ବାସ, ତୁମେ କ'ଣ ଜାଣିନ ?"

"ନା ସାର୍, ଆଉ କହିବିନି । ଏଥର କାନ ମୋଡ଼ି ହେଉଛି । ଆପଣଙ୍କ ଆଗରେ ମୁଁ କହନ୍ତିନି ସାର୍, ସେମାନଙ୍କ ବ୍ୟବହାର ମୋତେ ସେମାନଙ୍କ ନାଁରେ କହିବାକୁ ବାଧ୍ୟ କରୁଛି । ମୁଁ କାହା ପାଖରେ ଗବେଷଣା କରିବ ନ କରିବ ସେଟା ମୋର ବ୍ୟକ୍ତିଗତ ଇଚ୍ଛା । ସେମାନେ କାହିଁକି ବାପାଙ୍କୁ ଯାଇ ବାରମ୍ବାର କହିବେ ଯେ ମୁଁ ସେମାନଙ୍କ ପାଖରେ ଗବେଷଣା କରେଁ ବୋଲି ?"

ବାପା ସେମାନଙ୍କୁ ମଧ୍ୟ ବେଶ୍ ଭଲ ଭାବରେ ଚହ୍ନି ଗଲେଣି ସାର୍ । କାଲି ମୋତେ କହୁଥିଲେ, "ଦେଖ୍ ମା, ମୁଁ ବର୍ତ୍ତମାନ ଏହି ଅଧ୍ୟାପକମାନଙ୍କ ନାଁରେ ଯେଉଁସବୁ କଦର୍ଯ୍ୟ କଥା ଶୁଣୁଛି, ସେଥିରେ ତୋତେ ଗବେଷଣା ଦିଗରେ ପଠାଇବାକୁ ମୋର ମୋଟେ ଇଚ୍ଛା ହେଉନି । ତେବେ ତୁ ଯଦି ଗବେଷଣା କରିବାକୁ ଏକାନ୍ତ ଜିଦ୍ ଧରୁ, ତେବେ ଡକ୍ଟର ଦାସଙ୍କ ପାଖରେ ଗବେଷଣା କର । ସେ ହେଲେ ସାରା କଲେଜରେ ଗୋଟାଏ ମଣି । ସେ ଯଦି ତୋତେ ନିଅନ୍ତି, ଭଲ କଥା, ନଚେତ୍ତୁ ତୋର ଗବେଷଣା ବନ୍ଦ । କେମ୍ବ୍ରିଜରେ ମୁଁ ତାଙ୍କର ଯେଉଁ ଅପୂର୍ବ ଖ୍ୟାତି ଶୁଣି ଆସିଛି, ତାଙ୍କ ଭଳି ବୈଜ୍ଞାନିକ ଆମ ଦେଶରେ ବିରଳ । ଅଧ୍ୟାପକ ମେକ୍‌ଡୋନାଲ୍‌ଡ ତାଙ୍କ ଝିଅ ବନ୍ଦିତାକୁ ବିବାହ ଦେଇ ତାଙ୍କୁ ସବୁଦିନ ପାଇଁ କେମ୍ବ୍ରିଜରେ ରଖିନେବାକୁ ଚାହୁଁଥିଲେ । ତାଙ୍କ ଭିତରେ ଯେଉଁ ଅପୂର୍ବ ପ୍ରତିଭା ଅଛି, ତାକୁ ଆବିଷ୍କାର କରିପାରିଥିଲେ ଅଧ୍ୟାପକ ମେକ୍‌ଡୋନାଲ୍‌ଡ । ହେଲେ, ସେ ରହିଲେ କାହିଁ ?"

ହସିଲି ଦେବସ୍ନାନ, "ତୁମର ପରିବର୍ତ୍ତନ ଓ ପ୍ରଗଲ୍‌ଭତା ଦେଖି ମୁଁ ଖୁସି ହେଉଛି ଶୁଭ୍ରା । ହେଲେ, ତୁମକୁ ଗବେଷଣା-ଛାତ୍ରୀ ଭାବରେ ଗ୍ରହଣ କରିବା ପାଇଁ ମୋ ମନ ମୋଟେ କହୁନି । ମୋ ଧାରଣା, ଝିଅମାନେ ଗବେଷଣା କରିବା ଉଚିତ ନୁହେଁ । ସେମାନେ ଯଦି ଗବେଷଣା କରିବେ, ତେବେ ଘର ସଂସାର, ପୁଅ ଝିଅଙ୍କ କଥା କିଏ ବୁଝିବ ? ସେଥିପାଇଁ ମୁଁ ଝିଅମାନଙ୍କୁ ଗବେଷଣା ପାଇଁ ନେବାକୁ ରାଜି ନୁହେଁ ।"

"କିନ୍ତୁ କାହିଁକି ସାର୍ ? ମେଡେମ୍ କିଉରି ତ ଘର ସଂସାର କରି ପିଲାଛୁଆଙ୍କୁ ଜନ୍ମ ଦେଇ ବଢ଼ାଇ ଗବେଷଣା କରି ଏକାଧିକବାର ନୋବେଲ ପୁରସ୍କାର ପାଇ ନାରୀ ଜାତିର ମୁଖ ଉଜ୍ଜ୍ୱଳ କରି ପାରିଥିଲେ ।"

"ଦେଖ, ସେ ଦେଶର ନାରୀ ଓ ଆମ ଦେଶର ନାରୀ ଭିତରେ ଢେର୍ ତଫାତ୍ । ଆମ ଦେଶର ନାରୀମାନେ ଘର ସଂସାର ଦାୟିତ୍ୱରେ ରହିବା ଉଚିତ । ସେମାନେ ଗବେଷଣାଆଡ଼କୁ ମନ ବଳାଇବା ଉଚିତ ନୁହେଁ ।"

ଶୁଭ୍ରା ମୁହଁ ଶୁଖାଇ କହିଲା, "ହେଉ ସାର୍, ଆପଣଙ୍କ ଇଚ୍ଛା ବିରୋଧରେ ମୋର କିଛି କହିବାର ନାହିଁ ।" ଏତିକି କହି ନମସ୍କାର ଜଣାଇ ମନ କଷ୍ଟରେ ବାହାରିଗଲା ସେଠୁ ।

ଅତି ବିଷଣ୍ଣ ବଦନରେ ଶୁଭ୍ରାକୁ ଫେରିଯିବାର ଦେଖି ଦେବସ୍ନାନର ଟିକିଏ ଦୟା ହେଲା । ସେ ପଛରୁ ଡାକି କହିଲା, "ଦେଖ ଶୁଭ୍ରା, ଖାସ୍ ତମରି ପାଇଁ ମୁଁ ମୋର ପୂର୍ବ ମତ ବଦଳାଇବାକୁ ବାଧ୍ୟ ହେଲି । ତେବେ ଗୋଟିଏ ସର୍ତ୍ତରେ । ତୁମେ ଏଠି ଯେତେବେଳେ ଗବେଷଣା କରିବ, ଖୁବ୍ କମ୍ କଥା କହିବ ଓ ଗୁରୁମାନଙ୍କ ନିନ୍ଦା ମୋଟେ କରିବନି । ଯେଉଁଦିନ ଏଠି ଗୁରୁଙ୍କୁ ନିନ୍ଦା କଲ ବୋଲି ଜାଣିବି, ସେହି ଦିନଠାରୁ ତୁମ ଗବେଷଣା ବନ୍ଦ । ଏଥିରେ ତୁମେ ରାଜି ତ ?"

"ହେଉ ସାର୍ । ମୁଁ ଆପଣଙ୍କ କଥାରେ ପୂରାପୂରି ରାଜି ।" କହୁଁ କହୁଁ ଶୁଖି ଯାଇଥିବା ମୁହଁ ତା'ର ଆନନ୍ଦରେ ପୁଣି ଉଜ୍ଜ୍ୱଳ ହୋଇ ଉଠିଲା ।

"କିନ୍ତୁ ତୁମେ ଗବେଷଣା ବୃତ୍ତି ପାଇଁ କ'ଣ ବିଶ୍ୱବିଦ୍ୟାଳୟକୁ ଦରଖାସ୍ତ କରିଛ ? ମୋ ଠାରେ ତ ବର୍ତ୍ତମାନ ପାଇଁ କିଛି ବୃତ୍ତି ନାହିଁ ।"

"ମୋର ବୃତ୍ତି ଦରକାର ନାହିଁ ସାର୍ । ମୁଁ ବିନା ବୃତ୍ତିରେ ଗବେଷଣା କରିବି । ମୋ ବାପା ମୋ ପାଇଁ ଯେତେ ଅର୍ଥ ଦରକାର, ବ୍ୟୟ କରିବାକୁ ପ୍ରସ୍ତୁତ । ଗବେଷଣା ପାଇଁ ଯେଉଁ ଯନ୍ତ୍ରପାତି ବା କେମିକେଲ ଦରକାର, ତାହା ପୃଥିବୀର ଯେଉଁ କୋଣରେ ମିଳୁଥିଲେହେଁ ସେ ମୋତେ ଆଣି ଯୋଗାଇ ଦେଇପାରିବେ ।"

"ତାହାହେଲେ ତ ଆହୁରି ବିପଦ । ମୋତେ ତ ଦିନେ ତୁମେ ବନ୍ଧାଇବ ସ୍ମଗ୍‌ଲିଂ କେଇସ ଦେଇ ।"

ହସିଲା ଶୁଭ୍ରା, "ମୋ ବାପା ବର୍ତ୍ତମାନ ପୂର୍ବ ସମ୍ପର୍କ ଛାଡ଼ି ଦେଇଛନ୍ତି ସାର୍ । ସେ ବର୍ତ୍ତମାନ ଭାରତ ସରକାରଙ୍କର ଏକ୍‌ସପୋର୍ଟର୍ ଇମ୍ପୋର୍ଟର୍ ଭାବରେ ନିୟମାନୁବର୍ତ୍ତୀ ମୁକ୍ତ ବ୍ୟବସାୟ କରୁଛନ୍ତି । ଆପଣ ମୋତେ ଯେଉଁଦିନ ଆରେଷ୍ଟ କରି ଥାନା ହାଜତରେ ରଖିଦେଲେ, ସେହିଦିନଠାରୁ ବାପାଙ୍କ ମନରେ କି ପରିବର୍ତ୍ତନ ଆସିଲା କେଜାଣି, ସେ ପୂର୍ବ ସମ୍ପର୍କ ପୂରାପୂରି ତ୍ୟାଗ କରି ବର୍ତ୍ତମାନର ମୁକ୍ତ ବ୍ୟବସାୟକୁ ଆଦରି ନେଲେ ।"

"ବାପାଙ୍କର ଆପଣଙ୍କ ପ୍ରତି ଅଶେଷ ସମ୍ମାନ ରହିଛି ସାର୍ । ସେ କହନ୍ତି, ଯେଉଁଲୋକ ଆଇ.ଏ.ଏସ୍. ଚାକିରିକୁ ଗୋଇଠାମାରି ଛାଡ଼ିଦେଇ ଗବେଷଣାକୁ ଆଦରି ନେଇପାରନ୍ତି, ସେ ସାମାନ୍ୟ ଲୋକ ନୁହଁନ୍ତି ମା' । ମଣିଷର ଚରିତ୍ର, ମଣିଷର ମହାନୁଭବତା ବଡ଼ ଜିନିଷ । ପଦ ପଦବୀ ବଡ଼ ଜିନିଷ ନୁହେଁ । ଆଜିକାଲିକା ଟୋକାଗୁଡ଼ାଙ୍କର ନିଜତ୍ୱ ବୋଲି ତ କିଛି ନାହିଁ, ପଦ ପଦବୀ ଆଶାରେ ଆଇ.ଏ.ଏସ୍. ପଛରେ ଗୋଡ଼ାଇଛନ୍ତି । ଦେବସ୍ନାନବାବୁ ସାଧାରଣ ମଣିଷଠାରୁ ଢେର୍ ଉଚ୍ଚରେ, ତାଙ୍କ ପାଦଧୂଳି ନେବାକଥା ମା' ।"

× × × ×

ମଧୁସ୍ମିତା ଘରେ ଦେବସ୍ନାନଙ୍କୁ ନେଇ ବହୁ ବାକ୍‌ବିତଣ୍ଡା ହୁଏ । ଡି.ପି.ଆଇ. ଡକ୍ଟର ଶାନ୍ତନୁ ମହାପାତ୍ର ଦେବସ୍ନାନ ଆଇ.ଏ.ଏସ୍. ଚାକିରି ଛାଡ଼ିଦେଲା ପରେ ତା ନାଁ ଜୋଇଁ-ତାଲିକାରୁ ପୁରାପୁରି କାଟି ଦେଇଥାନ୍ତି । କିନ୍ତୁ ମିସେସ୍ ମହାପାତ୍ର ଦେବସ୍ନାନ ଉପରେ ଅତ୍ୟନ୍ତ ଖୁସି । ମିସେସ୍ ମହାପାତ୍ର ମଣିଷ ଚିହ୍ନନ୍ତି, ପଦ ପଦବୀକୁ ଚିହ୍ନନ୍ତି ନାହିଁ । ତାଙ୍କ ମତରେ ଦେବସ୍ନାନ ଭଳି ପାତ୍ର ସାରା ଦେଶରେ ବିରଳ । ଭାଗ୍ୟରେ ଥିଲେ ତା'ଭଳି ପାତ୍ର ଝିଅ ପାଇଁ ମିଳିବ । କଥା ପଡ଼ୁ ପଡ଼ୁ ଦିନେ ଡକ୍ଟର ମହାପାତ୍ରଙ୍କ ଆଗରେ ଦେବସ୍ନାନ ସହିତ ମଧୁସ୍ମିତାର ବିଭାଘର ପ୍ରସ୍ତାବ ବାଢ଼ି ବସିଲେ ମିସେସ୍ ମହାପାତ୍ର ।

ହସିଲେ ଡକ୍ଟର ମହାପାତ୍ର, "ଦେବସ୍ନାନ ଅତି ଭଲ ପିଲା । ତା ଉପରେ ମୋ ଆଖି କିଛିଦିନ ତଳେ ଥିଲା । ସେ ଯେତେବେଳେ ଆଇ.ଏ.ଏସ୍. ପାଇଲା, ଭାବିଥିଲି ତାକୁ ଜୋଇଁ କରିବି ବୋଲି । କିନ୍ତୁ ଯେତେବେଳେ ସେ ଆଇ.ଏ.ଏସ୍. ଚାକିରିକୁ ଛାଡ଼ିଦେଇ ଗବେଷଣା ପଛରେ ଧାଇଁଲା, ମୁଁ ଭାବିଲି ପିଲାଟା ପାଗଳା । ଏଭଳି ପିଲା ହାତରେ ନିଜ ଝିଅକୁ ଦେଲେ ସେ ତାକୁ କେଉଁଦିନ ଦାଣ୍ଡରେ ଯେ ବସାଇବ, ତା'ର ଇୟତ୍ତା ନାହିଁ । ଆଇ.ଏ.ଏସ୍. ଚାକିରିରୁ ଇସ୍ତଫା ଦେଇ ଯେ ଶିକ୍ଷକ ଚାକିରିକୁ ଆଦରି ନିଏ, ସେ ବିକୃତ ମସ୍ତିଷ୍କ ବୋଲି ମୁଁ ଧରିନିଏ । ସେ ସମ୍ଭବତଃ ବୁଝେ ନାହିଁ, ଶିକ୍ଷା ବିଭାଗରେ ଚାକିରି କରି ବୈଜ୍ଞାନିକ ହିସାବରେ ଯେତେ ନାଁ କଲେ ବି ସେ ସେହି ଆଇ.ଏ.ଏସ୍.ଙ୍କ ଗୋଡ଼ ତଳକୁ । ତା'ର ମେଧାଶକ୍ତି ପୃଥିବୀ-ବିଖ୍ୟାତ ହେଉପଛକେ, ସାରା ପୃଥିବୀର ସମ୍ମାନ ତା' ଗୋଡ଼-ତଳେ ଲୋଟିପଡୁ ପଛକେ, ତା'ର ପ୍ରମୋସନ, ଇନ୍‌କ୍ରିମେଣ୍ଟ ଆଦି ପାଇଁ ସେ ସେହି ଆଇ.ଏ.ଏସ୍.ଙ୍କ ହାତକୁ ଅନାଇ ବସିବ । ପିଲାଟାର ମୁଣ୍ଡ ଗୋଳମାଳ ନ ଥିଲେ ସେ କ'ଣ ଏଭଳି ଭୁଲ୍ କରିଥାନ୍ତା ? ଏତେ ଅବ୍ୟବସ୍ଥିତଚିତ୍ତ ପିଲାଟାକୁ ଜୋଇଁ କରି ତୁମେ କ'ଣ ତୁମ ଝିଅର ଭବିଷ୍ୟତକୁ ଅନ୍ଧକାରମୟ କରିଦେବାକୁ ଚାହୁଁଛ ଆଦରମଣି ?"

ଡକ୍ଟର ମହାପାତ୍ରଙ୍କ କଥାରେ ମିସେସ୍ ମହାପାତ୍ର ଚୁପ୍ ରହନ୍ତି । ଭାବନ୍ତି, "ହଁ ସତେ ତ, ଅତି କମ୍‌ରେ ଆଇ.ଏ.ଏସ୍. ନ ହେଲେ ସେ କ'ଣ ଝିଅକୁ ତା ହାତରେ ଦେଇ ନିଶ୍ଚିନ୍ତ ହୋଇ ରହିପାରିବେ ? ତାଙ୍କର ଗୋଟିଏ ବୋଲି ସୁନାନାକୀ ଝିଅ, ତାକୁ

କ'ଣ ସ୍ତ୍ରୀ ତା ହାତରେ ଦେଲେ ସେ ସୁଖୀ ହୋଇପାରବ ? ଅବଶ୍ୟ ଦେବସ୍ମାନ ଆଇ.ଏ.ଏସ୍.ମାନଙ୍କଠାରୁ ଢେର୍ ଉଚ୍ଚରେ, କାରଣ ସେ ଆଇ.ଏ.ଏସ୍. ଚାକରୀକୁ ଛାଡ଼ିଦେଇ ଅଧ୍ୟାପକ ଚାକରୀକୁ ଆଦର ନେଇଛନ୍ତି । ହେଲେ ସେ ସରକାରୀ ପଦବୀରେ ଆଇ.ଏ.ଏସ୍.ଙ୍କ ତଳେ । ତା'ର ମେଧାଶକ୍ତି ଥିଲେ, ତାଙ୍କର କ'ଣ ଲାଭ ? ଜଣେ ଆଇ.ଏ.ଏସ୍. ଅଫିସର ତାଙ୍କ ଝିଅକୁ ଯେତେ ସୁଖରେ ରଖିପାରବ, ଜଣେ କଲେଜ ଶିକ୍ଷକ କ'ଣ ସେମିତି ରଖିପାରବ ? ବଡ଼ ବଡ଼ ବଙ୍ଗଳା, ମଟରଗାଡ଼ି, ଗଣ୍ଡା ଗଣ୍ଡା ପିଅନ, ଚପରାଶୀ ଜଣେ ଅଧ୍ୟାପକ ଘରେ ମିଳବ କୁଆଡ଼ୁ ?

## ଏଗାର

ଝାଳ ଗମଗମ ଦେହରେ ଦେବସ୍ମାନ ଗବେଷଣାଗାର ଭିତରକୁ ପଶିଆସିଲା ବେଳକୁ ଶୁଭ୍ରା ଟେବୁଲ ଉପରେ ଗ୍ରିଗ୍ନାର୍ଡ଼ କନ୍ଡେନ୍ସେସନ୍ ପାଇଁ ଯନ୍ତ୍ରସବୁ ସଜାଉଥିଲା । ଦେବସ୍ମାନକୁ ଏଭଳି ଅବସ୍ଥାରେ ଦେଖି ଯନ୍ତ୍ର ଛାଡ଼ି ତାଙ୍କଠାକୁ ଦୌଡ଼ିଆସି ଫ୍ୟାନ୍ ଖୋଲିଦେଇ କହିଲା, "ସାର୍, ଆପଣ ବର୍ତ୍ତମାନ କୁଆଡ଼େ ବେଶି ଦୂରକୁ ଯାଇଥିଲେ ନା କଅଣ ? ଏହି ଗରମରେ ଆପଣଙ୍କ ଗୋଟାସାରା ଦେହ ଝାଳରେ ଭିଜି ଯାଇଛି ।"

"ନା ଶୁଭ୍ରା, ବେଶିଦୂର ନୁହେଁ, ଏଇ ତୁଳସୀପୁର ଯାଇଥିଲି । ବଡ଼ ଶୋଷ । ରେଫ୍ରିଜେରେଟରରୁ ଟିକିଏ ଥଣ୍ଡାପାଣି ଆଣିଲ ?"

"ନା ସାର୍, ହଠାତ୍ ଗରମରୁ ଆସି ଥଣ୍ଡାପାଣି ପିଇଦେଲେ ଥଣ୍ଡା ଧରିଯିବ । ଟିକିଏ ସମ୍ଭାଳି ଯାଆନ୍ତୁ, ଆଉ ଟିକିଏ ପରେ ପାଣି ପିଇବେ ।"

ହସିଲା ଦେବସ୍ମାନ, "ତମେ ଏକାଧାରରେ ଗବେଷକ, ଡ଼ାକ୍ତର, ଗୃହିଣୀ, ସବୁ କିଛି । ତା'ଛଡ଼ା ମୋର ବି ମୁରବି । ତୁମେ ତ ମୋତେ ପାଠ ପଢ଼ାଇବ ଦେଖୁଛି, ତୁମେ ମୋ'ଠାକୁ ପଢ଼ିବାକୁ କ'ଣ ଆସିଛ ?"

"ଆପଣ କ'ଣ ସାର୍ ସାଇକେଲରେ ଯାଇଥିଲେ ଏତେ ବାଟ ?" ବଡ଼ ବ୍ୟସ୍ତ ହୋଇ ପଚାରିଲା ।

"ହଁ, ଆଉ କେଉଁଥିରେ ଯାଇଥାନ୍ତି ଯେ ?"

"କାହିଁକି ସାର୍, ଡିପାର୍ଟମେଣ୍ଟ ଗେଟ୍ ପାଖ ଗଛମୂଳରେ ମୋ ଗାଡ଼ି ଥୁଆ ହୋଇଛି । ଡ୍ରାଇଭରକୁ କହିଥିଲେ ସେ ଆପଣଙ୍କୁ ଗାଡ଼ିରେ ନେଇଯାଇ ଥାଆନ୍ତା ? ମୋ ଗାଡ଼ି ଥାଇଁ ଥାଇଁ···"

ହସିଲି ଦେବସ୍ମାନ, କହିଲି, "ଦେଖ ଶୁଭ୍ରା, ତୁମେ ଅତି ପିଲାଳିଆ । ତୁମେ ଆଜି ମୋ ପାଖରେ ଗବେଷଣା କରୁଛ ବୋଲି ତୁମଠାରୁ ଫାଇଦା ଉଠାଇବା କ'ଣ ମୋର ଉଚିତ ? ତୁମ ଗାଡ଼ିକୁ ମୋ କାମ ପାଇଁ ବ୍ୟବହାର କରିବା କେତେବଡ଼ ଅନ୍ୟାୟ ତୁମେ ବୋଧହୁଏ ବୁଝିପାରୁ ନାହଁ । ତୁମେ ଆଜି ହୁଏତ ମୋଠାରେ ଗବେଷଣା କରୁଛ ବୋଲି କିଛି କହିବ ନାହିଁ, କିନ୍ତୁ ପରକାଳରେ କହି ବୁଲିବ—ଅମୁକେଇ ସାର୍ ନା, ଭାରି ଫାଏଦା ଉଠାଇଲାବାଲା । ସେ ନିଜ ଛାତ୍ର-ଛାତ୍ରୀଙ୍କଠାରୁ ବେଶ୍ ଫାଇଦା ଉଠାଇ ଜାଣନ୍ତି ।"

ହସିଲି ଶୁଭ୍ରା ଏକ ଶୁଷ୍କ ହସ, "ସାର୍, ଆପଣ ବି ଶେଷରେ ମୋତେ ଏକଥା କହିଲେ ? ଆପଣଙ୍କ ନାଁରେ ମୁଁ ଦିନେ ଏମିତି କହିବି, ଆପଣ କଳ୍ପନା କରି ପାରିଲେ ସାର୍ ? ହେଉ, ମୋର ଦୁର୍ଭାଗ୍ୟ ।"

"ତୁମକୁ ବୋଧହୁଏ କଷ୍ଟ ହେଲା ଶୁଭ୍ରା ଏଇ କେଇପଦ କହିଦେଲି ବୋଲି ।" ଏଇ କିଛି ସମୟ ତଳେ ଏକ ଘଟଣା ମୋତେ ଏଭଳି କହିବାକୁ ବାଧ୍ୟ କରିଛି । ତୁମେ ଜାଣିଛ ଶୁଭ୍ରା, କଟକ ଜିଲ୍ଲା ମାଜିଷ୍ଟ୍ରେଟ୍ ମିଷ୍ଟର ଗୁପ୍ତାଙ୍କୁ ?

ରେଫ୍ରିଜେରେଟରରୁ ଗିଲାସେ ଥଣ୍ଡା ପାଣି ଆଣି ଦେବସ୍ମାନର ଟେବୁଲ ଉପରେ ଥୋଇ ଥୋଇ କହିଲା, "ହଁ ସାର୍ ଜାଣିଛି, ଖୁବ୍ ଭଲ ଭାବରେ ଜାଣିଛି । କାହିଁକି ? ସେ ତ ଅନେକ ସମୟରେ ଆମ ଘରକୁ ଆସନ୍ତି । ବାପାଙ୍କ ସହିତ ବହୁ ସମୟ ଆମ ଘରେ ବସି କଥାବାର୍ତ୍ତା ହେବାର ଦେଖିଛି ।"

ତୁମେ ଜାଣିଛ ଶୁଭ୍ରା, ପାଣି ପିଇ ପିଇ ଦେବସ୍ମାନ କହିଲା, "ସେଇ ଗୁପ୍ତା ହେଉଛି ମୋର ସର୍ବପ୍ରଥମ ଛାତ୍ର ଏହି କଲେଜରେ । ସେ ଏମ୍.ଏସ୍‌ସି. ପଢ଼ିଲାବେଳେ ମୁଁ ଏଠି ଲେକ୍‌ଚରର ଭାବରେ ଜଏନ୍ କରିଥିଲି । ମୁଁ ତାକୁ ଏମ୍.ଏସ୍‌ସି.ରେ ପାଠ ପଢ଼ାଇଛି । ମୋତେ ସବୁବେଳେ ସାର୍ ସାର୍ କହି ମୋ ପଛରେ ଗୋଡ଼ାଏ । ମୁଁ ଯେତେବେଳେ ଆଇ.ଏ.ଏସ୍. ହେଲି, ମୋ ପାଖକୁ ଦୌଡ଼ିଲା ଦିନ ରାତି । ମୋର ଯେତେ ପ୍ରକାର ଖାତା, ବହି, ନୋଟ୍ ଥିଲା, ସେସବୁ ମୋଠାରୁ ନେଇ ଆଇ.ଏ.ଏସ୍. ପରୀକ୍ଷା ପାଇଁ ପ୍ରସ୍ତୁତ ହେଲା । ମୁଁ ଯେଉଁ ଯେଉଁ ବିଷୟ ନେଇଥିଲି, ସେ ଠିକ୍ ସେହି ସେହି ବିଷୟ ନେଲା । ପିଲାଟା ପରିଶ୍ରମୀ । ସବୁବେଳେ ମୋ ଠାକୁ ଦୌଡ଼ି ନାନା ବିଷୟ ବୁଝାସୁଝା କରି । ମୁଁ ତା ପାଇଁ ଦିନ ରାତି କେତେ ଯେ ଖଟିଛି, ତା'ର ଇୟତ୍ତା ନାହିଁ । ଜାଣ ତା ପରୀକ୍ଷା ପାଇଁ ଅଧେ ପରିଶ୍ରମ ମୋର ।

ଯାହାହେଉ, ମୋ ପରବର୍ଷ ସେ ହେଲା ଆଇ.ଏ.ଏସ୍. । ମୁଁ ଆଇ:ଏ:ଏସ୍: ଥିଲାବେଳେ ମୋତେ ଭାରି ମାନ ଖାତିର କରେ । ସମସ୍ତଙ୍କ ଆଗରେ କହି ବୁଲିଲା ମୋର ଯୋଗୁଁ ସେ ଆଇ:ଏ:ଏସ୍: ପାଇଲା ବୋଲି । କିନ୍ତୁ ମୁଁ ଯେମିତି ଆଇ:ଏ:ଏସ୍: ଛାଡ଼ି ଦେଇଛି, ତା'ର ମୋ ପ୍ରତି ବ୍ୟବହାର ହଠାତ୍ ବଦଳିଗଲା । ବାଟରେ ଘାଟରେ ଦେଖା-

ହେଲେ, ସେ ମୋତେ ଆଡ଼ଆଖିରେ ବି ଗୁହେଁ ନାହିଁ । ଆଜକାଲି ମୋତେ ଆସୁଥିବାର ଦେଖିଲେ, ସେ ବାଟକାଟି ଅନ୍ୟ ବାଟରେ ଗ୍ଲଲିଯାଏ ।

ବାପା ମୋତେ ଚିଠି ଲେଖିଥିଲେ ଶହେବସ୍ତା ସିମେଣ୍ଟ ପାଇଁ । ବାଖଗ୍ବାଦରେ ଆମର ଯେଉଁ ଘର ତିଆରି ଗ୍ଲଲିଛି, ସେହି ଘରର ଗ୍ଲାତ ପଡ଼ିବ । କଟକ ସହରର ସିମେଣ୍ଟ ବଣ୍ଟନ ବର୍ତ୍ତମାନ ତା ହାତରେ । ମୁଁ ଯାଇଥିଲି ତା ଘରକୁ ତାକୁ କହିବା ପାଇଁ । ଘରେ ଥାଇ ମୋତେ ଚପରାଶୀ ହାତରେ ମନା କରିଦେଲା ସିମେଣ୍ଟ ନାହିଁ ବୋଲି । ମୋତେ ଟିକିଏ ଦେଖା ବି ଦେଲା ନାହିଁ । ଫୋନ୍ କଲେ ତା ଚପରାଶୀ କହେ, ବାବୁ ଘରେ ନାହାନ୍ତି । କେତେବେଳେ କହେ, ବାବୁ ବାଥ୍‌ରୁମ୍‌ରେ ଅଛନ୍ତି । ଚିଠି ଲେଖିଲେ ତା'ଠାରୁ କିଛି ଉତ୍ତର ମିଳେନି । ମୁଁ ଭାବିପାରୁନି ତାକୁ କେମିତି ଧରି ହେବ । ତାକୁ ନ ଧରିଲେ ସିମେଣ୍ଟ ମିଳିବ କୁଆଡୁ ?

ହସିଲା ଶୁଭ୍ରା, କହିଲା, "ସେମାନେ ସାର୍ ଆପଣଙ୍କୁ ସିମେଣ୍ଟ ଦେବେନି । ସିମେଣ୍ଟ ପରମିଟ୍ ପାଇଁ ଅପର୍ଯ୍ୟାପ୍ତ ଲାଞ୍ଚ ଦିଆନିଆ ଗ୍ଲଲିଛି । ଆପଣ ତ ଲାଞ୍ଚ ଦେବେନି, କେଣୁ ପାଇବେନି ।"

"ତୁମକୁ ଏକଥା କିଏ କହିଲା ଶୁଭ୍ରା ?"

"ସାର୍, ଏହିଭଳି କେତେ କଥା ମୋ କାନରେ ଆସି ପଡ଼େ । ଆପଣ ଜାଣନ୍ତି ଏଇ କେତେଦିନ ଭିତରେ ମିଷ୍ଟର ଗୁପ୍ତା କଟକରେ ତିନି ତିନିଟା ପ୍ରକାଣ୍ଡ ପ୍ରକାଣ୍ଡ କୋଠାଘର ବେନାମୀରେ ତିଆରି କରି ସାରିଲେଣି । ଏଥିପାଇଁ ଟଙ୍କା ଆସୁଛି କୁଆଡୁ ? ଲୋକେ ଆଣି ଗ୍ବତଅଧରେ ଘରେ ଦେଇ ଯାଉଛନ୍ତି । ତାଙ୍କ ମାଉସୀପୁଅ ଭାଇ ବି ଆଇ:ଏ:ଏସ୍: ହେଲେ ସେ ତ ଖୋଟାଏ ବି କୋଠା କରିପାରି ନାହାନ୍ତି କେଉଁଠି ?"

"ମୁଁ ଦେଖୁଛି, ତୁମେ ବହୁତ ଖବର ରଖୁଛ ଶୁଭ୍ରା ?" ମୁଁ ତ କାହିଁ ଏତେକଥା ଜାଣିନି । ମୋର ବେଳେ ବେଳେ କ'ଣ ମନେହୁଏ ଜାଣ, ତୁମେ ମୋର ଗ୍ଲାତ୍ରୀ ନ ହୋଇ ମୁଁ ତୁମର ଗ୍ଲାତ୍ର ହୋଇଥାନ୍ତି କି ? ଏସବୁ ବିଷୟରେ ତୁମେ ଯେ ଜଣେ ବଡ଼ ଓସ୍ତାଦ୍, ଏହା ମୋତେ ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ପଡ଼ିବ ।

"ସାର୍, ଆପଣ ତ ମୋତେ ସବୁବେଳେ ଥଟ୍ଟା କରୁଛନ୍ତି । ନାନା କଥା ମୋ କାନରେ ଆସି ବାଜେ । ଖବରଟାଏ କାନକୁ ଆସିଲେ ମନେ ନ ରହିବ କେମିତି ?"

"ତୁମେ ଯେତେ କଥାରେ ମୁଣ୍ଡ ଖେଳାଅ ଶୁଭ୍ରା, ସେତେ ଖେଳାଇଲେ ତୁମେ ଗବେଷଣା କରିପାରିବ କେଉଁଠୁ ? ତୁମ ମୁଣ୍ଡରେ ତ ଏତେକଥା ଜମାଟବାନ୍ଧି ରହିଛି ଯେ ଗବେଷଣା କଥା ମୁଣ୍ଡକୁ ପଶିବା ପାଇଁ ଜାଗା କାହିଁ ? ତୁମର ଏଇଟା ଭାରି ଖରାପ ଗୁଣ । ତୁମକୁ ମୁଁ ମୂଳରୁ କହିଥିଲି ପରା, ତୁମେ ଯଦି ଏଠି ଗବେଷଣା କରିବ, ଏତେକଥା ଶୁଣିବନି କି କହିବନି ।"

"ନା ସାର୍, ଫେର୍ ଭୁଲ୍ ହୋଇଗଲା । ଏଥର କାନମୋଡ଼ ହେଉଛୁ, ଆଉ ଏତେକଥା କହିବିନି ।"

"ଶୁଣିବନି ମଧ୍ୟ ।"

"ନା ସାର୍, ଶୁଣିବନି ।"

"କିନ୍ତୁ ସାର୍, ସେମାନେ ଆପଣଙ୍କୁ ସିନା ସିମେଣ୍ଟ ଦେବେନି, 'କିନ୍ତୁ ଆମକୁ ଦେବେ । ବାପାଙ୍କ ପାଟିରୁ ଯଦି ସିମେଣ୍ଟ ନାଁ ବାହାରିପଡ଼େ, ତେବେ ଶହ ଶହ ବସ୍ତାର ପରମିଟ୍ ସଙ୍ଗେ ସଙ୍ଗେ ଲେଖି ହୋଇଯିବ । ବାପାଙ୍କ ପାଖରୁ ଭବିଷ୍ୟତରେ କେତେ କ'ଣ ଉପକାର ପାଇବା ଆଶାରେ ଏମିତି ଦୟା ଦେଖାନ୍ତି । ଆପଣଙ୍କ ପାଖରୁ ତ କିଛି ଲାଭ ପାଇବେନି, ଦୟା ଦେଖାଇବେ କାହିଁକି ?"

"ମୋର ଜଣେ ଛାତ୍ରର ଏଭଳି ମନୋବୃତ୍ତି ଦେଖି ମୋତେ ସେତେବେଳେ ବଡ଼ ଖରାପ ଲାଗିଲା ଶୁଭ୍ରା । ତେଣୁ ତୁମକୁ ସେପରି କହିଦେଲି । କିଛି ମନେ କରିବନି ସେଥିପାଇଁ ।"

"ନା ସାର୍, ଆପଣ କ'ଣ ଯେ କହୁଛନ୍ତି, ମୁଁ ମନକଷ୍ଟ କରିବି ଏଥିପାଇଁ ?"

"ସାର୍, ମୋର ଗୋଟିଏ ଅନୁରୋଧ ରକ୍ଷା କରିବେ ? ମୁଁ ବାପାଙ୍କ ପି.ଏ.କୁ କହିଲେ ସେ ମିଷ୍ଟର ଗୁପ୍ତାଙ୍କ ପାଖରୁ ଶହେବସ୍ତା କାହିଁକି ଦ'ଶହ ବସ୍ତା ସିମେଣ୍ଟ ପାଇଁ ଆପଣଙ୍କ ନାଁରେ ପରମିଟ୍‌ଟାଏ କରି ଆଣିଦେବ ?

"ଫେର୍, ମୋତେ ସାହାଯ୍ୟ କରିବାକୁ ଚେଷ୍ଟାକଲ ଶୁଭ୍ରା ? ଏଇ କିଛି ସମୟ-ତଳେ ପରା ତୁମକୁ ଗାଳି ଦେଇଥିଲି ।"

## ବାର

ଦେବସ୍ମାନକୁ ନେଇ ମଧୁସ୍ମିତା ଘରଭଳି ଶାଶ୍ୱତୀ ଘରେ ମଧ୍ୟ ଗୋଳମାଳ । ଦେବସ୍ମାନର ଅପୂର୍ବ ମେଧାଶକ୍ତି, ଉତ୍ତମ କେରିୟର, ଭଲ ସ୍ୱଭାବ ଚରିତ୍ର ଦେଖି ଶାଶ୍ୱତୀର ବାପା ମିଷ୍ଟର ମହାନ୍ତି ଜୋଇଁ କରିବାକୁ ଚାହୁଁଥିଲେ । ଦେବସ୍ମାନ ଆଇ:ଏ:ଏସ୍: ଚାକିରି ଛାଡ଼ିଦେଲାରୁ ସବୁ ଗୋଳମାଳ ହୋଇଗଲା ।

ଦେବସ୍ମାନ ସହିତ ଝିଅର ବାହାଘର ପ୍ରସ୍ତାବ କଥା ଉଠିଲେ ମିସେସ୍ ମହାନ୍ତି ଚିଡ଼ି ଉଠନ୍ତି । ସେ ମିଷ୍ଟର ମହାନ୍ତିଙ୍କୁ କହନ୍ତି, "ତୁମ ମୁଣ୍ଡ ଖରାପ ହୋଇଗଲାଣି ନା କ'ଣ ? ଦେବସ୍ମାନକୁ ଜୋଇଁ କରିବାକୁ ବସିଛ ? ଚାକିରି ପୁଣି କ'ଣ ନା କଲେଜ-ଶିକ୍ଷକ । ମୋ ଝିଅ ଆଇ:ଏ:ଏସ୍: ଛଡ଼ା ଆଉ କାହାକୁ ବାହା ହେବନି । ତୁମେ ଏତେବଡ଼ ରାଜ୍ୟରେ ମନ୍ତ୍ରୀ

ହୋଇଛ, ତୁମକୁ ତୋଷିଁ କରିବାକୁ ଆଇ:ଏ:ଏସ୍:ଟାଏ କ’ଣ ମିଳିବ ନାହିଁ । ଶେଷରେ ଝିଅକୁ ଦେବ କଲେଜ-ମାଷ୍ଟରଟାକୁ !”

“ତୁମେ କ’ଣ ଜାଣିନ ଗାୟତ୍ରୀ, ସେ ପରା ଆଇ:ଏ:ଏସ୍: ଚାକିରୀକୁ ଗୋଇଠା ମାରି ଚାଲି ଆସିଛି ! ଆଇ:ଏ:ଏସ୍: ଚାକିରୀରେ କ’ଣ ଅଛି କହିଲ ? ଖାଲି ଉପରକୁ ଦିଶୁଛି ଯିନା ବଡ଼, କିନ୍ତୁ ଭିତରଟା ଫମ୍ପା । ଆଇ:ଏ:ଏସ୍: ଚାକିରୀ ମୂଳରୁ ଗୋଡ଼ାଣିଆ ଚାକିରୀ । ଯେଉଁ ଦିନଠାରୁ ଚାକିରୀରେ ପଶିଲ, ସେହି ଦିନଠାରୁ ଜାଣ ଉପର ଅଫିସର ପଛରେ ଗୋଡ଼ାଇବା ଆରମ୍ଭ ହୋଇଗଲା । ଯେତେ ପ୍ରକାର ତେଲ ଦୁନିଆରେ ଅଛି, ସେ ତେଲ କେଉଁଠି କେମିତି ମାଲିସ୍ କରାଯାଏ, ତୁମେ ଜାଣିଥିବ । ନୋହିଲେ ଚାକିରୀ ଗଲା । ଆଜି କମିଶନର ଆସିଲେ, ତାଙ୍କ ପଛରେ ଗୋଡ଼ାଅ । କାଲି ମନ୍ତ୍ରୀ ଆସିଲେ ତାଙ୍କ ପଛରେ ଗୋଡ଼ାଅ । ହଠାତ୍ ମନ୍ତ୍ରୀଙ୍କର କ’ଣ ଦରକାର ହେବ, ଚାକରଭଳିଆ ଦୌଡ଼ିଯାଇ କରିଦେବ । ନିଜତ୍ୱ କ ନିଜର ସ୍ୱାଧୀନ ଚିନ୍ତା ବୋଲି କିଛି ନାହିଁ । ଯିଏ ଯାହା କହିଲା, ଇଏସ୍ ସାର୍, ଇଏସ୍ ସାର୍ । ଏହି ଇଏସ୍ ସାର୍, ଇଏସ୍ ସାର୍ କହି କହି ଯେଉଁମାନଙ୍କ ଜୀବନ କଟେ, ସେମାନଙ୍କୁ କ’ଣ ତୁମେ ମଣିଷ ବୋଲି ଗଣ ଗାୟତ୍ରୀ ? ତୁମେ କ’ଣ ମଣିଷ ଚିହ୍ନି ନାହଁ ? ତୁମେ ମଣିଷ ଚିହ୍ନିଥିଲେ ଦେବସ୍ମିତା ଭଳି ପିଲାକୁ ନାପସନ୍ଦ କରନ୍ତ ନାହିଁ । ଶିକ୍ଷା ବିଭାଗରେ ସେ ଗୋଟିଏ ମଣି ଜାଣ । ଆମ ଦେଶର ନାଁ ସେ ଦେଶ ବିଦେଶରେ ଉଡ଼ାଇବ । ଦେଖିବ ଦିନେ ସାରା ପୃଥିବୀର ସମ୍ମାନ ତା ଗୋଡ଼ତଳେ ଲୋଟି ପଡ଼ିବ ।”

“ଆଉ, ଥାଉ, ଏତେ କହନି ଆଉ । ଯେତେହେଲେ ବି ସେ ସବୁବେଳେ ରହିବ, ସେହି ଆଇ:ଏ:ଏସ୍:ଙ୍କ ଗୋଡ଼ ତଳକୁ । ତା’ର ପ୍ରମୋସନ, ତା’ର ଚରିତ୍ର-ପଞ୍ଜିକା ଲେଖିବେ ସେଇ ଆଇ:ଏ:ଏସ୍:ମାନେ । ଜଣେ ଆଇ:ଏ:ଏସ୍: ସହିତ ଜଣେ କଲେଜ ଶିକ୍ଷକକୁ କେମିତି ତୁଳନା କରୁଛ ମୁଁ ବୁଝି ପାରୁନି । କାହିଁ ରାଣୀ, କାହିଁ ଚନ୍ଦ୍ରକାଣୀ । ତୁମେ ସେ ପାଗଳାମି ଛାଡ଼ । ଭୁଲରେ ବି ଦେବସ୍ମିତା ନାଁ ଆଉ ଧରନି । ତୁମେ ଯଦି ତୁମ ଝିଅ ପାଇଁ ଆଇ:ଏ:ଏସ: ଯୋଗାଡ଼ କରି ନ ପାରୁଛ, ତେବେ ଝିଅ ବେକରେ ପଥରଟିଏ ବାନ୍ଧି କୂଅରେ ଗଳେଇ ପକାଉନ ?”

“ଆଇ:ଏ:ଏସ:ଙ୍କ ଜୀବନଧାରଣ-ପ୍ରଣାଳୀ ତୁମେ ଦେଖି ଏମିତି ଅତୁଟା କାହିଁକି ହେଉଛ ମୁଁ ବୁଝିପାରୁନି ଗାୟତ୍ରୀ ? ଖୋସାମଦ କରି କରି ସେମାନଙ୍କ ପ୍ରଥମ ଜୀବନ କେମିତି କଟେ, ତୁମେ ନ ଦେଖିଲେ ବିଶ୍ୱାସ କରି ପାରିବନି । ଛୋଟ ଅଫିସର ଥିଲାବେଳେ ଯେତେ ପ୍ରକାର ଖୋସାମଦ କରିଥିବେ, ବଡ଼ ଅଫିସର ହେଲେ ଅନ୍ୟଙ୍କଠାରୁ ସେତିକି ଖୋସାମଦ ଚାହିଁବେ । ଲୋକେ କହନ୍ତି—ଦେଶ ଚଳାଉଛନ୍ତି ସେମାନେ, ଆମେ ମନ୍ତ୍ରୀ-ଗୁଡ଼ାକ କିଛି ନୋହୁଁ । ମୋତେ ଶୁଣିଲେ ହସମାଡ଼େ ସେ କଥା ।”

"ହଇହେ, ଦେଶତ ଚାଲିଛି ସଚିବାଳୟର କିରାଣୀମାନଙ୍କ କଲମ ଯୋଗୁଁ । ସେମାନଙ୍କ ଚିନ୍ତା ଓ କଲମ ଧାର ଯୋଗୁଁ ଫାଇଲ ଗତି କରେ । ଏହି ଆଇ:ଏ:ଏସ:-ଗୁଡ଼ାକ ଖାଲି ବାଡ଼କୁବଡ଼ା ଦସ୍ତଖତ ମାରନ୍ତି ସିନା, କିନ୍ତୁ ସେମାନଙ୍କ ଦସ୍ତଖତରେ କ'ଣ ଶାସନ ଚାଲେ ? ବିଚାରି କିରାଣୀର କୃତିତ୍ୱ କେହି ବୁଝନ୍ତି ନାହିଁ । ଏହି ଆଇ:ଏ:ଏସ:ମାନଙ୍କୁ ଚିନ୍ତା କରିବାକୁ ବେଳ କାହିଁ ଯେ ଏମାନେ ଦେଶ ଚଲାଇବେ ? ତୁମେ ଏମାନଙ୍କୁ ଯେ କେମିତି ଜୋଇଁ କରିବାକୁ ଚାହୁଁଛ, ମୁଁ ଧାରଣା କରିପାରୁନି ।"

"ହସିଲେ ଗାୟତ୍ରୀ ଦେବୀ, "ତୁମେ ଯେତେ କହିଲେ କ'ଣ ଆଇ.ଏ.ଏସ.ମାନଙ୍କ ସମ୍ମାନ ଆମ ସମାଜରୁ କମିଯିବ ? ସେମାନଙ୍କ ପ୍ରତିପତ୍ତି, ସେମାନଙ୍କ ଠାଟ କ'ଣ ଆଉ କାହାର ଅଛି ?"

ତୁମେ ଜାଣିଛ ଗାୟତ୍ରୀ; ବିଲାତ, ଆମେରିକା ପ୍ରଭୃତି ବଡ଼ ବଡ଼ ଉନ୍ନତ ଓ ସଭ୍ୟ ଦେଶରେ ଏହି ଏଡ୍‌ମିନିଷ୍ଟ୍ରେଟିଭ୍ ଅଫିସରମାନଙ୍କୁ କେହି ପଚାରନ୍ତି ନାହିଁ । ସେମାନେ ହେଲେ ସେସବୁ ଦେଶରେ ତୃତୀୟ ଶ୍ରେଣୀ ଅଫିସର । ସେମାନଙ୍କର ନିଜସ୍ୱ କୃତି ବୋଲି କିଛି ନାହିଁ । ଖାଲି ଅଫିସ୍ ଫାଇଲ ସବୁ ଠିକ୍ କରି ରଖିଲେ ହେଲା । ଏମାନଙ୍କର କ୍ରିଏଟିଭିଟି ବୋଲି କିଛି ନାହିଁ । ବୈଜ୍ଞାନିକ, କି ଡାକ୍ତର, କି ଟେକ୍‌ନିକେଲ୍ ଅଫିସର ହେଲେ ସେ ଦେଶର ପ୍ରଥମ ଶ୍ରେଣୀର ଅଫିସର । ଦେଶର ଉନ୍ନତି ସେମାନଙ୍କ କୃତିତ୍ୱ ଯୋଗୁଁ ସମ୍ଭବ । ଦେଶ ଯଦି ଆଗେଇବ, ତେବେ ସେମାନଙ୍କ ଗବେଷଣା ଯୋଗୁଁ ଆଗେଇବ । ଦେଶକୁ କି ସମାଜକୁ ଯଦି କେହି ଦିଗ୍‌ଦର୍ଶନ ଦେବ, ତେବେ ସେହିମାନେ ହିଁ ଦେବେ । ଦେଶରେ ସରକାରର ଫାଇଲ ସବୁ ଠିକ୍‌ଠାକ୍ କରି ରଖି ଶାସନକଳକୁ ଠିକ୍ ରୂପେ ଚଳାଇଲେ କ'ଣ ଦେଶ ଆଗେଇବ ? ସେଥିପାଇଁ ସେ ଦେଶରେ ସବୁଠାରୁ ଅଧିକ ସମ୍ମାନ ବୈଜ୍ଞାନିକ, ଡାକ୍ତର, ଇଞ୍ଜିନିଅରମାନଙ୍କ ଗୋଡ଼ତଳେ ଲୋଟିପଡ଼େ । ଯେଉଁ ସମାଜରେ କି ଦେଶରେ ଏହିମାନେ ଯେତେ ଉନ୍ନତ, ସେ ଦେଶ ବା ସମାଜ ସେତେ ଉନ୍ନତ ବୋଲି ଧରାଯାଏ । ସାରା ପୃଥିବୀ ଯେତେବେଳେ ସେମାନଙ୍କୁ ଏତେ ସମ୍ମାନ ଦିଏ, ତୁମେ ଯେ କିଭଳି ସେମାନଙ୍କୁ ଘଉଡ଼ାଇ ଦେଉଛ, ମୁଁ ବୁଝିପାରୁନି ଗାୟତ୍ରୀ ।"

"ତୁମେତ ଦେଖୁଛ ଆଜକାଲିକାର ବଜାର । ବଡ଼ ବଡ଼ କଳାପୋଡିଆ କି କଳାବଜାରି କି ସ୍ମଗଲର କି ଦଲାଲମାନେ ଯେତେବେଳେ ଜୋଇଁ ପାଇଁ ଆଇ:ଏ:ଏସ: ତଳକୁ ଆସୁ ନାହାନ୍ତି, ତୁମେ ଜଣେ ମନ୍ତ୍ରୀ ହୋଇ କେମିତି ଆସିବ, ମୁଁ ବୁଝି ପାରୁନି !"

ହେଉ, ଛାଡ଼ ସେ କଥା । ଆଇ:ଏ:ଏସ:ମାନେ ଯେଉଁ ଶ୍ରେଣୀରୁ ବାଛି ହୁଅନ୍ତୁ, ଆମର ଯାଏ କେତେ ଆସେ କେତେ । ଆମେ ତ ସେହି ଶ୍ରେଣୀର ନୋହୁଁ, ଆମେ କାହିଁକି ସେମାନଙ୍କୁ ଝିଅ ଦେବା ? ଯିଏ ଆଇ:ଏ:ଏସ: ଚାକିରୀକୁ ଛାଡ଼ିଦେଇ ଆସିଛି, ସିଏ କ'ଣ ଆଇ:ଏ:ଏସ:ଠାରୁ ବଡ଼ ନୁହେଁ ? ତାକୁ ଆମେ ଝିଅ ନ ଦେବା କାହିଁକି ?"

"ତାହା କେମିତି ହେବ ? ଜଣେ ଆଇ:ଏ:ଏସ: ଆମ ଝିଅକୁ ଯେତେ ସୁଖରେ ରଖିପାରିବ, ଜଣେ କଲେଜ-ଶିକ୍ଷକ କ'ଣ ସେମିତି ରଖିପାରିବ ?"

"ହେଉ, ତୁମର କଥା ହେଲା ଗାୟତ୍ରୀ । ତେବେ ମନେରଖ, ଦେବସ୍ଥାନ ଭଳି ସୁନାମୁଣ୍ଡାକୁ ତୁମେ ଗୋଡ଼ରେ ଠେଲି ଦେଉଛ । ଦିନେ ଏମିତି ବେଳ ଆସିବ, ତୁମେ ତା'ର ଗୋଡ଼ତଳକୁ ଆସିବ । ସୁନାମୁଣ୍ଡା ଯେ ସୁନାମୁଣ୍ଡା, ସୁନାପୁଟଦିଆ ଦସ୍ତାମୁଣ୍ଡା ସେ କେବେ ହେବନି ।"

× × × ×

"କ'ଣ ଶୁଭ୍ରା, ଆଜି ଶୁଣିଲି ତୁମ ବାହାଘର ଏ ଭିତରେ ହେଉଛି ବୋଲି, ଓଲ୍ଡର ନାୟକ କହୁଥିଲେ । ତୁମ ବାହାଘରରେ ତ କିଛି ଗୋଟିଏ ଉପହାର ଦେବାକୁ ପଡ଼ିବ ।"

ହସିଲା ଶୁଭ୍ରା ଏକ ଦୁଷ୍ଟାମୀ ହସ, "ହଁ ସାର୍ ଚାଲିଛି, ଠିକ୍ ହୋଇନି ।"

"ତୁମେ କାଲେ ଜଣେ ଆଇ.ଏ.ଏସ୍.ଙ୍କୁ ବାହା ହେଉଛ, ସତ ?

"ମୁଁ ବାହା ହେଉନି ସାର୍, ସେମାନେ ମୋତେ ବାହା ହେବାକୁ ଚାହୁଁଛନ୍ତି । ପୁଣି ଗୋଟିଏ ନୁହେଁ, ପାଞ୍ଚ ପାଞ୍ଚଟା ଆଇ:ଏ:ଏସ: ମୋତେ ବାହା ହେବାପାଇଁ ଲାଇନ୍ ଦେଇଛନ୍ତି ।"

"ମାନେ ! ତୁମେ ପୁଣି ମହାଭାରତ ଯୁଗକୁ ଫେରି ଯାଉଛ ନା କଅଣ ? ଦ୍ରୌପଦୀ ପଞ୍ଚ ପାଣ୍ଡବଙ୍କ ଭଳି—?"

"ହଁ ସାର୍, ଜାଣନ୍ତି ସେଇଆ । ବାପା ଯଦି କହନ୍ତେ, "ମୋର ତ ଗୋଟିଏ ବୋଲି ଝିଅ, ତୁମେ ପାଞ୍ଚଜଣ କେମିତି ବାହାହେବ ? ସେମାନେ କହନ୍ତେ, ଆପଣ ଆଗେ ରାଜି ହୋଇ ଯାଆନ୍ତୁ, ଆମେ ପାଞ୍ଚଜଣ ମିଶି ଗୋଟିଏ ଝିଅକୁ ପଛେ ବାହାହୋଇ ପଡ଼ିବୁ ।"

"ହଁ, ନ ହେବେ କାହିଁକି ? ତୁମେ ରୂପବତୀ, ଉଚ୍ଚ ଶିକ୍ଷିତା, ଧନୀର ଦୁଲାଳୀ, ପାଞ୍ଚ କାହିଁକି, ବେଳପଡ଼ିଲେ ଦଶଜଣ ଆଇ:ଏ:ଏସ: ତୁମ ପାଇଁ ଲାଇନ ଦେବାକୁ ପଛାଇବେ ନାହିଁ ।"

"ସାର୍, ସେମାନେ କ'ଣ ପ୍ରକୃତରେ ମୋ ପାଇଁ ଲାଇନ ଦେଇଛନ୍ତି ?"

"ଆଉ କାହା ପାଇଁ ?"

"ନା ସାର୍, ମୋଟେ ନୁହେଁ, ସେମାନେ ମୋ ନାଁରେ ଲାଇନ ଦେଇଛନ୍ତି ବାପାଙ୍କ ସମ୍ପତ୍ତି ପାଇଁ । ସେମାନେ ତ ଜାଣନ୍ତି, ମୁଁ ବାପାଙ୍କର ଗୋଟିଏ ବୋଲି ଝିଅ । ସେମାନେ ମୋତେ ବାହାହେଲେ ଅନ୍ତତଃପକ୍ଷେ ପଚିଶ ଷାଠିଏଲକ୍ଷ ଟଙ୍କାରୁ କମ୍ ଯୌତୁକ ପାଇବେନି । ସେଥିପାଇଁ ସେମାନଙ୍କର ଏ ଲାଇନ । ମୁଁ ସେହି ପାଞ୍ଚଜଣ ଆଇ:ଏ:ଏସ:ଙ୍କ ଭିତରୁ ଅନ୍ତତଃ ତିନିଜଣଙ୍କୁ ଜାଣେ, ଯେଉଁମାନଙ୍କ ବାହାଘର ଏହି ସହରର ଖୁବ୍ ସୁନ୍ଦରୀ ସୁନ୍ଦରୀ ଝିଅଙ୍କ ସହିତ ହେବା ପ୍ରାୟ ସ୍ଥିର ହୋଇଯାଇଛି । ସେ ଝିଅମାନେ ମୋ ଠାରୁ କମ୍

ଶିକ୍ଷିତା କି କମ୍ ସୁନ୍ଦରୀ ନୁହନ୍ତି । ଏହି ଲୋକଗୁଡ଼ାକ ଏଡ଼େ ଲୋଭୀ ଯେ, ସେ ସବୁ ସ୍ଥାନରେ ନାନା ପ୍ରକାର ଆଳ ଦେଖାଇ ଫାଇନାଲ ଜବାବ ଦେଇ ନାହାନ୍ତି । ଭିତର ଆଶା କାଳେ ଏଠି ସେମାନଙ୍କ ପ୍ରସ୍ତାବ ବାଜି ଯିବ । ଏହି ଲୋକଗୁଡ଼ାକଙ୍କୁ ଦେଖିଲେ ମୋ ହାଡ଼ ଏମିତି ଜଳେ ଯେ, ମନେହୁଏ ଏମାନଙ୍କ ବେକରେ ଦଉଡ଼ି ଲଗାଇ ଏମାନଙ୍କୁ ପ୍ରତିଦିନ ସକାଳୁ ଉଠ୍ ବସ୍ କରାନ୍ତି କି ?"

"ଥାଉ, ଥାଉ ଶୁଭ୍ରା ।" ହସିଲି ଦେବସ୍ମାନ । "ତୁମେ ଏତେ ବଡ଼ ବଡ଼ ଅଫିସରଙ୍କ ନାଁରେ ଏମିତି କ'ଣ କହି ଯାଉଛ ! ଯେତେହେଲେ ସେମାନେ ଆମ ସମାଜରେ ଉଚ୍ଚପଦସ୍ଥ ପ୍ରତିଷ୍ଠିତ ବ୍ୟକ୍ତି । ସେମାନଙ୍କୁ ଏମିତି ଗାଳି ଦେଲେ ସେମାନଙ୍କର ବ୍ୟକ୍ତିତ୍ୱ ପ୍ରତି କେତେ ଆଘାତ ଲାଗିବ, ତୁମେ ବୁଝିପାରୁନ ?"

"ନା ସାର୍, ଆପଣ ଜାଣିନାହାନ୍ତି ସେମାନଙ୍କୁ । ସେମାନେ ଭାରି ଅର୍ଥ ଓ କ୍ଷମତା ଲୋଭୀ । ଭାବନ୍ତି, ଆଇ:ଏ:ଏସ: ହୋଇଗଲେ ସ୍ୱର୍ଗର ଇନ୍ଦ୍ରଦେବତା ପାଲଟିଗଲେ । ସେମାନଙ୍କ ଆଖିରେ ଚନ୍ଦ୍ର ସୂର୍ଯ୍ୟ ବି ଦେଖା ପଡ଼ନ୍ତିନି । ସମାଜରେ ସବୁ ବିଷୟରେ ବଡ଼ ଅଂଶ କେମିତି ମାରନେବେ, ସେହି ବାଟରେ ସବୁବେଳେ ଥାଆନ୍ତି ସେମାନେ ।

"ତୁମେ ତ ସେମାନଙ୍କ ଉପରେ ଏତେ ରାଗୁଛ, ସେମାନଙ୍କୁ ବାହାହୋଇ ଘର-ସଂସାର କରି ରହିବ କେମିତି ଶୁଣେ ?"

"ମୁଁ ସେମାନଙ୍କ ଭିତରୁ ସତରେ କାହାକୁ ବାହା ହେଉଛି ନା କଅଣ ? ବାପାଙ୍କର ଇଚ୍ଛା ଅଛି, ଆଇ:ଏ:ଏସ: ଜୋଇଁ ପାଇଁ । ମୋତେ ଏ ପର୍ଯ୍ୟନ୍ତ ପଚାରି ନାହାନ୍ତି । ପଚାରିଲେ ମୁଁ ସିଧା ସିଧା ମନା କରିଦେବି । କହିବି, ଆଇ:ଏ:ଏସ:କୁ ବାହା ହୋଇ ମୁଁ ମୋ ଜୀବନକୁ ନଷ୍ଟ କରିବାକୁ ଚାହେଁନା । ସେମାନଙ୍କୁ ନେଇ ଯେ କିଏ କେବେ ସୁଖର ସଂସାର ଗଢ଼ି ପାରିବ, ସେଥିରେ ମୋର ଯଥେଷ୍ଟ ସନ୍ଦେହ ଅଛି ।"

"ଯାଅ, ଯାଅ ଶୁଭ୍ରା, ତୁମେ କାମ କର । ଏହି ଆଇ:ଏ:ଏସ:ମାନଙ୍କ ସମ୍ବନ୍ଧରେ ଚର୍ଚ୍ଚାକରି ଏତେ ବିବ୍ରତ ହୋଇପଡ଼ନା ।" ଶୁଭ୍ରାର ଶାଢ଼ୀକୁ ହଠାତ୍ ଅନାଇଦେଇ "ତୁମକୁ କେତେଥର କହିଲଣି ଶୁଭ୍ରା ପଲିଏଷ୍ଟର ଶାଢ଼ୀ ପିନ୍ଧି ଗବେଷଣାଗାରକୁ କେବେ ଆସିବନି ବୋଲି । ତୁମର ସୂତାଶାଢ଼ୀ ନାହିଁ ନା କଅଣ ? ମୋ ବାରଣ କରିବା ସତ୍ତ୍ୱେ ତୁମେ ସବୁଦିନେ ଏହି ଦାମିକା ପଲିଏଷ୍ଟର ଶାଢ଼ୀ ପିନ୍ଧି ଆସୁଛ । ରସାୟନାଗାରରେ ଏ ଶାଢ଼ୀ ହେଲି ବିପଦର ଏକ ପ୍ରତୀକ । ତୁମେ ଏହାକୁ କେବେ ବୁଝିବ, ମୁଁ ଭାବିପାରୁନି ।"

"ନାଇଁ ସାର୍, ଭୁଲ ହୋଇଛି ମୋର । କାଲିଠାରୁ ସୂତାଶାଢ଼ୀ ନିଶ୍ଚୟ ପିନ୍ଧି ଆସିବି ।"

× × × ×

"ଆଲୋ ଶୁଭ୍ରା, ଆଜି କ'ଣ ତୋ ମନ ଭାରି ଖୁସି ? କ'ଣ ହୋଇଛି କି ଲୋ ?" କହୁଁ କହୁଁ ଶୁଭ୍ରାର ଗବେଷଣା କକ୍ଷ ଭିତରକୁ ପଶି ଆସିଲା ପୁଷ୍ପା । ପୁଷ୍ପା ଶୁଭ୍ରାର ଅନ୍ତରଙ୍ଗ

ସଙ୍ଗିନୀ ଭିତରୁ ଜଣେ । ରସାୟନ ବିଜ୍ଞାନର ଅନ୍ୟତମ ଅଧ୍ୟାପକ ଡ଼କ୍ଟର ନାୟକଙ୍କ ଅଧୀନରେ ସେ ଗବେଷଣା କରେ । ଶୁଭ୍ରାର ଗବେଷଣା କକ୍ଷଠାରୁ ତିନି ଘରେଟି କକ୍ଷ ଛାଡ଼ି ତା'ର ଗବେଷଣା-କକ୍ଷ ।

"ହଁ, ପୁଷ୍ପା, ଆଜକୁ ଦୁଇମାସ ହେଲା ଗୋଟିଏ ଯୌଗିକବସ୍ତୁକୁ ତିଆରି କରିବା ପାଇଁ ଚେଷ୍ଟା କରି କରି ସଫଳ ହୋଇପାରୁ ନ ଥିଲି । ଆଜି ମୁଁ ସେଥିରେ କୃତକାର୍ଯ୍ୟ ହୋଇଛି ।"

"ଆମେ ତ ଏମିତି କେତେ ଯୌଗିକବସ୍ତୁ ତିଆରି କରୁଛୁଁ, କାହିଁ ତୋ ଭଳି ଆମେ ତ କେବେ ହେଲେ ଏତେ ଆନନ୍ଦ ପାଇନୁ ? ଏଥିରେ ଆଉକିଛି କଥା ଅଛି କି ଲୋ ?"

"ଆଉ କି କଥା ?"

"ହଁ, କିଛି ବିଶେଷ କଥା ଥିବ, ମୁଁ ଜାଣିପାରିବି କୁଆଡ଼ୁ ? ଯା'କହ ଶୁଭ୍ରା, ତୁ ଭାରି କପାଳିଆ । ତୋ ଭଳି କପାଳିଆ ଖୁବ୍ କମ୍ ଅଛନ୍ତି ଏ ଦୁନିଆରେ ।"

"କାହିଁକି ? ମୋର ଏମିତି କ'ଣ ହୋଇଛି ଯେ, ତୁ ମୋତେ କପାଳିଆ ବୋଲି କହୁଛୁ ?"

"ଆଲୋ, ଦେବବାବୁଙ୍କ ଭଳି ଅଧ୍ୟାପକଙ୍କୁ ଗାଇଡ୍ ଭାବରେ ପାଇଛୁ । ଏହାଠାରୁ ଅଧିକ ଭାଗ୍ୟ ଆଉ କ'ଣ ହୋଇପାରେ ? ସେ ତ ଖାଲି ତୋ ଗବେଷଣାର କର୍ଣ୍ଣଧାର ନୁହଁନ୍ତି, ସେ ବି ହେଲେ ତୋ ଜୀବନର କର୍ଣ୍ଣଧାର ହୋଇପାରନ୍ତି । ସେ କାଳେ ତୋତେ ଘଡ଼ିଏ ଛାଡ଼ି ରହିପାରୁ ନାହାନ୍ତି ଲୋ । ସବୁଥିରେ କାଳେ ତୁ ତାଙ୍କର ଆଗ ଡ଼ାକ ହୋଇଛୁ, ଏହା କ'ଣ ସତ ?"

"ହଁ, ଏଥିରେ କ୍ଷତି କ'ଣ ହେଲା ? ମୁଁ ଯେତେବେଳେ ତାଙ୍କ ପାଖରେ ଗବେଷଣା କରୁଛି, ତାଙ୍କ ଆଗ ଡ଼ାକ ହେବିନି କାହିଁକି ?"

"ତୁ କ'ଣ ଏକା ତାଙ୍କଠାରେ ଗବେଷଣା କରୁଛୁ କି ଲୋ ? ତୋ ଭଳି ପରା ଆଉ ତିନି ଚାରିଜଣ ଅଛନ୍ତି ? ସେମାନେ ତ ଆଗ ଡ଼ାକ ହୋଇପାରୁ ନାହାନ୍ତି, ତୁ କେମିତି ହେଉଛୁ ?"

"ମୁଁ କ'ଣ ସେମାନଙ୍କୁ ମନା କରୁଛି ଆଗ ଡ଼ାକ ହେବା ପାଇଁ ? ସେମାନେ ହେଉ ନାହାନ୍ତି ?"

"ସେମାନେ କ'ଣ ତୋ ଭଳି ଭାଗ୍ୟବାନ୍ ହୋଇଛନ୍ତି ଯେ ହେବେ ? ଆଲୋ ଏହି ଆଗ ଡ଼ାକ ଭିତରେ ଆଉକିଛି ନାହିଁ ତ ?"

"ତୋର ସବୁବେଳେ ସେମିତିକା କଥା । ଆଉ କ'ଣ ଥିବ ?"

"କାହିଁକି, ଭଲ ପାଇବା ?"

"ହଁ, ସାର୍‌ଙ୍କୁ ତ ମୁଁ ଖୁବ୍ ଭଲପାଏ ? ଭଲ ପାଉ ନ ଥିଲେ ମୁଁ ତାଙ୍କ ପାଖରେ ଗବେଷଣା କରିଥାନ୍ତି କେମିତି ?"

"ଆଲୋ, ସେ ଭଲ ପାଇବା କଥା ମୁଁ କହୁନ । ମୁଁ ସେଇ ଭଲ ପାଇବା କଥା କହୁଛି, ଯାହାକୁ କହନ୍ତି ଅସଲ ଭଲ ପାଇବା, ମାନେ ପ୍ରେ···ମ···। ତୁ କ'ଣ ତାଙ୍କୁ ତୋ ପ୍ରେମ-ଜାଲରେ ଏ ପର୍ଯ୍ୟନ୍ତ ପକାଇ ପାରନୁ ? ଆଲୋ, କେଡ଼େ ସୁନ୍ଦର ରୂପ, ଅଧ୍ୟାପକ ଭାବରେ କେତେ ପ୍ରସିଦ୍ଧି, ଏତେସବୁ ଦେଖି ତୁ ଚୁପ୍ ହୋଇ ବସିଛୁ କେମିତି ମ ? ମୁଁ ତୋ ସ୍ଥାନରେ ଥିଲେନା, ଏତେବେଳକୁ କେତେ କ'ଣ କରି ସାରନ୍ତିଣି ।"

"ଦେଖ୍ ପୁଷ୍ପା, ସେଭଳି ବାଜେକଥା ମୁହଁକୁ ଆଣ ନା । ସାର୍ ହେଲେ ଦେବପ୍ରତିମ ଲୋକ । ସେ ଗୁରୁ, ମୁଁ ଛାତ୍ରୀ । ଗୁରୁ-ଛାତ୍ରୀ ଭିତରେ ଏମିତି ଏକ କଦର୍ଯ୍ୟ ସମ୍ପର୍କ କଳ୍ପନା କରିବା ମହାପାପ । ତୋ ମୁଣ୍ଡରେ କ'ଣ ଏଇ ପାପ କଥା ଛଡ଼ା ଆଉ କିଛି ପଶୁନ ?"

"ଆଲୋ, ଭଲ ପାଇବାଟାକୁ ପାପ ବୋଲି କିଏ କହିଲା ? ଏହା ତ ଏକ ସ୍ୱର୍ଗୀୟ ଗୁଣ । ଏହାକୁ ତୁ ପାପ ବୋଲି ଭାବୁଛୁ କାହିଁକି ? ଦେବତାମାନେ ପରା ବେଳେ ବେଳେ ସ୍ୱର୍ଗରୁ ଓହ୍ଲାଇ ଆସନ୍ତି ପୃଥିବୀକୁ ଏହି ପ୍ରେମ ପାଇଁ ।"

"ଦେଖ ପୁଷ୍ପା, ସାର୍ ତୁମ୍ଭର ସିଂହ କି ତୁମ୍ଭର ବେନେର୍ଜି ହୋଇ ନାହାନ୍ତି । ସେ ସେମାନଙ୍କଠାରୁ ଟେର୍ ଉଚରେ । ସେ ନିଜ ଛାତ୍ରୀମାନଙ୍କ ସହିତ ସେଭଳି କଦର୍ଯ୍ୟ ବ୍ୟବହାର କରିବା ଶିଖି ନାହାନ୍ତି ।"

"ଆଲୋ, ଯଦି ଶିଖି ନାହାନ୍ତି, ତେବେ ତୁ ଶିଖାଇ ଦେଉନୁ ? ସେ ତ ତୋ ଗବେଷଣାର ଗାଇଡ୍ । ତୁ ତାଙ୍କ ପ୍ରେମର ଗାଇଡ୍ ହେଲେ କ୍ଷତି କ'ଣ ହୁଅନ୍ତା ?"

"ତୋ ମୁଣ୍ଡରେ କ'ଣ ଆଉକିଛି ନାହିଁ ଲୋ ପୁଷ୍ପା ? ଏହିଭଳି ପାପ କଥା ମୁଣ୍ଡକୁ ଆଣି ତୋ ମୁଣ୍ଡ ଓ ମୋ ମୁଣ୍ଡକୁ କାହିଁକି ଖରାପ କରୁଛୁ କହିଲୁ ? ଆଲୋ, ସାର୍‌ଙ୍କୁ କ'ଣ ସୁନ୍ଦରୀ ଝିଅ ମିଳୁ ନାହାନ୍ତି ଯେ, ସେ ମୋ ପ୍ରତି ଆକୃଷ୍ଟ ହେବେ ? ଆଜି ବାହା ହେବା ପାଇଁ କହିଲେ କାଲି ପରା ଶହ ଶହ ସୁନ୍ଦରୀ ଝିଅ ଲାଇନ ଲଗାଇଦେବେ !"

"ତୋଠି ସୌନ୍ଦର୍ଯ୍ୟର କେଉଁଗୁଣଟା ଊଣା ଅଛି କି ଲୋ ? ସାରା କଲେଜ ଭିତରେ ସବୁଠାରୁ ସୁନ୍ଦରୀ ବୋଲି 'କଲେଜ କୁଇନ୍' ଆଖ୍ୟା ତ ପାଇଛୁ । ରାସ୍ତାରେ ଗଲେଗଲେ ପିଲାମାନେ ତୋତେ ଦେଖିବା ପାଇଁ ପରା ରାସ୍ତା ଦ'କଡ଼ରେ ଭିଡ଼ ଲଗାଇ ଦିଅନ୍ତି । ପାଠରେ ତ କମ୍ ନୁହେଁ । ଫାର୍ଷ୍ଟ୍‌କ୍ଲାସ୍ ଫାର୍ଷ୍ଟ୍, ଗୋଲ୍ଡ଼ ମେଡ଼ାଲିଷ୍ଟ । ଏଣେ ବାପ ତୋର ଏତେ ଧନୀ ଯେ, ଧନରେ ଦେବବାବୁଙ୍କୁ ପୋତି ପକାଇବେ । ଦେବବାବୁ ଯେ ମନେ ମନେ ତୋତେ ବରଣ କରି ସାରି ନ ଥିବେ, କିଏ ଜାଣିଛି ?"

"ସାର୍‌ଙ୍କୁ ତୁ ଏତେ ନୀଚ ଧରଣର ବୋଲି ଭାବ ନା । ସେ ତାଙ୍କ ଛାତ୍ରୀ ପ୍ରତି ଏମିତି ଖରାପ ଭାବ ଯେ ମନେ ମନେ ପୋଷଣ କରିଥିବେ, ଏଭଳି କଳ୍ପନା କରିବା ମହାପାପ । ଗୁରୁ-ଛାତ୍ରୀର ସମ୍ପର୍କ କେତେ ପବିତ୍ର, ସେ ଭଲ ଭାବରେ ଜାଣନ୍ତି ।"

"ଆଲୋ, ଗୁରୁ-ଛାତ୍ରୀ ଗୁରୁ-ଛାତ୍ରୀ ଏମିତି କ'ଣ ହେଉଛୁ ମ ? ଦୁନିଆରେ କେତେ ଗୁରୁ ସେମାନଙ୍କ ଛାତ୍ରୀକୁ ଯେ ବିବାହ କରିଛନ୍ତି, ତୁ କ'ଣ ଜାଣିନୁ ? ଗୁରୁ-ଛାତ୍ରୀ

ଅବସ୍ଥାଚକ୍ରରେ ସ୍ୱାମୀ-ସ୍ତ୍ରୀ ହେବା କିଛି ପାପ ନୁହେଁ କି ଏଥିରେ ଅନୈତିକତା ବୋଲି କିଛି ନାହିଁ ।''

"ମୁଁ ଦେଖୁଛି ପୁଷ୍ପା, ତୋ ମୁଣ୍ଡ ତ ସବୁବେଳେ ଏହିଭଳି ବାଜେ କଥା ନେଇ ବ୍ୟସ୍ତ । ତୋ ମୁଣ୍ଡକୁ ତ ଗବେଷଣା କଥା ମୋଟେ ପଶୁ ନ ଥିବ ? ଅଧ୍ୟାପକ ନାୟକ ତୋତେ କେମିତି ଗବେଷଣା-ଛାତ୍ରୀ ଭାବରେ ରଖିଛନ୍ତି, ମୁଁ ଆଶ୍ଚର୍ଯ୍ୟ ହେଉଛି । ସେ ତୋତେ କେମିତି ବିଦା କରିଦେଇ ନାହାନ୍ତି, ତାହା ହିଁ ଆଶ୍ଚର୍ଯ୍ୟ । ଭାଗ୍ୟ ଭଲ, ଡକ୍ଟର ନାୟକ ବିବାହିତ । ନଚେତ୍ ତୁ ଯେଉଁ ଡାହାଣୀ ନା, ତାଙ୍କୁ କେଉଁଦିନରୁ ଗ୍ରାସ କରି ସାରନ୍ତୁଣି ।''

"ଆଲୋ, ଜୀବନର ପ୍ରକୃତ ଆଦର୍ଶ କ'ଣ କହିଲୁ ? ଆମେ କ'ଣ ପାଇଁ ଗବେଷଣା କରୁଛେଁ ? ପିଏଇଚ୍.ଡି. ଡିଗ୍ରୀ ପାଇଲେ ଗୋଟିଏ ଭଲ ଚାକିରି ମିଳିଯିବ, ଫଳରେ ଆମ ଭବିଷ୍ୟତ ଜୀବନ ସୁଖମୟ ହେବ, ଏଇଆ ତ ? ନା, ଆଉକିଛି ? ପିଏଇଚ୍.ଡି. ପାଇବା ସଙ୍ଗେ ସଙ୍ଗେ ଯଦି ଗୋଟିଏ ସୁଖମୟ ଜୀବନସଙ୍ଗୀ ନ ମିଳିଲା, ତେବେ ଏ ଡିଗ୍ରୀର କ'ଣ ଲାଭ ? ଗବେଷଣା ଭିତରେ ଯଦି ଜଣେ ନିଜ ଜୀବନସଙ୍ଗୀ ଯୋଗାଡ଼ କରି ନ ପାରିଲା, ତେବେ ସେ ଗବେଷଣାକୁ ଶତଧିକ୍ ।''

"ତୁ ଗୋଟାଏ ବାଟ କର ପୁଷ୍ପା । ଅଧ୍ୟାପକ ନାୟକଙ୍କୁ ଛାଡ଼ି ସାର୍‌ଙ୍କ ଗବେଷଣା ପରିସର ଭିତରକୁ ଚାଲିଆ । ତୋତେ ଏଠି ତୋ ମନମୁତାବକ କେତେ ଜିନିଷ ମିଳୁଛି, ବଳେ ଦେଖିବୁନି !''

"ରାମ୍, ରାମ୍, ତୁ ଥିଲା ପର୍ଯ୍ୟନ୍ତ ମୁଁ କ'ଣ ଏଠି ପଶି ପାରିବି ? ମୁଁ ତୋ ସ୍ଥାନରେ ଥିଲେନା କେତେଦିନରୁ ଜୀବନସଙ୍ଗୀ ବାଛିଟା ଯେ ସରନ୍ତାଣି, ତା'ର ଇୟତ୍ତା ନାହିଁ । ମୁଁ ତୋ ଭଳି ଆଗ ଡାକ ହୋଇଥିଲେ ସେତିକ କ'ଣ ବାକି ରଖିଥାନ୍ତି ?''

"ହେଉ, ରୁ ଆ, ଦେଖ ତୁ କ'ଣ ଏଠି କରି ପାରୁଛୁ । ସେମିତି କିଛି କଲେନା, ଦି' ଧକ୍କା ଖାଇ ଏଠୁ ବିଦା ହୋଇଥିବୁ ।''

"ସେ ଧକ୍କାରେ ଆନନ୍ଦ ଅଛି ଲୋ, ଆନନ୍ଦ ଅଛି । ତୁ ବୁଝିନୁ ଶୁଭ୍ରା, ଦେବବାବୁଙ୍କ ଭଳି ଜୀବନସଙ୍ଗୀ ପାଇବା ଭାଗ୍ୟରେ ଥିଲେ ମିଳେ । ସେଥିପାଇଁ ଶହେ ଧକ୍କା ଖାଇଲେ ମଧ୍ୟ କିଛି କ୍ଷତି ନାହିଁ । ତାଙ୍କ ରୂପ, ଗୁଣ, ସୌନ୍ଦର୍ଯ୍ୟ, କାର୍ଯ୍ୟଦକ୍ଷତା ଦେଖିଲେ କିଏ ଯେ ତାଙ୍କ ପ୍ରତି ଆକୃଷ୍ଟ ନ ହେବ, ମୁଁ ଭାବିପାରୁନି । ସତ କହିଲୁ, ତୁ କ'ଣ ତାଙ୍କ ପ୍ରତି ଆକୃଷ୍ଟ ନୋହୁଁ ?''

"ଆଲୋ, ସେ ଏହାଠାରୁ ଢେର୍ ଊର୍ଦ୍ଧ୍ୱରେ । ତୁ ଆକୃଷ୍ଟ ହେଲେ ନ ହେଲେ ତାଙ୍କ ଉପରେ କିଛି ପ୍ରଭାବ ପଡ଼େନି ।''

"କାହିଁକି, ସେ ଏମିତି ବିଶ୍ୱାମିତ୍ର ଋଷି ହୋଇଗଲେଣି ନା କଅଣ ? ବିଶ୍ୱାମିତ୍ରଙ୍କ ଭଳି ତପସ୍ୱୀ ଋଷି ପୁଣି ତ ଉର୍ବଶୀ ପ୍ରେମରେ ପଡ଼ି ଶକୁନ୍ତଳା ଜନ୍ମର କାରଣ ହେଲେ । ଦେବବାବୁ କ'ଣ ବିଶ୍ୱାମିତ୍ରଙ୍କଠାରୁ ଉଚ୍ଚରେ କି ଲୋ ?''

"ତା ମୁଁ କହୁନି । ହେଲେ ଉର୍ବଶୀ ଭଳି ଅପ୍‌ସରା ମିଳିଲେ ସିନା ହେବ ?"

"ମୁଁ ଶୁଣିଥିଲି, ଦେବବାବୁ କାଲେ କେମ୍ବ୍ରିଜର ଅଧ୍ୟାପକ ମେକ୍‌ଡୋନାଲ୍‌ଡ଼ଙ୍କ କନ୍ୟାର ପ୍ରେମ ନିବେଦନକୁ ପ୍ରତ୍ୟାଖ୍ୟାନ କରି ଚାଲି ଆସିଥିଲେ । ମେକ୍‌ଡୋନାଲ୍‌ଡ଼ଙ୍କ ଝିଅ କାଲେ ଭାରି ସୁନ୍ଦରୀ ?"

"ହଁ, ତା ନ ହୋଇଥିଲେ, ସେ ତ ଆଜି କେମ୍ବ୍ରିଜରେ ରହି ସୁଖରେ ଘରସଂସାର କରୁଥାନ୍ତେ ।"

"ଆଲୋ, ସୁନ୍ଦରୀଶ୍ରେଣୀ ମିସ୍ ମେକ୍‌ଡୋନାଲ୍‌ଡ଼ ସିନା ପାରିଲେନି, ତୁ କିନ୍ତୁ ପାରିବୁ । ଉର୍ବଶୀର ବହୁତ ଗୁଣ ତୋଠାରେ ଅଛି । ଦେବବାବୁଙ୍କ ଭଳି ବିଶ୍ୱାମିତ୍ରଙ୍କ ପାଇଁ ତୋ ଭଳି ଜଣେ ଉର୍ବଶୀ ଦରକାର ।"

"ଥାଉ, ଥାଉ, ଥାଉ ଏତେ ବାଜେକଥା କହି ମୁଣ୍ଡ ଖରାପ କରନା । ତୁ ଗଲୁ ଏଠୁ । ଢେର୍ ବେଳ ଆସିଲୁଣି, ଡ଼କ୍ଟର ନାୟକ କ'ଣ ତୋତେ ଖୋଜୁ ନାହାନ୍ତି ?"

"ଆଲୋ, ସେ କ'ଣ ଦେବବାବୁଙ୍କ ଭଳି ଟୋକା ହୋଇଛନ୍ତି ଯେ ମୋତେ ଘଡ଼ିକୁଘଡ଼ି ଖୋଜୁଥିବେ ? ଦେଖ ଶୁଭ୍ରା, ତୋ ଭଲ ପାଇଁ କହୁଛି, ଦେବବାବୁଙ୍କୁ ହାତଛଡ଼ା କର ନା । ଯେତେଶୀଘ୍ର ପାରୁ , ତାଙ୍କୁ ନିଜର କରି ପକା ।"

## ତେର

"ସାର୍, ଆପଣ ମୋତେ ଡ଼କାଇଥିଲେ ?" ରସାୟନ ବିଭାଗର ମୁଖ୍ୟଙ୍କ ରୁମ୍ ଭିତରକୁ ପଶି ପଶି ଦେବସ୍ନାନ ପଚାରିଲେ ।

"ହଁ, ଦେବସ୍ନାନ, ମୁଁ ତୁମକୁ ଡ଼କାଇଥିଲି । ଦେଖ ଦେବସ୍ନାନ, ଜଗତସିଂହପୁର କଲେଜର ପ୍ରିନ୍‌ସପାଲ ଡ଼କ୍ଟର ରାଉତଙ୍କୁ ତୁମେ ଜାଣିଥିବ ? ସେ ତାଙ୍କ କଲେଜର ବାର୍ଷିକୋତ୍ସବ ଉପଲକ୍ଷେ 'ଭବିଷ୍ୟତର ଖାଦ୍ୟ' ଶୀର୍ଷକ ଗୋଟିଏ ସିମ୍ପୋଜିୟମ୍ ତାଙ୍କ କଲେଜରେ କରିବା ପାଇଁ ଠିକ୍ କରିଛନ୍ତି । ସେଥିରେ ଭାଗ ନେବା ପାଇଁ ମୋତେ, ବାଣୀବିହାରର ପ୍ରୋଫେସର, ଆଞ୍ଚଳିକ ଗବେଷଣାଗାରର ନିର୍ଦ୍ଦେଶକ ଓ ବିଦ୍ୟାଧରପୁରସ୍ଥ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ରର ନିର୍ଦ୍ଦେଶକଙ୍କୁ ନିମନ୍ତ୍ରଣ କରିଛନ୍ତି । ଏହି ସିମ୍ପୋଜିୟମ୍ ନେଇ ମୋ ସହିତ ପ୍ରାରମ୍ଭିକ ଆଲୋଚନା ପାଇଁ ସେଦିନ ଆମ ଡିପାର୍ଟମେଣ୍ଟକୁ ଆସିଥିଲେ । ତା'ପରେ ସେ ଅନ୍ୟମାନଙ୍କ ସହିତ ମଧ୍ୟ ଆଲୋଚନା କରି ଯାଇଛନ୍ତି । ମୁଁ ତାଙ୍କୁ କଥା ଦେଇଥିଲି ଯିବା ପାଇଁ । ସେମାନଙ୍କ ବାର୍ଷିକୋତ୍ସବ ହେଉଛି ଆସନ୍ତା ୧୬ ତାରିଖ ମଙ୍ଗଳବାର । ଠିକ୍ ସେଇ ୧୬ ତାରିଖ ଦିନ ଦିଲ୍ଲୀରେ ମୋର ଗୋଟିଏ ଜରୁରୀ ମିଟିଂ

ପଢ଼ି ଯାଉଛି, ଯା'ପାଇଁ କି ଜଗତସିଂହପୁର କଲେଜକୁ ଯିବା ମୋ ପକ୍ଷେ ସମ୍ଭବପର ନ ହୋଇପାରେ । ମୁଁ ଭାବୁଛି, ମୋ ସ୍ଥାନରେ ତୁମେ ସେଠାରେ ଉପସ୍ଥିତ ରହି ସିମ୍ପୋସିୟମ୍‌ରେ ଭାଗ ନେଲେ କ୍ଷତି କଅଣ ହୁଅନ୍ତା ? ହଁ, ସେଦିନ ଆମ କଲେଜ ଲାଇବ୍ରେରୀରେ 'ସାଂଶ୍ଳେଷିକ ଖାଦ୍ୟ' ଉପରେ ତୁମର ଖଣ୍ଡିଏ ବହି ଦେଖିଲି । ବହିଟି ଇଂରାଜୀରେ ଲେଖା । ଏହାକୁ ଛପାଇଛି ଦିଲ୍ଲୀର ଆନନ୍ଦ ପବ୍ଲିକେସନସ । ବହିଟି ଚମତ୍କାର ହୋଇଛି । ସେଥିରେ ବିଷୟଗୁଡ଼ିକୁ ତୁମେ ବହୁଦିଗରୁ ଆଲୋଚନା କରିଛ । ମୋତେ ଭାରି ଭଲ ଲାଗିଲା ତୁମ ଆଲୋଚନା । ସେହି ସିମ୍ପୋସିୟମରେ ତୁମେ ସାଂଶ୍ଳେଷିକ ଖାଦ୍ୟ ଉପରେ କହିଲେ ଖୁବ ଭଲ ହୁଅନ୍ତା । ଅନ୍ୟମାନେ ବିଭିନ୍ନ ଦିଗରୁ ଆଲୋଚନା କରନ୍ତୁ । ତୁମେ କିନ୍ତୁ ଏହାରି ଉପରେ ଆଲୋଚନା କରିବ । ଭାରି ସୁନ୍ଦର ହେବ ସେ ଆଲୋଚନା । ତୁମେ ରାଜି ତ ମୋ କଥାରେ ? ହଁ କହିଲେ ମୁଁ ଜଗତସିଂହପୁର କଲେଜ ପ୍ରିନସପାଲଙ୍କୁ ମୋ ସ୍ଥାନରେ ତୁମ ଯିବା କଥା ଜଣାଇ ଦିଅନ୍ତି । ତୁମ ଯିବା ଆସିବାରେ କିଛି ଅସୁବିଧା ହେବନି । ସେମାନେ ଗାଡ଼ି ପଠାଇବେ । ତୁମେ ଏଠାରେ ତୁମ କ୍ଳାସ ସାରି ଚାଲିଯିବ । ସନ୍ଧ୍ୟା ପୂର୍ବରୁ ଫେରି ଆସିବ । ବେଶି ଦୂର ତ ନୁହେଁ ।''

''କିନ୍ତୁ ସାର୍, ଯେତେହେଲେ ଆପଣଙ୍କ ଭାଷଣର ଗୁରୁତ୍ୱ ଭଳି ମୋ ଭାଷଣର ଗୁରୁତ୍ୱ କ'ଣ ହେବ ? କାହିଁ ଆପଣ, କାହିଁ ମୁଁ ?''

''ସେସବୁ କିଛି ଭାବ ନାହିଁ ଦେବସ୍ମିତା । ତୁମେ ହେଲ ଏ ଯୁଗ ପାଇଁ ବକ୍ତା । ଆମ ଯୁଗ ଚାଲିଗଲାଣି । ଆଜିକାଲି ଯୁବ-ସମାଜ କ'ଣ ଶୁଣିବାକୁ ଚାହେଁ, ତୁମେ ଯେତେ ଜାଣିପାରିବ, ଆମେ ସେତେ ପାରିବୁନି ।''

× × × ×

ଜଗତସିଂହପୁର କଲେଜର ସୁସଜ୍ଜିତ ହଲ । ଛାତ୍ର, ଛାତ୍ରୀ ସ୍ଥାନୀୟ ଭଦ୍ରଲୋକ ଓ ଭଦ୍ର ମହିଳାଙ୍କ ଦ୍ୱାରା ହଲଟି ଭରପୂର । ଓଡ଼ିଶାର ବଡ଼ ବଡ଼ ବୈଜ୍ଞାନିକ 'ଭବିଷ୍ୟତର ଖାଦ୍ୟ' ଉପରେ କ'ଣ କ'ଣ କହିବେ ଶୁଣିବା ପାଇଁ ଆସିଥାନ୍ତି । ସେହି ସିମ୍ପୋସିୟମ ଆରମ୍ଭ କରି ଆଞ୍ଚଳିକ ଗବେଷଣାଗାରର ନିର୍ଦ୍ଦେଶକ ପ୍ରଥମ କହିଲେ, ''ଆଜିକାଲି ପରିବାର ନିୟନ୍ତ୍ରଣ, ପରିବାର ଯୋଜନା, ପରିବାର କଲ୍ୟାଣ ଆଦି କେତେ ନାଁ ଶୁଣା-ଯାଉଛି । ପରିବାର କଲ୍ୟାଣ କି ପରିବାର ନିୟନ୍ତ୍ରଣର ମୁଖ୍ୟ ଉଦ୍ଦେଶ୍ୟ ହେଉଛି, କମ୍ ପିଲାଙ୍କୁ ଜନ୍ମ ଦେଇ ସେମାନଙ୍କୁ ଭଲରେ ରଖିବା । ଆମେ ଯଦି ପିଲାମାନଙ୍କ ଜନ୍ମସଂଖ୍ୟାକୁ ନିୟନ୍ତ୍ରଣ ନ କରୁ, ତେବେ ପୃଥିବୀର ଜନସଂଖ୍ୟା ଏତେ ବଢ଼ିଯିବ ଯେ, ଆମେ ସେହି ବର୍ଦ୍ଧିଷ୍ଣୁ ଜନସମାଜକୁ କଦାପି ଆବଶ୍ୟକୀୟ ଖାଦ୍ୟ, ବସ୍ତ୍ର, ଘର ଯୋଗାଇ ପାରିବୁନି । ବୈଜ୍ଞାନିକମାନେ ହିସାବ କରି ଦେଖିଛନ୍ତି, ମଣିଷସୃଷ୍ଟିର ଆଦିମକାଳରୁ ପୃଥିବୀର ଜନସଂଖ୍ୟା ବଢ଼ି ବଢ଼ି ୧୮୪୦ ମସିହା ବେଳକୁ ହେଲା ଶହେକୋଟି । ଏହାର ଠିକ୍ ଶହେବର୍ଷ ପରେ ଅର୍ଥାତ୍ ୧୯୪୦ ମସିହାରେ ଏହି ସଂଖ୍ୟା ବଢ଼ି ବଢ଼ି ହେଲା ୨୦୦ କୋଟି ।

ଏହାର ଠିକ୍ ୩୦ ବର୍ଷ ପରେ ଅର୍ଥାତ୍ ୧୯୬୦ ମସିହା ବେଳକୁ ଏହି ସଂଖ୍ୟା ୩୦୦ କୋଟିରେ ପହଞ୍ଚିଲା । ପୁଣି ଏହାର ପନ୍ଦରବର୍ଷ ପରେ ଅର୍ଥାତ୍ ୧୯୮୫ ମସିହାରେ ଏହି ସଂଖ୍ୟା ୪୦୦ କୋଟିରେ ପହଞ୍ଚିଲା । ପ୍ରଥମ ଶହେକୋଟି ବଢ଼ିବା ପାଇଁ ୧୦୦ ବର୍ଷ ଲାଗିଲା, ପରେ ୩୦ ବର୍ଷ ଲାଗିଲା, ପରେ ମାତ୍ର ୧୫ ବର୍ଷ ଲାଗିଲା । ହିସାବକରି ଜଣାଯାଇଛି, ୧୯୯୩ ମସିହାବେଳକୁ ଏହି ସଂଖ୍ୟା ହେବ ୫୦୦ କୋଟି । ୧୯୯୮ ମସିହାକୁ ଏହା ହେବ ୬୦୦ କୋଟି ଓ ୨୦୦୦ ମସିହା ବେଳକୁ ଏହା ହେବ ୭୦୦ କୋଟି । ଏଥିରୁ ଲକ୍ଷ୍ୟ କରିବାର କଥା, ୧୯୯୩ ମସିହାବେଳକୁ ମାତ୍ର ଆଠବର୍ଷରେ ଶହେକୋଟି ବଢ଼ିଲାବେଳେ ପର ପାଞ୍ଚବର୍ଷରେ ଏହା ଶହେକୋଟି ବଢିଯିବ । ପୁଣି ତା ପର ମାତ୍ର ଦୁଇବର୍ଷ ଭିତରେ ପୁଣି ଶହେକୋଟି ବଢିଯିବ । ୨୦୦୦ ମସିହା ପରେ ପ୍ରତିବର୍ଷ ପୃଥିବୀ ଜନସଂଖ୍ୟା ଶହେକୋଟି ଲେଖାଏଁ ବଢି ପର ପର ବର୍ଷ ଆହୁରି ଅଧିକ ବେଗରେ ବଢିବ ।

ଅବଶ୍ୟ ଅନେକେ କହିପାରନ୍ତି, ଆମେ ଯଦି ଜନ୍ମ ନିୟନ୍ତ୍ରଣ ପଦ୍ଧତିକୁ କଡ଼ାକଡ଼ି ଭାବରେ ଅନୁସରଣ କରୁଁ, ତେବେ ଏହା ଏମିତି ଜୋରରେ ନ ବଢ଼ିପାରେ । ତା' ଠିକ୍ । ପୁରାପୁରି ଜନ୍ମ ନିୟନ୍ତ୍ରଣ କଲେ ଅର୍ଥାତ୍ ବାପ-ମା ଦୁଇକୁ ପିଲାପିଲି ହେବେ ଦୁଇ, ଅନୁସରଣ କଲେ ଜନ୍ମବୃଦ୍ଧି ପୁରାପୁରି ବନ୍ଦ ହେବନି, ଜନ୍ମ ବୃଦ୍ଧିହାର ହୁଏତ କିଛିଟା ଧୀମେଇ ଯାଇପାରେ । ଆମେ ଯେତେ ଯାହା କଲେବି ପୃଥିବୀର ଜନସଂଖ୍ୟା ନିଶ୍ଚୟ ବଢ଼ିବ । ଆମେ ଯଦି ଆଇନ୍ କରିବା, ପ୍ରତ୍ୟେକ ପରିବାରରେ ଦୁଇରୁ ଅଧିକ ପିଲା ହେବେନି, ତଥାପି ବି ଜନସଂଖ୍ୟା ବଢ଼ିବ । ଅନେକେ ଯୁକ୍ତି କରିପାରନ୍ତି ବଢ଼ିବ କାହିଁକି ? ବାପ ମା ଦୁଇଟି, ସେମାନଙ୍କ ପିଲା ହେବେ ଦୁଇଟି । ଦୁଇଟି ଗଲେ, ଦୁଇଟି ଆସିଲେ, ଲୋକସଂଖ୍ୟା ବଢ଼ିବ କାହିଁକି ? ଏହି ଯୁକ୍ତି ଠିକ ନୁହେଁ । କାରଣ ଲୋକମାନଙ୍କର ହାରାହାରି ଆୟୁଷ ଦିନକୁଦିନ ବଢି ଯାଉଥିବାରୁ ଓ ରୋଗବ୍ୟାଧିଗୁଡ଼ିକ ନିୟନ୍ତ୍ରିତ ହୋଇ ଯାଉଥିବାରୁ ରୋଗଜନିତ ମୃତ୍ୟୁସଂଖ୍ୟା ଦିନକୁଦିନ କମିବାରେ ଲାଗିଛି । ଏହାଫଳରେ ଜନସଂଖ୍ୟା ବୃଦ୍ଧି ନିଶ୍ଚୟ ହେବ ହିଁ ହେବ ।

ଆମେ ଯଦି ଆଇନ କରିଦେବା ପ୍ରତି ପରିବାରରେ ମାତ୍ର ଗୋଟିଏ ପିଲା ଜନ୍ମ ହେବ, ଅଧିକ ହେବନି, ତେବେବି ଜନସଂଖ୍ୟା ବଢ଼ିବ । କାହିଁକି ନା, ସେତେବେଳକୁ ଆମ ଆୟୁଷ ବଢି ବଢ଼ି ଶହେ ପାଖାପାଖି ହୋଇ ଯାଇଥିବ ଓ ଅକାଳମୃତ୍ୟୁ ପ୍ରାୟ ନ ଥିବ । ପ୍ରକୃତପକ୍ଷେ ଜନସଂଖ୍ୟା ମୋଟେ ବଢିବନି, ଯଦି ଆମେ ଆଇନ କରିଦେବା ଯେକୌଣସି ପରିବାରରେ ପିଲା ଜନ୍ମହେବା ଉଚିତ ନୁହେଁ । କିନ୍ତୁ ତାହା କ'ଣ ସମ୍ଭବ ? ପରିବାରରେ ଯଦି ପିଲା ଜନ୍ମ ନ ହେବେ, ତେବେ ସଂସାର ଚାଲିବ କେମିତି ? ବାପ ମା'ମାନେ ଛୁଆପିଲା ଅଭାବରୁ ପାଗଳ ହୋଇ ଘୁରି ବୁଲିବେ । ତେଣୁ ତାହା କଦାପି ଗ୍ରହଣୀୟ ନୁହେଁ । ଏଣୁ ପ୍ରତ୍ୟେକ ପରିବାରରେ ପିଲା ଜନ୍ମ ହେବେ, ଫଳରେ ପୃଥିବୀର ଜନସଂଖ୍ୟା ନିଶ୍ଚୟ ବଢିବ, ହୁଏତ ବୃଦ୍ଧିହାର କିଛିଟା କମି ଯାଇପାରେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଆମେ ସେ ଯୁଗର ବର୍ଦ୍ଧିତ ଜନସମାଜକୁ ଆବଶ୍ୟକୀୟ ଖାଦ୍ୟ ପୋଷାକ ଘର ଯୋଗାଇ ପାରିବୁ ତ ? ସେତେବେଳକୁ ପୃଥିବୀରେ କୃଷି ଜମିର ପରିମାଣ ଢେର୍ କମି ଯାଇଥିବ । କାରଣ ଏହି ବର୍ଦ୍ଧିତ ଜନସମାଜ କୃଷି ଜମିରେ ଘରଦ୍ୱାର କରି ରହିଯିବେ । ଏଣେ କୃଷି ଜମିର ପରିମାଣ କମି ଆସିଲାବେଳକୁ ତେଣେ ଜନସଂଖ୍ୟାର ବୃଦ୍ଧି ଫଳରେ ଖାଦ୍ୟ ଉତ୍ପାଦନ ପରିମାଣ ଯଥେଷ୍ଟ ହୋଇପାରିବନି । ସେ ଯୁଗରେ ଅଧିକସଂଖ୍ୟକ ଲୋକ ଅଧିକ ଖାଦ୍ୟ ଚାହୁଁଥିଲାବେଳେ ଆମେ ସେମାନଙ୍କୁ ଆବଶ୍ୟକୀୟ ଖାଦ୍ୟ ଯୋଗାଇପାରିବୁନି । ଫଳରେ ଖାଦ୍ୟାଭାବ ଯୋଗୁଁ ପୃଥିବୀ ଧ୍ୱଂସ ପାଇ ଯାଇପାରେ ।

ବୈଜ୍ଞାନିକମାନେ ଏହି ସମସ୍ୟା ସମାଧାନ ପାଇଁ କ'ଣ କହୁଛନ୍ତି ଜାଣ ? ଏଣେ ଲୋକସଂଖ୍ୟା ବୃଦ୍ଧି, ତେଣେ କୃଷି ଜମିର ପରିମାଣ ହ୍ରାସ, ମଣିଷକୁ ଏମିତି ଏକ ଅବସ୍ଥାକୁ ଘେନି ଆସିବ, ଯେଉଁଠି କୃଷିଦ୍ୱାରା ମଣିଷ ସମାଜକୁ ଖାଦ୍ୟ ଯୋଗାଇବା ସମ୍ଭବପର ହେବନି । ଅନେକେ କହିପାରନ୍ତି ସୁପର ଧାନ, ସୁପର ଗହମ ଫଳାଇ ଖାଦ୍ୟାଭାବ ମେଣ୍ଟାଇ ହେବ । କିନ୍ତୁ ଏହା ସମ୍ଭବ ନୁହେଁ, କାରଣ ସୁପର ଶସ୍ୟ, ସୁପର ଫଳମୂଳ, ସୁପର ପନିପରିବାର ଏକ ସୀମା ଅଛି । ଏହା ସେତେବେଳର ଆବଶ୍ୟକତାକୁ ମୋଟେ ମେଣ୍ଟାଇ ପାରିବନି । ତେଣୁ ଭବିଷ୍ୟତରେ କୃଷିବାସ ଉପରେ ନିର୍ଭର ନ କରି କଳ-କାରଖାନାରେ ଆମର ସମସ୍ତ ପ୍ରକାର ଖାଦ୍ୟପଦାର୍ଥକୁ ସାଂଶ୍ଳେଷିକ ଉପାୟରେ ଉତ୍ପାଦନ କରିବା ପାଇଁ ଚେଷ୍ଟା କରାଯିବା ଉଚିତ । କାରଣ ଏହା ହିଁ ହେବ ସେତେବେଳକାର ସମସ୍ୟାର ଏକମାତ୍ର ସମାଧାନ । ଏହି ସାଂଶ୍ଳେଷିକ ଉପାୟରେ ଖାଦ୍ୟ ଉତ୍ପାଦନ କ'ଣ ତାହା ଆଲୋଚନା କରିବେ ମୋର ପରବର୍ତ୍ତୀ ବକ୍ତା ରେଭେନ୍‌ସା କଲେଜର ଉପାଧ୍ୟାୟମାନ ଯୁବ ବୈଜ୍ଞାନିକ ଡକ୍‌ଟର ଦେବସ୍ମାନ ଦାସ । ସେ ଏହାରି ଉପରେ ଏକ ସୁନ୍ଦର ଇଂରାଜୀ ପୁସ୍ତକ ରଚନା କରି ସାରା ଭାରତରେ ଖ୍ୟାତି ଅର୍ଜନ କରିଛନ୍ତି ।

ଘନ ଘନ କରତାଳିରେ ସଭାକକ୍ଷ କମ୍ପି ଉଠିଲା । କରତାଳିର ସେହି ଘନ ଗର୍ଜନ ଭିତରେ ଡକ୍‌ଟର ଦାସ ଆରମ୍ଭ କଲେ—

ସାଂଶ୍ଳେଷିକ ଉପାୟରେ ଖାଦ୍ୟ ଉତ୍ପାଦନ କଅଣ ? କୃଷିବାସ ନ କରି କୃତ୍ରିମ ଉପାୟରେ ଚିନି, ମଇଦା, ଚାଉଳ, ମାଛ, ମାଂସ ଆଦି ଖାଦ୍ୟ ପଦାର୍ଥର ଉତ୍ପାଦନକୁ ସାଂଶ୍ଳେଷିକ ଖାଦ୍ୟ ଉତ୍ପାଦନ କହନ୍ତି । ଆମର ଖାଦ୍ୟ ପ୍ରଧାନତଃ ପାଞ୍ଚ ପ୍ରକାର । ଯଥା: ପୁଷ୍ଟିସାର, ଶ୍ୱେତସାର, ସ୍ନେହସାର, ଜୀବସାର ଓ ଧାତୁସାର । ଏଥିମଧ୍ୟରୁ ଶେଷ ଦୁଇଟି ବର୍ତ୍ତମାନ ସୁଦ୍ଧା କେତେକ ପରିମାଣରେ କୃତ୍ରିମ ଉପାୟରେ ପ୍ରସ୍ତୁତ ହେଉଛି । ଧାତୁସାର, ଯଥା: ଫେରସ୍ ଲବଣ, ଫସ୍‌ଫରସ୍ ଲବଣ, କେଲସିୟମ୍ ଲବଣ ଆଦି ଆମ ଶରୀର ପାଇଁ ଏକାନ୍ତ ଆବଶ୍ୟକ । ଏହି ଧାତୁସାର ଥିବା ଖାଦ୍ୟର ଅଭାବ ଘଟିଲେ ନାନା ପ୍ରକାର ରୋଗ ହୁଏ । ଏଗୁଡ଼ିକୁ ଭିନ୍ନ ଭିନ୍ନ ଖାଦ୍ୟପଦାର୍ଥରୁ ସଂଗ୍ରହ କରାଯାଇପାରିବ ସତ, କିନ୍ତୁ ତାହା

ଅତ୍ୟଧିକ କଷ୍ଟକର । ତେଣୁ କାହାର ଯଦି ଏଇ ଧାତୁସାର ଅଭାବଯୋଗୁଁ କିଛି ରୋଗ ହେଲା, ତେବେ ତାକୁ ସେହି ଧାତୁସାର ଥିବା ଖାଦ୍ୟପଦାର୍ଥ ନ ଯୋଗାଇ ଆଧୁନିକ ଚିକିତ୍ସକମାନେ ବଜାରରେ ମିଳୁଥିବା ଧାତୁସାରଯୁକ୍ତ ଔଷଧ ଦେଇ ସେହି ଅଭାବଜନିତ ରୋଗ ଦୂର କରିପାରୁଛନ୍ତି । ଜୀବସାର କଥା ମଧ୍ୟ ସେଇଆ । ପ୍ରାକୃତିକ ଖାଦ୍ୟରୁ ଆବଶ୍ୟକୀୟ ଜୀବସାର ସଂଗ୍ରହ କରିବା କଷ୍ଟସାଧ୍ୟ ଓ ଖର୍ଚ୍ଚ ସାପେକ୍ଷ କିନ୍ତୁ ବୈଜ୍ଞାନିକମାନଙ୍କ ଦ୍ୱାରା ସଂଶ୍ଲେଷିତ ବିଭିନ୍ନ ଜୀବସାର ବଟିକା ବଜାରରେ ମିଳୁଛି । ଆମକୁ ଜୀବସାର ଅଭାବଜନିତ ରୋଗ ହେଲେ ଆମେ ସଙ୍ଗେ ସଙ୍ଗେ ବଜାରରୁ ସେହି ସାଂଶ୍ଲେଷିକ ଜୀବସାର ବଟିକା କିଣି ଆଣି ଖାଇ ରୋଗମୁକ୍ତ ହେଉଛୁ । ତେଣୁ ବର୍ତ୍ତମାନ ପାଞ୍ଚଗୋଟି ଖାଦ୍ୟ ଭିତରୁ ଦୁଇଟି ସାଂଶ୍ଲେଷିକ ଭାବରେ ପ୍ରସ୍ତୁତ ହେଲାଣି । ବାକି ରହିଲା ତିନିଗୋଟି । ସେସବୁ ମଧ୍ୟ ଆଂଶିକ ସଂଶ୍ଲେଷିତ ହୋଇ ବଜାରକୁ ଆସିଲାଣି ।

ରୋଗୀମାନଙ୍କ ପାଇଁ ଗ୍ଲୁକୋଜ ବା ଦ୍ରାକ୍ଷାଶର୍କରା ଏକ ଅତ୍ୟାବଶ୍ୟକୀୟ ପଦାର୍ଥ । ଆମେ ଯେତେବେଳେ ଦୁର୍ବଳ ଅନୁଭବ କରୁ, ଗ୍ଲୁକୋଜ ବଟିକା ଖାଇଦେଲେ ଆମ ଦୁର୍ବଳତା କିୟତ୍ ପରିମାଣରେ ଦୂରିଯାଏ । ଏହି ଗ୍ଲୁକୋଜ ମିଳେ ଅଙ୍ଗୁର ରସରୁ । କିନ୍ତୁ ଆଜିକାଲି ଯେଉଁ ଗ୍ଲୁକୋଜ ବଜାରରେ ବିକ୍ରି ହେଉଛି, ତାହା ଅଙ୍ଗୁରରସରୁ ତିଆରି ନୁହେଁ । ତାହା ହୋଇଥିଲେ ପାଉଣ୍ଡେ ଓଜନର ଗ୍ଲୁକୋଜର ଦାମ୍ କୋଡ଼ିଏଟଙ୍କା ନ ହୋଇ ପାଞ୍ଚଶହ ଟଙ୍କା ହୋଇଥାଆନ୍ତା । ଏ ଯେଉଁ ଗ୍ଲୁକୋଜ ବଜାରରେ ମିଳୁଛି ତାହା ପ୍ରସ୍ତୁତ ହେଉଛି କରତଗୁଣ୍ଡରୁ । କରତଗୁଣ୍ଡରୁ ଖାଲି ଗ୍ଲୁକୋଜ କାହିଁକି, ଆମେ ଇଚ୍ଛାକଲେ ମଇଦା, ଚାଉଳ, ଚିନି ସବୁକିଛି ଉତ୍ପାଦନ କରିପାରିବା ।

ବୈଜ୍ଞାନିକମାନଙ୍କ ଆଖିରେ କାଠ, କୁଟା, ପତର ଯାହା; ଚାଉଳ, ମଇଦା, ଚିନି ସେଇଆ । କାରଣ, ଏହି ଉଭୟ ଜାତିରେ ଏକା ଜାତିର ସେଲୁଲୋଜ ଓ ଶ୍ୱେତସାର ଅଛି । ଆମେ ଇଚ୍ଛାକଲେ କାଠ, କୁଟା, ପତରକୁ ଚିନି, ମଇଦା, ଚାଉଳରେ ପରିଣତ କରିପାରିବା । ଦୁଇଟି ଭିତରେ କେବଳ ତଫାତ୍ ହେଉଛି କାଠ, କୁଟାରେ ଥିବା ସେଲୁଲୋଜ୍ ବଡ଼ ବଡ଼ ଅଣୁ, ଅଟା, ମଇଦା, ଚାଉଳରେ ଥିବା ଶ୍ୱେତସାର ଅଣୁ ଅପେକ୍ଷାକୃତ ସାନ ଓ ଚିନି ଅଣୁ ଆହୁରି ଛୋଟ । ଆମେ ଯଦି ଗୋଟିଏ ସେଲୁଲୋଜ ଅଣୁକୁ ଭାଙ୍ଗିଦେଉ, ତେବେ ଏହା ଶହ ଶହ ଶ୍ୱେତସାର ଅଣୁରେ ପରିଣତ ହେବ ଓ ହଜାର ହଜାର ଚିନି ଅଣୁରେ ପରିଣତ ହୋଇଯିବ । ତେଣୁ ବୈଜ୍ଞାନିକମାନେ ମତ ଦେଉଛନ୍ତି, ଆମେ ଚାଷ ଜମିରେ ଧାନ, ଗହମ ଆଦି ଚାଷ ନ କରି ଅମରଗଛ ଭଳି ଶୀଘ୍ର ବଢ଼ିପାରୁଥିବା କେତେ ପ୍ରକାର ଗଛ ଖାଲି ଚାଷ କରିବା ଉଚିତ । ଏହି ଗଛ ପୁଣି ଏମିତି ହୋଇଥିବ, ମରୁଡ଼ି ହେଲେ ମରିବ ନାହିଁ କି ବନ୍ୟା ହେଲେ ନଷ୍ଟ ହେବନି । ସେହିଭଳି ଗଛ ଚାରିଆଡ଼େ ଚାଷ କରାଯିବ । ସେହି ଜମିରେ ଠାଏ ଠାଏ କାରଖାନାମାନ ବସିବ । କାରଖାନାର ଗୋଟିଏ ମୁଣ୍ଡରେ ଏହି ଗଛସବୁ କଟା ହୋଇ କାରଖାନା ଭିତରକୁ ପଶିବ ଓ କାରଖାନା

ଭିତରେ ଏହି ଗଛ, ପତ୍ର, ଡାଳରେ ଥିବା ସେଲୁଲୋଜ ଆର୍ଦ୍ର ବିଶ୍ଳେଷିତ ହୋଇ ଚିନି, ମଇଦା ଆଦିରେ ପରିଣତ ହେବ । କାରଖାନାର ଅପରମୁଣ୍ଡରୁ ବସ୍ତା ବସ୍ତା ଚିନି, ମଇଦା, ସୁଜି ବାହାରି ବଜାରକୁ ପ୍ରେରିତ ହେବ ।'' ଏକ ବିଶାଳ ହାସ୍ୟରୋଳ ଭିତରେ ଘନ ଘନ କରତାଳିରେ ବକ୍ତୃତା କକ୍ଷ କମ୍ପି ଉଠିଲା । କିଛି ସମୟପରେ ଡ଼କ୍ଟର ଦାସ ପୁଣି ଆରମ୍ଭ କଲେ––

ଏହି ମଇଦାରୁ ଆମେ କୃତ୍ରିମ ଉପାୟରେ ସରୁ ଲମ୍ବା ଲମ୍ବା କୃତ୍ରିମ ଚାଉଳ ମଧ୍ୟ ପ୍ରସ୍ତୁତ କରିପାରିବା । ଏହି ଚାଉଳକୁ ମଧ୍ୟ କୃତ୍ରିମ ବାସନାଦେଇ ବାସ ଚାଉଳ କରି ପାରିବା । ଏହି କୃତ୍ରିମ ଚାଉଳକୁ ରାନ୍ଧିଲେ ଧୋବ ଫରଫର ସରୁ ଲମ୍ବା ଲମ୍ବା ଭାତ ହେବ ଓ ସୁଗନ୍ଧରେ ପେଟ ପୂରିଯିବ । ଏହାର ସମକକ୍ଷ ହେଲାଭଳି କୌଣସି ପ୍ରାକୃତିକ ବାସନା ଚାଉଳ ନ ଥିବ । ଏହିଭଳି କୃତ୍ରିମ ଚାଉଳ ବହୁଦିନ ତଳେ ଆମ ମହୀଶୂର ଖାଦ୍ୟ ଗବେଷଣା କେନ୍ଦ୍ରରେ ପ୍ରସ୍ତୁତ ହୋଇ ପରୀକ୍ଷିତ ହୋଇଥିଲା । ସେତେବେଳର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ ନେହେରୁ ସେଠାରେ କୃତ୍ରିମ ଚାଉଳରୁ ରନ୍ଧା ଏହି ଭାତକୁ ଖାଇ ସନ୍ତୋଷତା ପ୍ରକାଶ କରିଥିଲେ । ପ୍ରାକୃତିକ ଉପାୟରେ ଆମେ ଗୋଟିଏ ଏକର ଜମିରୁ ଯେତେ ଖାଦ୍ୟ ପଦାର୍ଥ ପାଇପାରିବା, ଏହି ଉପାୟରେ ଶହେଗୁଣ କାହିଁକି ହଜାରେ ଗୁଣ ଖାଦ୍ୟପଦାର୍ଥ ଉତ୍ପାଦନ କରିପାରିବା । ଆଉ କେତେକ ବୈଜ୍ଞାନିକ କହୁଛନ୍ତି, ନା, ତା'ଠାରୁ ଆହୁରି ସହଜ ଉପାୟ ଅଛି, ଚିନି ମଇଦା ଚାଉଳ ଉତ୍ପାଦନ ପାଇଁ । ସେହି ପଦ୍ଧତିରେ ଚାଷ ତ ଦୂରର କଥା, ଗଛ ଲଗାଇବା ମୋଟେ ଦରକାର ପଡ଼ିବ ନାହିଁ ।

ବହୁ ବୈଜ୍ଞାନିକ ମତ ଦିଅନ୍ତି, ଗଛ ଆମ ପାଇଁ ଶ୍ୱେତସାର ଖାଦ୍ୟ ଯେମିତି ପ୍ରସ୍ତୁତ କରେ, ଆମେ କାରଖାନାରେ ଠିକ୍ ସେମିତି ଖାଦ୍ୟ ପ୍ରସ୍ତୁତ କରିପାରିବା । ବାୟୁରେ ଥିବା ଅଙ୍ଗାରକାମ୍ଳ ଓ ଭୂମିରେ ଥିବା ଜଳକୁ ନେଇ ଗଛର ପତ୍ର, ସୂର୍ଯ୍ୟରଶ୍ମି ଓ ପତ୍ର ହରିତ୍ର ସାହାଯ୍ୟରେ ଶ୍ୱେତସାରଜାତୀୟ ଖାଦ୍ୟ ପ୍ରସ୍ତୁତ କରେ । ଏହି ଶ୍ୱେତସାର ଧାନ, ଗହମରେ ସଞ୍ଚିତ ହୋଇ ରହେ । ବର୍ତ୍ତମାନ ପ୍ରଶ୍ନ ହେଲା ଗଛ ଯଦି ବାୟୁରେ ଥିବା ଅଙ୍ଗାରକାମ୍ଳ ଓ ଜଳ ସାହାଯ୍ୟରେ ଶ୍ୱେତସାର ପ୍ରସ୍ତୁତ କରିପାରୁଛି, ତେବେ ଆମେ କାରଖାନାରେ ସେପରି ନ କରିପାରିବା କାହିଁକି ? ଆମେ ଠିକ୍ ସେହିଭଳି ଉପାୟ ଅବଲମ୍ବନ କରି ବାୟୁମଣ୍ଡଳର ଅଙ୍ଗାରକାମ୍ଳକୁ ନେଇ ସେଥିରୁ ଚିନି, ମଇଦା ଆଦି ତିଆରି କ କରିବା କାହିଁକି । ଏହା-ଫଳରେ ଅଙ୍ଗାରକାମ୍ଳରୁ ଅମ୍ଳଜାନ ବାହାରି ଆମ ବାୟୁମଣ୍ଡଳରେ ମିଶିବ ଓ ଆମକୁ ପ୍ରଚୁର ଖାଦ୍ୟ ମିଳିବ ।

ଏହି ପଦ୍ଧତି ଅବଲମ୍ବନ କଲେ ଆଉ ଗଛବୃକ୍ଷ ଚାଷ କରିବା ବିଲକୁଲ ଦରକାର ପଡ଼ିବ ନାହିଁ, ଖାଲି କାରଖାନା ବସାଇଲେ ହେଲା । ଏହି କାରଖାନା ବାୟୁରୁ ବସ୍ତା ବସ୍ତା ଚିନି, ମଇଦା, ଚାଉଳ ଆଦି ପ୍ରସ୍ତୁତ କରି ଆମକୁ ଯୋଗାଇପାରିବ ।

ବର୍ତ୍ତମାନ ତୁମେମାନେ ପଚାରିପାର, ଏ ସିନା ହେଲା ଚିନି, ଚାଉଳ କଥା । ଆମେ ଆବଶ୍ୟକ କରୁଥିବା ପ୍ରୋଟିନ୍‌ଜାତୀୟ ଖାଦ୍ୟ ପାଇବା କେମିତି ? ତା ମଧ୍ୟ କ'ଣ କୃତ୍ରିମ ଉପାୟରେ ମିଳି ପାରିବ ?

"ନିଶ୍ଚୟ ମିଳିପାରିବ । ତୁମେମାନେ ଜାଣିଛ, ସବୁଠାରୁ ଉତ୍କୃଷ୍ଟ ପ୍ରୋଟିନ୍ ମିଳେ ମାଂସରୁ । ମାଂସ ଭିତରେ ସବୁଠାରୁ ସୁଆଦିଆ ମାଂସ ହେଲା କୁକୁଡ଼ା ମାଂସ । କୁକୁଡ଼ା ସେଇ ସୁସ୍ୱାଦୁ ମାଂସ ତା ଶରୀରରେ କେମିତି ପ୍ରସ୍ତୁତ କରେ ? ସେ ଖାଉଥିବା ପୋକ, ଜୋକ, କୀଟପତଙ୍ଗରୁ ତ ? ଏହିସବୁ ନିମ୍ନତର ପ୍ରାଣୀର ମାଂସ ଆମକୁ ଭାରି ଘୃଣା ଲାଗେ । କିନ୍ତୁ ସେଇ ଖାଦ୍ୟକୁ କୁକୁଡ଼ା ଖାଇ ନିଜ ଶରୀରରେ ଉତ୍କୃଷ୍ଟ ମାଂସ ତିଆରି କରେ ଯେଉଁ ମାଂସକୁ ଆମେ ଆନନ୍ଦର ସହିତ ଖାଉଁ । ପ୍ରକୃତପକ୍ଷେ କୁକୁଡ଼ା ମାଂସ ପ୍ରକାରାନ୍ତରେ ସୃଷ୍ଟି ହୋଇଛି ଉପରୋକ୍ତ ଅତି ହୀନ ନିମ୍ନତର ପ୍ରାଣୀ ମାଂସରୁ । କୁକୁଡ଼ା ପୋକ ଜୋକର ମାଂସ ଖାଇ ଯେଉଁ ଉପାୟରେ ନିଜ ଶରୀରରେ ଉତ୍କୃଷ୍ଟ ମାଂସ ତିଆରି କରୁଛି ଆମେ ଠିକ୍ ସେଇ ଉପାୟ ଅବଲମ୍ବନ କରି ନିକୃଷ୍ଟ ପ୍ରାଣୀଙ୍କ ମାଂସରୁ ଉତ୍କୃଷ୍ଟ ମାଂସ ତିଆରି ନ କରିବା କାହିଁକି ? ଆମ ସମୁଦ୍ର ଭିତରେ ଅସଂଖ୍ୟ ପ୍ରକାର ପ୍ରାଣୀ ଅଛନ୍ତି ଯେଉଁମାନଙ୍କ ମାଂସ ଆମେ ଖାଇପାରିବାନି । ତେଣୁ ସେଭଳି ପ୍ରାଣୀଙ୍କ ନିକୃଷ୍ଟ ମାଂସରୁ କାରଖାନାରେ ଆମେ ସୁସ୍ୱାଦୁ ଉତ୍କୃଷ୍ଟ ମାଂସ ତିଆରି ନ କରିବୁ କାହିଁକି ? କୁକୁଡ଼ା ଶରୀରରେ ଯେଉଁ ପ୍ରକ୍ରିୟା ହେଉଛି ଆମେ ତାକୁ ଜାଣୁ । ଆମେ ଠିକ୍ ସେହି ପ୍ରକ୍ରିୟା କାରଖାନାରେ କରିପାରିବା ନାହିଁ କାହିଁକି ? ଏହା ଯଦି ହୁଏ, ବଡ଼ ବଡ଼ ମାଂସ ତିଆରି କାରଖାନାମାନ ଆମକୁ ବସାଇବାକୁ ପଡ଼ିବ ସମୁଦ୍ରକୂଳ ସ୍ଥାନମାନଙ୍କରେ । ସେଇ କାରଖାନାରେ ସମୁଦ୍ରରୁ ଧରି ହୋଇ ଅଖାଦ୍ୟ ପ୍ରାଣୀମାନେ ଗୋଟିଏ ମୁଣ୍ଡରେ ପଶୁଥିବେ, କାରଖାନାର ଆର ମୁଣ୍ଡରୁ କେବଳ ମହଣ ମହଣ କୁକୁଡ଼ା ମାଂସ, ଛେଳି ମାଂସ, ମେଣ୍ଢା ମାଂସ ପେକେଟରେ ଭରତି ହୋଇ ବଜାରକୁ ବିକ୍ରୟ ପାଇଁ ବାହାରି ଯାଉଥିବ । ସେତେବେଳେ ଆଉ ଆଜିକାଲିକା ଭଳି ମାଂସର ଅଭାବ ପଡ଼ିବ ନାହିଁ । ଏକ ବିରାଟ ହାସ୍ୟରୋଳ ଭିତରେ ଘନ ଘନ କରତାଳି କମ୍ପି ଉଠିଲା ଜଗତସିଂହପୁର କଲେଜର ସେହି ବିରାଟ ହଲ୍‌ରେ ।

ସେ ପୁଣି ଆରମ୍ଭ କଲେ, "ଆଉ କେତେକ ବୈଜ୍ଞାନିକ ମତ ଦିଅନ୍ତି ତା ବି ଦରକାର ନାହିଁ । ଆମେ କଳକାରଖାନାରେ ନାନା ପ୍ରକାର ଏମିନୋ ଏସିଡ୍ ପ୍ରସ୍ତୁତ କରିବା ଓ ସେହି ଏମିନୋ ଏସିଡ୍‌କୁ ଖୁବ୍ ସହଜ ଉପାୟରେ ପ୍ରୋଟିନ୍‌ରେ ପରିଣତ କରିପାରିବା । ଏହି ପ୍ରୋଟିନ୍‌ରୁ ଆମେ କୁକୁଡ଼ା ମାଂସ, ଛେଳି ମାଂସ ଆଦି ପାଇପାରିବା । ସେ କ୍ଷେତ୍ରରେ ନିକୃଷ୍ଟ ମାଂସ ଥିବା ପ୍ରାଣୀ ବି ଦରକାର ପଡ଼ିବ ନାହିଁ । ଅଙ୍ଗାର ବା କୋଇଲା, ଜଳ ଓ ବାୟୁରୁ ଆମେ ମହଣ ମହଣ ମାଂସ ତିଆରି କରି ପାରିବା । ଏହି ଧରଣର ପ୍ରୋଟିନ୍ ଯେ କଳ୍ପନାର ବସ୍ତୁ, ତା ନୁହେଁ । ଏହା ବାସ୍ତବରେ ବିଜ୍ଞାନାଗାରରେ ପରୀକ୍ଷିତ ହୋଇ ସାରିଲାଣି ।

ଆଜିକାଲି ଏସବୁଙ୍କୁ ଗୁଡ଼ି ଯେଉଁ କୃତ୍ରିମ ମାଂସ ବଜାରରେ ବ୍ୟବସ୍ଥ ହେଲଣି, ସେ ଏକ ଅଦ୍ଭୁତ ପ୍ରକାର ମାଂସ । ଏହାକୁ କହନ୍ତି ନିରାମିଷ ମାଂସ । ଏହା ଖାଇବାକୁ ମାଂସ ଭଳି ଲାଗିବ । ବାସନା ଠିକ୍ ମାଂସ ଭଳି, ସୁଆଦ ମାଂସ ଭଳି । କିନ୍ତୁ ଏହା ତିଆରି ହୋଇନି କୌଣସି ପ୍ରାଣୀ ଦେହରୁ, ଏହା ତିଆରି ହୋଇଛି ଚିନାବାଦାମ ପିଡ଼ିଆ ବା ସୋୟାବିନ୍ ପିଡ଼ିଆରୁ । ଯେଉଁ ପିଡ଼ିଆକୁ ଆମେ ଗୋରୁ ଗାଈମାନଙ୍କୁ ଖାଇବାକୁ ଦେଉ ବା ଖତ ଭାବରେ ବିଲରେ ବ୍ୟବହାର କରୁଁ, ସେଥିରୁ ବୈଜ୍ଞାନିକମାନେ ଏତେ ସୁସ୍ୱାଦୁ କୃତ୍ରିମ ମାଂସ ତିଆରି କରୁଛନ୍ତି ଯାହାର ସ୍ୱାଦ ମାଂସର କାନ କାଟି ଦେଉଛି । ସୁଖର କଥା, ଏହି ଧରଣର ମାଂସ ଆମ ଦେଶରେ ମଧ୍ୟ ମିଳିଲଣି । ଆମେରିକା, ଇଉରୋପ, ଜାପାନରେ ଏହାର ପ୍ରସାର ଖୁବ୍ ଅଧିକ । ଭବିଷ୍ୟତରେ ଏହାର ଅଧିକ ଉନ୍ନତି ହୋଇ ଏହାର ପ୍ରସାର ଯେ ଆଶାତୀତଭାବରେ ବଢ଼ିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଏହାମଧ୍ୟ ଆମର ମାଂସ ଅଭାବକୁ ମେଣ୍ଟାଇ ପାରିବ ।

ଭବିଷ୍ୟତରେ ଯେତେବେଳେ ଗୃହବାସ ଆଉ ହେବନି, ଲୋକେ ଗାଈ ପାଳିବା କଷ୍ଟକର ହୋଇପଡ଼ିବ । ସେତେବେଳେ ତାହାହେଲେ ଦୁଧ ମିଳିବ କୁଆଡ଼ୁ ? ଦୁଧ ନ ମିଳିଲେ ଶିଶୁ ଓ ପିଲାମାନେ ଖାଇବେ କଅଣ ?

ସେତେବେଳେ ଦୁଧ ପାଇଁ ଗାଈ ଉପରେ ନିର୍ଭର କରିବାକୁ ପଡ଼ିବନି । ଆମ ଗାଈମାନେ ଆଜିକାଲି ଯେଉଁ ପରିମାଣରେ ଦୁଧ ଦେଉଛନ୍ତି, ତାହା କ'ଣ ସେତେବେଳର ବର୍ଦ୍ଧିଷ୍ଣୁ ଜନସମାଜକୁ ଯଥେଷ୍ଟ ହେବ ? ବର୍ତ୍ତମାନ ଆମ ଦେଶୀ ଗାଈ କଥା ତ ଗୁଡ଼ି, ଉନ୍ନତ ଗାଈମାନେ ଦୁଧ ଦେଉଛନ୍ତି କେତେ ? ଦିନକୁ ଦଶ ପନ୍ଦରକିଲୋ ତ ? ଆଉ କିଛିବର୍ଷ ପରେ ଲୋକେ ଏଭଳି ଦଶ ପନ୍ଦରକିଲିଆ ଗାଈକୁ ମୋଟେ ପସନ୍ଦ କରିବେନି । ସେତେବେଳକୁ ଯେଉଁ ଯାନ୍ତ୍ରିକ ଗାଈ ବ୍ୟବହୃତ ହେବ, ସେ ଗାଈ ଦିନକୁ ଦେବ କୋଡ଼ିଏ ମହଣ କି ତା'ଠାରୁ ବେଶି ଦୁଧ । ଏହି ଯାନ୍ତ୍ରିକ ଗାଈ କିଛି ମନଗଢ଼ା କାହାଣୀ ନୁହେଁ । ଗାଈ ଘାସ, କୁଣ୍ଟା, ମୂଳ ସବୁ ଖାଉଛି, ସେହି ଖାଦ୍ୟ ଗାଈ ପେଟରେ ହଜମ ହୋଇ ସେଥିରୁ ଦୁଧ ତିଆରି ହେଉଛି । ସ୍କଟ୍‌ଲଣ୍ଡ ଦେଶର ଜଣେ ବୈଜ୍ଞାନିକ ହ୍ୟୁଜ୍ ଫ୍ରାଙ୍କଲିନ୍ ଭାବିଲେ ଗାଈ ଯେଉଁ ଖାଦ୍ୟ ଖାଇ ଦୁଧ ଦେଉଛି, ସେ ସେହି ଖାଦ୍ୟରୁ ସିଧାସଳଖ ଦୁଧ ପ୍ରସ୍ତୁତ ନ କରିବେ କାହିଁକି ? ସେ ବହୁଦିନ ଧରି ଗବେଷଣା ଚଳାଇ ଶେଷରେ କୃତକାର୍ଯ୍ୟ ହେଲେ । ଏବେ ତାଙ୍କ ତିଆରି ଯାନ୍ତ୍ରିକ ଗାଈ ଘାସ, କୁଣ୍ଟା, ଗ୍ଲେକଡ଼, କୋବିମୂଳ, କୋବିଦଣ୍ଡା ଖାଇ ଦୁଧ ଦେଉଛି ଦିନକୁ ଶହେଲିଟର । ସେ ଗାଈ ଅବଶ୍ୟ ଦେଖିବାକୁ ସାଧାରଣ ଗାଈ ଭଳି ନୁହେଁ । ଏହି ଗାଈ ଯେଉଁ ଦୁଧ ଦେଉଛି ତାହା କୃତ୍ରିମ ଦୁଧ । ଏ ଦୁଧର ସୁଆଦ, ବାସନା, ଖାଦ୍ୟସାର ଠିକ୍ ପ୍ରାକୃତିକ ଦୁଧ ଭଳି । ଏହି ଦୁଧରୁ ଯେଉଁ ଛେନା ହେଉଛି ସେହି ଛେନା ପ୍ରାକୃତିକ ଦୁଧଛେନା ଭଳି । ଏଥିରୁ ରସଗୋଲା, ସନ୍ଦେଶ ଆଦି ପ୍ରସ୍ତୁତ କରି ହେବ । ବର୍ତ୍ତମାନ ଗୋଟିଏ ଗୋଟିଏ ଯାନ୍ତ୍ରିକ ଗାଈ ସିନା ଦିନକୁ

ଶହେଲିଟର ଦୁଧ ଦେଉଛନ୍ତି, ଭବିଷ୍ୟତରେ ଗୋଟିଏ ଗୋଟିଏ ଗାଈ ଯେ ହଜାରେ ଲିଟର କି ତା'ଠାରୁ ଢେର୍ ଅଧିକ ଦୁଧ ଦେବେ, ଏଥିରେ ସନ୍ଦେହ ନାହିଁ । ସେହିଭଳି ଯାନ୍ତ୍ରିକ ଗାଈର ଫାର୍ମ ବସାଇଦେଲେ ଯେତେ ପାରି ସେତେ ଦୁଧ ମିଳିପାରିବ । ଏବେ ମେକ୍ସିକୋ ସରକାର ନିଜ ରାଜ୍ୟରେ ଦୁଧର ଚାହିଦା ମେଣ୍ଟାଇବା ପାଇଁ ଅଢ଼େଇଶହ ଯାନ୍ତ୍ରିକ ଗାଈଥିବା ଏକ ବଡ଼ ଫାର୍ମ ବସାଇବାକୁ ଯାଉଛନ୍ତି । ସେଠାରେ ଯେଉଁ ଦୁଗ୍ଧ ଉତ୍ପାଦିତ ହେବ, ସେହି ଦୁଗ୍ଧ ରାଜ୍ୟର ରାଜଧାନୀ ମେକ୍ସିକୋ ସିଟିର ଦୁଗ୍ଧ ଚାହିଦା ମେଣ୍ଟାଇ ପାରିବ । ଆଉ କିଛିବର୍ଷ ପରେ ଏହି ଯାନ୍ତ୍ରିକ ଗାଈର ଉତ୍ପାଦନ ଶକ୍ତି ଆହୁରି ଅଧିକ ବଢିଯିବ । ସେତେବେଳେ ପ୍ରାକୃତିକ ଗାଈ କେମିତି କାହାରି ମନେ ନ ଥିବ । ସେ ଯୁଗରେ ତାହା ଜାଣିବାକୁ ହେଲେ ବହୁବର୍ଷ ତଳର ପୁରୁଣା ବହି ବାହାର କରି ଛବି ଦେଖିବାକୁ ପଡ଼ିବ ।

ଘନ ଘନ କରତାଳିରେ ସଭାକକ୍ଷ କମ୍ପି ଉଠିଲା ।

ଦେବବାବୁ ପୁଣି ଆରମ୍ଭ କଲେ, "ସେ ଯୁଗରେ କୁକୁଡ଼ା ପାଳନ ନ ଥିବାରୁ ଅଣ୍ଡା ଉତ୍ପାଦନ ମଧ୍ୟ କୃତ୍ରିମ ଉପାୟରେ ହେବ । ଟିସୁ କଲ୍‌ଚର ପଦ୍ଧତିର ଉପଯୋଗ କରି ଅଣ୍ଡା କୃତ୍ରିମ ଉପାୟରେ ଉତ୍ପାଦନ କରିବା ଅସମ୍ଭବ ହେବନି । ସେହି ଅଣ୍ଡା ପୁଣି ଅଣ୍ଡା ଆକାରର ନ ହୋଇ ଆମ ଇଚ୍ଛା ମୁତାବକ ଆକାର ଧାରଣ କରି ପାରିବ । ଅଣ୍ଡାର ଏକ ପ୍ରକାର ଅଖାଡ଼ୁଆ ଆକାର ଥିବାରୁ ଏହାର ଆମଦାନୀ ରପ୍ତାନୀ ବାଣିଜ୍ୟ ଖୁବ୍ ଅସୁବିଧାଜନକ । ତେଣୁ ବୈଜ୍ଞାନିକମାନେ ଚେଷ୍ଟା କରୁଛନ୍ତି, ଅଣ୍ଡା ଆକାରକୁ ଚାରିକୋଣିଆ କରିଦେବା ପାଇଁ । ତାହାକଲେ ନେବା ଆଣିବାରେ ଖୁବ୍ ସୁବିଧା ହେବ । ଏବେ ପାଶ୍ଚାତ୍ୟଦେଶର ବୈଜ୍ଞାନିକମାନେ ଚେଷ୍ଟା କରି ବିଲାତି ବାଇଗଣର ଆକାରକୁ ଚାରିକୋଣିଆକୁ ନେଇ ଆସିଲେଣି । ତେଣୁ ବିଲାତି ବାଇଗଣ ଯଦି ଚାରିକୋଣିଆ ହେଲା, ଅଣ୍ଡା ଚାରିକୋଣିଆ ନ ହେବ କାହିଁକି ? ଏହି ଚାରିକୋଣିଆ ଅଣ୍ଡାର ଖାଦ୍ୟଗୁଣ ସାଧାରଣ ଅଣ୍ଡା ସହିତ ସମାନ ରହିବ । ତାହାର ସ୍ୱାଦୁ, ବାସନା ଆଦି ପ୍ରାକୃତିକ ଅଣ୍ଡା ଭଳି ହେବ । ଅଣ୍ଡା ଆକାର ଯଦି ଚାରିକୋଣିଆ ହୋଇଯାଏ, ଦେଖିବାକୁ କେତେ ଯେ ମଜା ଲାଗିବ କହିହେବନି, ଖାଇବା ମଜା ତ ଦୂରର କଥା ।

ଘନ ଘନ କରତାଳିରେ ସଭାକକ୍ଷ କମ୍ପି ଉଠିଲା । ସଭା ଶେଷରେ ହଲ୍‌ରୁ ବାହାରି ଆସି ସେହି କଲେଜର ଅଧ୍ୟାପକମାନେ ଦେବବାବୁଙ୍କ ବକ୍ତୃତାର ଖୁବ୍ ତାରିଫ୍ କଲେ । ଶୁଭ୍ରା ଅନ୍ୟ ଦର୍ଶକମାନଙ୍କ ସହିତ ସଭାକକ୍ଷରେ ଥିଲା । ସେ ସେଠୁ ବାହାରି ଆସି ଅଧ୍ୟାପକମାନଙ୍କ ମେଳରେ ରହି ଦେବବାବୁଙ୍କୁ କିଏ କେମିତି ତାରିଫ୍ କରୁଛନ୍ତି ଅନୁଧ୍ୟାନ କରିବାକୁ ଚେଷ୍ଟା କଲା । ଶୁଭ୍ରାକୁ ଅଧ୍ୟାପକମାନଙ୍କ ମେଳରେ ଦେଖି ଦେବସ୍ମିତବାବୁ ଚମକିପଡ଼ି କହିଲେ, "ତୁମେ କ'ଣ ଏଠି ଶୁଭ୍ରା ? ତୁମେ କେତେବେଳେ ଆସିଲ ?"

"ବକ୍ତୃତା ଆରମ୍ଭ ହେବାର ଠିକ୍ ପୂର୍ବରୁ ସାର୍ ।"

"ତୁମେ ହଠାତ୍ ଏଠି କେମିତ ? ତୁମେ ଆସିବ ବୋଲି ମୁଁ ତ କାହିଁ ଜାଣି ନ ଥିଲି ।"

"ନା, ସାର୍, ଆପଣ ଜାଣିବେ କେମିତ ? ମୋର ତ ଏଆଡ଼େ ଆଜ ଆସିବାର ନ ଥିଲା । ଆପଣ ଆସିବାପରେ ମୋ ମାଉସୀଝିଅ ଭଉଣୀ ମୀତା ହଠାତ୍ ଆସି ମୋଠାରେ ପହଞ୍ଚି କହିଲା, ସେ ଆମ ଗାଁ ଘରକୁ ଯିବ, ତା'ର କ'ଣ କାମ ଅଛି । ତେଣୁ ତାକୁ ନେଇ ଗାଁକୁ ଚାଲି ଆସିଲି । ତାକୁ ଗାଁରେ ଛାଡ଼ିଦେଇ କଟକ ଫେରୁଥିଲି । ଆପଣଙ୍କ ବକ୍ତୃତା ଆଜ ଏଠି ଅଛି ବୋଲି ଜାଣି ଏଠାକୁ ଚାଲି ଆସିଲି ।"

"ତୁମ ଘର କ'ଣ ଏହି ଅଞ୍ଚଳରେ ?"

"ହଁ ସାର୍, ଆମ ନିଜ ଘର ଜଗତସିଂହପୁର ଟାଉନଠାରୁ ତିନିମାଇଲ ଦୂର ସାହସପୁର ଗାଁରେ । ସେଠି ଆମର ପୈତୃକଘର ଅଛି । ଏଠାକୁ ଆମେ ସେତେ ଆସୁନାହୁଁ । ଦରକାର ପଡ଼ିଲେ ବେଳେବେଳେ ଆସୁ ।"

"ତୁମେ କ'ଣ ବର୍ତ୍ତମାନ କଟକ ଫେରିଯିବ ନା ଆଉ କେଉଁଠିକି ଯିବ ?"

"ନା, ସାର୍, ଆଉ କେଉଁଠିକି ଯିବି ନାହିଁ । ମୁଁ ବର୍ତ୍ତମାନ ସିଧାସଳଖ କଟକ ଫେରିବି । ଆପଣ ମୋ ଗାଡ଼ିରେ କଟକ ଫେରିଲେ ମୁଁ ଖୁବ୍ ଖୁସି ହୁଅନ୍ତି ସାର୍ । ମୋ ଗାଡ଼ିରେ ଗଲେ ଆପଣ ଟିକିଏ ଆରାମରେ ଯାଇପାରନ୍ତେ ।"

"ଦେଖ ଶୁଭ୍ରା ।" ହସିଲେ ଦେବସ୍ମାନ । "ମୁଁ ସେମାନଙ୍କ ଗାଡ଼ିରେ ଆସିଛି । ସେମାନଙ୍କ ସହ ନ ଗଲେ ସେମାନେ ଖରାପ ଭାବିବେ । ମୋ ପାଇଁ ତୁମେ ହଇରାଣ ହେବ କାହିଁକି କହିଲ ?"

"ନା, ସାର୍, ଏଥିରେ ହଇରାଣ ହେବାର କ'ଣ ଅଛି । ମୁଁ ତ କଟକ ଫେରୁଛି, ଆପଣ ଯିବେ । ଏଥିରେ ହଇରାଣ କ'ଣ ?"

"ନା, ଶୁଭ୍ରା, ତୁମେ ଯାଅ । ମୋ ପାଇଁ ବ୍ୟସ୍ତ ହୁଅନି । ମୁଁ ଏମାନଙ୍କ ସହିତ ଫେରିବି ।"

## ଚଉଦ

ହଠାତ୍ ଡକ୍ଟର ସିହ୍ନାଙ୍କ କ୍ୱାର୍ଟରରେ କାନ୍ଦବୋବାଳି ଶୁଣି ପଡ଼ୋଶୀ ଦେବସ୍ମାନ-ବାବୁ ଚମକିପଡ଼ିଲେ । "ଆଁ, ଡାକ୍ତର ଦାସଙ୍କ ଘରେ କାନ୍ଦବୋବାଳି ?" ତାଙ୍କ ଘରେ କ'ଣ ହେଲା ଭାବି ସେ ତାଙ୍କ କ୍ୱାର୍ଟରକୁ ଦୌଡ଼ିଗଲେ । ରେଭେନ୍ସା କଲେଜ କେମ୍ପସ୍‌ରେ ଦେବବାବୁଙ୍କ କ୍ୱାର୍ଟରଠାରୁ ମାତ୍ର ଗୋଟିଏ କ୍ୱାର୍ଟର ଛାଡ଼ି ଡକ୍ଟର ସିହ୍ନାଙ୍କ କ୍ୱାର୍ଟର ।

ଯାଇ ଦେଖନ୍ତି ତ ଡକ୍ଟର ସିହ୍ନା ଅଚେତ ଅବସ୍ଥାରେ ନିଜ ବିଛଣାରେ ପଡ଼ି ରହିଛନ୍ତି । ତାଙ୍କ ପରିବାରର ଲୋକେ ତାଙ୍କୁ ଘେରି କାନ୍ଦିବାରେ ବ୍ୟସ୍ତ । ଡକ୍ଟର ସିହ୍ନାଙ୍କର କ'ଣ ହେଲା, ଝିଅନାତିରୀ ମିସେସ୍ ସିହ୍ନାଙ୍କୁ ପଚାରିବାରୁ ଡକ୍ଟର ସିହ୍ନାଙ୍କର ବଡ଼ଭାଇ ଦେବସ୍ମାନବାବୁଙ୍କ ପାଖକୁ ଚାଲିଆସି ଡକ୍ଟର ସିହ୍ନାଙ୍କର ହାର୍ଟଆଟେକ୍ ହୋଇଛି ବୋଲି କହି କାନ୍ଦି ପକାଇଲେ । ସେହି ହାର୍ଟଆଟେକ୍‌ର ଅସହ୍ୟ ଯନ୍ତ୍ରଣା ସେ ସହି ନ ପାରି ଅଚେତ ହୋଇ ପଡ଼ିଛନ୍ତି । ମେଡ଼ିକେଲ କଲେଜ ହସ୍‌ପିଟାଲକୁ ଫୋନ୍ କରାଯାଇଛି, ଆମ୍ବୁଲାନ୍‌ସ ଆସିଲେ ହସ୍‌ପିଟାଲକୁ ନେବେ ।

କଥା ହେଉ ହେଉ ଆମ୍ବୁଲାନ୍‌ସ ଗାଡ଼ି ଆସି ପହଞ୍ଚିଗଲା । ଦେବସ୍ମାନବାବୁଙ୍କ ସମେତ ଅନ୍ୟମାନେ ଧରାଧରି କରି ତାଙ୍କ ଅଚେତ ଶରୀରକୁ ଗାଡ଼ିରେ ନେଇ ଥୋଇଲେ । ପରିବାରର ଅନୁରୋଧରେ ଡକ୍ଟର ଦାସ ମଧ୍ୟ ଡକ୍ଟର ସିହ୍ନାଙ୍କ ଅଚେତ ଶରୀର ସହିତ ସେହି ଗାଡ଼ିରେ ହସ୍‌ପିଟାଲକୁ ଗଲେ । ମେଡ଼ିକେଲରେ ପହଞ୍ଚି ପହଞ୍ଚି ହୃଦ୍‌ରୋଗ ବିଶେଷଜ୍ଞ ଡାକ୍ତର ରଥ ଡ଼କ୍ଟର ସିହ୍ନାଙ୍କ ଅଚେତ ଶରୀରକୁ ଭିତରକୁ ନେବାପାଇଁ ଗେଟ୍‌ପାଖରେ ଅପେକ୍ଷା କରିଥାନ୍ତି । ସଙ୍ଗେ ସଙ୍ଗେ ତାଙ୍କୁ ମେଡ଼ିକେଲ ବିଭାଗର ଇଣ୍ଟେନ୍‌ସିଭ୍ କେଆର୍ ଇଉନିଟ୍‌ରେ ଆଡ଼ମିସନ୍ କରାଇ ଦିଆଗଲା । ଡ଼ାକ୍ତର ରଥଙ୍କ ସହିତ ଆଲୋଚନାରୁ ଜଣାପଡ଼ିଲା ଯେ, ଡ଼କ୍ଟର ସିହ୍ନା ଜଣେ ନିସ୍ଵମିତ ହୃଦ୍‌ରୋଗୀ । ତାଙ୍କୁ ଏଥିପୂର୍ବରୁ ହାର୍ଟଆଟାକ୍ ଦୁଇଥର ହୋଇଯାଇଛି । ଡ଼ାକ୍ତର ରଥଙ୍କ ଚିକିତ୍ସାରେ ସେ ଦୁଇଥରଯାକ ଭଲ ହୋଇ ଯାଇଥିଲେ ।

ଏଥିପୂର୍ବରୁ ତାଙ୍କର ଯେଉଁ ହାର୍ଟଆଟେକ୍ ହୋଇଥିଲା, ସେତେବେଳେ ଡ଼ାକ୍ତର ରଥ ସନ୍ଦେହ କରିଥିଲେ, ତାଙ୍କ ହୃଦ୍‌ଯନ୍ତ୍ରରେ କେଉଁଠି କିଛି ଗୁରୁତର ତ୍ରୁଟି ଥାଇପାରେ ବୋଲି । ଭଲ ହୋଇଯିବାପରେ ତାଙ୍କ ହୃଦ୍‌ଯନ୍ତ୍ରର ଟିକିନିଖି ପରୀକ୍ଷା ସେ କରିଥିଲେ । ଇ.ସି.ଜି., ଷ୍ଟ୍ରେସ୍ ଇ.ସି.ଜି. କଲାରୁ ଜଣାପଡ଼ିଲା ତାଙ୍କ ହୃଦ୍‌ଯନ୍ତ୍ରର ହୃଦୀୟ ଧମନୀରେ କେଉଁଠି କିଛି ଗୋଳମାଳ ଥାଇପାରେ ବୋଲି । ଆଞ୍ଜିଓଗ୍ରାଫି ପରୀକ୍ଷାରୁ ଜଣାପଡ଼ିଲା ଯେ ହୃଦ୍‌ଯନ୍ତ୍ରର ବାମପାଖ ଗୋଟିଏ ହୃଦୀୟ ଧମନୀ ପୁରାପୁରି ବନ୍ଦ ହୋଇଯାଇଛି । ସେଥି ଭିତରେ ଦେଇ ରକ୍ତ ଚଳାଚଳ ମୋଟେ ହେଉନି । ବନ୍ଦ୍‌ର ଦୁଇ ମୁଣ୍ଡରୁ ସୂକ୍ଷ୍ମ ଧମନୀମାନ ସାମୟିକଭାବେ ସୃଷ୍ଟି ହୋଇ ଯାହାକିଛି ଅଳ୍ପ ରକ୍ତ ହୃଦ୍ ମାଂସପେଶୀକୁ ଯୋଗାଉଛି । ପ୍ରକୃତରେ ଏହା ଏକ ସାମୟିକ ବ୍ୟବସ୍ଥା । କେତେବେଳେ ଯଦି ଏମାନଙ୍କ କାର୍ଯ୍ୟ ବନ୍ଦ ହୋଇଯାଏ, ତେବେ ମୃତ୍ୟୁ ଅନିବାର୍ଯ୍ୟ ।

ହୃଦ୍‌ଧମନୀର ଏହି ରକ୍ତ ବନ୍ଦକୁ ଆଞ୍ଜିଓପ୍ଲାଷ୍ଟି ଦ୍ଵାରା ଦୂର କରାଯାଇପାରେ । ତେଣୁ ଡ଼କ୍ଟର ସିହ୍ନା ବୋମ୍ବେ ଯାଇ ଆଞ୍ଜିଓପ୍ଲାଷ୍ଟି କରିବା ଉଚିତ ବୋଲି ଡ଼ାକ୍ତର ରଥ ତାଙ୍କୁ ଉପଦେଶ ଦେଇଥିଲେ । ସେଥିସହି ନିଜ ଶରୀର ପ୍ରତି ଅଧିକ ଯତ୍ନବାନ ହେବାପାଇଁ ଡ଼ାକ୍ତର ରଥ ତାଙ୍କୁ ଭଲ ଭାବରେ ବୁଝାଇ ଦେଇଥିଲେହେଁ ଡ଼କ୍ଟର ସିହ୍ନା ଡ଼ାକ୍ତର ରଥଙ୍କ

ଉପଦେଶ ପ୍ରତି ସେତେ ଗୁରୁତ୍ୱ ଦେଇ ନ ଥିଲେ । ତାଙ୍କୁ ବାରମ୍ବାର ମନାକରିବାସତ୍ତ୍ୱେ ସେ ତାଙ୍କର ପୂର୍ବ ବଦଭ୍ୟାସ ସିଗାରେଟ୍ ଓ ମଦ ପିଇବା ବନ୍ଦ କରି ନ ଥିଲେ କି କୋଲେଷ୍ଟେରଲ ଅଧିକ ଥିବା ଖାଦ୍ୟ ମାଂସ, ଅଣ୍ଡା, ବିରିୟାନି, ପଲଉ, ଖିରି, ରାବଡ଼ି ଆଦି ଖାଇବାରୁ ବିରତ ହୋଇ ନ ଥିଲେ । ହୃଦ୍‌ରୋଗ ସହିତ ତାଙ୍କର ବହୁମୂତ୍ର ରୋଗ ଅଛି ବୋଲି ଜଣାପଡ଼ିଲାପରେ ବି ସେଥିପ୍ରତି ସେ ଲେଶମାତ୍ର ଗୁରୁତ୍ୱ ଦେଇ ନ ଥିଲେ, ସାବଧାନ ହୋଇ ଚଳିବା ତ ଦୂରର କଥା । ତେଣୁ ଏଭଳି ଅବସ୍ଥାରେ ସେ ତୃତୀୟଥର ହାର୍ଟଆଟେକ୍‌ର ଶିକାର ହେବେନି ତ ଆଉ କିଏ ହେବ ?

"ଆପଣ କ'ଣ ତାଙ୍କୁ ବୋମ୍ବେ ଯାଇ ଆଞ୍ଜିଓପ୍ଲାଷ୍ଟି କରିବା ପାଇଁ କହିଥିଲେ ଡ଼ାକ୍ତର ?" ଦେବସ୍ମାନବାବୁ ପଚାରିଲେ ।

"ଅରେ ନୁହେଁ, ଡ଼କ୍‌ଟର ଦାସ । କେତେଥର କହିଛି । ତାଙ୍କୁ ମଧ୍ୟ ଆହୁରି କହିଛି, ସେ ଯଦି ତାହା ନ କରନ୍ତି, ତେବେ ତୃତୀୟଥର ହାର୍ଟଆଟେକ୍ ହେଲେ ତାଙ୍କର ମୃତ୍ୟୁ ଅନିବାର୍ଯ୍ୟ । ତାଙ୍କୁ କେହି ବଞ୍ଚାଇ ପାରିବେନି ।"

"ଆପଣ ଏତେ କହିବାସତ୍ତ୍ୱେ ସେ କ'ଣ କିଛି କରି ନ ଥିଲେ ?"

"ଦେଖିଲେ ତ ? ସେ କରିଥିଲେ ଆଜି ଏଠାକୁ ଆସିଥାନ୍ତେ କାହିଁକି ? ସେ ତ ସୁଖମୟ ଜୀବନଯାପନ କରି ଘରେ ଥାଆନ୍ତେ ।"

"ଆପଣ କ'ଣ ଭାବୁଛନ୍ତି ଡ଼ାକ୍ତର, ସେ ଏଥର ଭଲ ହୋଇଯିବେ ?"

"ତାହା କହିହେବନି । ଚେଷ୍ଟା ତ ଚାଲିଛି । ଦେଖାଯାଉ କ'ଣ ହେଉଛି । ଭାଗ୍ୟରେ ଥିଲେ ସେ ରକ୍ଷାପାଇ ଯାଇପାରନ୍ତି ।"

× × × ×

"କଥାରେ ଅଛି, ତୃତୀୟଥର ହାର୍ଟଆଟେକ୍ ହେଲେ ରକ୍ଷା ମିଳେନି । ଡ଼କ୍‌ଟର ସିହ୍ନାଙ୍କର ଠିକ୍ ସେଇଆ ହେଲା । ଇଣ୍ଟେନ୍‌ସିଭ୍ କେଆର୍ ଇଉନିଟ୍‌ରେ ଦୁଇଦିନ ଅଚେତ ଅବସ୍ଥାରେ ରହିବାପରେ ଡ଼ାକ୍ତର ରଥଙ୍କ ଶତଚେଷ୍ଟା ସତ୍ତ୍ୱେ ତାଙ୍କୁ ବଞ୍ଚାଇହେଲାନି । ତାଙ୍କ ମୃତ୍ୟୁ ଖବର କିମିଷେକ ମଧ୍ୟରେ ଚାରିଆଡ଼େ ବିଦ୍ୟୁତ୍‌ବେଗରେ ଖେଳିଗଲା । ହଠାତ୍ ଡ଼ାକ୍ତର ରଥଙ୍କ ମୁଣ୍ଡକୁ କି ବୁଦ୍ଧି ପଶିଲା କେଜାଣି, ମୃତ୍ୟୁର ଠିକ୍ ଅବ୍ୟବହିତ ପରେ ସେ ଡ଼କ୍‌ଟର ସିହ୍ନାଙ୍କ ମୃତଦେହକୁ ତାଙ୍କ ବେଡ଼୍‌ରୁ ନେଇ ନିଜ ବିଭାଗର ଶୀତଳଗୃହରେ ରଖିଦେଲେ, ଯେଉଁ ଗୃହର ତାପକ୍ରମ ହେଉଛି—'୫ ଡିଗ୍ରୀ ସେଣ୍ଟିଗ୍ରେଡ୍ । ଆଶା, ତାଙ୍କ ପରିବାରସହ କଥାବାର୍ତ୍ତା କରି ଡ଼କ୍‌ଟର ସିହ୍ନାଙ୍କୁ ବଞ୍ଚାଇବାର ଏକ ସୁଚିନ୍ତିତ ଯୋଜନା ସେମାନଙ୍କୁ ପ୍ରଦାନ କରିବେ ।

ଡ଼କ୍‌ଟର ସିହ୍ନାଙ୍କ ମୃତ୍ୟୁ ଖବର ପ୍ରଚାରିତ ହେବାକ୍ଷଣି ତାଙ୍କ ପରିବାର ଓ ବନ୍ଧୁ-ବାନ୍ଧବମାନେ ଡ଼ାକ୍ତରଖାନାରେ ପହଞ୍ଚି ଦେଖନ୍ତି ତ ଡ଼କ୍‌ଟର ସିହ୍ନାଙ୍କ ମୃତଦେହ ତାଙ୍କ ବେଡ଼୍‌ରେ ନାହିଁ । ତାଙ୍କ ମୃତଦେହ କୁଆଡ଼େଗଲା, ଏହି ପ୍ରଶ୍ନରେ ଅନ୍ତିମ ଦର୍ଶନ ପାଇଁ

ଆସିଥିବା ତାଙ୍କର ବନ୍ଧୁବାନ୍ଧବ, ଜ୍ଞାତିକୁଟୁମ୍ବ, ଛାତ୍ର-ଛାତ୍ରୀମାନେ ପାଟିକରି ହସ୍ପିଟାଲରେ ହା-ହୋଲ୍ଲା ଆରମ୍ଭ କରିଦେଲେ ।

ଏହି ହା-ହୋଲ୍ଲା ଭିତରେ ଦେବସ୍ନାନବାବୁ ସେଠି ପହଞ୍ଚିଯାଇ ମୃତଦେହ ତାଙ୍କ ଶଯ୍ୟାରେ ନ ଦେଖି ବିସ୍ମିତ ହୋଇପଡ଼ିଲେ । ତାଙ୍କ ପରିବାରର ଲୋକେ ମୃତଦେହ କୁଆଡ଼େଗଲା ଭାବି ବ୍ୟତିବ୍ୟସ୍ତ ହୋଇ ପଡ଼ିଲାବେଳକୁ ଡ଼ାକ୍ତର ରଥଙ୍କ ଦେଖାମଧ୍ୟ ମିଳୁ ନ ଥାଏ । ଦେବସ୍ନାନବାବୁ ହସ୍ପିଟାଲରେ ପହଞ୍ଚି ତାଙ୍କୁ ଖୋଜାଖୋଜି କଲାରୁ ସେ ହଠାତ୍ ଶୀତଳକକ୍ଷରୁ ବାହାରି ଆସି ତାଙ୍କୁ ନିଜ କୋଠରିକୁ ଡ଼ାକି ନେଇଗଲେ । ଦେବସ୍ନାନବାବୁ ଯାଉ ଯାଉ ଡ଼ାକ୍ତର ରଥଙ୍କୁ ପଚାରିଲେ, "ଏ କ'ଣ ଡ଼ାକ୍ତର, ଡ଼କ୍ଟର ସିହ୍ନାଙ୍କ ମୃତଦେହ କ'ଣ ତାଙ୍କ ବେଡ୍‌ରେ ନାହିଁ ? ତାଙ୍କ ମୃତଦେହ ହଠାତ୍ କୁଆଡ଼େଗଲା ?"

"କୁଆଡ଼େ ଯାଇନି ଡ଼କ୍ଟର, ଏହି ହସ୍ପିଟାଲରେ ଅଛି । ଆପଣ ଆସନ୍ତୁ, ମୁଁ ଆପଣଙ୍କୁ ସବୁ କଥା ଫିଟାଇ କହୁଛି ।"

ନିଜ ରୁମ୍‌ରେ ବସୁ ବସୁ ଡ଼ାକ୍ତର ରଥ ପଚାରିଲେ, "ଆପଣମାନେ କ'ଣ ଡ଼କ୍ଟର ସିହ୍ନାଙ୍କ ମୃତଦେହକୁ ସିଧାସଳଖ ଶ୍ମଶାନକୁ ନେବାକୁ ଚାହୁଁଛନ୍ତି ?"

"ହଁ, ଏହାଛଡ଼ା ଆଉ କ'ଣ ଅଛି ଯେ ? ଅବଶ୍ୟ ସିଧାସଳଖ ଶ୍ମଶାନକୁ ଯିବନି । ଆଗ ରେଭେନ୍‌ସା କଲେଜ କେମ୍ପସ୍ କ୍ୱାର୍ଟରକୁ ଯିବ । ସେଠାରୁ ଶ୍ମଶାନକୁ ।"

"ଦେଖନ୍ତୁ ଦେବସ୍ନାନବାବୁ, ଡ଼କ୍ଟର ସିହ୍ନାଙ୍କୁ ବଞ୍ଚାଇବା ପାଇଁ ମୁଁ ଏକ ଅଭିନବ ଯୋଜନା ଆପଣମାନଙ୍କୁ ଦେବାକୁ ଚାହୁଁଛି । ଆପଣମାନେ ଯଦି ସେହି ଅନୁସାରେ କାମ କରନ୍ତି, ତେବେ ମୋର ବିଶ୍ୱାସ ଡ଼କ୍ଟର ସିହ୍ନା ପୁଣି ବଞ୍ଚି ତାଙ୍କ ସଂସାରକୁ ଫେରି ଆସିପାରିବେ ।"

"ଆଁ, ଡ଼କ୍ଟର ସିହ୍ନା ପୁଣି ବଞ୍ଚିପାରିବେ ? ଆପଣ କ'ଣ ଯେ କହୁଛନ୍ତି, ମୁଁ କିଛି ବୁଝିପାରୁନି ଡାକ୍ତର ?" ବିସ୍ମିତ ହୋଇ ପଚାରିଲେ ଦେବସ୍ନାନବାବୁ ।

"ହଁ, ହଁ, ଡ଼କ୍ଟର ସିହ୍ନା ବଞ୍ଚିପାରିବେ । ମୋର ପୂର୍ଣ୍ଣ ବିଶ୍ୱାସ, ମୋର ଯୋଜନା ଠିକ୍ ରୂପେ କାର୍ଯ୍ୟ କଲେ ସେ ପୁଣି ବଞ୍ଚିପାରିବେ ।"

"ଆଁ, ବଞ୍ଚିପାରିବେ ? କହନ୍ତୁ, କହନ୍ତୁ ଡ଼ାକ୍ତର, ଆପଣ ଏଥିପାଇଁ କି ଉପାୟ ଠିକ୍ କରିଛନ୍ତି ? ଏହାଯଦି ସମ୍ଭବ ହୁଏ, ତେବେ ମୁଁ ତାଙ୍କ ପରିବାରକୁ ବୁଝାଇ ଆପଣଙ୍କ ଯୋଜନାକୁ କାର୍ଯ୍ୟକାରି କରାଇବାକୁ ନିଶ୍ଚୟ ଚେଷ୍ଟା କରିବି ।"

"ଶୁଣନ୍ତୁ ଡ଼କ୍ଟର ଦାସ । ଡ଼କ୍ଟର ସିହ୍ନା ସୁସ୍ଥଥିବାବସ୍ଥାରେ ତାଙ୍କ ହୃଦଯନ୍ତ୍ରକୁ ମୁଁ ଭଲ ଭାବରେ ପରୀକ୍ଷା କରିଛି । ସେହି ଗୋଟିଏ ହୃଦ୍‌ବାୟୁଧମନୀ ବ୍ୟତୀତ ତାଙ୍କର ଆଉ କେଉଁଠି କିଛି ଅସୁବିଧା ହୋଇନାହିଁ । ଆଞ୍ଜିଓପ୍ଲାଷ୍ଟି ସାହାଯ୍ୟରେ ବନ୍ଦ ହୋଇଥିବା ଅଂଶକୁ ସଫା କରି ଦେଇଥିଲେ ସେ ଆଜି ମୃତ୍ୟୁମୁଖରେ ପଡ଼ି ନ ଥାନ୍ତେ । ତେବେ

ବର୍ତ୍ତିମାନ ବି ସମୟ ଯାଇନି । ବର୍ତ୍ତିମାନ ବି ସମୟ ଅଛି, ସେହି ଅଂଶକୁ ସଫାକରି ଦିଆଯାଇପାରିବ । ସେପରି କରିଦେଲେ ସେ ପୁଣି ବଞ୍ଚି ପାରନ୍ତି ।”

“କିନ୍ତୁ ଏହା କ’ଣ ସମ୍ଭବ ଡାକ୍ତର ? ଡକ୍ଟର ସିହ୍ନା ତ ଦୁଇଘଣ୍ଟାରୁ ଊର୍ଦ୍ଧ୍ୱ କାଳ ହେଲା ମରିଗଲେଣି । ତାଙ୍କର ଜୈବିକ ମୃତ୍ୟୁ ତ ଆସି ସାରିବଣି । ଜୈବିକମୃତ୍ୟୁ ହେଲେ ରୋଗୀ ପରା ବଞ୍ଚିପାରେନି ?”

“ଆପଣ ଯାହା କହୁଛନ୍ତି, ତାହା ଠିକ୍ ଡକ୍ଟର । ଡକ୍ଟର ସିହ୍ନାଙ୍କ କ୍ଲିନିକାଲ ମୃତ୍ୟୁ ହେବାପରେ ମୁଁ ତାଙ୍କ ମୃତ ଶରୀରକୁ ସଙ୍ଗେ ସଙ୍ଗେ ଆମ ଶୀତଳକକ୍ଷରେ —୧୫ ଡିଗ୍ରୀ ସେଣ୍ଟିଗ୍ରେଡ୍ ତାପକ୍ରମରେ ରଖିଦେଇଛି । ତେଣୁ ଏହା ନିଶ୍ଚିତ, ତାଙ୍କର ଜୈବିକ ମୃତ୍ୟୁ ହୋଇନି । ଏଭଳି ଅବସ୍ଥାରେ ଯଦି ଆଞ୍ଜିଓପ୍ଲାଷ୍ଟି କରିଯାଏ, ତେବେ ସେ ବଞ୍ଚିଯାଇ ପାରନ୍ତି । ମୁଁ ଏଥିପୂର୍ବରୁ ବୋମ୍ବେର ହିନ୍ଦୁଜା ହସ୍ପିଟାଲର ଆଞ୍ଜିଓପ୍ଲାଷ୍ଟି ବିଶେଷଜ୍ଞଙ୍କ ସହିତ ଫୋନ୍‌ରେ ପରାମର୍ଶ କରି ସାରିଛି । ସେମାନେ ମୋ ଯୋଜନାକୁ ଗ୍ରହଣ କରିଛନ୍ତି । ବର୍ତ୍ତିମାନ ତାଙ୍କ ମୃତଦେହକୁ ଶୀତଳାବସ୍ଥାରେ ବୋମ୍ବେ ନେଇ ସେଠାରେ ବିହିତ ଚିକିତ୍ସା କରାଗଲେ ସେ ହୁଏତ ବଞ୍ଚି ଯାଇପାରନ୍ତି ।”

“ଆପଣଙ୍କ ଯୋଜନା ମୋତେ କେମିତି କେମିତି ଜଣାପଡ଼ୁଛି ଡାକ୍ତର । ତେବେ ମୁଁ ତାଙ୍କ ପରିବାରସହ ଆଲୋଚନା କରେ, ସେମାନେ ଯଦି ଏଥିରେ ରାଜି ହେବେ, ତେବେ ଆପଣ ଏ ଦିଗରେ ଆଗେଇଯିବେ ।”

“ହେଉ, ତାହା ହିଁ କରନ୍ତୁ ଡକ୍ଟର । ଦେଖନ୍ତୁ, ଆମ ହାତରେ ସମୟ ଖୁବ୍ କମ୍ । ଆମେ ଖୁବ୍ ଶୀଘ୍ର ଏ ଦିଗରେ ସିଦ୍ଧାନ୍ତ ନେବା ଉଚିତ । ବେଶୀ ଡେରି ହୋଇଗଲେ ଆମେ କୃତକାର୍ଯ୍ୟ ନ ହୋଇପାରନ୍ତି ।”

ଡ଼କ୍ଟର ଦାସଙ୍କ ମୁହଁରୁ ଡ଼ାକ୍ତର ରଥଙ୍କ ଯୋଜନା ଶୁଣି ମିସେସ୍ ସିହ୍ନା ଆଶାସ୍ୱୀ ହୋଇପଡ଼ିଲେ । କିନ୍ତୁ ତାଙ୍କ ଭାଇ ଏହାକୁ ଏକ ଉଦ୍ଭଟ କଳ୍ପନା ବୋଲି କହି ଉଡ଼ାଇ-ଦେଲେ । ସେ ଓଲଟି କହିଲେ, “ମଲାଲୋକ କ’ଣ କେଉଁଠି ଜୀଇଁ ଉଠିଲେଣି ଡ଼କ୍ଟର ? ଏଠି ଆମ ଭଉଣୀ ବଞ୍ଚି ଉଠିବ ? ମୃତଲୋକକୁ ଭଗବାନ ବି ତ ବଞ୍ଚାଇପାରି ନାହାନ୍ତି, ସାମାନ୍ୟ ଡ଼ାକ୍ତରମାନେ କ’ଣ ବଞ୍ଚାଇଦେବେ ? ଏହା ଏକ କପଟ କଳ୍ପନା । ଆମେ ଏ କଳ୍ପନା ପଛରେ ନ ଗୋଡ଼ାଇ ତା’ର ଶବକୁ ଶ୍ମଶାନକୁ ନେବା ଦିଗରେ ଯତ୍ନବାନ ହେବା ଉଚିତ । ଚାଲନ୍ତୁ, ଆମେ ତାଙ୍କୁ କହିବା, ସେ ଭଉଣୀର ଶବକୁ ଶୀଘ୍ର ଆମକୁ ଯେମିତି ଦେଇ ଦିଅନ୍ତି । ଆମେ ଶବସତ୍କାର ଦିଗରେ ଆଗେଇଯିବା । ବହୁତ ଡ଼େରି ହୋଇଗଲାଣି ।

ଡ଼କ୍ଟର ସିହ୍ନାଙ୍କ ବଡ଼ଭାଇ ଯଦୁନ୍ଦନ୍‌ବାବୁ ଡ଼ାକ୍ତର ରଥଙ୍କୁ ଶବଟିକୁ ଦେଇଦେବା ପାଇଁ ଅନୁରୋଧ କଲାନ୍ତେ, ଡ଼ାକ୍ତର ରଥ କହିଲେ, “ମୋର ଶବକୁ ଦେଇଦେବାରେ କିଛି ଆପତ୍ତି ନାହିଁ । ଯେତେବେଳେ ଗୋଟିଏ ଉପାୟ ଆମ ହାତରେ ଅଛି, ସେ ଉପାୟଟିକୁ ନ କରି ଆମେ ହଠାତ୍ ଶବ ସତ୍କାର ଦିଗରେ ଆଗେଇଯିବା ଉଚିତ ହେବନି ମିଷ୍ଟର ସିହ୍ନା ।

ଏହିଭଳି ବହୁରୋଗୀ ମୁଁ ଆମେରିକାରେ ବଞ୍ଚିବାର ଦେଖିଛି । ଆମେ ଏଠି ସେହି ଚେଷ୍ଟା ନ କରିବା କାହିଁକି ? ଯଦି କୃତକାର୍ଯ୍ୟ ହୁଅନ୍ତି, ତେବେ ଭଲ କଥା । ଡ଼କ୍ଟର ସିହ୍ନା ବଞ୍ଚି ଉଠିବେ । ଯଦି ନ ହୁଅନ୍ତି, ତେବେ ତାଙ୍କୁ ଶ୍ମଶାନକୁ ନେବେ ।

"ମୃତଲୋକ କ'ଣ କେଉଁଠି ବଞ୍ଚିବାର ଆପଣ ଦେଖିଛନ୍ତି ଡ଼ାକ୍ତର ?"

"ହଁ, ଅନେକ ଦେଖିଛି, ଆମେରିକାରେ । ମୁଁ ଆମେରିକାର ଯେଉଁ ଡ଼ାକ୍ତରଖାନାରେ ଥିଲି, ସେଠି ଏହି ଧରଣର ଚିକିତ୍ସା ବହୁତ କରାଯାଏ ଓ ଏହିଭଳି ବହୁ ମୃତରୋଗୀ ସେଠି ବଞ୍ଚି ଉଠିଛନ୍ତି ।"

"ଆମେରିକାରେ ତାହା ସମ୍ଭବ ହୋଇପାରେ । କିନ୍ତୁ ଆମ ଦେଶରେ ନୁହେଁ । ଆମ ଦେଶ ଓ ଆମେରିକା ଭିତରେ ଢେର୍ ତଫାତ୍ । ଏପରିକି ଆକାଶ-ପାତାଳ ପ୍ରଭେଦ । ସେଠି ଯାହା ସମ୍ଭବ, ଏଠି ତାହା ସମ୍ଭବ ନ ହୋଇପାରେ । ଆପଣ ଆମ ଦେଶରେ କୌଣସି ମୃତଲୋକ ବଞ୍ଚିବାର ଦେଖିଛନ୍ତି ଡ଼ାକ୍ତର ?"

"ନା, ମୁଁ ଦେଖିନି । ତେବେ କାଶ୍ମୀରରେ ସେହିଭଳି ଏକ ଘଟଣା ଘଟିଥିବା କଥା ଆମ ଡ଼ାକ୍ତରୀ ପତ୍ରିକାରେ ବାହାରିଥିଲା, ପଢ଼ିଛି । ଏହା ପୁରାପୁରି ଏକ ସତ୍ୟ ଘଟଣା । ସେ ଲୋକ ଏବେବି କାଶ୍ମୀରର ଲଦ୍ଦାଖ ଅଞ୍ଚଳରେ ବଞ୍ଚିଛି । ଶୁଣିବେ ସେ କଥା ?"

ଯତୀନ୍‌ବାବୁ ଡ଼ାକ୍ତର ରଥଙ୍କ ମୁହଁକୁ ଆଶ୍ଚର୍ଯ୍ୟର ସହିତ ଅନାଇ ରହିଲେ ।

ସେ ଆରମ୍ଭ କଲେ, "ଆଜକୁ ମାତ୍ର ପାଞ୍ଚବର୍ଷ ତଳର ଘଟଣା । ଲଦ୍ଦାଖ ରାଜଧାନୀ ଲେହ ସହରଠାରୁ ମାତ୍ର ଚାରି ପାଞ୍ଚ ମାଇଲ ଦୂର ଏକ ଗାଁରେ ଜଣେ ଧନୀଚାଷୀ ଟ୍ରାକ୍ଟର ନେଇ ନିଜ ଜମି ଚଷିବାକୁ ଯାଇଥିଲେ । ଜମି ଚଷୁ ଚଷୁ ପ୍ରବଳ ତୁଷାରଝଡ଼ ମାଡ଼ି ଆସିଲା । ସେହି ଝଡ଼କୁ ଦେଖି ସେ ଭୟ ପାଇ ଚଷିବା ବନ୍ଦ କରି ନିଜ ଘରକୁ ବାହୁଡ଼ି ଆସିଲେ । ଘର ସେଠୁ ଦୁଇ ମାଇଲ ଦୂର । ସେ ଟ୍ରାକ୍ଟରରେ ଆସୁ ଆସୁ ତୁଷାରଝଡ଼ ଏତେ ପ୍ରବଳ ହେଲା ଯେ ବାଟଘାଟ କିଛି ଦିଶିଲାନି । ପାହାଡ଼ ଆକାରର ବରଫ ଚାରିଆଡ଼େ ଜମା ହୋଇଗଲା । ଏହି ସମୟରେ ତାଙ୍କ ଟ୍ରାକ୍ଟରଟି ହଠାତ୍ ଖରାପ ହୋଇଗଲା, ଚାଲିଲାନି । ସେ ଟ୍ରାକ୍ଟରରୁ ଓହ୍ଲାଇ ଟ୍ରାକ୍ଟରଟିକୁ ସଜାଡ଼ିବାକୁ ଚେଷ୍ଟା କଲେ । ସଜାଡ଼ୁ ସଜାଡ଼ୁ ଝଡ଼ ଏତେ ପ୍ରବଳ ହେଲା ଯେ ସେଥିଯୋଗୁଁ ସେ ଓ ତାଙ୍କ ଟ୍ରାକ୍ଟର ବରଫରେ ପୋତି ହୋଇପଡ଼ିଲା । ବରଫତଳେ ଚାପିଯାଇ ଶ୍ୱାସରୁଦ୍ଧ ହେବାରୁ ତାଙ୍କର ମୃତ୍ୟୁ ହୋଇଗଲା ।

ସନ୍ଧ୍ୟା ହେବାରୁ ତାଙ୍କୁ ଖୋଜା ପଡ଼ିଲା । ତାଙ୍କ ପରିବାରବର୍ଗ ସେହି ରାତିରେ ସେହି ଝଡ଼ ଭିତରେ ତାଙ୍କୁ ଖୋଜିବାକୁ ବାହାରିଗଲେ । ଇତିମଧ୍ୟରେ ତାଙ୍କ ଟ୍ରାକ୍ଟରଟି ବରଫରେ ପ୍ରାୟ ପୋତି ହୋଇଗଲାଣି । ସେ ସେହି ବରଫ ଭିତରେ ମରି ପୋତି ହୋଇ ପଡ଼ିଥାନ୍ତି । ବହୁ ସମୟ ଖୋଜାଖୋଜି ପରେ ତାଙ୍କର ମୃତଦେହକୁ ସେମାନେ ଟ୍ରାକ୍ଟର ନିକଟରେ ବରଫତଳେ ପୋତିହୋଇ ପଡ଼ିଥିବାର ଦେଖିଲେ । ସେତେବେଳକୁ ରାତି

ପ୍ରାୟ ଦୁଇଟା । ସେ ମରିବାର ଦଶ ବାରଘଣ୍ଟା ବିତିଗଲାଣି । ତାଙ୍କୁ ସଙ୍ଗେ ସଙ୍ଗେ ସେହି ଝଡ଼ ଭିତରେ ସେହି ସହରର ବଡ଼ ଡାକ୍ତରଖାନାକୁ ନିଆଗଲା । ଡାକ୍ତରମାନେ ଦେଖିଲେ, ତାଙ୍କର କ୍ଷଣିକ ମୃତ୍ୟୁ ହୋଇଯାଇଛି ସତ, କିନ୍ତୁ ନିମ୍ନତାପଯୋଗୁଁ ଜୈବିକ ମୃତ୍ୟୁ ଆସିପାରିନି । ସେତେବେଳେ ଲେହର ତାପମାତ୍ରା ହେଉଛି –୧୨ ଡିଗ୍ରୀ ସେଣ୍ଟିଗ୍ରେଡ୍ । ସେମାନେ ରୋଗୀକୁ ସାମାନ୍ୟ ଉଷୁମ କରି କୃତ୍ରିମ ଉପାୟରେ ହୃଦ୍‌ଯନ୍ତ୍ରକୁ ଚଳାଇବାରୁ ତାହା ଠିକ୍ ରୂପେ ଚାଲିଲା । ଦିନେ ଦୁଇଦିନ ପରେ ସେ ଲୋକଟି ଭଲ ହୋଇ ଘରକୁ ଫେରିଆସିଲା । ଏବେବି ସେ ଲୋକ ବଞ୍ଚିଛି ଓ ନିଜ ଜମିରେ ଚାଷକାମ କରୁଛି । ସେ ଲୋକଟିର ନାଁ ହେଉଛି ଶେଖ୍ ହାଇଦର ।

"କିନ୍ତୁ ଡ଼ାକ୍ତର, ମୁଁ ବୁଝିପାରୁନି ସେ ଲୋକଟି ତ ମରି ଯାଇଥିଲା । ତା'ର ଆତ୍ମା ତାହା ଦେହରୁ ବାହାରି ପରମାତ୍ମାଙ୍କ ସହ ମିଶି ଯାଇଥିଲା । ଆତ୍ମା ତ ଆଉ ନାହିଁ, ସେ ବଞ୍ଚିଲା କେମିତି ? ହୋଇପାରେ ସେ ବିଧର୍ମୀ ଥିବାରୁ ତା'ର ଆତ୍ମା ପରମାତ୍ମାଙ୍କ ସହିତ ମିଳି ନ ପାରି ଉଡ଼ି ବୁଲୁଥିଲା । ହୃଦଯନ୍ତ୍ର ଚାଲିବାରୁ ଆକାଶରୁ ଆସି ଶରୀରରେ ପୁଣି ପଶିଗଲା ।"

"ଆପଣ ଆଧୁନିକ ଯୁଗରେ ଆତ୍ମା ପରମାତ୍ମା କଥା କ'ଣ କହୁଛନ୍ତି ଯତୀନ୍‌ବାବୁ ? ସେସବୁ ପୁରୁଣାକାଳିଆ ମନଗଢ଼ା କଥା । ସେଥିରେ ସତ୍ୟତା ବୋଲି କିଛିଏ ନାହିଁ । ଆପଣ ଶୁଣିଲେ ତ ମଲାଲୋକ ଆମ ଦେଶରେ କେମିତି ବଞ୍ଚି ପାରିଲା । ଆପଣମାନେ ଯଦି ଚାହିଁବେ, ସେ ଦିଗରେ ଚେଷ୍ଟା କରାଯିବ । ତା ଯଦି କରାଯାଏ ବିପିନବାବୁ ବି ପୁଣି ବଞ୍ଚି ଉଠି ପାରନ୍ତି ।"

"କିନ୍ତୁ ବିପିନର ମୃତ୍ୟୁ ତ ଗୁରି ପାଞ୍ଚଘଣ୍ଟା ହୋଇଗଲାଣି । ବୋମ୍ବେ ନେଉ ନେଉ ଆହୁରି ଦିନଟାଏ ଲାଗିଯିବ । ମୃତଲୋକ ଦିନେ ଦୁଇଦିନ ପରେ ପୁଣି ବଞ୍ଚି ଉଠିବ, ମୋତେ କେମିତି କେମିତି ଲାଗୁଛି ।"

"ରୋଗୀ କ୍ଷଣିକ ମୃତ୍ୟୁର ଦଶ ପନ୍ଦରବର୍ଷ ପରେ ମଧ୍ୟ ବଞ୍ଚିବାର ନଜିର ରହିଛି ।" ଡ଼ାକ୍ତର ରଥ କହିଲେ । "ଆପଣ ଜାଣିଛନ୍ତି ଏହି ଅସମ୍ଭବ କଥାଟାକୁ ଯିଏ ସମ୍ଭବ କରି ପାରିଛନ୍ତି, ସିଏ ଜଣେ ଓଡ଼ିଆ ଡ଼ାକ୍ତର । ଆମେରିକାରେ ବସବାସ କରି ରହି ଯାଇଛନ୍ତି । ତାଙ୍କ ନାଁ ହେଉଛି— ଅତନୁ କୁମାର ପଟ୍ଟନାୟକ । ସେ ବର୍ତ୍ତମାନ ଆମେରିକାର ନିଉଜେରସି ଗ୍ରନ୍ୟାଷ୍ଟ ନାଏସଲ୍‌ର କେନ୍‌ସର ଇନ୍‌ଷ୍ଟିଚ୍ୟୁଟ୍‌ର ନିର୍ଦ୍ଦେଶକ । ତାଙ୍କ ମା' କେନ୍‌ସର ରୋଗରେ ଆକ୍ରାନ୍ତ ହୋଇ ଇହଲୀଳା ସମ୍ବରଣ କରିଥିଲେ । ତାଙ୍କର କ୍ଷଣିକ ମୃତ୍ୟୁପରେ ତାଙ୍କର ମୃତଦେହକୁ ସେ ତରଳ ଯବକ୍ଷାରଜାନରେ ଏକ କେବିନ୍ ଭିତରେ ରଖି ଦେଇଥିଲେ । ଏହାଫଳରେ ତାଙ୍କର ପ୍ରକୃତ ମୃତ୍ୟୁ ଆସିପାରି ନ ଥିଲା । ଏହିଭଳି ପ୍ରାୟ ଦଶବର୍ଷ ରହିଲାପରେ ତାଙ୍କ କେନ୍‌ସର ରୋଗର ଫଳପ୍ରଦ ଔଷଧ ବାହାରିଲା । ସେ ତତ୍ପରେ ତାଙ୍କ ମା'ଙ୍କୁ ଶୀତଳ ଭଣ୍ଡାରରୁ ବାହାର କରି ନୂଆ ଔଷଧ ସାହାଯ୍ୟରେ

ଯଥାବିଧି ଚିକିତ୍ସା କଲେ, ଫଳରେ ତାଙ୍କ ମା' ଭଲ ହୋଇ ପୁଣି ନିଜ ସଂସାରକୁ ଫେରି ଆସିଲେ । ଡକ୍ଟର ପଟ୍ଟନାୟକ ଏହି ଯେଉଁ ନୂତନ ଚିକିତ୍ସା ପଦ୍ଧତି ଆବିଷ୍କାର କଲେ, ତାହା ତାଙ୍କ ପାଇଁ ସାରା ପୃଥିବୀରୁ ଅଶେଷ ଖ୍ୟାତି ବୋହି ଆଣିଲା ଓ ସେ ଶହ ଶହ ସମ୍ମାନର ଅଧିକାରୀ ହେଲେ । ତାଙ୍କ ଦେଖାଦେଖିରେ ଏହି ପଦ୍ଧତି ଆମେରିକା ତଥା ପୃଥିବୀର ଉନ୍ନତ ରାଷ୍ଟ୍ରମାନଙ୍କରେ ଏକ ନିତିଦିନିଆ ଚିକିତ୍ସା ହୋଇଗଲାଣି ।

"ଆଁ, ଆମ ଓଡ଼ିଶାର ଜଣେ ଡାକ୍ତର ଆମେରିକାରେ ରହି ଏହିଭଳି ଚିକିତ୍ସା କରାଇ କ'ଣ ଏତେ ପ୍ରସିଦ୍ଧି ଅର୍ଜନ କରିଛନ୍ତି ?"

"ଆପଣଙ୍କର ବିଶ୍ୱାସ ହେଉନି ବୋଧେ ? କହନ୍ତୁ, ମୁଁ ବର୍ତ୍ତମାନ ତାଙ୍କ ସହିତ ଆପଣଙ୍କୁ ଫୋନ୍‌ରେ କଥାବାର୍ତ୍ତା କରାଇ ଦେଉଛି । ସେ ନିଶ୍ଚୟ କହିବେ, ଆମେ ଯେଉଁ ବାଟରେ ଯାଉଛେ, ସେହି ବାଟରେ ଗଲେ ଡକ୍ଟର ସିହ୍ନା ନିଶ୍ଚୟ ଭଲ ହୋଇ ନିଜ ସଂସାରକୁ ଫେରି ଆସିପାରିବେ ।"

"ଡକ୍ଟର ପଟ୍ଟନାୟକ କ'ଣ ଆମ ଓଡ଼ିଶାରୁ ଯାଇ ସେଠାରେ ଏତେ ନାଁ କରିଛନ୍ତି ?"

"ନା, ନା, ସେ ଏଠାରୁ ଯାଇ ନାହାନ୍ତି । ତାଙ୍କ ଜନ୍ମ ଆମେରିକାରେ । ତାଙ୍କ ବାପା, ମା' ଓଡ଼ିଶାର ଲୋକ । ସେମାନେ ସେଠି ବସବାସ କରି ରହି ଯାଇଛନ୍ତି । ଡକ୍ଟର ପଟ୍ଟନାୟକ ଓଡ଼ିଶାରୁ ବାହା ହୋଇଛନ୍ତି । ତାଙ୍କ ସ୍ତ୍ରୀଙ୍କ ନାଁ ତନୁଶ୍ରୀ ମହାନ୍ତି । ସେ ଏହି ରେଭେନ୍‌ସା କଲେଜର ଛାତ୍ରୀ ଥିଲେ କିଛିବର୍ଷ ତଳେ ।"

"ଆଁ, ଏହି କଲେଜରେ ?"

"ହେଉ ଡାକ୍ତର, ତେବେ ଶେଷ ଚେଷ୍ଟା କରାଯାଉ । ଭଗବାନଙ୍କ ଦୟା ଯଦି ଥିବ, ତେବେ ଆମ ସ୍ୱପନ ବଞ୍ଚି ଉଠିବ । ଯଦି ନ ଥିବ ନାହିଁ । ତା'ପରେ ଆମେ ତାକୁ ଶ୍ମଶାନକୁ ନେବା । ମାତ୍ର ଦିନ କେଇଟା ଡେରି ହୋଇଯିବ ।

× × × ×

ଡାକ୍ତର ରଥଙ୍କ କଡ଼ା ଅନୁଯାୟୀ ଗ୍ଲେଟ ବଡ଼ ଗୋଟିଏ ଭିତରେ ଅନ୍ୟଟି ରହିଲା ଭଳି ଦୁଇଟି କେବିନ୍ ଓ କିଛି ଶୁଷ୍କ ବରଫ ବା ଘନୀଭୂତ ଅଙ୍ଗାରକାମ୍ଳ ବଜାରରୁ କିଣା ହୋଇ ଆସିଲା । ଶବଟିକୁ ପ୍ରଥମତଃ ଗ୍ଲେଟ କେବିନ୍ ଭିତରେ ରଖି କେବିନ୍‌କୁ ଘନୀଭୂତ ଅଙ୍ଗାରକାମ୍ଳ ଭିତରେ ପୋତି ବାହାର କେବିନ୍‌ଟିକୁ ସ୍କୁରଆଡ଼ୁ ବାୟୁନିରୁଦ୍ଧ କରି ବନ୍ଦକରି ଦିଆଗଲା । ସଙ୍ଗେ ସଙ୍ଗେ ଭୁବନେଶ୍ୱର ଉଡ଼ାଜାହାଜଘାଟିକୁ ନେଇ ରୋଗୀ ବୋମ୍ବେ ଅଭିମୁଖେ ରମାନା ହୋଇଗଲା । ସାଙ୍ଗରେ ଡାକ୍ତର ରଥ, ଦେବସ୍ଥାନବାବୁ ଓ ଡକ୍ଟର ସିହ୍ନାଙ୍କ ବଡ଼ଭାଇ ଯଶୋବନ୍ତବାବୁ ଗଲେ । ସିବାପୂର୍ବରୁ ସାନ୍ତାକ୍ରୁଜ୍ ଉଡ଼ାଜାହାଜଘାଟିକୁ ଶୀତଳୀକୃତ ଏମ୍ବୁଲାନ୍‌ସ ପଠାଇବା ପାଇଁ ହିନ୍ଦୁଜା ହସ୍‌ପିଟାଲର ହୃଦ୍‌ରୋଗ ବିଶେଷଜ୍ଞଙ୍କୁ ଅନୁରୋଧ କରାଗଲା ।

ରୋଗୀ ହସ୍‌ପିଟାଲରେ ଯାଇ ପହଞ୍ଚିଛି କି ନାହିଁ ଶୀତଳୀକୃତ ଘରେ ଡାକ୍ତରମାନେ ରୋଗୀଙ୍କୁ ପରୀକ୍ଷା କରିବାରେ ଲାଗିଗଲେ । ଡାକ୍ତର ରଥ ସାଙ୍ଗରେ ଯେଉଁ ଇ.ସି.ଜି. ରିପୋର୍ଟ, ଷ୍ଟ୍ରେସ୍ ଇ.ସି.ଜି. ରିପୋର୍ଟ ଓ ଆଞ୍ଜିଓଗ୍ରାଫି ରିପୋର୍ଟ ନେଇଥିଲେ, ସେସବୁକୁ ସେମାନେ ତନ୍ନ ତନ୍ନ କରି ପରୀକ୍ଷା କଲେ । ଡାକ୍ତର ରଥଙ୍କ ଯୋଜନା ଯେ ଠିକ୍ କାମ କରିବ, ସେଥିରେ ସେମାନଙ୍କ ସନ୍ଦେହ ରହିଲାନି । ତେଣୁ ଆଉ କାଳବିଳମ୍ବ ନ କରି ରୋଗୀଙ୍କୁ ଆଞ୍ଜିଓପ୍ଲାଷ୍ଟି ଗୃହକୁ ନିଆଗଲା । ସେଠାରେ ରୋଗୀର ହୃଦ୍‌ଯନ୍ତ୍ରକୁ ଡିଫିବ୍ରିଲେଟର ସାହାଯ୍ୟରେ କୃତ୍ରିମ ଉପାୟରେ ଚଳାଗଲା । ସୌଭାଗ୍ୟବଶତଃ ଏହା ପୁଣି ଚାଲିବାକୁ ଆରମ୍ଭ କଲା । ଡକ୍ଟର ମେକ୍‌ମେହନ ସଙ୍ଗେ ସଙ୍ଗେ ଆଞ୍ଜିଓଗ୍ରାଫି କରି ଧମନୀରେ ବନ୍ଦ ହୋଇଥିବା ସ୍ଥାନଟିକୁ ଦେଖିନେଲେ । ସେଥିସହ ବେଲୁନ୍ ଲାଗିଥିବା ଏକ କେଥିଟର ବାମପାଖ ଗୋଡ଼ ଧମନୀରେ ଅପରେସନ ସାହାଯ୍ୟରେ ପ୍ରବେଶ କରାଇ ଧୀରେ ଧୀରେ ହୃଦ୍‌ଯନ୍ତ୍ରର ବନ୍ଦ ସ୍ଥାନକୁ ନେଇ ଆସିଲେ । କେଥିଟର୍ ଠିକ୍ ବାଟରେ ଯାଉଛି କି ନାହିଁ ଥରକୁଥର ଫ୍ଲୋରୋସ୍କୋପ୍ ଯନ୍ତ୍ରରେ ଦେଖି ନେଉଥିଲେ । ସେଠାରେ ପହଞ୍ଚି ବେଲୁନ୍‌ଟିକୁ ଫୁଲାଇ ଫୁଲାଇ ହୃଦ୍‌ଧମନୀର ସେହି ବନ୍ଦ ଅଂଶକୁ ଠେଲି ଠେଲି ପୁରା ପରିଷ୍କାର କରିବାକୁ ଚେଷ୍ଟା କଲେ । ଗୁହୁଁ ଗୁହୁଁ ଅଳ୍ପ କେଇ ମିନଟ୍ ମଧ୍ୟରେ ସେହି ବନ୍ଦ ସ୍ଥାନଟି ସଫା ହୋଇଗଲା । ଘରର ନାଳୁଆ ବନ୍ଦ ଥିଲେ ବାଡ଼ିରେ ଠେଲିଦେଲେ ଯେମିତି ସଫା ହୋଇ ପାଣି ସେହି ବାଟ ଦେଇ ଜୋରରେ ବହି ଚାଲେ, ଏଠି ଠିକ୍ ସେମିତି ହେଲା । ବନ୍ଦ ସ୍ଥାନ ସଫା ହୋଇଯିବାରୁ ସେହି ବାଟ ଦେଇ ରକ୍ତସ୍ରୋତ ତୀବ୍ର ବେଗରେ ଛୁଟି ଚାଲିଲା । ଏ ସବୁର ସେ ଏକ ଭିଡିଓ ଚିତ୍ର ଉଠାଇନେଲେ ଭବିଷ୍ୟତରେ ଦେଖାଇବା ପାଇଁ ।

ହୃଦ୍‌ଯନ୍ତ୍ର ଠିକ୍ ରୂପେ ଚାଲିବାର କିଛି ସମୟପରେ ଡକ୍ଟର ସିହ୍ନାଙ୍କ ଚେତା ଧୀରେ ଧୀରେ ଫେରି ଆସିଲା । ଚେତା ପାଇବାପରେ ସେ କେଉଁଠି ଅଛନ୍ତି ବୋଲି ଧୀର କଣ୍ଠରେ ପଚାରିଲେ । ସେ ବର୍ତ୍ତମାନ ବୋମ୍ବେର ହିନ୍ଦୁଜା ହସ୍‌ପିଟାଲରେ ଚିକିତ୍ସିତ ହେଉଛନ୍ତି ଶୁଣି ଆଶ୍ଚର୍ଯ୍ୟ ହେଲେ । ସେ ଯେ ଇତିମଧ୍ୟରେ ମରି ପୁଣି ବଞ୍ଚି ସାରିଲେଣି ଓ ସେଥିସହ ତାଙ୍କ ହୃଦ୍‌ଯନ୍ତ୍ରର ବନ୍ଦ ହୋଇ ଯାଇଥିବା ଧମନୀଟି ସଫା ହୋଇ ତାଙ୍କ ହୃଦ୍‌ଯନ୍ତ୍ର ଠିକ୍ ରୂପେ କାର୍ଯ୍ୟ କଲାଣି ଶୁଣି ବିଶ୍ୱାସ କରିପାରିଲେନି । ଇଣ୍ଟେନ୍‌ସିଭ୍ କେଆର୍ ୟୁନିଟ୍ କକ୍ଷରେ ସାତଦିନ ରହିବାପରେ ସେ ପୁରାପୁରି ଭଲ ହୋଇଗଲେ । ଯେତେବେଳେ ତାଙ୍କ ବଞ୍ଚିବା ଖବର ଟେଲିଫୋନ୍ ସାହାଯ୍ୟରେ ତାଙ୍କ କଟକସ୍ଥ ବାସଭବନକୁ ଜଣାଇ ଦିଆଗଲା, ଘରେ ପ୍ରଥମେ ପ୍ରଥମେ ଏହି ଖବରକୁ କେହି ବିଶ୍ୱାସ କରିପାରିଲେନି । ମରି ଯାଇଥିବା ଲୋକ କ'ଣ ସତରେ ବଞ୍ଚି ପାରିବ ? ଏହି ଧାରଣାଯୋଗୁଁ ଖବରଟି ବିଶ୍ୱାସଯୋଗ୍ୟ ହେଲାନି । ମିସେସ୍ ସିହ୍ନା କେବଳ ଦେବଦେବୀଙ୍କ ଉଦ୍ଦେଶ୍ୟରେ ଥରକୁଥର ହାତ ଉଠାଇ ଶତ ପ୍ରଣାମ ଜଣାଉଥାନ୍ତି ।

ଯେଉଁଦିନ ଡକ୍ଟର ସିହ୍ନାଙ୍କୁ ସଙ୍ଗରେ ଧରି ତାଙ୍କ ଭାଇ ଯତୀନ୍‌ବାବୁ, ଦେବସ୍ଥାନ-ବାବୁ ଓ ଡାକ୍ତର ରଥ ରେଭେନ୍‌ସା କଲେଜ କେମ୍ପସ୍ କ୍ୱାଟର୍ସକୁ ଫେରି ଆସିଲେ, ସେଦିନ ତାଙ୍କୁ ଦେଖିବା ପାଇଁ ତାଙ୍କ ଘର ଦୁଆରେ ଲୋକାରଣ୍ୟ । ମରି ଯାଇଥିବା ଡକ୍ଟର ସିହ୍ନା ପୁଣି ବଞ୍ଚି ବୋମ୍ବେରୁ ଫେରି ଆସିଛନ୍ତି, ଏହି ଖବର ଶୁଣି କଲେଜର ଛାତ୍ର ଛାତ୍ରୀମାନେ ଅବାକ୍ ହୋଇ କ୍ଲାସ୍ ଛାଡ଼ି ତାଙ୍କୁ ଦେଖିବାକୁ ଦୌଡ଼ିଲେ । ଏହି ଖବର ସାରା କଟକ ସହରରେ ଚାଞ୍ଚଲ୍ୟ ଖେଳାଇଦେଲା । ଡ଼ାକ୍ତର ରଥଙ୍କ ଯୋଜନା କେମିତି ମଲାଲୋକକୁ ବଞ୍ଚାଇଦେଇ ପାରିଲା, ସେମାନେ ସହଜରେ ଧାରଣା କରିପାରିଲେନି । କେତେକେ କହିଲେ, "ଡ଼ାକ୍ତର ରଥ ମଣିଷ ନୁହଁନ୍ତି, ସେ ସାକ୍ଷାତ ଭଗବାନ । ମଲା-ମଣିଷକୁ ବଞ୍ଚାଇଦେବା କମ୍ ବଡ଼ କଥା ନୁହେଁ ।" ଡ଼କ୍ଟର ସିହ୍ନାଙ୍କୁ ଜୀବନ୍ତ ଦେଖି ଫେରୁଥିବା ଲୋକେ ବାଟରେ କୁହାକୁହି ହେଉଥିଲେ, "ଆରେ ଭାଇ, ଡ଼ାକ୍ତର ରଥ ଥିବା ପର୍ଯ୍ୟନ୍ତ ହୃଦ୍‌ରୋଗୀମାନଙ୍କ ମୃତ୍ୟୁ ଢେର୍ ଦୂରକୁ ଠେଲି ହୋଇଗଲା ଜାଣ । ଭଗବାନ ତାଙ୍କୁ କୋଟି ପରମାୟୁ ଦେଇଥାନ୍ତୁ । ସେ ଏଇଭଳି ମଲାଲୋକଙ୍କୁ ବଞ୍ଚାଉଥାଆନ୍ତୁ ।"

## ପନ୍ଦର

ଠକ୍, ଠକ୍, ଠକ୍ ।

"କିଏ ? ଭିତରକୁ ଆସନ୍ତୁ, ଦୁଆର ଖୋଲା ଅଛି ।" ଶୁଭ୍ରା ଗବେଷଣାଗାର ଭିତରୁ ଏକ ଯନ୍ତ୍ର ସଜାଡ଼ୁ ସଜାଡ଼ୁ ପାଟିକରି କହିଲା । ଦୁଆର ଖୋଲି ଭିତରକୁ ଆସିଲେ କଟକ ଆକାଶବାଣୀ କେନ୍ଦ୍ରର ପ୍ରୋଗ୍ରାମ ଆସିଷ୍ଟାଣ୍ଟ ମହେନ୍ଦ୍ର ଚନ୍ଦ୍ର ମିଶ୍ର । ଭିତରକୁ ପଶି ଆସି ପଚାରିଲେ, "ଡକ୍ଟର ଦେବସ୍ଥାନ ଦାସ କ'ଣ ଅଛନ୍ତି ? ମୁଁ ତାଙ୍କୁ ସାକ୍ଷାତ କରିପାରେ କି ?"

"ହଁ, ଅଛନ୍ତି ? ଆପଣ କିଏ ? ତାଙ୍କୁ ସାକ୍ଷାତ କରିବାର ଅଭିପ୍ରାୟ ?" ଶୁଭ୍ରା ପଚାରିଲା ।

"ଟିକିଏ ଖବର ଦିଅନ୍ତୁ ଆଜ୍ଞା । ମୁଁ କଟକ ଆକାଶବାଣୀରୁ ଆସିଛି ତାଙ୍କ ସହିତ ଟିକେ କଥା ହେବା ପାଇଁ ।"

"ହେଉ, ଅପେକ୍ଷା କରନ୍ତୁ । ମୁଁ ଖବର ଦେଉଛି ।"

ଦେବସ୍ଥାନବାବୁଙ୍କ କୋଠରୀ ପରଦା ଅଧା ଖୋଲି ଶୁଭ୍ରା କହିଲା, "ଆପଣଙ୍କ ସହିତ ସାକ୍ଷାତ କରିବା ପାଇଁ କଟକ ଆକାଶବାଣୀ କେନ୍ଦ୍ରରୁ ଜଣେକ ଭଦ୍ରଲୋକ ଆସିଛନ୍ତି । ତାଙ୍କୁ କ'ଣ ଆପଣଙ୍କଠାକୁ ପଠାଇଦେବି ?"

"ଆଁ ଆକାଶବାଣୀ କେନ୍ଦ୍ରରୁ ଆସିଛନ୍ତି ? ମୋଠାରେ କ'ଣ ଦରକାର ? ହେଉ ପଠାଇଦିଅ ।"

"ନମସ୍କାର ଆଜ୍ଞା ।" ରୁମ୍ ଭିତରକୁ ପଶୁ ପଶୁ ଆଗନ୍ତୁକ ଜଣକ କହିଲେ, "ମୁଁ ହେଉଛି ମହେନ୍ଦ୍ର ଚନ୍ଦ୍ର ମିଶ୍ର । ଆକାଶବାଣୀ ଟକ୍ ସେକ୍ସନ୍‌ର ପ୍ରୋଗ୍ରାମ୍ ଆସିଷ୍ଟାଣ୍ଟ ।"

"ମୋଠାରେ ଆପଣଙ୍କର— ?"

"ଦେଖନ୍ତୁ ଡକ୍‌ଟର ଦାସ । ଆମେ ବଡ଼ ଅସୁବିଧାରେ ପଡ଼ିଯାଇଛୁ । ଆପଣ ଆମକୁ ସାହାଯ୍ୟ ନ କଲେ ହଇରାଣ ହୋଇଯିବୁ ଆଜ୍ଞା ।"

"କ'ଣ ହୋଇଛି କହନ୍ତୁ ନାହାନ୍ତି ।"

"ଆମ ଆକାଶବାଣୀରେ ଆଜି ସନ୍ଧ୍ୟା ଛଅଟାରେ ଗୋଟିଏ ଆଲୋଚନା ବ୍ରଡ଼କାଷ୍ଟିଂ ହେବାର ଥିଲା । ବିଷୟ ହେଉଛି 'ଶକ୍ତି ସମସ୍ୟା ଓ ତା'ର ସମାଧାନ ।' ଏହି ଆଲୋଚନାର ମୁଖ୍ୟ ଆଲୋଚକ ଥିଲେ ଆପଣଙ୍କ ଏହି କଲେଜର ପଦାର୍ଥ ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ଡ଼କ୍‌ଟର ଘୋଷ୍ । ତେର୍‌ଦିନ ତଳୁ ସେ ରାଜି ହୋଇଥିଲେ । ଆଜି ସକାଳେ ହଠାତ୍ ଆମଠାକୁ ମନାକରି ପଠାଇ କହୁଛନ୍ତି କ'ଣ ନା ସେ ଏଥିରେ ଯୋଗଦେଇ ପାରିବେନି । କାରଣ ତାଙ୍କର କଚେରୀରେ ଏକ ଗୁରୁତ୍ୱପୂର୍ଣ୍ଣ ମୋକଦ୍ଦମା ଅଛି । ସେ ଦିନସାରା ସେ କାମରେ ବ୍ୟସ୍ତ ରହିବେ । ଏଠି ଯୋଗଦେଇ ପାରିବେନି । ଏଭଳି ଅବସ୍ଥାରେ ଆମେ କ'ଣ କରିବୁ କହିଲେ ଆଜ୍ଞା ? ଆଜି ସନ୍ଧ୍ୟାବେଳେ ଆଲୋଚନାଟି ଯଦି ବ୍ରଡ୍‌କାଷ୍ଟ ନ ହେଉଛି ତେବେ ଆମ ବିଭାଗର ବଦନାମ ହୋଇଯିବ । ଷ୍ଟେସନ ଡିରେକ୍‌ଟର ଆମ ଉପରେ ବିରକ୍ତ ହୋଇ ନାନା ପ୍ରକାର ଅପ୍ରୀତିକର କୈଫିୟତ ମାଗିବେ । ଆପଣ ଯଦି ଆମକୁ ଏ ବେଳରେ ରକ୍ଷା ନ କରନ୍ତି, ତେବେ ଆମେ ହଇରାଣ ହୋଇଯିବୁ ଆଜ୍ଞା ।"

"କିନ୍ତୁ ଏତେ ଅଳ୍ପ ସମୟ ଭିତରେ ମୁଁ କ'ଣ ଆପଣଙ୍କ ଆଲୋଚନା ପାଇଁ ପ୍ରସ୍ତୁତ ହୋଇପାରିବି ? ଆଉ ମାତ୍ର ତିନି ଘଣ୍ଟା ବାକି ? ମୋର ଏବେ ପୁଣି କ୍ଲାସ୍ ଅଛି । ଆପଣ ସେହି ବିଭାଗର ଆଉ କାହାକୁ ଦେଖିଲେନି ?"

"ବହୁତ ଚେଷ୍ଟା କରିଛି ଆଜ୍ଞା । ଅନେକ ଲୋକଙ୍କୁ ଦେଖା କରିଛି, ହେଲେ କେହି ରାଜି ହେଉ ନାହାନ୍ତି ଦାୟିତ୍ୱ ନେବା ପାଇଁ । ଏତେ ଅଳ୍ପ ସମୟ ଭିତରେ ପ୍ରସ୍ତୁତ ହୋଇ ପାରିବେନି ବୋଲି କହି ସମସ୍ତେ ମନା କରି ଦେଉଛନ୍ତି ।"

"ସେମାନେ ଯେତେବେଳେ ପାରୁ ନାହାନ୍ତି, ମୁଁ ପାରିବି ବୋଲି ଆପଣ ଆଶା କରୁଛନ୍ତି କେମିତି ?"

"ନାଇଁ ଆଜ୍ଞା, ସେମାନେ ସମସ୍ତେ ଆପଣଙ୍କୁ ସାକ୍ଷାତ କରିବା ପାଇଁ ମୋତେ କହିଛନ୍ତି । ବିଶେଷତଃ ସେହି ବିଭାଗର ଅଧ୍ୟାପିକା ଡ଼କ୍‌ଟର ରେଖା ମହାନ୍ତି କହିଲେ ଆପଣଙ୍କ ଛଡ଼ା ଆଉ କେହି ଏତେ ଅଳ୍ପ ସମୟ ଭିତରେ ପ୍ରସ୍ତୁତ ହୋଇ ପାରିବେନି ।

ତା'ଛଡ଼ା ଓଡ଼ିଆରେ ସମସ୍ତେ ଲେଖିବାକୁ ଡ଼ରୁଛନ୍ତି । ଆପଣ ତ ବିଜ୍ଞାନ ବିଷୟକୁ ଓଡ଼ିଆରେ ଲେଖିବାରେ ଧୂରନ୍ଧର, ତେଣୁ ଆପଣଙ୍କ ପାଇଁ ଅସୁବିଧା ହେବନି ।"

"ମୋର ତ ବର୍ତ୍ତମାନ କ୍ଲାସ୍ ଅଛି । ମୁଁ ତ କ୍ଲାସ୍‌କୁ ବାହାରଲିଣି । କ୍ଲାସ୍ ସାରି ଆସି ଆପଣଙ୍କ ଆଲୋଚନା ପାଇଁ ପ୍ରସ୍ତୁତ ହୋଇପାରିବି, ମୋର ଏଥିରେ ଯଥେଷ୍ଟ ସନ୍ଦେହ ଅଛି ।"

"ସାର୍ ଟିକିଏ ଦୟା କରନ୍ତୁ, ନ ହେଲେ ଆମେ ହଇରାଣ ହୋଇଯିବୁ ଆଜ୍ଞା । ଆପଣ ହିଁ ଆମର ସାହା ଭରସା ।"

"ଆପଣ ମୋତେ ବଡ଼ ହଇରାଣରେ ପକାଇଦେଲେ ମିଷ୍ଟର ମିଶ୍ର । ମୁଁ କ୍ଲାସ୍‌ରୁ ଆସେ, ଆପଣଙ୍କ ବକ୍ତୃତା ପାଇଁ ସମର୍ଥ ହେବି କି କଅଣ କହିପାରିବି ।"

"କହିପାରିବେ କି କ'ଣ କହୁଛନ୍ତି ଆଜ୍ଞା ? ନିଶ୍ଚୟ କହିବେ ନା ।"

"ହଁ, ଏ ଆଲୋଚନାରେ ମୁଁ ଏକା, ନା ମୋ ସହିତ ଅନ୍ୟ ଆଲୋଚକ ଅଛନ୍ତି ?"

"ଆପଣଙ୍କ ସହିତ ଆଉଜଣେ ଆଲୋଚକ ଅଛନ୍ତି ଆଜ୍ଞା । ସେ ହେଉଛନ୍ତି ସେହି ବିଭାଗର ଅନ୍ୟତମ ଅଧ୍ୟାପିକା ଡକ୍ଟର ରେଖା ମହାନ୍ତି । ଆପଣ ଦୁଇଜଣ ମାତ୍ର ଆଜିର ଆଲୋଚକ ।"

"ସେ ପ୍ରସ୍ତୁତ ଅଛନ୍ତି ତ ? ନା, ସେ ବି ମନା କରିଛନ୍ତି ?"

"ନା, ଆଜ୍ଞା, ସେ ରାଜି ଅଛନ୍ତି । ସେ ମନାକରି ନାହାନ୍ତି ।"

"ରକ୍ଷା ।"

"ମୁଁ ତେବେ ଆସୁଛି ଆଜ୍ଞା । ଆପଣମାନଙ୍କୁ ଅପେକ୍ଷା କରିଥିବୁ ? ଆପଣ ନିରାଶ କରିବେନି । ଆପଣମାନଙ୍କ ଯିବା ପାଇଁ ମୁଁ ଗାଡ଼ି ପଠାଇ ଦେଉଛି ।"

× × × ×

"କିଏ ଶୁଭ୍ରା ? ତୁମ ସାର୍ ଭିତରେ ଅଛନ୍ତି ନା ନାହିଁ ? ହଠାତ୍ ଗବେଷଣାଗାର ଭିତରକୁ ପଶି ଆସି ପଚାରିଲେ ପଦାର୍ଥବିଜ୍ଞାନ ଅଧ୍ୟାପିକା ଡକ୍ଟର ରେଖା ମହାନ୍ତି ।"

"ନାଇଁ ମେଡେମ୍ , ସାର୍ କ୍ଲାସ୍‌କୁ ଯାଇଛନ୍ତି ।"

"କେଉଁ କ୍ଲାସ୍ ?"

"ସିକ୍‌ସ୍‌ଥ ଇୟର୍ ଅର୍ଗାନିକ୍ ସ୍ପେଶାଲ ।"

"ସରିବ କେତେବେଳେ ?"

ଘଡ଼ିକୁ ଅନାଇ, "ଆଉ ମାତ୍ର ପାଞ୍ଚମିନିଟ୍ ବାକି ମେଡେମ୍ । ଆପଣ ସାର୍‌ଙ୍କ ରୁମ୍‌ରେ ବସନ୍ତୁ, ସେ ବର୍ତ୍ତମାନ ଆସିଯିବେ ।"

"ଆଜି ତାଙ୍କର ରେଡ଼ିଓ ଷ୍ଟେସନରେ ଏକ ଆଲୋଚନା ବ୍ରଡ଼୍‌କାଷ୍ଟିଂ ହେବାର ଅଛି ପରା, ତୁମେ ଜାଣିଛ ?"

"ହଁ, ମେଡେମ୍, ମୁଁ ଜାଣିଛି । ଆପଣଙ୍କ ସହିତ ତ ? ଆପଣ ଉଭୟେ ପରା ଆଜିର ଆଲୋଚକ । ବିଷୟ ହେଉଛି 'ଶକ୍ତି ସମସ୍ୟା ଓ ତା'ର ସମାଧାନ' ।"

"ତୁମେ ତାହାହେଲେ ଡକ୍ଟର ଦାସଙ୍କ ସବୁକିଛି ଖବର ରଖୁଛ ? ବାଃ ! ଭଲ ସ୍ପାଇଟିଏ ମିଳଯାଇଛ । ଦେଖ ଶୁଭ୍ରା, ରେଡ଼ିଓ ଷ୍ଟେସନରୁ ଗାଡ଼ି ଆସିଗଲାଣି । ତୁମ ଡିପାର୍ଟମେଣ୍ଟ ଗେଟ୍ ପାଖରେ ଠିଆ ହୋଇଛି । ମୁଁ ଆଉ ଅପେକ୍ଷା କରିବ କାହିଁକି ? ପାଞ୍ଚମିନଟ ଗୁଡ଼ି ଡ଼ିପାର୍ଟମେଣ୍ଟରୁ ଆସୁଛି । ଡକଟର ଦାସ କ୍ଲାସରୁ ଆସନ୍ତୁ ।"

"ନାଇଁ, ନାଇଁ ମେଡେମ । ଆପଣ ଦୟାକରି ଏଠି ବସନ୍ତୁ । ଆପଣ ନ ବସିଲେ ସାର୍ ଜାଣିଲେ ରାଗିବେ ।" ଡକଟର ମହାନ୍ତିଙ୍କୁ ବସାଇ ବସାଇ ଶୁଭ୍ରା ପଚାରିଲା, "ଆପଣଙ୍କ ପାଇଁ ଟି' ନା କଫି ମଗାଇବ ମେଡେମ୍ ?"

"ନାଇଁ, ଥାଉ, ତୁମ ସାର୍ ଆସନ୍ତୁ ।"

ଦେବସ୍ମାନବାବୁଙ୍କ ରୁମ୍‌ରେ ବସି ଏକ ଇଂରାଜୀ ମେଗାଜିନ୍ ରେଖାଦେବୀ ଓଲଟାଉଛନ୍ତି । ହଠାତ୍ ଦେବସ୍ମାନବାବୁ ରୁମ୍ ଭିତରକୁ ପଶି ଆସିଲେ ।

"ଆରେ ଡକ୍ଟର ମହାନ୍ତି ଯେ ? ଆପଣ ଏତେବେଳୁ କ'ଣ ଆସିଗଲେଣି ? ବେଳ ହୋଇଗଲାଣି ନା କଅଣ ?"

ରେଖାଦେବୀ ଡକ୍ଟର ଦାସଙ୍କୁ ଅନାଇଦେଇ, "ଏ କ'ଣ ଡକ୍ଟର ଦାସ । ଆପଣଙ୍କ ମୁଣ୍ଡବାଳ କ'ଣ ଧଳା ପଡ଼ିଗଲାଣି । ଆପଣ କ'ଣ ବୁଢ଼ା ହୋଇଗଲେଣି ନା କ'ଣ ? ଭକ୍ତକବିଙ୍କ ଭାଷାରେ, "ନୁହେଁ ବୃଦ୍ଧ ସେହି ଜନ ଶୁକ୍ଳକେଶ ଅଟେ ଯା'ର ଶିର, ଯୌବନେ ଯେ ଜ୍ଞାନେ ରତ ଦେବେ ତାଙ୍କୁ ବୋଲନ୍ତି ସ୍ଥବିର ।" ଆପଣ ସେହି ସ୍ଥବିର ପାଲଟିଗଲେଣି ନା କଅଣ ?"

"ଓଃ, ଚକ୍‌ଗୁଣ୍ଡ ବ୍ଲାକ୍‌ବୋର୍ଡ଼ରୁ ପଡ଼ିଯାଇଛି ବୋଧେ ?"

"ଆପଣଙ୍କ ମୁଣ୍ଡଭଳି ସୃଷ୍ଟି ମଧ୍ୟ ଚକ୍‌ଗୁଣ୍ଡରେ ପୂର୍ଣ୍ଣ । ଆପଣଙ୍କର ସେହି ରଭଲବିଂ ବ୍ଲାକ୍‌ବୋର୍ଡ଼୍ ନାହିଁ ନା କଅଣ ? ସେଥିରେ ଲେଖିଲେ ଚକ୍‌ଗୁଣ୍ଡ ନିଜ ଉପରେ ପଡ଼େ ନାହିଁ ପରା ?"

"ହଁ, ଡକ୍ଟର ମହାନ୍ତି, ସେ ବ୍ଲାକ୍‌ବୋର୍ଡ଼୍‌ରେ ଲେଖିବା ଦରକାର ପଡ଼େନି । ତେଣୁ ଚକ୍‌ଗୁଣ୍ଡ ଉଡ଼ିବ କାହିଁକି ? ସେ ବ୍ଲାକ୍‌ବୋର୍ଡ଼୍‌ଟା ଖରାପ ହୋଇ ଯାଇଥିବାରୁ ମୁଁ ଅନ୍ୟ ଏକ ବକ୍ତୃତାଗୃହରେ କ୍ଲାସ୍ ନେଉଥିଲି । ସେଠି ସାଧାରଣ ବ୍ଲାକ୍‌ବୋର୍ଡ଼୍ । ଆମ ଡିପାର୍ଟମେଣ୍ଟର ଆଗ ହେଡ଼୍ ହାର୍‌ଭାର୍ଡ଼୍‌ର ଷ୍ଟୁଡେଣ୍ଟ ଥିଲେ ତ, ସେ ସେଠାକାର ଷ୍ଟାଇଲରେ ଏହି ରଭଲଭିଂ ବ୍ଲାକ୍‌ବୋର୍ଡ଼୍ ଏଠି ତିଆରି କରାଇଥିଲେ । ସେଥିରେ କ'ଣ ଖରାପ ହୋଇଛି କେଜାଣି ଆମ ମେକାନିକ ସଜାଡ଼ିପାରୁନି । ସେ କହୁଛି, ପୂରା ଖୋଲିଲେ ଯାଇ ହେବ ।"

"ଆପଣ ଯେତେବେଳେ କହିଦେଲେ ନା ମୋ ବାଳ ପାଚିଗଲାଣି ବୋଲି, ମୋ ହାଲକ ଶୁଖିଗଲା ରେଖାଦେବୀ ।" ହସି ହସି କହିଲେ ଦେବସ୍ମାନବାବୁ, "ଭାବିଲି, ଆଁ, ମୁଁ

ବୁଢ଼ା ହୋଇଗଲଣି ଏତେଶୀଘ୍ର ? ମୋତେ ତା'ହେଲେ ବସ୍ତହେବା ପାଇଁ ଝିଅ ଦେବ କିଏ ?"

"ଆପଣ ମନ କରି ବସ୍ତ ହେଉନାହାନ୍ତି ନା, ନ ହେଲେ ଆପଣଙ୍କୁ ଝିଅ ନ ଦେବ କିଏ ? ଆପଣଙ୍କୁ ବସ୍ତ ହେବାପାଇଁ କେତେ ଝିଅ ଯେ ଲାଇନ୍ ଦେଇଛନ୍ତି, ସେ ଖବର ଆପଣ ରଖିବେ କୁଆଡ଼ୁ ?"

"କିଏ କାହିଁକି ଲାଇନ୍ ଦେବ ଆଜ୍ଞା ? ମିଛ କଥା । ଯାହାଙ୍କ ବରଣମାଳାକୁ ପ୍ରତୀକ୍ଷା କରି କରି ବୟସ ଗଡ଼ିଗଲା, ସେ ତ ଅନ୍ୟ ବେକରେ ବରଣମାଳା ଗଳାଇଦେଲେ । ସେହି ବରଣମାଳାକୁ ଧାରଣ କରିବାର ସୌଭାଗ୍ୟ ଏ ଅଧମ ବେକକୁ ତ ମିଳିଲା ନାହିଁ ?" ଆହୁରି ଜୋରରେ ହସି ହସି କହିଲେ ଦେବସ୍ମାନବାବୁ ।

"ବ୍ରିଟିଶ୍ ସୁନ୍ଦରୀ ତଥା ଗୁଣମୁଗଧାମାନେ ଯେଉଁ ବେକରେ ସ୍ୱର୍ଣ୍ଣରଞ୍ଜିତ ବରଣ-ମାଳା ଦେବାକୁ ସାହସ କରି ପାରିଲେନି, ସେହି ବେକରେ ବରଣମାଳା ଦେବାକୁ ଆଉ କାହାର ସାହାସ ହେବ କହିଲେ ଦେବସ୍ମାନବାବୁ ?"

"ଥାଉ ଥାଉ ରେଖାଦେବୀ ।" ହସି ହସି କହିଲେ ଦେବସ୍ମାନବାବୁ । "ଆପଣ ତ ଆଗରୁ ଏତେ କବାବସୁଆଲ କରି କଥାବାର୍ତ୍ତା କରୁ ନ ଥିଲେ । ଆମେରିକାରୁ ପିଏଇଚ୍.ଡ଼ି. କରି ଆସିବାପରେ ଆପଣଙ୍କ ପ୍ରଗଲ୍‌ଭତା ଟିକିଏ ବଢ଼ିଯାଇଛି ବୋଧେ । ଆପଣ ଟୀ' କଫି ଖାଇଲେଣି ନା ନାହିଁ ? ମୋ ପିଲାମାନେ ଆପଣଙ୍କୁ ଯଥାବିଧି ଚର୍ଚ୍ଚା କରି ନାହାନ୍ତି ନା କଅଣ ?"

"ଆପଣଙ୍କ ଗୃହିଣୀ ଶୁଭ୍ରା ମୋତେ ତ ଏଠି ବସାଇ ଦେଇଯାଇଛି । ଏଠି ବସାଇଲା ବେଳେ ପଚାରୁଥିଲା, ଟୀ' କି କଫି ଆଣିବ ବୋଲି । ମୁଁ କହିଲି, ଡକ୍ଟର ଦାସ ଆସନ୍ତୁ, ସେ ଯାହା ଖାଇବେ ସେଇଆ ମଗାଇବ ।"

ଦେବସ୍ମାନବାବୁ କଲିଂବେଲ୍ ଚିପିଲେ । ଶୁଭ୍ରା ଆସି ଠିଆ ହେଲା ।

"ତୁମେ ଡକ୍ଟର ମହାନ୍ତିଙ୍କ ପାଇଁ ଚାହା କି କଫି କ'ଣ କିଛି ମଗାଇ ନାହଁ ଶୁଭ୍ରା ?"

"ମେଡେମ୍ କହିଲେ, ଆପଣ କ୍ଲାସ୍‌ରୁ ଆସନ୍ତୁ, ଆପଣ ଯାହା ଖାଇବେ ସେଇଆ ମଗା ହେବ । ଆପଣ ତ ଏତେବେଳେ ଚାହା ଖାଆନ୍ତିନି, କଫି ଖାଆନ୍ତି । ମୁଁ ଦୁଇକପ୍ କଫି ପାଇଁ ବରାଦ କରି ଦେଇଛି । ହେଇ ଆସିଗଲାଣି ।"

"ଆପଣ ଶକ୍ତି ଅନାଟନର କେଉଁ କେଉଁ ଦାଗ ଉପରେ କହିବେ ରେଖାଦେବୀ, ଠିକ୍ କରିଛନ୍ତି ତ ?" ଶୁଭ୍ରା ହାତରୁ କଫି ନେଇ ନେଇ ଦେବସ୍ମାନବାବୁ ପଚାରିଲେ ।

କଫି କପ୍‌ରେ ଓଠ ଲଗାଇ ଲଗାଇ ରେଖାଦେବୀ କହିଲେ, "ହଁ, ଠିକ୍ କରିଛି ଯେ, ହେଲେ ଓଡ଼ିଆରେ କହିପାରିବି କି କଅଣ ଜାଣିପାରୁନି । ତେବେ ଆପଣ ତ ସେଥିରେ

ଧୁରନ୍ଧର । ମୋର ଯଦି କେଉଁଠି ଓଡ଼ିଆରେ କିଛି ଭୁଲ୍‌ଭଟକା ହୋଇଯାଏ, ଆପଣ ଟିକିଏ ଦୟାକରି ସଂଶୋଧନ କରିଦେବେ ଦେବସ୍ମାନବାବୁ ।”

“ମୁଁ ଆପଣଙ୍କୁ କେତେଥର କହିଛି ଡକ୍‌ଟର ମହାନ୍ତି, ଓଡ଼ିଆରେ ଟିକିଏ ଲେଖାଲେଖି କରନ୍ତୁ । ପର ଦେଶର ଭାଷାରେ ଆଉ କେତେଦିନ ଗୁଜୁରାଣ ମେଣ୍ଟାଇବେ । ଏତେଦିନ ତ ମେଣ୍ଟାଇଲେ, ଦିନେ ତ ନିଜ ଭାଷାରେ ସବୁକିଛି କରିବାକୁ ପଡ଼ିବ ? ଯେତେଶୀଘ୍ର ସେ ଭାଷାକୁ ଗ୍ରହଣ କରିବା, ସେତେ ଦେଶ ପାଇଁ ମଙ୍ଗଳ । ଆପଣ ମୋ କଥା ଶୁଣିଲେ କାହିଁ ? ମୁଁ କେତେଥର କହିଛି, ଆପଣ ବିଜ୍ଞାନ ପ୍ରଚାର ସମିତିର ସଭ୍ୟ ହୁଅନ୍ତୁ । ସେଠି ସମସ୍ତେ ବିଜ୍ଞାନ ବିଷୟକୁ ଓଡ଼ିଆରେ ଲେଖାଲେଖି କରିବା ଦେଖିଲେ, ଆପଣ ମଧ୍ୟ ଓଡ଼ିଆରେ ଲେଖିବାକୁ ଚେଷ୍ଟା କରିବେ । ଆପଣ କହିଥିଲେ, ଆମେରିକାରୁ ଫେରିଲେ ମେମ୍ବର ହେବେ ବୋଲି । ଆମେରିକାରୁ ଆସିବା ତ ଦୁଇବର୍ଷ ହୋଇଗଲାଣି, ମେମ୍ବର ହେଉଛନ୍ତି କାହିଁ ?”

“ହେଲାରୁ ମୁଁ ମେମ୍ବର ହୋଇପାରିନି ଦେବସ୍ମାନବାବୁ । କ୍ଷମା କରିବେ, ଏଥର ନିଶ୍ଚୟ ହେବ ।”

“ସତରେ ରେଖାଦେବୀ, ପର ଦେଶର ଭାଷାକୁ ମୁହଁରେ ବୋଲି ବୋଲି ଆଉ କେତେଦିନ ଗୋଲାମୀ କରିବା କହିଲେ ? ଶହ ଶହ ବର୍ଷ ତ ଗୋଲାମୀ କରି ଆସିଲେ । ଦେଶ ସ୍ୱାଧୀନ ହେଲା, ହେଲେ ଆମର ଭାଷା ଗୋଲାମୀ ଯାଉଛି କାହିଁ ? ସବୁଆଡ଼େ ଇଂରାଜୀ । ଏମିତିକି ସରସ୍ୱତୀ ପୂଜା, ଗଣେଶ ପୂଜା, ବିଭାଘର କାର୍ଡ଼ ଛପା ଯାଉଛି ଇଂରାଜୀରେ । ବିଭାଘରଟା ଇଂରାଜୀ ପଦ୍ଧତିରେ କାହିଁକି କରା ନ ହେଉଛି ମୁଁ ବୁଝି ପାରୁନି । ସେତିକି ତ କରିଦେଲେ ସବୁ ଛୁଡ଼ି ଯା'ନ୍ତା । ଗୋଲାମୀ, ଗୋଲାମୀ, ଗୋଲାମୀ । ଗୋଲାମୀର ଏକ ସୀମା ଅଛି । ଆମେ ସେ ସୀମା ବାହାରକୁ ଚାଲିଗଲେଣି ରେଖାଦେବୀ । ବ୍ୟାସକବି ଫକୀର ମୋହନ ଉତ୍କଳାଟାରେ କହିଥିଲେ ନା—

“ପଢ଼ ଇଙ୍ଗରେଜି କେହି ମନା କରୁ ନାହିଁ
କିନ୍ତୁ ବାପା କାମ କର ଜାତି କୁଳ ଚାହିଁ ।
ଘୃଣା କରୁଅଛ ମାତୃଭାଷା ପଢ଼ିବାକୁ
ହାୟ ହାୟ ଲାଜ କଥା କହିବି କାହାକୁ ?

× × ×

ଭଲ ଗୋଟେ ମାତୃଭାଷା କି ହୋଇବ ଭାଇ
ଚାଲି ଯାଉଅଛି କାମ ଠୁଣ୍ଡାଇ ପୁଣ୍ଡାଇ
କୁକୁର କାଁ ପାଇ ଗୋଟେ ବନାଇବ ଘର
ଘୁଞ୍ଚିବୁଲେ ବାରମିଶା ଅଇଁଠା ପତର ।”

× × × ×

କଟକ ଆକାଶବାଣୀର ଏୟାର୍‌କଣ୍ଡିସନ୍‌ଡ୍ ବକ୍ତୃତା ଷ୍ଟୁଡିଓ । ଘୋଷିକା ସୂଚାଇ-ଦେଲେ, ଆକାଶବାଣୀରେ ବର୍ତ୍ତମାନ ଆଲୋଚନା କରୁଛନ୍ତି ରେଭେନ୍‌ସା କଲେଜର ରସାୟନ ଅଧ୍ୟାପକ ଡକ୍ଟର ଦେବସ୍ମାନ ଦାସ ଓ ପଦାର୍ଥ ବିଜ୍ଞାନ ଅଧ୍ୟାପିକା ଡକ୍ଟର ରେଖା ମହାନ୍ତି । ବିଷୟବସ୍ତୁ ହେଉଛି, "ଶକ୍ତି ଓ ଇନ୍ଧନର ସମ୍ଭାବ୍ୟ ସମାଧାନ ।

ପ୍ରଥମେ ଦେବସ୍ମାନବାବୁ ଆରମ୍ଭ କଲେ, "ବର୍ତ୍ତମାନ ସାରା ପୃଥିବୀରେ ଶକ୍ତିର ଅଭାବ ଏକ ବଡ଼ ସମସ୍ୟା ହୋଇ ଠିଆ ହୋଇଛି । ବିଦ୍ୟୁତ୍‌ଶକ୍ତି ନାହିଁ, ଦିନସାରା ବିଜୁଳି କାଟ । ଖରାଦିନେ ଦ୍ୱିପ୍ରହରେ ବିଜୁଳିକାଟ ଯୋଗୁଁ ଲୋକେ ଗରମରେ କି କଲବଲ ହେଉଛନ୍ତି କାହାରିକୁ ଅଜଣା ନାହିଁ । ବିଜୁଳିକାଟ ଯୋଗୁଁ କଳରେ ପାଣି ଆସୁନି । ଅଣ୍ଡା ପାଣିମୁନ୍ଦାଏ ମିଳୁନି ପିଇବାକୁ । ଡାକ୍ତରଖାନାରେ ଅପରେସନ ବନ୍ଦ ହୋଇ-ଯାଉଛି । ରୋଗୀ କଷ୍ଟରେ କଲବଲ ହେଉଛି ।

ସାରା ପୃଥିବୀରେ ଖାଲି ବିଦ୍ୟୁତ୍‌ଶକ୍ତି କାହିଁକି ପେଟ୍ରୋଲ ଓ କୋଇଲାର ଯେଉଁ ଅଭାବ ଦେଖାଦେଇଛି, ସେଥିରୁ ମନେହେଉଛି ଏଇ ସଭ୍ୟତା ବେଶିଦିନ ତିଷ୍ଠିବ କି ନାହିଁ ସନ୍ଦେହ । ପେଟ୍ରୋଲ ଓ କୋଇଲା ଅଭାବ ସାଙ୍ଗକୁ ବୃଷ୍ଟିପାତର ଅନିୟମିତତା ନଦୀବନ୍ଧ ଯୋଜନାମାନଙ୍କରେ ଏକ ସମସ୍ୟା ସୃଷ୍ଟି କରିଛି । ପ୍ରତିବର୍ଷ ଯଦି ଆଶାନୁରୂପ ବୃଷ୍ଟି ନ ହୁଏ, ତେବେ ପୃଥିବୀର ଜଳବିଦ୍ୟୁତ୍ ଯୋଜନାମାନ ଅକାମୀ ହୋଇପଡ଼ିବ । ଆମ ଭାରତବର୍ଷରେ ଗତ କେତେବର୍ଷ ଧରି ଯାହା ହେଉଛି, ସେଥିରେ ଜଳବିଦ୍ୟୁତ୍ ଯୋଜନା ଉପରେ ବିଶ୍ୱାସ ଆସିବ କୁଆଡ଼ୁ ? ଏବର୍ଷ ଭଲ ବର୍ଷା ହେଲାନି, ନଦୀବନ୍ଧରେ ଆଶାନୁରୂପ ଜଳ ସଞ୍ଚିତ ହୋଇପାରିଲା ନାହିଁ, ବିଦ୍ୟୁତ୍ ଉତ୍ପାଦନରେ ବାଧା ପଡ଼ିବ । ଫଳରେ ବିଦ୍ୟୁତ୍ ସରବରାହରେ କଟକଣା ଜାରି ହେବ । କଲକାରଖାନାମାନଙ୍କୁ ବିଦ୍ୟୁତ୍ ଯୋଗାଣ ବନ୍ଦ ହୋଇଯିବ । ଫଳରେ କାରଖାନା ଆଉ ଚାଲି ପାରିବନି । ଶ୍ରମିକମାନେ ବେକାର ହେବେ । ଦେଶର ଆର୍ଥିକ ଦୁର୍ଗତି ବଢିଯିବ । ଆମ ଦେଶରେ ଖାଲି ଏ ସମସ୍ୟା ନୁହେଁ, ଏ ସମସ୍ୟା ସାରା ପୃଥିବୀରେ । ପେଟ୍ରୋଲ, କୋଇଲା, ନଦୀବନ୍ଧ ଯୋଜନାକୁ ଛାଡ଼ିଦେଲେ ବିଦ୍ୟୁତ୍ ଉତ୍ପାଦନ ପାଇଁ ସେମିତି କିଛି ସହଜ ପନ୍ଥା ନାହିଁ । ପାରମାଣବିକ ଶକ୍ତି ସାହାଯ୍ୟରେ ବିଦ୍ୟୁତ୍ ଉତ୍ପାଦନ ହୋଇପାରିବ । ପୃଥିବୀରେ ଆମ ଦେଶ ସମେତ ବହୁ ଦେଶରେ ଏହା ହେଲଣି, ହେଲେ ଏହା ସମୁଦ୍ରକୁ ଶଙ୍ଖେ ପଣାପରି କିଛି ନୁହେଁ । ତା'ଛଡ଼ା ପାରମାଣବିକ ଶକ୍ତି ସାହାଯ୍ୟରେ ବିଦ୍ୟୁତ୍ ଉତ୍ପାଦନରେ ସମସ୍ୟା ମଧ୍ୟ ବହୁତ । ତାହାକିଛି ସହଜସୁଲଭ ବ୍ୟବସ୍ଥା ନୁହେଁ ! ବର୍ତ୍ତମାନ ଜଣାପଡ଼ୁଛି ଏହି ସ୍ଥିତାବସ୍ଥା ଯଦି କିଛିଦିନ ଲାଗିରହେ, ଆଉ ୩୦।୪୦ ବର୍ଷ ପରେ ବିଦ୍ୟୁତ୍ ଉତ୍ପାଦନ ପୁରାପୁରି କମିଯିବ । ଆମକୁ ପୁଣି ହଜାର ହଜାର ବର୍ଷ ତଳର ପୁରାତନ ଅନ୍ଧକାର ଯୁଗକୁ ଫେରିଯିବାକୁ ପଡ଼ିବ । ଲୋକେ ପୁଣି ଦୀପଜାଳି ଅନ୍ଧାର ଦୂର କରିବେ । ଲୋକେ ସନ୍ଧ୍ୟାପୂର୍ବରୁ ଖିଆପିଆ ଓ ଅନ୍ୟାନ୍ୟ କାମସାରି ଶୋଇ ପଡ଼ିବେ । ସହର, ବଜାର, ସିନେମା, ଥିଏଟର, ରାସ୍ତାଘାଟ ସବୁ ଅନ୍ଧାର ହୋଇଯିବ ।

ଇନ୍ଧନ ଅଭାବରୁ ଯାନବାହନ ଚାଲି ପାରିବନି । ପୃଥିବୀରେ ଯିଏ ଯେଉଁଠି ଜନ୍ମ ହୋଇ-ଥିବେ, ସେହିଠି ରହିଯିବେ । ଗ୍ରାମାଞ୍ଚଳର ଖାଦ୍ୟ ସହରକୁ ଆସି ପାରିବନି । ସହରର ଲୋକେ ଖାଦ୍ୟାଭାବରୁ ମରିଯିବେ ।

ବର୍ତ୍ତମାନ ପ୍ରଶ୍ନ ଉଠୁଛି, ଆମେ ଯିନା କଳ୍ପନା କରିଗଲେ ବିଦ୍ୟୁତ୍ ଉତ୍ପାଦନ ବନ୍ଦ ହୋଇଗଲେ, ପେଟ୍ରୋଲିୟମ୍ ଓ କୋଇଲା ଶେଷ ହୋଇଗଲେ ଏଭଳି ଅବସ୍ଥା ପୃଥିବୀରେ ଉପୁଜିବ, କିନ୍ତୁ ପ୍ରକୃତିରେ ଏହା ହେବ କି ? ବିଜ୍ଞାନ କ'ଣ ଏତେ ସହଜରେ ହାର୍ ମାନିଯିବ ? ପେଟ୍ରୋଲିୟମ୍, କୋଇଲା, ଜଳବିଦ୍ୟୁତ୍ ପୃଥିବୀପୃଷ୍ଠରୁ ସରିଗଲେ ପୃଥିବୀର ଜନସମାଜ କ'ଣ ଧ୍ୱଂସ ପାଇଯିବ ? ବହୁ ବୈଜ୍ଞାନିକ କହୁଛନ୍ତି, ପୃଥିବୀପୃଷ୍ଠରୁ ସେସବୁ ସରିଗଲେ ମଧ୍ୟ ଆମେ ଅନ୍ଧାରିଯୁଗକୁ ଫେରିଯିବା ନାହିଁ । ଶକ୍ତି ଉତ୍ପାଦନର ଅନ୍ୟ ବହୁ ବାଟ ବିଜ୍ଞାନ ବର୍ତ୍ତମାନ ବାହାର କରି ସାରିଲାଣି । କୋଇଲା, ପେଟ୍ରୋଲିୟମ୍ ଆଦି ସରିଗଲେ ମଧ୍ୟ ଆମେ ବିଦ୍ୟୁତ୍ ଉତ୍ପାଦନ କରିବା ସୌରଶକ୍ତିରୁ, ସମୁଦ୍ର ଜୁଆର ତଥା ଲହଡ଼ିରୁ, ପବନ ବତାସରୁ, ଭୂମିତଳ ତାପଶକ୍ତିରୁ । ଏହି ଉତ୍ସଗୁଡ଼ିକ ଏ ପର୍ଯ୍ୟନ୍ତ ବ୍ୟବହୃତ ହୋଇନି । କୋଇଲା ଓ ପେଟ୍ରୋଲିୟମ୍ ଥିବାରୁ ଏହି ଉତ୍ସ କଥା କେହି ପଚାରୁ ନାହାନ୍ତି । କିନ୍ତୁ ସେସବୁ ସରିଗଲେ, ଏହି ଉତ୍ସଗୁଡ଼ିକ ହିଁ ଆମକୁ ଯଥେଷ୍ଟ ଶକ୍ତି ଯୋଗାଇପାରିବ ।

ଡ଼କ୍ଟର ରେଖା ମହାନ୍ତି ଆରମ୍ଭ କଲେ, "ସେହିସବୁ ଉତ୍ସ ଭିତରୁ ସୌରରଶ୍ମି ଏକ ପ୍ରଧାନ ଉତ୍ସ । ସୂର୍ଯ୍ୟରଶ୍ମିରୁ ଯେଉଁ ଶକ୍ତି ଆହରଣ କରାଯିବ, ସେହି ଶକ୍ତି ଆମର ଭାତ ରନ୍ଧାଠାରୁ ଆରମ୍ଭ କରି ପାଣି ଗରମ କରିବା, ଘରକୁ ଶୀତତାପ ନିୟନ୍ତ୍ରିତ କରିବା, ଅଟା ପେଷିବା, ଚାଉଳ ପେଷିବା, କୂଅରୁ ପାଣି ଉଠାଇ କ୍ଷେତରେ ମଡ଼ାଇବା ପର୍ଯ୍ୟନ୍ତ ସବୁ କାମ କରିପାରିବ । ପ୍ରତ୍ୟେକଙ୍କ ଘରେ ଗୋଟିଏ ଗୋଟିଏ ଛୋଟ ସୌର ବିଦ୍ୟୁତ୍‌କେନ୍ଦ୍ର ପ୍ରତିଷ୍ଠିତ ହେବ ସେମାନଙ୍କ ଘରର ଛାତ ଉପରେ । ସେଇ କେନ୍ଦ୍ର ଦିନବେଳେ ସୂର୍ଯ୍ୟ କିରଣରୁ ଯଥେଷ୍ଟ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରି ସଞ୍ଚିତ କରି ରଖିବ । ରାତି ହେଲେ ସେହି ଶକ୍ତିକୁ ବ୍ୟବହାର କରି ଆମେ ଘରର ଆଲୋକବତ୍ତୀ ଜଳାଇ ପାରିବୁ, ପଙ୍ଖା ଚଳାଇ ପାରିବୁ । ଏହି ଶକ୍ତି ଆମର ରେଡ଼ିଓ, ଟେଲିଭିଜନ ଆଦିକୁ ଚଳାଇବ । ଘରର ଚୂଲୀକୁ ରାତିରେ ଜଳାଇ ଆମ ପାଇଁ ଖାଦ୍ୟ ତିଆରି କରିବ । ଆମ ଘରେ ବିଦ୍ୟୁତ୍‌ଶକ୍ତିର ଯାବତୀୟ ବ୍ୟବହାର ଏହି ସୌରଶକ୍ତିରୁ ଜାତ ବିଦ୍ୟୁତ୍‌ଶକ୍ତିରୁ ହିଁ ହେବ । ତା'ଛଡ଼ା ବଡ ବଡ଼ କଳକାରଖାନା ବଡ଼ ଆକାରରେ ସୌରଶକ୍ତିରୁ ବିଦ୍ୟୁତ୍ ଉତ୍ପାଦନ କରି ସେମାନଙ୍କ ଆବଶ୍ୟକତା ମେଣ୍ଟାଇବେ । ସୌରଶକ୍ତି ସାହାଯ୍ୟରେ କାର୍, ବସ୍, ଟ୍ରକ୍ ଆଦି ଚାଲି ପାରିବ । ଏହି କିଛିଦିନ ତଳେ ଅଷ୍ଟ୍ରେଲିଆରେ ସୌରଶକ୍ତି ଚାଳିତ କାର୍‌ର ଏକ ୩୦୦୦ ମାଇଲ ଦୌଡ଼ ପ୍ରତିଯୋଗିତା ହୋଇଥିଲା । ସୌରଶକ୍ତିରୁ ଶକ୍ତି ଗ୍ରହଣ କରି ଗାଡ଼ିସବୁ ହଜାର ହଜାର ମାଇଲ ଅତିକ୍ରମ କରି ପ୍ରତିଯୋଗିତାରେ ଭାଗ ନେଇଥିଲେ ।

ଏତଦ୍‌ବ୍ୟତୀତ ସ୍ଥାନେ ସ୍ଥାନେ ଭୂମିତଳ ଗଭୀରକୁ ବଡ଼ ବଡ଼ ପାଇପ୍ ପଠାଇ ସେଥିଭିତରେ ଜଳ ପୂରାଇ ସେହି ଜଳକୁ ଭୂମିତଳର ତାପଶକ୍ତି ସାହାଯ୍ୟରେ ଉତ୍ତପ୍ତ ବାଷ୍ପରେ ପରିଣତ କରାଇହେବ । ଏହି ଉତ୍ତପ୍ତ ଜଳୀୟବାଷ୍ପ ଆଉ ଏକ ପାଇପ୍‌ରେ ବାହାରି ପୃଥିବୀ ପୃଷ୍ଠରେ ଥିବା ଏକ ବାଷ୍ପୀୟ ଇଞ୍ଜିନ୍‌କୁ ଚଳାଇବ । ଏହି ବାଷ୍ପୀୟ ଇଞ୍ଜିନ୍ ତତ୍ପରେ ଡାଇନେମୋକୁ ଚଳାଇ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରିବ । ଏହି ଉପାୟ ଅବଲମ୍ବନ କରି ଯେଉଁଠି ଭୂତ୍ୱକ ପାତଳା, ଯେଉଁଠି ଉଷ୍ଣ ପ୍ରସ୍ରବଣ ଆଦି ଅଛି ସେଠି ତାପବିଦ୍ୟୁତ୍ କାରଖାନାମାନ ବସାଇ ହେବ । ଭୂମି ତଳର ଉତ୍ତାପ ଏଠାରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରି ଚାଲିବ ।

ତା'ଛଡ଼ା ସମୁଦ୍ର ଭିତରେ ସ୍ଥାନେ ସ୍ଥାନେ ବିଦ୍ୟୁତ୍ କାରଖାନା ବସାଯାଇ ସମୁଦ୍ରର ଗଭୀରଜଳର ତାପ ନ୍ୟୂନତା ଓ ଉପର ଜଳରେ ଉଷ୍ଣତାର ସୁବିଧା ନେଇ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରି ହେବ ।

ତା'ଛଡ଼ା ସମୁଦ୍ରର ଜୁଆରରୁ ଏପରି କି ସମୁଦ୍ର ଲହଡ଼ିରୁ ମଧ୍ୟ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରି ହେବ । ତା'ଛଡ଼ା ଦେଶର ଯେଉଁଠାରେ ପବନ ପ୍ରବଳ ଭାବରେ ବହେ, ସେସବୁ ସ୍ଥାନରେ ପବନ ସାହାଯ୍ୟରେ ଡାଇନେମୋକୁ ଘୂରାଇ ଆଶାଜନକ ଭାବରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରି ହେବ । ଯେଉଁସବୁ ସ୍ଥାନରେ ଉପରୋକ୍ତ ଉପାୟରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନର ସୁବିଧା ନାହିଁ, ସେସବୁ ସ୍ଥାନରେ ପାରମାଣବିକ ରିଆକ୍ଟର ବସାଇ ଆମ ଦେଶର ତାରାପୁରଠାରେ ଯେମିତି ବିଦ୍ୟୁତ୍‌ଶକ୍ତି ପରମାଣୁ ଶକ୍ତିରୁ ଉତ୍ପାଦିତ ହେଉଛି, ସେମିତି ଉତ୍ପାଦନ କରି ହେବ । ବର୍ତ୍ତମାନ ପୃଥିବୀର ବହୁ ଦେଶରେ ଆବଶ୍ୟକୀୟ ତେଲ ବା କୋଇଲା ମିଳୁ ନ ଥିବାରୁ ପରମାଣୁ ଶକ୍ତିରୁ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରାଯାଉଛି । ଭବିଷ୍ୟତରେ ପୃଥିବୀର ସବୁ ଦେଶରେ ଏହା ଚାଲିବ । ଯେଉଁ ପରମାଣୁ ଶକ୍ତି ପରମାଣୁ ବୋମାରେ ବ୍ୟବହୃତ ହୋଇ ଧ୍ୱଂସର ତାଣ୍ଡବଲୀଳା ନାଗାସାକି ହିରୋସିମା ଉପରେ ଚଳାଇଥିଲା, ସେହି ଆସୁରିକ ପରମାଣୁ ଶକ୍ତିକୁ ଆମେ ଶାନ୍ତି କାମରେ ଲଗାଇ ସେଥିରୁ ପର୍ଯ୍ୟାପ୍ତ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରି ପାରିବା । ସେହି ଶକ୍ତି ହେଉଛି ବିଯୋଜନ ଶକ୍ତି ।

ଡକ୍ଟର ଦାସ ପୁଣି କହିଲେ, "ଏସବୁଛଡ଼ା ସହଜ ସୁଲଭ ଶସ୍ତା ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ପାଇଁ ଆଉ ଏକ ଉପାୟ ଅଛି । ତାହା ହେଉଛି ସଂଯୋଜନ ପ୍ରକ୍ରିୟା ସାହାଯ୍ୟରେ ପରମାଣୁରୁ ଶକ୍ତି ଉତ୍ପାଦନ । ଉଦ୍‌ଜାନ ବୋମାରେ ଯେଉଁ ଉପାୟରେ ବିରାଟ ଶକ୍ତି ଉତ୍ପାଦିତ ହେଉଛି, ସେହି ଉପାୟକୁ ନିୟନ୍ତ୍ରିତ ପଦ୍ଧତିରେ ଅନୁସରଣ କରି ଅପର୍ଯ୍ୟାପ୍ତ ପରିମାଣର ଶସ୍ତା ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରି ହେବ । ଏଥିପାଇଁ ଯେଉଁ ଭାରି ଉଦ୍‌ଜାନ ମୂଳବସ୍ତୁ ଭାବରେ ଦରକାର, ତାହା ଆମର ସମୁଦ୍ରଜଳରେ ଯଥେଷ୍ଟ ରହିଛି । ସମୁଦ୍ରଜଳରୁ ଭାରି ଉଦ୍‌ଜାନ ଅଲଗା କରି ସେଥିରୁ ସଂଯୋଜନ ପ୍ରକ୍ରିୟା ସାହାଯ୍ୟରେ ଆଶାତୀତ ପରିମାଣରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରାଯାଇ ପାରିବ । ଏହି ଯେଉଁ ବିଦ୍ୟୁତ୍-

ଶକ୍ତି ଉତ୍ପାଦିତ ହେବ, ତାହା ହେବ ଖୁବ୍ ଶସ୍ତା, ବର୍ତ୍ତମାନର ବିଦ୍ୟୁତ୍‌ଶକ୍ତି ମୂଲ୍ୟର ଶହେ ଭାଗରୁ ଏକ ଭାଗ କି ତା'ଠାରୁ ଢେର୍ କମ୍ । ଏହି ଉପାୟରେ ଯଦି ଶକ୍ତି ଉତ୍ପାଦନ ଚାଲେ, ତେବେ ଏହା ସାରା ପୃଥିବୀକୁ ହଜାର ହଜାର ବର୍ଷ ଧରି ଶସ୍ତା ବିଦ୍ୟୁତ୍‌ଶକ୍ତି ଯୋଗାଇପାରିବ । ପୃଥିବୀରୁ କୋଇଲା, ପେଟ୍ରୋଲିୟମ୍ ଆଦି ସରିଯାଉଛି ବୋଲି ଅଯଥା ଆତଙ୍କିତ ହେବାର କୌଣସି କାରଣ ନାହିଁ ।

ରେଖାଦେବୀ କହିଲେ, "ପୃଥିବୀରେ ବର୍ତ୍ତମାନ ଯେତେ ପ୍ରକାର ଯାନବାହାନ ବ୍ୟାବସାୟିକ ଭିତ୍ତିରେ ଚାଲୁଛି, ସେସବୁ ପ୍ରଧାନତଃ କୋଇଲା ବା ପେଟ୍ରୋଲିୟମ୍‌ରୁ ଶକ୍ତି ସଂଗ୍ରହ କରି ଚଳନ୍ତି । ରେଳଗାଡ଼ି ଭଳି, ମଟର, ବସ୍, ଟ୍ରକ୍ ଭଳି ଉଡ଼ାଜାହାଜ ହେଲିକେପ୍‌ଟର, କି ଜଳଜାହାଜ ଭଳି, ସେସବୁ କୋଇଲା ବା ପେଟ୍ରୋଲିୟମ୍ ଉପରେ ନିର୍ଭରଶୀଳ । ଆଜି ଯଦି ସେ ଦୁଇଟି ନ ମିଳେ, ପୃଥିବୀର ସବୁ ଯାନବାହାନ ଅଚଳ ହୋଇପଡ଼ିବ । ଲୋକମାନେ ଯିଏ ଯେଉଁଠି ଅଛନ୍ତି ସିଏ ସେଇଠି ରହିଯିବେ । ମଫସଲ ଲୋକେ ସହରକୁ ଆସି ପାରିବେନି କି ସହର ଲୋକେ ମଫସଲକୁ ଯାଇ ପାରିବେନି । ଫଳରେ ଖାଦ୍ୟଦ୍ରବ୍ୟ ଚାଷକ୍ଷେତରୁ ଲୋକମାନଙ୍କଠାକୁ ଆସି ପାରିବନି । ସହରର ଲୋକେ ଭୋକ ଉପାସରେ ଛଟପଟ ହୋଇ ମରିଯିବେ । ଅବଶ୍ୟ ଠାଏ ଠାଏ ବଳଦଗାଡ଼ି, ଘୋଡ଼ାଗାଡ଼ି ବା ସାଇକେଲ ଜିନିଷ ଚଳାଚଳରେ ସାହାଯ୍ୟ କରିପାରନ୍ତି, କିନ୍ତୁ ତାହା ସମୁଦ୍ରକୁ ଶଙ୍ଖେ ପାଣି ଭଳି କିଛି ନୁହେଁ । ମଣିଷ ସମାଜ ବାଧ୍ୟ ହୋଇ ବଳଦଗାଡ଼ି ଯୁଗକୁ ପୁଣି ଫେରିଯିବ । କିନ୍ତୁ ତା'ହେଲେ ବି ବର୍ତ୍ତମାନର ବିରାଟ ଜନସଂଖ୍ୟାକୁ ଆବଶ୍ୟକୀୟ ଖାଦ୍ୟପଦାର୍ଥ ଯୋଗାଇ ହେବନି, ଫଳରେ ସାରା ପୃଥିବୀରେ ଖାଦ୍ୟ ଅନାଟନ ଦେଖାଦେବ । ପୃଥିବୀର ସଭ୍ୟତା ପଙ୍ଗୁ ଅବସ୍ଥାକୁ ଚାଲି ଆସିବ । କିନ୍ତୁ ପ୍ରକୃତରେ ଏହା ହେବ କି ? ବିଜ୍ଞାନ ମଣିଷ ହାତରେ ଯେଉଁ ଅପୂର୍ବ ଶକ୍ତି ଦେଇଛି, ସେହି ଶକ୍ତି ବଳରେ ପୃଥିବୀକୁ ଏହି ଅବସ୍ଥା ଆସିବାକୁ ବ୍ୟାହତ କରାଯାଇ ପାରିବ । ପୃଥିବୀରେ ତେଲ କି କୋଇଲା ନ ମିଳିଲେ ବି ପୃଥିବୀର ଯାନବାହାନ ବନ୍ଦ ହୋଇଯିବନି ।

ଆଜିକାଲି ସୌରଶକ୍ତିକୁ ବ୍ୟବହାର କରି ମଟରଗାଡ଼ି ଚାଲିବା ଆରମ୍ଭ କଲାଣି । ଏତଦ୍‌ବ୍ୟତୀତ ବେଟେରୀଚାଳିତ ମଟରଗାଡ଼ି ଓ ବସ୍ ବଜାରକୁ ଆସିଗଲାଣି । ଏହି ବେଟେରୀଚାଳିତ ଗାଡ଼ିଗୁଡ଼ିକ ଯାନବାହନର ସମସ୍ୟା ଦୂର କରିବ । ତା'ଛଡ଼ା ଉଦ୍‌ଜାନ ଗ୍ୟାସ୍ ସାହାଯ୍ୟରେ ବସ୍, ଟ୍ରକ୍, କାର୍ ସବୁକିଛି ଚାଲିପାରିବ । ଉଡ଼ାଜାହାଜ, ହେଲିକପ୍‌ଟର, ଜଳଜାହାଜ ମଧ୍ୟ ଚାଲିପାରିବ । ଭବିଷ୍ୟତରେ ବର୍ତ୍ତମାନର ପେଟ୍ରୋଲ ବା ଡିଜେଲର ସ୍ଥାନ ନେବ ତରଳ ଉଦ୍‌ଜାନ । ସଂଯୋଜନ ପ୍ରକ୍ରିୟାରୁ ଯେଉଁ ଶସ୍ତା ବିଦ୍ୟୁତ୍‌-ଶକ୍ତି ଉତ୍ପାଦିତ ହେବ, ସେହି ଶକ୍ତିବଳରେ ଜଳକୁ ବିଘଟନ କରାଇ ଉଦ୍‌ଜାନ ଓ ଅମ୍ଳଜାନ ପ୍ରସ୍ତୁତ କରାହେବ । ସେହି ତରଳ ଉଦ୍‌ଜାନ ଓ ଅମ୍ଳଜାନ ସାହାଯ୍ୟରେ ଇଞ୍ଜିନ୍‌କୁ ଚଳାଇ ହେବ । ଫଳରେ ଏହି ଅମ୍ଳଜାନ ଓ ଉଦ୍‌ଜାନ ସାହାଯ୍ୟରେ ସବୁପ୍ରକାର

ଯାନବାହାନ ଚାଲି ପାରିବ । ଉଡ଼ାଜାହାଜ, ହେଲିକପ୍ଟରଠାରୁ ଆରମ୍ଭ କରି ବସ୍, ଟ୍ରକ୍, ଟ୍ରାକ୍ଟର, କାର୍, ଜଳଜାହାଜ ଆଦି ପୁରୁଖୁରୁରେ ଚାଲି ପାରିବ । ଉଦ୍‌ଜାନ ସାହାଯ୍ୟରେ ଚାଲିତ କାର୍ ଓ ବସ୍ ବର୍ତ୍ତମାନ ବ୍ୟବହାର ଅବସ୍ଥାକୁ ଆସି ଗଲାଣି । ସହଜ ସୁଲଭ ଉଦ୍‌ଜାନ ମିଳିଗଲେ ଏଗୁଡ଼ିକ ବ୍ୟାବସାୟିକ ଭାବରେ ରାସ୍ତାଘାଟରେ ବ୍ୟାପକ ଭାବରେ ଚାଲି ପାରିବ । ଏଭଳି ଯାନର ପ୍ରଚଳନ ହେଲେ ପରିବେଶ ପ୍ରଦୂଷଣ ଆଉ ହେବନି । କାରଣ ଉଦ୍‌ଜାନ ଦଗ୍‌ଧ ହେଲେ ଜଳ ସୃଷ୍ଟି ହେବ । ଏହା ପରିବେଶ ପ୍ରଦୂଷଣକାରୀ ନୁହେଁ ।

ଉଦ୍‌ଜାନ ଶକ୍ତି ବଳରେ ମଧ୍ୟ ରକେଟ ଓ ରକେଟ ପ୍ଲେନ୍ ଆଦି ଚାଲି ପାରିବ । ଏହି ରକେଟ ପ୍ଲେନ୍‌ର ପ୍ରଚଳନ ହେଲେ ସମୟ ଓ ଦୂରତାର ଏକ ଶୋଚନୀୟ ପରାଜୟ ଘଟିବ । ଏହି ପ୍ଲେନ୍ ଘଣ୍ଟାକୁ ଯିବ କୋଡ଼ିଏ ହଜାର ମାଇଲ ବେଗରେ । ଏହାଫଳରେ ଆମେ ପୃଥିବୀର ଯେକୌଣସି ସ୍ଥାନରେ ଅଧଘଣ୍ଟାକ ସମୟ ଭିତରେ ପହଞ୍ଚିପାରିବୁ । ବାଲିତ, ଆମେରିକା ଯିବାକୁ ଅଧଘଣ୍ଟାଏ ଲାଗିବ କି ନାହିଁ ସନ୍ଦେହ । ଏହା ଯଦି ହୁଏ, ତେବେ ଆମେ ଚାରିଟାବେଳେ କଲେଜ କିମ୍ବା ଅଫିସରୁ ଫେରି ଘରେ ଜଳଖିଆ ଖାଇ ନିଉୟର୍କ କିମ୍ବା ଲଣ୍ଡନକୁ ନାଚ ଦେଖିବାକୁଯାଇ ପାରିବା । ସେଠୁ ନାଚ ଦେଖିସାରି ରାତି ନଅଟାରେ ଘରକୁ ଫେରି ଘରେ ରାତ୍ରିଭୋଜନ ସାରି ଶୋଇପାରିବା । ଏହା ଯଦି ହୁଏ, ତେବେ ସମୟ ଓ ଦୂରତାର କି ମୂଲ୍ୟ ରହିବ ? ପୃଥିବୀ କେତେ ସଙ୍କୁଚିତ ହୋଇ ନ ଯିବ ସତେ ?

ଏ ସବୁକୁ ଛାଡ଼ି ଆଉ ଏକ ପ୍ରକାର ଛୋଟ ଛୋଟ ଫୋଲ୍‌ଡିଂ ରକେଟ ନିତିଦିନିଆ ବ୍ୟବହାରକୁ ଆସିଯିବ, ଯା'ଫଳରେ ଲୋକେ ଆଉ ଅଫିସ୍ ଦପ୍ତରକୁ ଯିବା ପାଇଁ ମଟର-ଗାଡ଼ି, ସ୍କୁଟର ଆଦିର ଆବଶ୍ୟକତା ଅନୁଭବ କରିବେନି । ଏହି ରକେଟ ଆକାରରେ ପୁଣି ଏତେ ଛୋଟ ହେବ, ଯେ ଏହା ଏକ ବ୍ରିଫ୍‌କେଶ୍ ଭିତରେ ରହିପାରିବ । ଲୋକେ ବ୍ରିଫ୍‌କେଶ୍ ଧରି ଅଫିସ୍‌କୁ ଗଲାଭଳି ଏହାକୁ ଧରି ଯିବେ । ଅଫିସ୍‌କୁ ଯିବାକୁ ହେଲେ ଘରର ଗେଟ୍ ପାଖକୁ ନ ଯାଇ ଘରର ଛାତ ଉପରକୁ ଯିବେ । ଘରର ଛାତ ଉପରେ ବ୍ରିଫ୍‌କେଶ୍‌ଟିକୁ ଖୋଲି ନିଜ ପିଠି ପାଖରେ ବାନ୍ଧି ଦେବେ । ଏହା ଭିତରେ ରକେଟ ଓ ଇନ୍ଧନ ଥିବ । ଏଥିରେ ଥିବା ଏକ ବୋତାମକୁ ଟିପିଦେଲେ ଏହାର ରକେଟ କାର୍ଯ୍ୟକାରୀ ହେବ । ଏହାଫଳରେ ଲୋକଟି ଛାତ ଉପରୁ ସୁର୍ କରି ଆକାଶକୁ ଉଠିଯିବ । ତତ୍‌ପରେ ସେ ଅନ୍ୟ ଏକ ବୋତାମ ଟିପି ଅଫିସମୁହାଁ ହୋଇ ଆକାଶରେ ଉଡ଼ି ଚାଲିବ । ଅଫିସ ପାଖ ହୋଇଗଲେ ଆଉ ଏକ ବୋତାମ ଟିପିଲେ ତଳମୁହାଁ ହୋଇ ଖସି ଆସି ଅଫିସ ଛାତ ଉପରେ ଓହ୍ଲାଇ ପଡ଼ିବ । ତତ୍‌ପରେ ପିଠିରୁ ବ୍ରିଫ୍‌କେଶ୍‌ଟିକୁ ଖୋଲି ବନ୍ଦ କରି ହାତରେ ଧରି ଅଫିସ୍ ଭିତରକୁ ଯିବ । ଘରକୁ ଫେରିଲାବେଳେ ଠିକ୍ ସେହିପରି । ଏହା ଯଦି ହୁଏ, ତେବେ ଲୋକେ ରାସ୍ତାରେ ମୋଟର, ସ୍କୁଟରରେ ଯିବା ଆସିବାକୁ ପସନ୍ଦ କରିବେ

ନାହିଁକି ? ସେତେବେଳେ ଏହି ଯିବା ଆସିବା କେତେ ମଜା ଲାଗିବ ଅନୁମାନ କରିବା କଥା ।

ଏହି ସମୟରେ ଯେଉଁ ଆୟନ ରକେଟ ବ୍ୟବହୃତ ହେବ, ତା କଥାମଣ ଶୁଣିଲେ ସହଜରେ ବିଶ୍ୱାସ ଆସିବନି । ଏହି ରକେଟର ବେଗ ହେବ ଘଣ୍ଟାକୁ ଲକ୍ଷେ ମାଇଲ । ଆଜିକାଲିକା ରକେଟଠାରୁ ଢେର୍ ଅଧିକ । ଏହି ରକେଟ ସାହାଯ୍ୟରେ ଚନ୍ଦ୍ରଲୋକକୁ ଯିବାକୁ ହେଲେ ମାତ୍ର ଅଢ଼େଇଘଣ୍ଟା ଲାଗିବ । ଚନ୍ଦ୍ରଲୋକକୁ ଯିବା ଆସିବା ଏହାଫଳରେ ଏତେ ନିତିଦିନିଆ ହୋଇଯିବ ଯେ ଲୋକେ ଘରୁ ଜଳଖିଆ ଖାଇ ସକାଳ ସାତଟାରେ ଚନ୍ଦ୍ରଲୋକକୁ ବାହାରିବେ । ଚନ୍ଦ୍ରଲୋକରେ ପହଞ୍ଚି ସେଠୁଁ କାମଦାମ ଶେଷକରି ଘରକୁ ଫେରିଆସି ମଧ୍ୟାହ୍ନଭୋଜନ କରିପାରିବେ । ଚନ୍ଦ୍ରଲୋକକୁ ଯିବା କଟକରୁ ପୁରୀ ଗଲାଭଳି ହୋଇଯିବ । ଏସବୁ ସଂଯୋଜନରୁ ଜାତ ଶସ୍ତା ଶକ୍ତି ସାହାଯ୍ୟରେ ସମ୍ଭବପର ହେବ ।

"ହଁ, ରେଖାଦେବୀ ଯାହା କହିଲେ, ସେସବୁ ଆସନ୍ନାକାଳର ଶକ୍ତିର ଉତ୍ସ । ଶକ୍ତି ସମସ୍ୟା ମାନବ ସମାଜକୁ କଦାପି ପଙ୍ଗୁ କରି ପାରିବନି । ବିଜ୍ଞାନ ଶକ୍ତିର ଅଭାବକୁ ମେଣ୍ଟାଇବା ପାଇଁ ନାନା ବ୍ୟବସ୍ଥା ବାହାର କରିବା ଉପରେ । ପୃଥିବୀକୁ ଅନ୍ଧକାର ଯୁଗକୁ ପୁଣି ଫେରିଯିବାକୁ ବିଜ୍ଞାନ ଦେବନି । ତେଣୁ ଆମର ଏହି ଶକ୍ତି ସଙ୍କଟ ପ୍ରତି ଆତଙ୍କିତ ହେବାର କୌଣସି କାରଣ ନାହିଁ ।"

## ଷୋହଳ

"କ'ଣ ଶୁଭ୍ରା ଶୁଣିଲଣି, ଫିଜିକ୍ସ ଡିପାର୍ଟମେଣ୍ଟକୁ ଗୋଟିଏ କଂପ୍ୟୁଟର ଆସିଛି । ଖୁବ୍ ବଢ଼ିଆ ହୋଇଛି ସେମାନଙ୍କର ।" ଶୁଭ୍ରାର ଗବେଷଣା କକ୍ଷକୁ ପଶି ଆସୁ ଆସୁ ଗବେଷଣା ସାଙ୍ଗ ମନୋଜ କହିଲା ।

"ହଁ, ମୁଁ ଶୁଣିଛି ମନୋଜ । ସେ କଂପ୍ୟୁଟର କାଲେ ଆମ ଡିପାର୍ଟମେଣ୍ଟକୁ ମିଳିବାର ଥିଲା । ଆମ ବିଭାଗର ମୁଖ୍ୟ ନେବାକୁ ଅସମ୍ମତି ପ୍ରକାଶ କଲାରୁ ସେମାନଙ୍କୁ ଦିଆଗଲା । ସାର୍‌ଙ୍କର ଗବେଷଣା ପାଇଁ ଗୋଟିଏ କଂପ୍ୟୁଟର ଦରକାର । ତାଙ୍କର ଗବେଷଣା ପାଇଁ କଂପ୍ୟୁଟର ନ ହେଲେ ନ ଚଳେ । କଂପ୍ୟୁଟର ଓ ଆଉ କେତେଗୋଟି ଯନ୍ତ୍ରପାତି ହୋଇଥିଲେ ସେ କେମ୍ବ୍ରିଜରେ ଯେଉଁ ଗବେଷଣା କରୁଥିଲେ, ତାକୁ ଏଠାରେ କରି ପାରନ୍ତେ । ସେ ଗବେଷଣା ଏତେ ଉଚ୍ଚକୋଟୀର ଯେ କୃତକାର୍ଯ୍ୟ ହେଲେ ନୋବେଲ ପ୍ରାଇଜ ଥୁଆ । ସାର୍ ସେହି ଉଚ୍ଚ ଦରର ଗବେଷଣା ପାଇଁ ସୁଯୋଗ ନ ପାଇବାରୁ ତାଙ୍କ ମନ ଏହି ଗବେଷଣା ଉପରୁ ଉଠି ଯାଉଛି । କଂପ୍ୟୁଟର ମିଳିଥିଲେ କେତେ ସୁବିଧା

ହୋଇଥାନ୍ତା ସାର୍‌ଙ୍କର । ସାର୍‌ଙ୍କ ବିରୁଦ୍ଧରେ ଯେଉଁମାନେ ଲାଗିଛନ୍ତି, ସେମାନଙ୍କ ପ୍ରଚେଷ୍ଟାରୁ ଆମ ଡିପାର୍ଟମେଣ୍ଟକୁ ମିଳିଲାନି । ହେଡ୍ ଅଫ୍ ଦି ଡିପାର୍ଟମେଣ୍ଟ ମିଟିଂରେ ଆମ ହେଡ୍ କହିଲେ, ଏହା ଫିଜିକ୍ସ ଡିପାର୍ଟମେଣ୍ଟକୁ ଯାଉ । ଯଦି ଆମର କେବେ ଦରକାର ହୁଏ, ତେବେ ଆମେ ସେମାନଙ୍କ ଯନ୍ତ୍ରଦ୍ୱାରା ଗଣନା କରାଇ ଆଣିବୁ ।"

"ହୁଁ, ଯେମିତି କଂପ୍ୟୁଟର ଖାଲି ଗଣନା ପାଇଁ ଅଛି । ଏହାର ଆଉକିଛି କାମ ନାହିଁ । ଆଜିକାଲି ହେଲା କଂପ୍ୟୁଟର ଯୁଗ । ଏହାର ଯେଉଁ ଅଦ୍ଭୁତ ପ୍ରକାର ବ୍ୟବହାର ସବୁ ଦେଖାଦେଲାଣି, ସେଥିରେ ଏହାର ଗଣନା କଥା କିଏ ପଚାରୁଛି ? ଏମିତି ଯନ୍ତ୍ରଟିଏ ଡିପାର୍ଟମେଣ୍ଟରେ ଥିଲେ, କେତେ କ'ଣ ଯେ କରି ହୁଅନ୍ତା, ତା'ର ଇୟତ୍ତା ନାହିଁ । ଆମ ହେଡ୍‌ଙ୍କର ଧାରଣା ଥିଲେ ସିନା ନିଜ ବିଭାଗରେ ରଖିଥାନ୍ତେ । ଗବେଷଣାରେ ତ ଗୋଲ, ସେ କରିବେ କ'ଣ ? ଆଉ ହେଡ୍ ଥିଲେ, ସେ କ'ଣ ଏତେ ସହଜରେ ଛାଡ଼ି ଦେଇଥାନ୍ତେ ? ସେ ଜବରଦସ୍ତ କଂପ୍ୟୁଟରକୁ ଆମ ବିଭାଗରେ ରଖିଥାନ୍ତେ । ତାଙ୍କ ମୁହଁ ଉପରେ କହିବାକୁ ଅନ୍ୟ କେଉଁ ହେଡ୍‌ର ସାହସ ହୋଇଥାନ୍ତା ? ଆମ ଭାଗ୍ୟ ଖରାପ । ଆମର ଫଟା କପାଳକୁ ଗୋବର ଗଣେଶ ହେଡ୍ ।

"ଆରେ ମନୋଜ, ଶୁଣିଲୁଣି ନା ? ଆମ ଡିପାର୍ଟମେଣ୍ଟକୁ ଆସୁଥିବା କଂପ୍ୟୁଟରଟି କେମିତି ଫିଜିକ୍ସ ଡିପାର୍ଟମେଣ୍ଟକୁ ଚାଲିଗଲା ?"

"ହଁରେ ଭାଇ, ଆମେ ପରା ବର୍ତ୍ତମାନ ସେଇଆ କଥା ହେଉଥିଲୁ । ତୁ ଶୁଣିଲୁ କେଉଁଠୁ ?"

"ଫିଜିକ୍ସ ଡିପାର୍ଟମେଣ୍ଟକୁ ଯାଇଥିଲି ଯେ, ସେଠୁ ଶୁଣି ଆସିଲି । ସେମାନେ ସେଥିପାଇଁ ଏତେ ଖୁସି ଯେ, ବର୍ତ୍ତମାନ ସେଠି ଏକ ଗ୍ରାଣ୍ଡ ଭୋଜିର ବନ୍ଦୋବସ୍ତ ଦିଆଯାଇଛି ।"

"ଆମେ ଚାଲ, ଦୁଃଖରେ ନିମପତ୍ର ପାର୍ଟି କରିବା । ତାଙ୍କର ଖୁସିରେ ମିଠା ବେଳକୁ ଆମର ଦୁଃଖରେ ପିତା ।"

"ମୁଁ କିଛିଦିନ ତଳେ କଂପ୍ୟୁଟରର ବ୍ୟବହାର ନେଇ ଗୋଟିଏ ପ୍ରବନ୍ଧ ପଢୁଥିଲି । କି ଚମତ୍କାର ସେ ପ୍ରବନ୍ଧ । କଂପ୍ୟୁଟର ଆଜିକାଲି ଏତେ କାମରେ ବ୍ୟବହୃତ ହେଲାଣି ଯେ, ମୋର ଧାରଣା ନ ଥିଲା । ପିଲାମାନଙ୍କ ପରୀକ୍ଷା ଖାତା ଦେଖାଠାରୁ ଆରମ୍ଭ କରି ସେମାନଙ୍କ ବିଭିନ୍ନ ବିଷୟରେ ପାଇଥିବା ନମ୍ବରକୁ ସଂଗ୍ରହ କରି ସେଥିରୁ ସେମାନଙ୍କ ପାସ୍ ଫେଲ୍ ନିର୍ଣ୍ଣୟ ପର୍ଯ୍ୟନ୍ତ ସବୁକିଛି କରି ଦେଉଛି କଂପ୍ୟୁଟର । ଆଇ.ଏ.ଏସ୍. ପରୀକ୍ଷାରେ ଯେଉଁ ପ୍ରାଥମିକ ପରୀକ୍ଷା ହୁଏ, ସେଥିରେ ଲକ୍ଷ ଲକ୍ଷ ପିଲା ପରୀକ୍ଷା ଦେଉଥିବାରୁ ସେସବୁ ଖାତା କଂପ୍ୟୁଟର ଛଡ଼ା ପରୀକ୍ଷକମାନେ ଦେଖିପାରନ୍ତିନି ।"

"ସେ ପରୀକ୍ଷା କେମିତି ହୁଏ, ତୁ ଜାଣିଛୁ ମନୋଜ ?"

"ହଁ, ମୁଁ ପରା ଥରେ ଆଇ.ଏ.ଏସ୍. ପରୀକ୍ଷା ଦେଇଥିଲି । ପ୍ରଶ୍ନଗୁଡ଼ାକ ସବୁ ଅବ୍‌ଜେକ୍‌ଟିଭ୍ ଟାଇପ୍ । ଉତ୍ତର ମାତ୍ର ଖଣ୍ଡିଏ କାଗଜ । ପ୍ରଶ୍ନର ପ୍ରକୃତ ଉତ୍ତର ସେଥିରେ

ଥିବା ବିଭିନ୍ନ ଘରେ ଟିକ୍‌ମାର୍କ ଦେଇ ଜଣାଇଦେବ । ଦ୍ୱାରିଦ୍ୱାରି ଶହେଟି ପ୍ରଶ୍ନ । ଉତ୍ତର କାଗଜର ପ୍ରଶ୍ନ ଦିଆଯାଇଥିବା ବନ୍ଧକୁ ପଢ଼ି କେଉଁଟି ଠିକ୍ ଉତ୍ତର, ତା'ରି ପାଖରେ ଟିକ୍ ମାରିଦେଲେ ହେଲା । ସେହି ଉତ୍ତର କାଗଜଟିକୁ କଂପ୍ୟୁଟରକୁ ଯୋଗାଇଦେଲେ ଯେତୋଟି ଠିକ୍ ଉତ୍ତର ସେହି ଅନୁସାରେ ନମ୍ବର ବାହାରି ଆସିବ । ବଡ଼ ଚମତ୍କାର ପରୀକ୍ଷାରେ ସିଏ । ଭାରି ମଜାଲାଗେ ଉତ୍ତର ଦେବାକୁ । ଏହି କଂପ୍ୟୁଟର ଲକ୍ଷ ଲକ୍ଷ ଉତ୍ତର କାଗଜକୁ ଅଳ୍ପ ସମୟ ମଧ୍ୟରେ ଦେଖି କିଏ କେତେ ନମ୍ବର ପାଇବ, ବାହାର କରିଦେବ ।''

''ହଁ ବିନୋଦ, ତା'ଛଡ଼ା କଂପ୍ୟୁଟର ଆଜିକାଲି ଶିକ୍ଷକଭାବେ ପିଲାମାନଙ୍କୁ ପାଠ ପଢ଼ାଇ ପାରୁଛି । ଲାଇବ୍ରେରୀମାନଙ୍କରେ ଏମିତି କଂପ୍ୟୁଟରମାନ ଅଛି, ସେହି କଂପ୍ୟୁଟରକୁ ଯେଉଁ ପ୍ରଶ୍ନ ପଚାରିବ, ସେହି ପ୍ରଶ୍ନର ଉତ୍ତର କେଉଁ ବହିରେ ଅଛି କହିଦେବ । ଦରକାର ପଡ଼ିଲେ ପ୍ରଶ୍ନର ଉତ୍ତର କ'ଣ ହେବ, ବତାଇ ଦେବ । ଆଜିକାଲି କୌଣସି ହିସାବ କିତାବ, କି ଗଣନା ମଣିଷମାନେ ନିଜେ ନିଜେ କରିବେ ନାହିଁ । ସେସବୁ କଂପ୍ୟୁଟର କରିଦେବ । ଲୋକେ ସବୁ କାମ ପାଇଁ କଂପ୍ୟୁଟର ଉପରେ ନିର୍ଭର କରିବେ । ଯାନବାହାନ ଚଳାଚଳରେ ସାଧାରଣ ଡ୍ରାଇଭରର ସ୍ଥାନ ନେବ କଂପ୍ୟୁଟରଚାଳିତ ଯନ୍ତ୍ରମଣିଷ । ସେହି ଯନ୍ତ୍ରମଣିଷ ଏତେ ଦକ୍ଷତାର ସହିତ ମୋଟରଗାଡ଼ି, ବସ୍ କି ଟ୍ରେନ୍ ଚଳାଇପାରିବ ଯେ, ଦୁର୍ଘଟଣା ଘଟିବା ପ୍ରାୟ ଦେଖାଯିବନି ।

''ଖାଲି କ'ଣ ସେତିକି ।'' ବିନୋଦ କହିଲା, ଆଜିକାଲି କଂପ୍ୟୁଟର ବର୍ତ୍ତମାନ ଯେଉଁ ଅବସ୍ଥାକୁ ଆସିଲାଣିନା, ଏହା ଆଜିକାଲି ଆମର ଢେର୍ କାମ କରିଦେଇ ପାରୁଛି । ଅଫିସ୍‌ର ହିସାବ କିତାବଠାରୁ ଆରମ୍ଭ କରି ଗ୍ରାହକଙ୍କର ସବୁ ପ୍ରକାର ରେକର୍ଡ଼ ରଖୁଛି । କାହାର କେତେ ଦରମା, ଘରଖର୍ଚ୍ଚ କେତେ, ବଢ଼ା ଦରମା କେତେ ସବୁ ହିସାବକିତାବ କରି ମାସ ଶେଷକୁ ଦରମା କାହାର କେତେ କହି ଦେଉଛି । ସଙ୍ଗୀତ ରଚନାଠାରୁ ଆରମ୍ଭ କରି ଗୋଟିଏ ଭାଷାରୁ ଅନ୍ୟ ଭାଷାକୁ ଅନୁବାଦ କରିବା କାମ ମଧ୍ୟ କଂପ୍ୟୁଟର କରି ଦେଉଛି ।

''ବାପା କହୁଥିଲେ'', ଶୁଭ୍ରା କହିଲା । ''ଏହି କଂପ୍ୟୁଟର ବର୍ତ୍ତମାନ ଉନ୍ନତି ପଥରେ ଗତି କରି ଆଉ କିଛିବର୍ଷ ପରେ ଏହା ଏମିତି ଅବସ୍ଥାକୁ ଚାଲି ଆସିବ, ଯେ ଏହା ଡାକ୍ତରମାନଙ୍କ ଭଳି ରୋଗୀକୁ ପରୀକ୍ଷା କରି କି ରୋଗ ହୋଇଛି କହିଦେଇ ପାରିବ । ଖାଲି ସେତିକି ନୁହେଁ, ସେ ରୋଗରେ କି କି ଔଷଧ, ପଥ୍ୟ ଖାଇବାକୁ ପଡ଼ିବ ଡାକ୍ତର ଭଳି ବତାଇ ଦେଇପାରିବ । ସେ ଯୁଗରେ ଆଉ କେହି ଡ଼ାକ୍ତର ପାଖକୁ ଯିବେନି । ଡ଼ାକ୍ତରଖାନାମାନଙ୍କରେ ଏମିତି ଯନ୍ତ୍ରସବୁ କଂପ୍ୟୁଟର ଦ୍ୱାରା ପରିଚାଳିତ ହେଉଥିବ, ଯେଉଁ ଯନ୍ତ୍ର କହିଦେଇ ପାରୁଥିବ ଆମ ଶରୀର ଭିତରସ୍ଥ କେଉଁ ଅଙ୍ଗରେ କି ରୋଗ ହୋଇଛି । ଆମ ଶରୀର ଭିତରକୁ ନ ମାଇ ଶରୀର ଭିତରସ୍ଥ ହୃଦ୍‌ଯନ୍ତ୍ର, ବୃକକ୍, ଫୁସ୍‌ଫୁସ୍ ଆଦିର

ଅବସ୍ଥା, କିମ୍ବା ପ୍ରଣାଳୀ ଆଦି କେମିତି ଦେଖାଇ ଦେଇପାରୁଛି । କଂପ୍ୟୁଟର ନ ଥିଲେ, ଆମେ ସେସବୁ ସୁବିଧା କୁଆଡ଼ୁ ପାଇଥାନ୍ତୁ ? ଏନ୍.ଏମ୍.ଆର୍. ସ୍କେନର, କେଟ୍ ମେସିନ୍ ଅଲଟ୍ରାସାଉଣ୍ଡ, ଗାମା ସ୍କେନର ଆଦି ଏହିଭଳି ବହୁ ଯନ୍ତ୍ର ପୃଥିବୀର ବଡ଼ ବଡ଼ ଡ଼ାକ୍ତର-ଖାନାରେ କଂପ୍ୟୁଟର ଦ୍ୱାରା ଚାଲୁଛି । ବୋମ୍ବେ, ଦିଲ୍ଲୀ ଆଦି ସ୍ଥାନକୁ ଏ ଯନ୍ତ୍ରସବୁ ଆସିଗଲଣି । ଏହି ଯନ୍ତ୍ର ଆମ ଶରୀର ଅଭ୍ୟନ୍ତରର ଅବସ୍ଥା ଆଖିପିଛୁଳାକେ ଆମକୁ ଦେଖାଇ ଦେଇପାରୁଛି ।

ହଁ, ମଟରଗାଡ଼ି ମରାମତି କାରଖାନାରେ ମଟରଗାଡ଼ି ସଜାଡ଼ିବ କଂପ୍ୟୁଟର । କାରଖାନାରେ ବସିଥିବ କଂପ୍ୟୁଟର । ଖରାପ ହୋଇଥିବା ଗାଡ଼ିଟିଏ କାରଖାନାକୁ ଆସିଲେ ଗାଡ଼ିଟିକୁ ପରୀକ୍ଷା କରି କହିଦେବ, ଗାଡ଼ିର ଅମକେଇ ଅଂଶ ଖରାପ ହୋଇଛି । ସଙ୍ଗେ ସଙ୍ଗେ ସେହି ଅଂଶକୁ ଠିକ୍ କରି ଗାଡ଼ିର ଅଚଳ ଅବସ୍ଥା ଦୂର କରିଦେବ କଂପ୍ୟୁଟର । ସେ ଯୁଗରେ କଂପ୍ୟୁଟର ଆମ ପୁଅ ଝିଅଙ୍କ ପାଇଁ ବରକନ୍ୟା ବାଛିବାଛି କରିବ । ଲୋକେ ଆଜିକାଲିକା ଭଳି ପ୍ରେମକରି ବାହାହେବା ପ୍ରଥା ନ ଥିବ । ସେଭଳି ବିବାହ ସେ ଯୁଗରେ ପୁରୁଣାକାଳିଆ ହୋଇ ଯାଇଥିବ ।'' ବିନୋଦ କହିଲା ।

''ଆରେ ସବୁଠାରୁ ସୁବିଧା କ'ଣ ହେବ ଜାଣିଛୁ ?'' ମନୋଜ କହିଲା ।

''କ'ଣ ?'' ବିନୋଦ ପଚାରିଲା ।

''ଘରର ରନ୍ଧାବଢ଼ା କାମର ଦାୟିତ୍ୱ ନେବ କଂପ୍ୟୁଟର । କେଉଁ କେଉଁ ଖାଦ୍ୟ କେମିତି ରନ୍ଧାଯାଏ, କାହାପରେ କେଉଁ ଜିନିଷ ତରକାରୀରେ ପକାଯାଏ, କେଉଁ ଜିନିଷ କେତେ ସମୟ ସିଝାଯାଏ, ଏସବୁ କଂପ୍ୟୁଟରକୁ ଜଣାଥିବ । ଖାଲି ସକାଳୁ ଉଠି କଂପ୍ୟୁଟରକୁ ବରାଦ କରିବାକୁ ପଡ଼ିବ ଆଜି ଅମକେଇ ତରକାରୀ କି ଖାଦ୍ୟ ପ୍ରସ୍ତୁତ ହେବ । ତୁମେ ବରାଦ କରିଦେଇ ବଜାର ବାହାରିଗଲ । ବଜାରରୁ ଫେରିଲାବେଳକୁ ସବୁ ରନ୍ଧାରନ୍ଧି ହୋଇ ଥୁଆ ହୋଇଥିବ । ଫେରିଲେ, ବାଢ଼ିବ ଖାଇବ । ତିଆରିରେ କୌଣସି ବ୍ୟତିକ୍ରମ ହୋଇ ନ ଥିବ ।

ସେଥିରେ ଆଉ କାହାର କଣ୍ଟ ହେଉ ବା ନ ହେଉ ଶୁଭ୍ରାର ବେଶ୍ ଲାଭ ହେବ । ସେ ବାହା ହୋଇଗଲେ ତାକୁ ରନ୍ଧାବଢ଼ା କାମ ହଇରାଣ କରିବନି ।

''ସେ ଘରରେ ବାହାହେଲେ ରାନ୍ଧିବ ନା କଅଣ ? ତା ବାପା କେତେ ଖାନସମା ବାବୁର୍ଚ୍ଚି ଯେ ଖଞ୍ଜି ଦେବେ, ତା'ର ଇୟତ୍ତା ନାହିଁ । ସେ କ'ଣ ଚୁଲ୍ଲୀମୁଣ୍ଡରେ ବସି ଅନ୍ୟ ଝିଅଙ୍କ ଭଳି ରାତି ରାନ୍ଧିବ ?''

''ଆରେ, ଯେତେହେଲେ ସେ ସ୍ତ୍ରୀଲୋକ । ଚାକର ପୂଝାରୀ ନ ଥିଲେ କ'ଣ ଘରେ ଉପାସ ରହିବ ? ରନ୍ଧାବଢ଼ା ଜାଣିଥିଲେ ସିନା ଦି'ଟା ବସେଇଦେବ ।''

''କ'ଣ ହେଲା, ସେମାନେ ନ ଥିଲେ ହୋଟେଲରେ ଖାଇବ ।''

"ଆରେ, ହୋଟେଲରେ ଖାଇବ କାହିଁକି, କଂପ୍ୟୁଟର ବସାଇଦେଇ ବଟନ୍ ଦବାଇଦେଲେ ରନ୍ଧା ହୋଇଗଲା । ସିଏ କେଉଁ ମଜା କହିଲୁ ?"

"ମୁଁ କେଉଁଠି ପଢ଼ିଥିଲି ମନୋଜ ମନେପଡ଼ୁନି" ଶୁଭ୍ରା କହିଲା, କଂପ୍ୟୁଟର ବାଛିବ ଆମ ଦେଶର କିଏ ପ୍ରଧାନମନ୍ତ୍ରୀ ହେବ । କେଉଁ କେଉଁ ମାନେ ମନ୍ତ୍ରୀ ହେବେ କଂପ୍ୟୁଟର ବାଛି ଦେବ । ଆଜିକାଲିକା ଭଳି ଭୋଟଦେବା ପ୍ରଥା ସେ ଯୁଗରେ ନ ଥିବ । ଆମ ଦେଶର ନେତା କିଏ ହେବ, ପ୍ରଧାନମନ୍ତ୍ରୀ କିଏ ହେବ, ବାଛିବ କଂପ୍ୟୁଟର । ଟଙ୍କା ପଇସା ଦେଇ ବା ମିଛ ପ୍ରତିଶ୍ରୁତି ଦେଇ ମନ୍ତ୍ରୀ ବା ନେତା ହେବା ଯୁଗ ଆଉ ନ ଥିବ । ପ୍ରକୃତ ଉପଯୁକ୍ତ ଲୋକଙ୍କୁ କଂପ୍ୟୁଟର ବାଛି ଆମକୁ ବତାଇଦେବ, ଦେଶରେ କିଏ ପ୍ରଧାନମନ୍ତ୍ରୀ କି ମୁଖ୍ୟମନ୍ତ୍ରୀ ହେବେ । ଭୋଟଦେବା ପ୍ରଥା ପୁରାପୁରି ଲୋପ ପାଇଯିବ । ଆଜିକାଲି ଯୁଗର ଟାଉଟର, କଳାପୋତିଆମାନଙ୍କର ସ୍ଥାନ ରାଜନୀତିରେ ନ ଥିବ ।

"ଭାରି ବଢ଼ିଆହେବ ଶୁଭ୍ରା । ଟାଉଟରମାନଙ୍କ ହାତରୁ ରାଜନୀତି ମୁକୁଳିଲେ ଏ ଦେଶର ଯାହାକିଛି ଉନ୍ନତି ହେବ । ଦେଶଟାକୁ ଏହି ଅସାଧୁ ଟାଉଟରମାନେ ଖାଇ ଶେଷ କରିଦେଲେ । ରାଜନୀତି ନାଁରେ ଭୁଆ ନେତା ସାଜି ସେମାନେ ଦେଶରେ ଯେଉଁ ଭ୍ରଷ୍ଟାଚାର, ପ୍ରିୟାପ୍ରୀତି ତୋଷଣ, କଳାଟଙ୍କା କାରବାର ସବୁ ଭରତି କରୁଛନ୍ତି, ତାହା ଆମ ଦେଶର ଶାସନକୁ କଳଙ୍କିତ କଲାଣି ।"

"ତୁ ଜାଣିଚୁ ବିନୋଦ, ଆଜିକାଲି କଳକାରଖାନା, ଉଡ଼ାଜାହାଜ, ଜଳଜାହାଜ, ମହାକାଶଯାନ ଆଦି କଂପ୍ୟୁଟର ସାହାଯ୍ୟରେ ଚାଳିତ ହେଉଛି । ବିନା କଂପ୍ୟୁଟରରେ ଉଡ଼ାଜାହାଜ କି ମହାକାଶଯାନ ଚାଲି ପାରିବନି । ଉଡ଼ାଜାହାଜ ଘାଟିରେ କଂପ୍ୟୁଟର ନ ହେଲେ ଉଡ଼ାଜାହାଜ ଓହ୍ଲାଇ ପାରିବନି । ମହାକାଶ ଯାତ୍ରା ବେଳେ ଯେଉଁ ଅସଂଖ୍ୟ ଗଣନା ଦରକାର, କଂପ୍ୟୁଟର ନ ଥିଲେ ସେସବୁ ଗଣନା କରିବ କିଏ ? ଲୋକେ କହନ୍ତି, କଂପ୍ୟୁଟର ଯଦି ଆଗ ଉଦ୍ଭାବିତ ହୋଇ ନ ଥାନ୍ତା, ତେବେ ମହାକାଶ ଅଭିଯାନ ବର୍ତ୍ତମାନ ଅବସ୍ଥାକୁ ଆସିପାରି ନ ଥାନ୍ତା ।"

"ହଁରେ ଭାଇ, କଳକାରଖାନାରେ ସେମିତି କଂପ୍ୟୁଟର ନ ହେଲେ ନ ଚଳେ । ଉତ୍ପାଦିତ ଦ୍ରବ୍ୟର ଗୁଣ, ମାନ, ମୂଲ୍ୟ ଆଦି ଠିକ୍ କରିବାରେ କଂପ୍ୟୁଟରର ଭୂମିକା ଅତି ବେଶି । ଲୁଗାକଳଠାରୁ ଆରମ୍ଭ କରି ଇସ୍ପାତ କାରଖାନା ପର୍ଯ୍ୟନ୍ତ ସବୁଆଡ଼େ କଂପ୍ୟୁଟର ନ ହେଲେ ନ ଚଳେ । ମଣିଷ ଯେଉଁ ମାନ, ଗୁଣ, ମୂଲ୍ୟର ଜିନିଷ ଚାହୁଁଛି, ତାହା କଂପ୍ୟୁଟର ବତାଇଦେଇ ତିଆରି କରି ଦେଉଛି । ଏହିସବୁ କଠିନ କାମକୁ କଂପ୍ୟୁଟର ଯେତେ ସହଜିଆ ଭାବରେ କରୁଛି, ମଣିଷ କେବେ ତାହା ପାରିବନି ।"

"ଆରେ, ତୁମେ ସବୁ ଖାଲି କଂପ୍ୟୁଟର କଥା କ'ଣ କହି ଚାଲିଛ ।" ଶୁଭ୍ରା କହିଲା, "ସୁପର କଂପ୍ୟୁଟର କଥା କ'ଣ ଭୁଲି ଗଲଣି ? ସୁପର କଂପ୍ୟୁଟର ପରା ଆମର କେଉଁଦିନ କିପାଗ ହେବ ଭବିଷ୍ୟତ ବାଣୀ କରି ପାରିବ । ଆମ ଦେଶକୁ ଗୋଟିଏ ସୁପର

କଂପ୍ୟୁଟର ଆସି ଆମର ପାଣିପାଗ ପ୍ରତିବେଦନ କେମିତି ହେବ, କେତେ ଠିକ୍ ଖବରେ କହିପାରୁଛି ଟେଲିଭିଜନରୁ ଦେଖୁନ ?"

"ହଁ ଶୁଭ୍ରା, ସୁପର କଂପ୍ୟୁଟର ସତରେ ଖୁବ ଚମତ୍କାର । ପାଗ ପର୍ଯ୍ୟବେକ୍ଷଣ ଓ ଭବିଷ୍ୟତ ବାଣୀ ଛଡ଼ା ଏହା ରାଷ୍ଟ୍ରର ଯୁଦ୍ଧ ପରିଚାଳନାରେ ଅଶେଷ ସାହାଯ୍ୟ କରିପାରିବ । ଦେଶରକ୍ଷା ପାଇଁ ଏହା ନ ହେଲେ ନ ଚଳେ । ଆମେରିକା ଆମକୁ ସେଭଳି ସୁପର କଂପ୍ୟୁଟର ନ ଦେଇ ପାଗର ଭବିଷ୍ୟତ ବାଣୀ କରିପାରୁଥିବା ସୁପର କଂପ୍ୟୁଟର ଦେଇଛି । ସେମାନଙ୍କ ଧାରଣା ଆମକୁ ସେମିତି ସୁପର କଂପ୍ୟୁଟର ଦେଲେ ଆମେ ସାମରିକ ଶକ୍ତିରେ କାଳେ ବଳିୟାନ ହୋଇଯିବୁ ।"

## ସତର

ବନମାଳିପୁର ବ୍ଲକ୍ । କଟକ ଜିଲ୍ଲାର ବାଙ୍କି ନିର୍ବାଚନ ମଣ୍ଡଳୀର ବିଭିନ୍ନ ବ୍ଲକ୍ ଭିତରୁ ଗୋଟିଏ । ଏହି ବ୍ଲକ୍ ଅଧୀନରେ ଆଠ ଦଶଗୋଟି ଗ୍ରାମ ପଞ୍ଚାୟତ । ଏହି ବ୍ଲକ୍‌ଟି ପୁରୀ ଜିଲ୍ଲାର ସୀମାକୁ ଲାଗିଛି । ଏହି ବ୍ଲକ୍‌ରେ ଥିବା ସବୁ ଗ୍ରାମ ପଞ୍ଚାୟତ ଭିତରୁ ଗୋବିନ୍ଦପୁର ଗ୍ରାମ ପଞ୍ଚାୟତଟି ସବୁଠାରୁ ବଡ଼ । ଏହା ଆଠଖଣ୍ଡ ବଡ଼ ବଡ଼ ଗାଁକୁ ନେଇ ଗଠିତ ହୋଇଛି । ସେହିସବୁ ଗାଁ ଭିତରୁ ଗୋଟିଏ ଗାଁରେ ଦେବସ୍ଥାନବାବୁଙ୍କ ଘର । ତାଙ୍କ ବାପା ନାରାୟଣବାବୁ ଯଦିଓ କଟକରେ ଘର ତିଆରି କରିଛନ୍ତି, ଏହି ପୈତୃକଘର ପ୍ରତି ନାରାୟଣବାବୁଙ୍କ ଦୃଷ୍ଟି ଯେ ନ ଥାଏ, ତା ନୁହେଁ । ବେଳେବେଳେ ନାରାୟଣବାବୁ ଗାଁକୁ ଯାଇ ଧାନ ମୁଗ ଆମଦାନୀ କରି କଟକକୁ ନେଇ ଆସନ୍ତି ନିଜ ବ୍ୟବହାର ପାଇଁ ।

ଗାଁ ଗୁଡ଼ିକର ଅବସ୍ଥା ଅତ୍ୟନ୍ତ ଦୟନୀୟ । କୃଷି ହେଲା ଏକମାତ୍ର ଭରସା । ଜମି ମାଲିକମାନେ ହେଲେ ଉଚ୍ଚ ଶ୍ରେଣୀର ଲୋକ । ଚାରି ପାଞ୍ଚଜଣ ଲୋକଙ୍କ ହାତରେ ଗାଁ ଗୋଟାକର ସବୁ ଜମି ରହିଛି । ଗାଁର ଅନ୍ୟ ଅଧିବାସୀମାନେ ଏହି ଜମିକୁ ଭାଗଚାଷ କରି ଚଳନ୍ତି । ଜଣକା ମାଣେ ଦି'ମାଣରୁ ଅଧିକ ଜମି ଚଷିବାକୁ ପାଆନ୍ତିନି । ଏତିକି ଜମିରୁ ଯେତିକି ଫସଲ ମିଳେ ଅଧେ ଜମି ମାଲିକଙ୍କୁ ଦେଇ ବାକି ଅଧିକରେ ନିଜ ଗୁଜୁରାଣ ମେଣ୍ଟାନ୍ତି । ତେଣୁ ବର୍ଷକ ଭିତରେ ଛ'ମାସ ଓପାସ । ଦିନ ମଜୁରିଆ କାମ ବି ତ ମିଳେନି । ପାଖଆଖରେ କଳକାରଖାନା ନାହିଁ, ଯେଉଁଠି ଖଟିଲାଗିକରି ଦି'ପଇସା ଅର୍ଜନ କରି ପାରନ୍ତେ ।

ଏହି ଗ୍ରାମଗୁଡ଼ିକରେ ଜଳସେଚନ ବ୍ୟବସ୍ଥା ନାହିଁ, ଥିଲେ ଅବା ବର୍ଷକୁ ଦୁଇ ତିନୋଟି ଫସଲ କରି ନିଜର ଅଭାବ ମେଣ୍ଟାନ୍ତେ । ଗୋବିନ୍ଦପୁର ଗ୍ରାମପଞ୍ଚାୟତ ଦେଇ

ବହିଯାଉଛି ଶାଳଆ ନାମକ ଗ୍ରେଟିଆ ନଈଟିଏ, ଆମ ମହାନଦୀର ଏକ ଉପନଦୀ । ଯଦିବା ଏହି ନଈର ଦୁଇମୁଣ୍ଡ ଶୁଖିଲା, କିନ୍ତୁ ଏହି ଗାଁ ଭିତର ଦେଇ ଯେଉଁତିକ ଅଂଶ ବହିଯାଉଛି, ସେଥିରେ ବର୍ଷସାରା ଜଳ ଥାଏ । ନଦୀରେ ଅବଶ୍ୟ ବେଶି ପାଣି ନ ଥାଏ । ଯେତକ ଥାଏ, ସେତକକୁ ନଦୀକୂଳ ଜମିରେ ମଡ଼ାଇ ବର୍ଷର ସବୁଦିନେ ପନିପରିବା ଚାଷଠାରୁ ତେଲବୀଜ, ଘୋଡ, ତମାଖୁ ପର୍ଯ୍ୟନ୍ତ ବହୁତ କିଛି ଚାଷ କରାଯାଏ । ଏହି ଜମିଗୁଡ଼ିକ ଜମି ମାଲିକମାନଙ୍କ ଖୋଦ୍ ହାତଚାଷ । ତେଣୁ ଏଥିରୁ ଭଲ ଦି'ପଇସା ଅର୍ଜନ କରି ଜମି ମାଲିକମାନେ ବେଶ୍ ସୁଖରେ ଚଳନ୍ତି ।

ହାତ ଆଙ୍ଗୁଳିରେ ଗଣିଲାଭଳି ଯେଉଁ ଅଳ୍ପ କେଇଜଣ ଜମିମାଲିକ ଅଛନ୍ତି, ସେହିମାନଙ୍କୁ ଛାଡ଼ିଦେଲେ ଗାଁଗୁଡ଼ିକର ଅନ୍ୟ ଅଧିବାସୀମାନଙ୍କ ଅବସ୍ଥା କହିଲେ ନ ସରେ । ଦାରିଦ୍ର୍ୟର ସୀମାରେଖାର ବହୁ ତଳେ ସେମାନେ ଥାଆନ୍ତି । ଗାଁରେ ସବୁଦିନ ପାଇଁ କାମ-ଧନ୍ଦା ମିଳୁ ନ ଥିବାରୁ ଏହି ଗାଁର ବହୁଲୋକ କଟକ, କଲିକତା, ଟାଟାନଗର ଆଦି ବଡ଼ ବଡ଼ ସହରରେ କୁଲି ଭାବରେ କାମ କରିବା ପାଇଁ ଗାଁ ଛାଡ଼ି ଚାଲିଯାନ୍ତି । ସେମାନଙ୍କ ମଧ୍ୟରୁ କେତେକ ରାସ୍ତା ଫୁଟ୍‌ପାଥ୍‌ରେ, କେତେକ ବସ୍‌ଷ୍ଟାଣ୍ଡ ଓ ଷ୍ଟେସନ ପ୍ଲାଟ୍‌ଫର୍ମରେ ଶୋଇ ଦିନମଜୁରିଆ ଭାବରେ କାମ କରନ୍ତି । ବଡ଼ ବଡ଼ ସହରର ସ୍ଲମ୍‌ମାନଙ୍କରେ ମୁଣ୍ଡ ଗୁଞ୍ଜିବାକୁ ସେମାନଙ୍କୁ ସୁବିଧା ମିଳେ ନାହିଁ । ଯେଉଁ କେତେକ ଅଧିକ ପଇସା ଦେଇ ସ୍ଲମ୍‌ରେ ସ୍ଥାନ ପାଆନ୍ତି, ସେଠାକାର ଦୂଷିତ ପରିବେଶ ସେମାନଙ୍କୁ ନାନା ରୋଗରେ ପକାଇ ଅସ୍ଥି-କଙ୍କାଳସାର କରିଦିଏ । ଦିନେ ମଜୁରି ମିଳିଲେ, ଅନ୍ୟ ଦୁଇଦିନ ନାହିଁ । ତେଣୁ ଗୋଦଡ଼ା ହାଣେ ଯେତିକ ମାଡ଼େ ସେତିକ ମିତିରେ ଯାହା ଅର୍ଜନ କରନ୍ତି, ସେତକ କାମ ନ ଥିବା ଦିନମାନଙ୍କରେ ଖାଇ ଦିଅନ୍ତି । ଘରର ଛୁଆପିଲାଙ୍କ ପାଇଁ ପଇସା ପଠାଇବା ଉଦ୍ଦେଶ୍ୟ ନେଇ ଯା' ଆସିଥାନ୍ତି, ତାହା ହୋଇପାରେନା । ସେମାନଙ୍କଠାରୁ ଅଧିକ ହଇରାଣ ହୁଅନ୍ତି ଗାଁରେ ଥିବା ସେମାନଙ୍କ ପିଲାପିଲି, ପରିବାର ଲୋକେ । ଗାଁର ଶ୍ରମିକ ସହରାଭିମୁଖୀ ହେବା ଫଳରେ ଗାଁରେ ଆବଶ୍ୟକୀୟ ଶ୍ରମିକର ଅଭାବ ପଡ଼େ । ତେଣେ ସେମାନେ ସହରକୁ ଯାଇ ଆଶାନୁରୂପ ରୋଜଗାର କରି ନ ପାରି ଅସ୍ୱାସ୍ଥ୍ୟକର ପରିବେଶରେ ରହି ନାନା ରୋଗର ଶୀକାର ହୁଅନ୍ତି । ସେମାନଙ୍କ ଗାଁ ପରିବାର ଦିନକୁଦିନ ରସାତଳକୁ ଯାଏ ।

ଏହାବ୍ୟତୀତ ଗାଁର ଅନ୍ୟମାନଙ୍କର ଯାହା ପାଏ, ଦି'ପାଆ ଜମି ନିଜର ପୈତୃକ ଅମଳରୁ ରହି ଆସିଛି, ସେତକ ବନ୍ଧା ପଡ଼ିଛି ଗାଁ ମହାଜନ ପାଖରେ । ଏହିସବୁ ଗରିବ ଲୋକଙ୍କ ଜମି ବନ୍ଧାନେଇ ଗାଁ ମହାଜନ ଜଣେ ବଡ଼ ଜମି ମାଲିକ । ଯେଉଁମାନେ ବନ୍ଧା ଦେଇଛନ୍ତି, ତାଙ୍କରି ଦ୍ୱାରା ଭାଗଚାଷ କରାଇ ସେ ଜମିର ଅଧେ ଫସଲ ବିନା ପରିଶ୍ରମରେ ମାରି ନଅନ୍ତି ।

ନଦୀକୂଳିଆ ଜମି ଭିତରୁ ଯେଉଁ ଅଳ୍ପ କେତେଖଣ୍ଡି ଅନ୍ୟ ଗାଁ ଲୋକଙ୍କର ଅଛି, ସେଥିରେ ଯେଉଁ ଅର୍ଥକରୀ ଫସଲ ଚାଷ ହୁଏ, ଚାଷର ଲାଭ ମାରି ନିଅନ୍ତି ରାଜ୍ୟ ବାହାରର ବ୍ୟବସାୟୀମାନେ । ତୈଳବୀଜ ଓ ଡମାଖୁ ହେଲା ସେମାନଙ୍କର ପ୍ରଧାନ ଚାଷ । ଚାଷ ପରେ ପରେ ବାହାର ବ୍ୟବସାୟୀମାନେ ଆସି ସେମାନଙ୍କୁ ଆଗତୁରା ଅଳ୍ପ କିଛି ଟଙ୍କା ଦେଇ ସେମାନଙ୍କ ଫସଲ କିଣିନେଇ ଥାଆନ୍ତି ।

ଚାଷୀ ଫସଲ କାଟେ ସତ, କିନ୍ତୁ ଚାଷ ଅମଳ ପରେ ସେଗୁଡ଼ିକ ବ୍ୟବସାୟୀର ଟ୍ରକରେ ଲଦା ହୋଇ ପଡ଼ୋଶୀ ବାହାରକୁ ଚାଲିଯାଏ । ଗରିବ ଚାଷୀ ଜମିରେ ଚାଷ ଫଳାଏ ସତ, କିନ୍ତୁ ଲାଭ ଖାଆନ୍ତି ଅନ୍ୟମାନେ ।

ଏହି ଗ୍ରାମଗୁଡ଼ିକରେ ଲୋକମାନଙ୍କର ଯାହା ଘର ଅଛି, ତାହା ଘର ଭଳି ଘର ନୁହେଁ । ଝଡ଼, ବର୍ଷା ହେଲେ ଲୋକଙ୍କ ଦୁର୍ଦ୍ଦଶା କହିହେବ ନାହିଁ । ଖାଇବାକୁ ଅନ୍ନ ନାହିଁ, ପିନ୍ଧିବାକୁ କ'ଣ ଲୁଗା ଅଛି ? ପିଲାଗୁଡ଼ିକ ଅସ୍ଥିକଙ୍କାଳସାର, ପିନ୍ଧିବାକୁ କିଛି ନ ଥିବାରୁ ଲଙ୍ଗଳା । ଗାଁଲୋକଙ୍କ ଅବସ୍ଥା ଦେଖିଲେ ନିଷ୍ଠୁର ହୃଦୟ ବି କାନ୍ଦି ଉଠିବ ।

ଗାଁମାନଙ୍କରେ ସ୍କୁଲ ସ୍ୱପ୍ନ, ପିଲାଙ୍କ ପାଠପଢ଼ିବା ପ୍ରଶ୍ନ ଉଠିବ କୁଆଡ଼ୁ ? ଚେରଦିନ ହେଲା ଦେଶ ସ୍ୱାଧୀନ ହୋଇଥିଲେହେଁ ସେମାନଙ୍କ ଅବସ୍ଥାର କିଛିମାତ୍ର ଉନ୍ନତି ହୋଇନି । ଭୋଟବେଳ ଛାଡ଼ିଦେଲେ ଏଇ ଅଞ୍ଚଳର ଲୋକ ପ୍ରତିନିଧିଙ୍କର ଦୃଷ୍ଟି ଏ ଅଞ୍ଚଳକୁ ଭୁଲରେ କେବେ ପଡ଼େ ନାହିଁ । ଦେଶ ସ୍ୱାଧୀନ କି ପରାଧୀନ ଏ ଅଞ୍ଚଳର ଲୋକେ ଜାଣନ୍ତିନି, ଜାଣି ବା କି ଲାଭ ?

ଏହି ଗାଁ ଗୁଡ଼ିକ ବ୍ଲକ୍ ଅଧୀନକୁ ଆସିଲା ଦିନରୁ ସରକାରଙ୍କ ଗ୍ରାମ ଉନ୍ନୟନ ଯୋଜନାର ପ୍ରଚାର ଏହି ଗାଁ ଗୁଡ଼ିକରେ ଯେ ନ ହୋଇଛି ତା' ନୁହେଁ । ଲୋକମାନଙ୍କୁ ନାନା ମିଥ୍ୟା ପ୍ରତିଶ୍ରୁତି ଦିଆଯାଇ ସେମାନଙ୍କ କଲ୍ୟାଣାର୍ଥେ ଆସିଥିବା ଟଙ୍କାର ଅଧିକାଂଶ ବ୍ୟକ୍ତି ବିଶେଷଙ୍କ ନିକଟକୁ ଚାଲିଯାଇଛି, କିଛି ରାଜନୀତି ଦଳଙ୍କ ପାଣ୍ଠିରେ ସାମିଲ ହୋଇଯାଇଛି ।

ବ୍ଲକର ରାସ୍ତାଘାଟର ଉନ୍ନତି, ସଘନ କୃଷି ଯୋଜନା, ସଘନ ପଶୁପାଳନ, ସବୁଜ ବିପ୍ଳବ, ଶ୍ୱେତ ବିପ୍ଳବ ନାଁରେ ଲକ୍ଷ ଲକ୍ଷ ଟଙ୍କା ଏହି ବ୍ଲକକୁ ଆସିଛି, କିନ୍ତୁ ଗାଁରେ ପହଞ୍ଚିପାରିନି । ଅଧାବାଟରୁ ରହିଯାଇଛି । ନୂଆ ନୂଆ ପ୍ରକାର ବିହନ, ସାର, କୀଟନାଶକ ଆଦି ଯାହା ଆସେ, ତାହା ବ୍ଲକ ଅଫିସରୁ ହିଁ ହରଣଚାଲ ହୋଇଯାଏ । ସରକାରଙ୍କଠାକୁ ମିଛ ରିପୋର୍ଟ ଯାଏ ଗାଁମାନଙ୍କରେ ବଣ୍ଟାଗଲା ବୋଲି । ଏଥିରୁ କେତେ ଲୋକ ଯେ ହାତ ଚକ୍‌କଣ କରନ୍ତି, ତା'ର ଇୟତ୍ତା ନାହିଁ ।

ତା'ଛଡ଼ା ଗାଁଲୋକଙ୍କ ନାଁରେ କଣ୍ଟ୍ରୋଲ ଚିନି, ତେଲ, ଗହମ ଆସେ । ବ୍ୟବସାୟୀମାନଙ୍କ ଦୟାରୁ ସେସବୁ ଜନସଙ୍କ ଭାଗ୍ୟରେ ଗାଁ ଦର୍ଶନ ମିଳେନି । ଯେଉଁଠି କିଣା ହୁଏ, ସେଇଠି ବିକ୍ରୀ ହୋଇ ସେଠାରୁ ଅନ୍ୟତ୍ର ଚାଲିଯାଏ । ଖାଲି କଣ୍ଟ୍ରୋଲ

ବ୍ୟବସାୟୀଙ୍କ ଖାତାରେ ନାଁ ଭରତି ହୁଏ, କେତେ ସତ ଆଉ କେତେ ମିଛ ନାଁ। ଏହି ଲାଭ ଯେ ଖାଲି ଜଣକ ପକେଟକୁ ଯାଏ, ତା ନୁହେଁ। ଶୁଣାଯାଏ, ଏଥିର କିଛି ଅଂଶ ଜିଲ୍ଲାର ବଡ଼ ବଡ଼ ଅଫିସରଙ୍କ ଘରକୁ ବିଭିନ୍ନ ରୂପ ନେଇଯାଏ।

ବନମାଳିପୁର ବ୍ଲକର ଭାଗ୍ୟରେ ଯେ ସବୁଦିନେ ଏଇ ଅବସ୍ଥା ଲେଖାଥିଲା, ତା' ନୁହେଁ। ହଠାତ୍ ଦିନେ ଏହି ବ୍ଲକର ଭାଗ୍ୟ ପରିବର୍ତ୍ତନ ହେଲା। ନୂଆ ହୋଇ ଏ ବ୍ଲକକୁ ଆସିଲେ ବିଡିଓ ରାମକୃଷ୍ଣ ନାଏକ। ବିଡିଓଟି ଅତ୍ୟଧିକ ପରୋପକାରୀ। ଗାଁ ଲୋକଙ୍କ ଅବସ୍ଥା କେମିତି ଭଲ ହେବ, ସେଥିପ୍ରତି କଡ଼ା ଦୃଷ୍ଟି।

ବେଙ୍ଗଲା ଖୁଣ୍ଟ ଶକ୍ତ ହେଲେ ଯେମିତି ବଳଦମାନେ ଏଆଡ଼େ ସେଆଡ଼େ ହୋଇପାରନ୍ତିନି, ସେହିଭଳି ବିଡିଓ ଯଦି ସଚ୍ଚା ଲୋକ ହୁଅନ୍ତି ତେବେ ଗ୍ରାମସେବକ, ଗ୍ରାମସେବିକା, ଏସ୍.ଇ.ଓ.ମାନେ ହାତ ଚକ୍‌କଣ କରିପାରନ୍ତିନି। ନୂଆ ବିଡିଓ ଆସିବା ସଙ୍ଗେ ସଙ୍ଗେ ବନମାଳିପୁର ବ୍ଲକର ଭାଗ୍ୟ ଖୋଲିଗଲା। ଗୋବିନ୍ଦପୁର ସମେତ ଏହି ବ୍ଲକର ଗ୍ରାମପଞ୍ଚାୟତଗୁଡ଼ିକୁ ଘନ ଘନ ବିଡିଓଙ୍କ ଗସ୍ତ ଚାଲିଲା। ଗାଁର ପ୍ରକୃତ ଅବସ୍ଥା ପର୍ଯ୍ୟବେକ୍ଷଣ କରି ଲୋକମାନଙ୍କୁ କି କି ସାହାଯ୍ୟ ଦିଆଯାଇ ସେମାନଙ୍କ ଅବସ୍ଥାର ଉନ୍ନତି କରାଯାଇ ପାରିବ, ବିଡିଓଙ୍କ ପ୍ରଧାନ ଚିନ୍ତାର ବିଷୟ ହୋଇପଡ଼ିଲା।

ବିଡିଓଙ୍କ ସାଥିକୁ ପରୋପକାରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ଜୁଟିଗଲେ ମିଷ୍ଟର ଗୌତମ କର। ଅଧିକ ଧର୍ମପରାୟଣ, ଡେପୁଟି ମାଜିଷ୍ଟ୍ରେଟରୁ ଉଠି ଉଠି ଆଇ.ଏ.ଏସ୍. ହୋଇଛନ୍ତି। ଟୋକା ଆଇ.ଏ.ଏସ୍.ଙ୍କ ଭଳି ଏହାଙ୍କ ରକ୍ତ ସେତେ ଗରମ ନୁହେଁ। ଯଥେଷ୍ଟ ଶୀତଳ। ସେ ଭଗବାନଙ୍କୁ ବଡ଼ ଭୟ କରନ୍ତି। ଅନ୍ୟାୟର ପାଖ ମାଡ଼ନ୍ତି ନାହିଁ। ନିଜ ଜିଲ୍ଲାର ଲୋକଙ୍କ ଅବସ୍ଥା କେମିତି ଭଲ ହେବ, ସେଥିକୁ କଡ଼ା ନଜର।

ଠିକ୍ ଲୁହାକୁ ଠିକ୍ କମାର ଭଳି ପରୋପକାରୀ ବିଡିଓଙ୍କ ସହିତ ପରୋପକାରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ବନମାଳିପୁର ବ୍ଲକର ଭାଗ୍ୟ ବଦଳାଇଦେଲେ। ଗାଁରେ ରାସ୍ତା କେମିତି ତିଆରି ହେବ, ପିଲାଙ୍କ ପାଇଁ ସ୍କୁଲ ବସିବ, ନଦୀ, ପୋଖରୀ ସଫା ହୋଇ ମାଛଚାଷ ହେବ, ଜମି ଗୁଡ଼ାକରେ ଭଲ ବିହନ ଓ ସାର ଦେଇ ଚାଷର ଉନ୍ନତି କରାଯିବ, ଏଇଭଳି ବହୁ ଯୋଜନା ବିଡିଓଙ୍କ ସହାୟତାରେ ଗ୍ରାମମାନଙ୍କରେ ଆରମ୍ଭ ହେଲା।

ଆଗ ବିଡିଓଙ୍କ ଭଳି ରାମକୃଷ୍ଣବାବୁ କାଗଜ କଲମର ବିଡିଓ ନ ଥିଲେ, ସେ ଥିଲେ ପ୍ରକୃତରେ କାମିକା ବିଡିଓ। ସରକାର ବ୍ଲକକୁ ଯାହା ସାହାଯ୍ୟ ଦେଉଛନ୍ତି ସେଗୁଡ଼ିକ ଲୋକଙ୍କଠାରେ କେମିତି ଠିକ୍ ଠିକ୍ ପହଞ୍ଚିବ, ସବୁବେଳେ ନଜର। ନୂଆ ବିଡିଓଙ୍କ ସାଧୁତାରେ ଗ୍ରାମସେବକ, ଗ୍ରାମସେବିକା, ଏସ୍.ଇ.ଓ.ମାନେ ଥରହର। ବିଡିଓଙ୍କୁ ଜିଲ୍ଲା ମାଜିଷ୍ଟ୍ରେଟ୍ ତାଙ୍କ ସାଧୁତା ପାଇଁ ଭଲ ପାଆନ୍ତି, ଏକଥା ତଳ ଅଫିସରମାନେ ଶୁଣିଥିବେକୁ ସେମାନଙ୍କ ଦେହ ଥରି ଉଠୁଥାଏ। ଗାଁରେ କିଛି ନ କରି ମିଛ ରିପୋର୍ଟରେ ସେମାନେ

ଆଉ ଖାଡା ପୁରୁଉ ନାହାନ୍ତି । ଗାଁର କଣ୍ଟ୍ରୋଲ ଜିନିଷ ଆଉ ପୂର୍ବଭଳି ସହରରେ ବିକ୍ରୀ ହୋଇଯାଉନି ଅଧିକ ଦରରେ ।

ରାମକୃଷ୍ଣବାବୁଙ୍କର ଦିନେ ଡେରା ପଡ଼ିଲା ଗୋବିନ୍ଦପୁର ଗ୍ରାମ ପଞ୍ଚାୟତରେ । ଗ୍ରାମସେବକ ଓ ଗ୍ରାମସେବିକାମାନେ ଘର ଘର ବୁଲି ଗ୍ରାମବାସୀମାନଙ୍କୁ ଡାକି ଏକ ସଭା କଲେ, ଯେଉଁ ସଭାରେ ଉଦ୍‌ବୋଧନ ଦେଲେ ବିଡ଼ିଓ ।

ବ୍ଲକ ହେବା ଦିନରୁ କୌଣସି ବିଡ଼ିଓ ଗୋବିନ୍ଦପୁର ଅଞ୍ଚଳକୁ କେବେ ଆସି ନ ଥିଲେ, କି ଲୋକଙ୍କର ଉପକାର ହେଲାଭଳି କି କି କାମ ବ୍ଲକରେ କରାଯାଇପାରିବ, ସେ ସମ୍ବନ୍ଧରେ ଗ୍ରାମବାସୀଙ୍କ ସହିତ ଆଲୋଚନା କି ପରାମର୍ଶ କରି ନ ଥିଲେ ।

ବ୍ଲକର ବିଡ଼ିଓ ଗ୍ରାମବାସୀଙ୍କୁ ଡାକି ଆଲୋଚନା କରିବା ଏହି ସର୍ବପ୍ରଥମ । ବ୍ଲକ ଅଫିସର ଗାଁର କି କି ଉନ୍ନତି କରାଯିବ ବୋଲି କହିବେ ଶୁଣିବା ପାଇଁ ଗାଁ ଯାକର ଲୋକେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ସ୍କୁଲ ପାଖ ପଡ଼ିଆରେ ଆସି ଜମା ହେଲେ । ଗାଁର ମୁଖିଆମାନେ ଆଗ ଧାଡ଼ିରେ ବସିଥାନ୍ତି ।

ବିଡ଼ିଓ ଆରମ୍ଭ କଲେ ସର୍ବପ୍ରଥମେ ଗାଁ ସ୍କୁଲରୁ । ଗାଁ ସ୍କୁଲର ଦୁରବସ୍ଥା ଦେଖାଇ ଗ୍ରାମବାସୀମାନଙ୍କୁ କହିଲେ, "ବହୁଦିନ ତଳେ ଏଇ ସ୍କୁଲଟି ସମ୍ଭବତଃ ତିଆରି ହୋଇଥିଲା । ସେତେବେଳେ ଗାଁର ପିଲାମାନେ ଏ ସ୍କୁଲରେ ପଢୁଥିଲେ । ସହରମାନଙ୍କରେ ପ୍ରତିବର୍ଷ ସ୍କୁଲର ଛାତ୍ରସଂଖ୍ୟା ବଢୁଥିବା ବେଳେ ଏ ସ୍କୁଲରେ ଛାତ୍ରସଂଖ୍ୟା କମି କମି ଚାଲିଛି । ସ୍କୁଲ ଘର ମରାମତି ହେବାକୁ ନାହିଁ । ଭଲ ଶିକ୍ଷକ ଦେଖି ନ ରଖିଲେ ଏହି ଗାଁର ଶିକ୍ଷା ଉପରକୁ ଯିବା ପରିବର୍ତ୍ତେ ନିମ୍ନଗାମୀ ହେବ । ଏଇ ସ୍କୁଲ ଘରର ମରାମତି, ଭଲ ଶିକ୍ଷକ ରଖିବା ଓ ଗାଁର ପିଲାମାନେ ଯେମିତି ସମସ୍ତେ ପଢ଼ିବେ, ସେହି ହେଲା ମୋର ସର୍ବପ୍ରଥମ କାମ ।

ତା'ପରିକୁ ଚାଷ । ମୁଁ ଏ ଗାଁର ଚାଷର ଦୁରବସ୍ଥା ଦେଖିଛି । ନୂଆ ନୂଆ ପ୍ରକାର ବିହନ, ସାର ବ୍ୟବହାର କରି ଜମିର ଅମଳ କେମିତି ବଢ଼ାଇ ହେବ, ମୁଁ ଆପଣମାନଙ୍କୁ ଏ ବର୍ଷ ଚାଷକରି ଦେଖାଇଦେବି ।

ଗାଁର ପୋଖରୀକୁ ସଫା କରି ମାଛଚାଷ, ନଷ୍ଟ ହୋଇ ଯାଇଥିବା ରାସ୍ତାଘାଟ ଗୁଡ଼ିକୁ ଉଦ୍ଧାର କରି ସେଗୁଡ଼ିକର ଉନ୍ନତି କରିବା ମୋର ଅନ୍ୟତମ କାମ । ଖାଲି ମୋର ଆପଣମାନଙ୍କୁ ଅନୁରୋଧ, ସରକାରରୁ ଯାହା ଅର୍ଥ ବା ସାହାଯ୍ୟ ଆସୁଛି ତାହା ଯଥାଯଥ ଭାବରେ ଯେମିତି ଗାଁରେ ଖରଚ ହୁଏ, ଆପଣମାନେ ଟିକିଏ ଦୃଷ୍ଟି ରଖିଥିବେ । ତା' ନ ହେଲେ କେଉଁ ସ୍ତରରେ କି ଖିଲାପ ହୋଇଯିବ ସହଜରେ ଧରାପଡ଼ିବ ନାହିଁ । ଗାଁର ପଞ୍ଚାୟତ ସମିତି ନିର୍ବାଚନ ଛେଲ୍‌ଦିନ ହେଲା ହୋଇନି । ଏହି ନିର୍ବାଚନ ସଫଳ ସଫଳ ଶେଷ କରିଦେଲେ ନିଜ ନିଜ ଗ୍ରାମର ପ୍ରତିନିଧିମାନେ ଏ ଦିଗରେ ସରକାରଙ୍କୁ ସାହାଯ୍ୟ କରିବା ପାଇଁ ବାହାରି ଆସିବେ ।

# ଅଠର

ଘୁଣ୍ଟୁ ଘୁଣ୍ଟୁ ଗ୍ରାମପଞ୍ଚାୟତ ସମିତି ନିର୍ବାଚନ ଶେଷ ହୋଇଗଲା । ଗାଁର ସବୁଠାରୁ ଯେ ବଡ଼ ଜମି ମାଲିକ, ସେ ହେଲେ ଚେୟାରମେନ୍ । ବିଡ଼ିଓ ତାଙ୍କ ସହିତ ଆଲୋଚନା କରି ଧୀରେ ଧୀରେ ଗାଁର ବିଭିନ୍ନ ପ୍ରକାର ଉନ୍ନତି କରାଇଲେ ।

ସ୍କୁଲ ଘରର ମରାମତି କରାଇ ସେଠାକୁ ଅଣାଇଲେ ସେହି ଗାଁର ଶିକ୍ଷକ ହରି ମହାନ୍ତିଙ୍କୁ । ହରି ମହାନ୍ତିଙ୍କ ଘର ଯଦିଓ ସେହି ସ୍କୁଲ ପାଖରେ, ତାହାଙ୍କୁ ଆଗ ବିଡ଼ିଓ ବଦଳି କରି ଦେଇଥିଲେ ସେଠାରୁ ତିନି ଘୁରିଖଣ୍ଡ ଗାଁ ଗ୍ରାଉଣ୍ଡ ଆଉ ଏକ ଗାଁକୁ । ହରିବାବୁ ଖୁବ୍ ସଚ୍ଚୋଟ ଲୋକ, ପରୋପକାରୀ । ସେ ଏଠି ଥିଲାବେଳେ ଘର ଘର ବୁଲି ପିଲାଙ୍କୁ ଡାକି ତାଙ୍କ ସ୍କୁଲକୁ ଆଣୁଥିଲେ ।

ତାଙ୍କ ବଦଳି ପରେ ଯିଏ ଆସିଲେ ସେ ଗାଁ ସ୍କୁଲ କେବେ ଦର୍ଶନ କରନ୍ତି ନାହିଁ । ସେ ଘରେ ଥାଇ ବ୍ୟବସାୟ କରନ୍ତି । ମାସର ପ୍ରଥମ ସପ୍ତାହରେ ବ୍ଲକକୁ ଆସି ଦରମା ନେଇଯାନ୍ତି । "ଗାଧେ ଗାଧେ, ତମର ଅଧେକୁ ମୋର ଅଧେ" ନୀତିରେ କିଛି ଦକ୍ଷିଣା ଦରମା ନେଲାବେଳେ ଦେଇଯାଆନ୍ତି ।

କିନ୍ତୁ ନୂଆ ବିଡ଼ିଓ ଆସିଲାପରେ ଆଉ ସେ କାମ ପଟିଲା ନାହିଁ । ତାଙ୍କର ଏଭଳି କାମ ଦେଖି ତାଙ୍କୁ ଅନ୍ୟତ୍ର ବଦଳି କରାଯାଇ ସ୍କୁଲର ପୂର୍ବ ଶିକ୍ଷକ ହରିବାବୁଙ୍କୁ ଅଣାଗଲା । ହରିବାବୁ ସେହି ଗାଁର ଲୋକ । ସେ ଗାଁ ପାଇଁ ଯେତେ ଚେଷ୍ଟା କରିବେ, ଅନ୍ୟ କେହି ଶିକ୍ଷକ କ'ଣ ସେତେ କରିବେ ? ସତକୁସତ ହରିବାବୁ ଆସିଲା ଦିନରୁ ସ୍କୁଲ ଠିକ୍‌ମତ ଚାଲିଲା । ଦିନକୁଦିନ ଛାତ୍ରସଂଖ୍ୟା ବଢ଼ିବାରେ ଲାଗିଲା ।

ଗାଁ ଭିତରେ ହରିବାବୁଙ୍କ ଚଳପ୍ରଚଳ ଖୁବ୍ ଭଲ । ଏଣେ ମାଷ୍ଟ୍ରି ଚାକିରି, ତେଣେ ଭଲ ଜମିବାଡ଼ି ଦି'ଖଣ୍ଡ ଅଛି । ନିଜେ ଚାଷ କରି ଦି'ପଇସା ଭଲ ଆୟ କରନ୍ତି । ପିଲା ବୋଲି ଗୋଟିଏ ଝିଅ, ଗୋଟିଏ ପୁଅ । ଝିଅଟି ବଡ଼ । ନାଁ ଶାନ୍ତିଲତା । ପାଖ କଳାପଥର ହାଇସ୍କୁଲରୁ ପ୍ରଥମଶ୍ରେଣୀରେ ମେଟ୍ରିକ୍ୟୁଲେସନ ପାସ୍ କରି ଘରେ ଅଛି । ହରିବାବୁଙ୍କର ଶକ୍ତି ନାହିଁ ଝିଅକୁ କଲେଜରେ ପଢ଼ାଇବାକୁ । ଯା'ବା ପଢ଼ନ୍ତା, ବାଙ୍କି କଲେଜ ଘରଠାରୁ ସାତ ଆଠ ମାଇଲ ଦୂର । ଝିଅ ପିଲାଟା ଏତେଦୂର କ'ଣ ଯାଇ ଆସି କଲେଜରେ ପଢ଼ି ପାରିବ ? ତା'ଛଡ଼ା ହଷ୍ଟେଲରେ ରଖି ଝିଅକୁ ପଢ଼ାଇବା ହରିବାବୁଙ୍କ ଶକ୍ତି ବାହାରେ । ଝିଅଟିକୁ କେମିତି ହାତକୁ ଦି'ହାତ କରିଦେଲେ ସେ ନିଶ୍ଚିନ୍ତ ହେବେ, ସେଇ ତାଙ୍କର ଚିନ୍ତା ।

ଝିଅଟି ଦେଖିବାକୁ ବେଶ୍ ଡଉଲ ଡାଉଲ, ସତେ ଯେମିତି ଗୋଟିଏ ଛାଞ୍ଚରେ ଗଢ଼ା । ଚମ୍ପାରଙ୍ଗ ଭଳି ବର୍ଣ୍ଣ । ସ୍ୱଭାବ ଚରିତ୍ର ଚାଲିଚଳନ ଭାରି ଧୀର । ମା' ବାପାଙ୍କୁ ଭାରି

ଖାଉଥିଲେ । ପାଠପଢ଼ା ବନ୍ଦ ହେବା ଦିନରୁ ମା'ଙ୍କୁ ଘରର କିଛି କାମ କରିବାକୁ ଦିଅନ୍ତି । ପୁଅ, ଝିଅ, ସ୍ୱାମୀଙ୍କୁ ନେଇ ହରିବାବୁଙ୍କ ସ୍ତ୍ରୀ ବେଶ୍ ସୁଖରେ ସଂସାର ଚଳାନ୍ତି ।

ବି.ଡି.ଓ. ଦିନେ ଗାଁକୁ ଆସିଥିଲେ । ଗାଁର ମୁଖିଆ ମୁଖିଆମାନଙ୍କୁ ଡାକି ଏକ ସଭା କରାଇଲେ । ସେହି ସଭାରେ ହରିବାବୁ ଜଣେ ନାମଜାଦା ସଭ୍ୟ । ବି.ଡ଼ି.ଓ. ଯେଉଁ ନୂଆ ନୂଆ କାମ ଗାଁରେ କରିବାକୁ ଚାହାନ୍ତି, ତାକୁ ଗାଁ ଲୋକଙ୍କୁ ବୁଝାଇ ଦିଅନ୍ତି ହରିବାବୁ । ଗାଁର ରାସ୍ତା କେମିତି ତିଆରି ହେବ, ପୋଖରୀ ସଫା ହୋଇ ମାଛ ଯାଆଁଳ ଛଡ଼ାଯିବ, ପିଇବା ପାଣି ଗାଁ ଲୋକଙ୍କୁ ଯୋଗାଇବା ପାଇଁ ଟିଉବ୍‌ୱେଲ ବସିବ, ଗାଁରେ ପନିପରିବା, ଫଳବୃକ୍ଷ ହେବ, ସରକାର ପଠାଇଥିବା ନଡ଼ିଆଗଛ ଆମ୍ବଗଛ 'ଚାରା'ସବୁ କେଉଁଠି କେଉଁଠି ଲଗାଯିବ, ସେହି ହେଲା ଆଲୋଚନାର ବିଷୟବସ୍ତୁ ।

ଗାଁର ସ୍ତ୍ରୀ ଲୋକମାନଙ୍କୁ ପାଠ ପଢ଼ାଇବା, ନାନାଦି ଘରକାମ ଶିକ୍ଷାଦେବା ପାଇଁ ଓ ପରସ୍ପର ମଧ୍ୟରେ ଭଲ ବୁଝାମଣା ଓ ମିଶାମିଶି ପାଇଁ ଏକ ମହିଳା ସମିତି ଗଠନର ଆବଶ୍ୟକତା ଉପରେ ଆଲୋଚନା ହେଲା । ମହିଳା ସମିତିରେ ମାଇପେ ପାଠ ପଢ଼ିବେ, ସୂତାକଟା ଶିଖିବେ, ସିଲେଇକଳରେ ଲୁଗା ସିଲେଇ କରି ଶିଖିବେ, ପେଣ୍ଟ, ଜାମା, କଟାକଟି କରି ଶିଖିବେ, ରୋଗ ପ୍ରତିଷେଧକ, ଜନ୍ମ ନିୟନ୍ତ୍ରଣ ସମ୍ବନ୍ଧରେ ନାନା ନୂଆ ନୂଆ କଥା ଜାଣିବେ, ଏହିସବୁ କାମ ପାଇଁ ଗୋଟିଏ ମହିଳା ସମିତି ଗଢ଼ିବାକୁ ପଡ଼ିବ ।

ବି.ଡ଼ି.ଓ.ଙ୍କ ପରାମର୍ଶ ଶୁଣି ସଭ୍ୟମାନେ ଅମତ ହେବେ ବା କାହିଁକି ? ସରକାର ତ ସବୁ ପ୍ରକାର ସାହାଯ୍ୟ ଦେବେ, ଅମତ ହେବାର କାରଣ କିଛି ନାହିଁ । ଯାହାସବୁ ତ ହେଉଛି ଗାଁର ଭଲ ପାଇଁ । ସମସ୍ତେ ରାଜି ହୋଇଗଲେ । କଥା ରହିଲା, ଏହି ମହିଳା ସମିତିର ସେକ୍ରେଟେରୀ କିଏ ହେବ ?

ଜଣେ ଶିକ୍ଷିତା ସ୍ତ୍ରୀ ଲୋକ ଦରକାର, ଯେ କି ଏହି ଗାଁର ଲୋକ ହୋଇଥିବ ଓ ଗାଁର ସ୍ତ୍ରୀ ଲୋକମାନଙ୍କ ସହିତ ତା'ର ଭଲ ସଦ୍‌ଭାବ ଥିବ । ସେ ମହିଳା ସମିତିର ହିସାବପତ୍ର ଠିକ୍ ଭାବରେ ରଖି ଜାଣିଥିବ ।

ବି.ଡ଼ି.ଓ.ଙ୍କ ମୁହଁରୁ ସେକ୍ରେଟେରୀ କଥା ଶୁଣି ସମସ୍ତେ ପରସ୍ପରର ମୁହଁକୁ ଚାହାଁଚାହିଁ ହେଲେ । ଏମିତି ସ୍ତ୍ରୀଲୋକ ଗାଁରେ କାହିଁ ? ସମସ୍ତଙ୍କର ଭାଲେଣି ପଡ଼ିଲା । ସମସ୍ତଙ୍କୁ ଚୁପ୍ ରହିବା ଦେଖି ବି.ଡ଼ି.ଓ. କହିଲେ, "ଏହି ଗାଁରେ କ'ଣ ଜଣେହେଲେ ଶିକ୍ଷିତା ସ୍ତ୍ରୀଲୋକ ନାହାନ୍ତି, ଯେ କି ଏହାର ଦାୟିତ୍ୱ ନେଇ ପାରିବେ ? ଏହାପାଇଁ ମୁଁ ତ ଅନ୍ୟ ଗାଁରୁ ସ୍ତ୍ରୀଲୋକ ଅଣାଇ ପାରିବିନି । ଆପଣମାନଙ୍କ ଗାଁରୁ ଯେମିତି ହେଲେ ଜଣେ ସ୍ତ୍ରୀଲୋକ ବାହାର କରିବାକୁ ପଡ଼ିବ ।

ସମସ୍ତଙ୍କୁ ଚୁପ୍ ରହିବାର ଦେଖି ବି.ଡ଼ି.ଓ. ହରିବାବୁଙ୍କୁ ପଚାରିଲେ, "କ'ଣ ହରିବାବୁ, ଆପଣଙ୍କ ଗାଁରେ କ'ଣ ମହିଳା ସମିତିର ସେକ୍ରେଟେରୀ ହେବା ପାଇଁ ଜଣେ-

ହେଲେବି ସ୍ତ୍ରୀଲୋକ ମିଳିବେନି ? ଲୋକ ନ ମିଳିଲେ ମହିଳା ସମିତି ଆରମ୍ଭ ହେବ କେମିତି ?"

ହରିବାବୁ ଚିନ୍ତା କରିବାକୁ ଲାଗିଲେ, ସତକଥା ତ, ସେକ୍ରେଟେରୀଟାଏ ନ ମିଳିଲେ ଏ ଯୋଜନା ତ ବାଏଁ ବାଏଁ ବନ୍ଦ ହୋଇଯିବ । ମେମ୍ବରଙ୍କ ଭିତରୁ ଜଣେ କହିଲେ, "ହରିବାବୁଙ୍କ ଝିଅ ଛଡ଼ା ଏ ଗାଁରେ କେହି ପାଠୁଆ ସ୍ତ୍ରୀଲୋକ ନାହାନ୍ତି ଆଜ୍ଞା । ହରିବାବୁ ଯଦି ରାଜି ହୋଇ ତାଙ୍କୁ ସେକ୍ରେଟେରୀ କରନ୍ତି, ତେବେ ହୋଇପାରିବ, ନୋହିଲେ ନାହିଁ ।"

ହରିବାବୁ ଗୁଁ ଘୁଁ ହୋଇ କହିଲେ, "ତା କେମିତି ହେବ ଆଜ୍ଞା ? ଏତେ ଛୋଟ ଝିଅଟେ, ସେ କ'ଣ ଏତେବଡ଼ ଦାୟିତ୍ୱ ମୁଣ୍ଡରେ ବହନ କରି ପାରିବ ? ସେ ଏଇ ଗତବର୍ଷ ମେଟ୍ରିକ୍ ପାସ୍ କରିଛି । ବର୍ଷ ଷୋହଳ ସତର ଭିତରେ ।"

"ହଁ, ନ ହେବ କାହିଁକି ?" ପଞ୍ଚାୟତ ସମିତି ଚେୟାରମ୍ୟାନ କହିଲେ, "ଶାନ୍ତି ବେଶ୍ ଦାୟିତ୍ୱବନ୍ତୀ । ଆମ ଗାଁର ସବୁ ସ୍ତ୍ରୀଲୋକ ତାକୁ ନଜର ଝିଅଭଳି ଭଲ ପାଆନ୍ତି । ସେ ସେକ୍ରେଟେରୀ ହେଉ, ଆମେସବୁ କ'ଣ ସାହାଯ୍ୟ କରିବୁନି ତାକୁ ? ସିଏ ତ ଆମ ସମସ୍ତଙ୍କ ଝିଅ ଭଳିଆ ।"

ହରିବାବୁ ପ୍ରସ୍ତାବଟିକୁ ବିରୋଧ କରୁଥିଲେ, ଅନ୍ୟମାନେ ତାଙ୍କ ହାତ ଧରିପକାଇ ଆଉ ବିରୋଧ ନ କରିବାକୁ ଅନୁରୋଧ କଲେ ।

ଚେୟାରମେନ୍ କହିଲେ, "ଗୋଟାଏ ଦୁଇଟା ବର୍ଷ ସେ ସମ୍ଭାଳୁ ହରିବାବୁ, ଦେଖିବା ପରେ ଆଉ କାହାକୁ କରିବା । ଶାନ୍ତି କ'ଣ ଆଉ ସବୁଦିନେ ରହିପାରନ୍ତା କି ? ସେ ତ ପରଘରୀ, ଦିନ କେଇଟା ଗଲେ ସେ ପରଘରକୁ ଚାଲିଯିବ । ବର୍ତ୍ତମାନ ପାଇଁ ଶାନ୍ତି ଏହି ଦାୟିତ୍ୱ ନେଉ । କ'ଣ କହୁଛନ୍ତି ହରିବାବୁ ?"

ହରିବାବୁ ଆଉ କ'ଣ କହିବେ ? ଅନିଚ୍ଛାସତ୍ତ୍ୱେ ଚୁପ୍ ରହିଲେ । ଏତେଗୁଡ଼ିଏ ଲୋକଙ୍କ ମୁହଁକୁ କ'ଣ ସେ ଭାଙ୍ଗି ପାରିବେ ?

ପରିଶେଷରେ ହରିବାବୁଙ୍କ ଝିଅ ଶାନ୍ତି ମହିଳା ସମିତିର ସେକ୍ରେଟେରୀ ହେବା ସ୍ଥିର ହେଲା । ଏଥିରେ ସମସ୍ତଙ୍କ ଆନନ୍ଦ । ଗାଁର ଝିଅ, ଗାଁରେ ରହି କାମ କରିବ, ଚିନ୍ତା କାହିଁକି ? ଝିଅଟି ବେଶ୍ ପରିଶ୍ରମୀ, ମିଷ୍ଟଭାଷିଣୀ, ହିସାବପତ୍ର ଠିକ୍ ଭାବରେ ରଖିବାକୁ ଆଗ୍ରହୀ, ବାପ ଭଳି ସଚ୍ଚୋଟ ଓ ସାଧୁ, ପଇସାଟିଏ ଏପାଖ ସେପାଖ କରିବନି । ସେହିଭଳି ଲୋକଟିଏ ମିଳିଥିବାରୁ ବି.ଡି.ଓ.ଙ୍କର ଭାରି ଆନନ୍ଦ ।

ସରକାରଙ୍କ ତରଫରୁ ସିଲେଇକଳ, ବହି, ସିଲଟ, ଲଣ୍ଠନ ଆଦି ମହିଳା ସମିତିକୁ ଚାଲି ଆସିଲା । ଶାନ୍ତି ଏ ସବୁର ଟିକିନିଖି ହିସାବ ରଖି ସେଗୁଡ଼ିକର ବ୍ୟବହାର କେମିତି କ'ଣ ହେବ ତହିଁର ଏକ ଯୋଜନା ତିଆରି କଲା । ଝିଅଟିର କାର୍ଯ୍ୟତତ୍ପରତା ଦେଖି ବି.ଡ଼ି.ଓ. ଭାରି ଖୁସି ହେଲେ ।

ମହିଳା ସମିତିକୁ ସବୁ ଦିନ ଆସିଗଲା, ଏହାର ଦିନେ ଶୁଭାରମ୍ଭ ନ କଲେ ନ ହୁଏ । ମହିଳା ସମିତିକୁ ଉଦ୍‌ଘାଟନ କରିବା ପାଇଁ କେନ୍ଦ୍ରାଞ୍ଚଳ କମିସନର ମହୋଦୟଙ୍କୁ ଡାକିବାକୁ ମିଟିଂରେ ଠିକ୍ ହେଲା । ଏହି ସଭାରେ ପ୍ରଧାନ ଅତିଥି ଭାବରେ ଯୋଗଦେବେ କଟକ ଜିଲ୍ଲାର ଜିଲ୍ଲାପାଳ ଓ ସଭାପତି ହେବେ ଗୋବିନ୍ଦପୁର ଗ୍ରାମପଞ୍ଚାୟତର ଚେୟାରମେନ୍ । ଉଦ୍‌ଘାଟନ ଉତ୍ସବ କେଉଁଦିନ ହେବ ଦିନ ଧାର୍ଯ୍ୟ ହୋଇଗଲା । କମିସନର ଓ ଜିଲ୍ଲାପାଳଙ୍କୁ ଆମନ୍ତ୍ରଣ କରି ଗୋବିନ୍ଦପୁରକୁ ଆଣିବା ଦାୟିତ୍ୱ ବି.ଡ଼ି.ଓ. ନିଜେ ବହନ କଲେ ।

କେନ୍ଦ୍ରାଞ୍ଚଳ ରେଭିନ୍ୟୁ କମିସନର ଗୋବିନ୍ଦପୁର ଗ୍ରାମପଞ୍ଚାୟତକୁ ଆସିବେ ମହିଳା ସମିତି ଉଦ୍‌ଘାଟନ କରିବାକୁ । ଏଇକଥା ପ୍ରଚାରିତ ହୋଇଛି କି ନାହିଁ, ସଙ୍ଗେ ସଙ୍ଗେ ସେ ଅଞ୍ଚଳରେ ଉନ୍ନୟନ କାର୍ଯ୍ୟ ଜୋରସୋରରେ ଆରମ୍ଭ ହୋଇଗଲା ।

ଜିଲ୍ଲାପାଳ ଗୌତମବାବୁ ଘନ ଘନ ସେ ଅଞ୍ଚଳକୁ ଗସ୍ତ କରି ରାସ୍ତାଘାଟ ତିଆରି, ନଈ, ପୋଖରୀ ଆଦିର ପରିଷ୍କାର କାମ ତଦାରଖ କଲେ । ଫଳଗଛ ରୋପଣ, ରାସ୍ତାଘାଟ ଉନ୍ନୟନ ଆଦି ଯୋଜନା କେମିତି ଚାଲିଛି ଦେଖିବାକୁ ଘନ ଘନ ଆସିଲେ । କମିସନର ସାହେବଙ୍କ ଆଖିରେ ଏଗୁଡ଼ିକ ନିଶ୍ଚୟ ପଡ଼ିବ, ତେଣୁ ଜିଲ୍ଲାପାଳଙ୍କ ନିର୍ଦ୍ଦେଶରେ ଗାଁର ରାସ୍ତାଘାଟ, ନଈ, ପୋଖରୀ ସବୁ ପରିଷ୍କାର ପରିଚ୍ଛନ୍ନ କରାହେଲା ।

ସଭା ହେବା ପାଇଁ ବି.ଡ଼ି.ଓ.ଙ୍କ ନିର୍ଦ୍ଦେଶରେ ଏକ ସଭାମଞ୍ଚ ତିଆରି ହେଲା । ଏହି ମଞ୍ଚରେ ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହେବ । ଗାଁର ଛୋଟ ଛୋଟ ପିଲାମାନଙ୍କୁ ଶିଖାଇ ପ୍ରାରମ୍ଭିକ ସଙ୍ଗୀତ ଓ ଉଦ୍‌ଯାପନ ସଙ୍ଗୀତ ଶିକ୍ଷା ଦିଆଗଲା । ଶାନ୍ତ ଚେଷ୍ଟାରେ ଏସବୁ କରା ହେଲା । ସନ୍ଧ୍ୟା ପାଞ୍ଚଟାବେଳେ ଉଦ୍‌ଘାଟନ ଉତ୍ସବ ହେବା ସ୍ଥିର ହୋଇଥାଏ ।

× × × ×

ମହିଳା ସମିତିର ଉଦ୍‌ଘାଟନ ଦିନ । ସାଢ଼େ ଚାରିଟାସୁଦ୍ଧା କମିସନର ଭେଙ୍କଟରମନ୍ ଓ ଜିଲ୍ଲାପାଳ ଆସି ପହଞ୍ଚିଗଲେ । ସେଦିନ ସକାଳୁ ବି.ଡ଼ି.ଓ. ଏହି ଗାଁକୁ ଆସି ଆଉ ଘରକୁ ଫେରି ନାହାନ୍ତି । ଗ୍ରାମସେବକ ଓ ଗ୍ରାମସେବିକାମାନେ ଏଠିକାର ନାନା ପ୍ରକାର ବନ୍ଦୋବସ୍ତରେ ଲାଗି ପଡ଼ିଥାନ୍ତି । ଡର, କାଳେ କେଉଁଠି ଭୁଲଭଟକା ରହିଗଲେ କମିସନର ସାହେବ ବିଗିଡ଼ି ଯିବେ । ସବୁ ଠିକ୍‌ଠାକ୍ ହୋଇ ଯଥା ସମୟରେ ସଭାକାର୍ଯ୍ୟ ଆରମ୍ଭ ହେଲା ।

ଗାଁର ମୁଖିଆମାନଙ୍କ ଅନୁରୋଧରେ ଓ ଗ୍ରାମସେବକ ଓ ଗ୍ରାମସେବିକାମାନଙ୍କ ଡକାଡକିରେ ଗାଁର ସମସ୍ତେ ପୁଅ, ଝିଅ, ବୁଢ଼ା, ବୁଢ଼ୀ ନିର୍ବିଶେଷରେ ଆସି ପହଞ୍ଚିଗଲେ । ଖାଲି ଗୋବିନ୍ଦପୁର ଗାଁର ଲୋକ ନୁହେଁ, ଏହି ପଞ୍ଚାୟତର ସାତ ଆଠଖଣ୍ଡି ଗାଁର ଲୋକେ ଏଠି ଜମି ଯାଇଥାନ୍ତି । ଶୁଣିବେ ଗାଁର ଉନ୍ନତି ପାଇଁ କମିସନର ଓ କଲେକ୍ଟର ସାହେବ କ'ଣ ସବୁ କହିବେ ।

ଯଥା ସମୟରେ ପରଦା ଉଠିଲା । ଘନ ଘନ କରତାଳରେ ସଭାସ୍ଥାନ କମ୍ପି ଉଠିଲା । ସଭାମଞ୍ଚ ଉପରେ ବସିଥାନ୍ତି କମିସନର ସାହେବ, ତାଙ୍କ ପାଖକୁ କଲେକ୍ଟର ସାହେବ ମିଷ୍ଟର କର । ମଝିରେ ବସିଥାନ୍ତି ସଭାପତି ଗ୍ରାମପଞ୍ଚାୟତର ଚେୟାରମେନ୍ ମନମୋହନବାବୁ, ତାଙ୍କ ପାଖକୁ ମହିଳା ସମିତିର ସେକ୍ରେଟେରୀ ଶାନ୍ତି । ଏଥିପୂର୍ବରୁ ବଛା ଯାଇଥିବା ଗାଁର ଛୋଟ ଛୋଟ ପିଲମାନେ ସଫାସୁତୁରା ପୋଷାକ ପିନ୍ଧି ଅତିଥିମାନଙ୍କ ବେକରେ ଫୁଲମାଳ ଗଳାଇ ଦେଲେ ।

କିଛି ସମୟପରେ ମହିଳା ସମିତିର ସେକ୍ରେଟେରୀ ରିପୋର୍ଟ ପଢିଲେ । ସରକାରଙ୍କ ତରଫରୁ କ'ଣ କ'ଣ ସବୁ ଯୋଗାଯିବ ଓ ସେଗୁଡ଼ିକ ଗାଁର କି କି ଉନ୍ନୟନରେ ଲାଗିବ ସେ ଏଭଳି ଭାବରେ ହୃଦୟଗ୍ରାହୀ ଭାଷାରେ ପଢିଲେ ଯେ, ଘନ ଘନ କରତାଳରେ ସଭାମଞ୍ଚ କମ୍ପି ଉଠିଲା । ଗାଁର ଖାଲି ମହିଳାମାନଙ୍କ ସମସ୍ୟା ଉପସ୍ଥାପିତ ନ କରି ସବୁ ସମସ୍ୟା ସେ ଏମିତି ଭାବରେ ଫୁଟାଇପାରିଲେ ଯେ, ଯିଏ ଶୁଣିଲା ସେ ଭାବିଲା ଯେମିତି ଗାଁର ସର୍ବାଙ୍ଗୀଣ ଉନ୍ନତି ମହିଳା ସମିତିର ଦାୟିତ୍ୱ ।

ଏଡ଼ିକ ଛୋଟିଆ ଝିଅଟେ ଗାଁର ସାଧାରଣ ଅଭାବ ଅସୁବିଧାକୁ ଏତେ ଦକ୍ଷତାର ସହିତ ହୃଦୟଗ୍ରାହୀ ଭାଷାରେ ଫୁଟାଇ ପାରୁଛି ଦେଖି କମିସନର ସାହେବ ଓ ଜିଲ୍ଲାପାଳ ତାଟଙ୍କା । ସେମାନେ ଏତେ ମହିଳା ସମିତି ଦେଖି ଆସିଲେଣି, ଏଡ଼େ ଯୋଗ୍ୟା ସେକ୍ରେଟେରୀଟାଏ ସେମାନଙ୍କ ଆଖିରେ କେବେ ପଡ଼ିନ ।

କମିସନର ସାହେବ ତାଙ୍କ ଭାଷଣରେ ଗାଁର ସବୁ ଅସୁବିଧା ଗୋଟିକ ପରେ ଗୋଟିଏ କେମିତି ଦୂର କରି ହେବ ଓ ସରକାର ସେଥିପାଇଁ କେମିତି ଯୋଜନା କରୁଛନ୍ତି, ଲୋକମାନଙ୍କୁ ବୁଝାଇଲେ । ମହିଳା ସମିତିର ସେକ୍ରେଟେରୀ ରିପୋର୍ଟଟି ଏଡ଼େ ସୁନ୍ଦର କରି ତିଆରି କରି ପଢ଼ିଥିବାରୁ ସେ ଖୁବ୍ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଝିଅଟିର କାର୍ଯ୍ୟ-ଦକ୍ଷତାର ଖୁବ୍ ତାରିଫ୍ କଲେ । ସେକ୍ରେଟେରୀ ଅଳ୍ପ ବୟସ୍କା ହେଲେ ହେଁ ଜଣେ ଦକ୍ଷ ସେକ୍ରେଟେରୀ ଯେ ବଛା ଯାଇଛନ୍ତି, ସେ ଅତ୍ୟନ୍ତ ଖୁସି ହୋଇ ଏହି ମହିଳା ସମିତିର ଭବିଷ୍ୟତ ଯେ ଖୁବ୍ ଉଜ୍ଜ୍ୱଳମୟ ନ କହି ରହିପାରିଲେନି ।

ଜିଲ୍ଲାପାଳ ତାଙ୍କ ଭାଷଣରେ ସେକ୍ରେଟେରୀଙ୍କ କାର୍ଯ୍ୟଦକ୍ଷତାର ଖୁବ୍ ତାରିଫ୍ କଲେ । ସଭା ଭଙ୍ଗ ପରେ ଅତିଥିମାନଙ୍କୁ ଜଳଯୋଗରେ ଆପ୍ୟାୟିତ କରାଗଲା । କମିସନର ସାହେବ ଗଲାବେଳେ ସେକ୍ରେଟେରୀଙ୍କୁ ଆଶୀର୍ବାଦ କରି କହିଲେ, "ତୁ ମା ଭବିଷ୍ୟତରେ ଜଣେ ଦକ୍ଷ ସଂଗଠିକା ହେବୁ । ତୋ ଭଳି କର୍ମୀ ପାଇ ଏଇ ଅଞ୍ଚଳ ଆଜି ଧନ୍ୟ ।"

ଶାନ୍ତି କମିସନର ସାହେବଙ୍କ ପ୍ରଶଂସା ଗ୍ରହଣ କରି ତାଙ୍କୁ ଭକ୍ତିପୂତ ପ୍ରଣାମ ଜଣାଇ । ଝିଅର ପ୍ରଶଂସାରେ ହରିବାବୁଙ୍କ ଛାତି ଫୁଲେ ମୋଟ । କେତେ ବଡ଼ ବଡ଼

ଅଫିସରମାନେ ଝିଅର ଏମିତି ପ୍ରଶଂସା କରୁଛନ୍ତି କାହା ଛାତି ଫୁଲି ନ ଉଠିବ ଏହି ପ୍ରଶଂସା ଶୁଣିଲେ ? ସେ ଶାନ୍ତି ଭଳି ଝିଅ ପାଇ ପ୍ରକୃତରେ ଧନ୍ୟ ହୋଇଛନ୍ତି ।

ବି.ଡ଼ି.ଓ.ଙ୍କ ଚେଷ୍ଟା ଓ ଜିଲ୍ଲାପାଳଙ୍କ ଶୁଭଦୃଷ୍ଟି ପାଇ ବହୁ ଅର୍ଥ ଏ ଅଞ୍ଚଳକୁ ଉନ୍ନୟନ କାର୍ଯ୍ୟ ପାଇଁ ଆସିଲା । ମହିଳା ସମିତିରେ ସ୍ତ୍ରୀଲୋକମାନେ ପାଠ ପଢ଼ିବା ସଙ୍ଗେ ସଙ୍ଗେ ଧନ ଅର୍ଜ୍ଜନ କରିବା ପାଇଁ ବିଭିନ୍ନ ପ୍ରକାର ଟ୍ରେନିଂ ପାଇଲେ । ସରକାରଙ୍କ ପକ୍ଷରୁ ବହୁ ଜିନିଷପତ୍ର କିଣାଯାଇ ଏହି ଟ୍ରେନିଂ ପାଇଁ ଯୋଗାଇ ଦିଆଗଲା ।

ବି.ଡ଼ି.ଓ. ଓ ତାଙ୍କ କର୍ମଚାରୀ ଦଳ ଗୋବିନ୍ଦପୁର ଗ୍ରାମପଞ୍ଚାୟତରେ ସବୁ ପ୍ରକାର ଉନ୍ନତି ପାଇଁ ଲାଗି ପଡ଼ିଲେ । ଉନ୍ନତି ପାଇଁ କେତେ ପ୍ରକାର ବିହନ, ସାର, କୀଟନାଶକ ଆଦି ଗାଁରେ ଚାଷୀମାନଙ୍କୁ ଯୋଗାଇ ଦିଆଗଲା । ମାଛଚାଷ, ଫଳଚାଷ ଆଦି ନାଁରେ କେତେ କ'ଣ ଜିନିଷ ଗାଁମାନଙ୍କୁ ଆସିଗଲା । ଅଳ୍ପ କେଇଦିନ ଭିତରେ ଗୋବିନ୍ଦପୁର ଗ୍ରାମପଞ୍ଚାୟତ ହସି ଉଠିଲା । ଲୋକମାନେ ଭାବିଲେ ଯାହାହେଉ, ସେମାନଙ୍କ ଦୁର୍ଦ୍ଦିନ ଘୁଞ୍ଚିଯାଇ ସୁଦିନ ଚାଲି ଆସିଲା ।

## ଊଣେଇଶ

କିନ୍ତୁ ଗୋବିନ୍ଦପୁରର ସେହି ସୁଦିନ ବେଶିଦିନ ରହିଲାନି । ବନମାଳିପୁର ବ୍ଲକର ବି.ଡ଼ି.ଓ. ବଦଳି ହୋଇ ଚାଲିଗଲେ ଆଉ ଏକ ବ୍ଲକକୁ । ତାଙ୍କ ସହିତ ପିତୃପ୍ରତିମ ଜିଲ୍ଲାପାଳ ବି ବଦଳି ହୋଇଯାଇ ତାଙ୍କ ସ୍ଥାନରେ ଆସିଲେ ଟୋକା ଆଇ.ଏ.ଏସ୍. ଅଫିସର ଜିଲ୍ଲାପାଳ ହୋଇ ।

ଏ ଯେଉଁ ନୂଆ ଜିଲ୍ଲାପାଳ ଓ ବି.ଡ଼ି.ଓ. ଆସିଲେ ସେମାନେ ଗାଁର ଉନ୍ନତି କଥାକୁ କାନକୁ ନ ନେଇ ପୂର୍ବଭଳି କାଗଜ କଲମରେ ଗାଁର ଉନ୍ନତିକୁ ସୀମାବଦ୍ଧ କରିଦେଲେ ।

ଗାଁକୁ ଯେଉଁସବୁ ଉନ୍ନୟନ କାମରେ ଲାଗିଲାଭଳି ସାମଗ୍ରୀ ଆସିଲା, ସେଗୁଡ଼ିକୁ ପୂର୍ବଭଳି ଗ୍ରାମ ଦର୍ଶନର ସୌଭାଗ୍ୟ ମିଳିଲାନି । ଯେଉଁଠାରୁ ଖର୍ଚ୍ଚ ହେଲା, ସେଇଠି ବନ୍ଦୀ ହୋଇ କାଗଜ କଲମରେ ଯାହା ଗାଁକୁ ଆସିଲା ।

ନୂଆ ଜିଲ୍ଲାପାଳ ଯିଏ ଆସିଲେ, ସେ ଖାଲି ଟୋକା ଅଫିସର ନୁହଁନ୍ତି, ଟୋକାମାନଙ୍କର ସବୁ ବଦ୍‌ଗୁଣ ତାଙ୍କରି ପାଖରେ । ତିନି ଡବ୍‌ଲିଉର ଉପାସକ—ମାନେ ମଦ, ନାରୀ ଓ ଧନ ପ୍ରତି ତାଙ୍କର ଏକାନ୍ତ ଆଗ୍ରହ ।

ଜିଲ୍ଲାପାଳ ଯଦି ଏସବୁ ପ୍ରତି ଏତେ ଆଗ୍ରହୀ, ଅଧସ୍ତନ କର୍ମଚାରୀମାନେ ତାଙ୍କୁ ସେସବୁ ନ ଯୋଗାଇଲେ ସେମାନଙ୍କ ଚାକିରି ରହୁଛି କେଉଁଠି ? ସାହେବ ପୁଣି ସାଧାରଣ

ଦେଶୀ ମଦ ପିଅନ୍ତିନ, ଦାମିକା ବିଦେଶୀ ମାଲ ନ ଯୋଗାଇଲେ ତଳ କର୍ମଚାରୀଙ୍କ ଉପରେ ନାନା ପ୍ରକାର ଗାଳିଗୁଲଜ ଚାଲେ ।

ପ୍ରତିଦିନ ପକେଟକୁ କିଛି ଗରମ ଗରମ ଅର୍ଥ ନ ଆସିଲେ ସାହେବଙ୍କ ମଥା କାମ କରେ ନାହିଁ । ସାହେବ ହେଡ଼କ୍ୱାର୍ଟରରେ ଥିଲେ ତାଙ୍କର ଦ୍ୱିତୀୟ ଡବଲ୍ଉଟି ଦରକାର ହୁଏନି ସ୍ତ୍ରୀଙ୍କ ଭୟରେ । ଯେତେବେଳେ ଜିଲ୍ଲାର ବିଭିନ୍ନ ଅଞ୍ଚଳକୁ ଗସ୍ତ କରନ୍ତି, ଏହି ଡବଲ୍ଉଟି ନିହାତି ଦରକାର । ଲୋକେ କହନ୍ତି, ସାହେବଙ୍କର ଏହି ନିଶା ମଦନିଶା ଠାରୁ ଅଧିକ ପ୍ରବଳ । ତାହିଁର ଯୋଗାଡ଼ କରିବା କିଛି ସହଜ ନଥା ନୁହେଁ । ତଳ ଅଫିସରମାନେ ବହୁତ ଅର୍ଥ ବ୍ୟୟକରି ଦୂର ସ୍ଥାନରୁ କଲ୍‌ଗାର୍ଲ ଅଥବା ରୂପଜୀବିମାନଙ୍କୁ ଅଣାଇବାକୁ ବାଧ୍ୟ ହୁଅନ୍ତି । ଡାକବଙ୍ଗଳାରେ ସାହେବ ରହିଲେ ଚୌକସ ଖାନା ସାଙ୍ଗକୁ ଭଲ ମଦ, ତା ସାଙ୍ଗକୁ ଏ ଜିନିଷଟି ନ ହେଲେ ତଳ ଅଫିସରମାନଙ୍କ ଉପରେ ଯେଉଁ ଗାଳିବର୍ଷଣ ହୁଏ, ତାହା ଶୁଣି ହେବନି ।

ସାହେବଙ୍କ ମର୍ଜି ଅନୁସାରେ ନାନାଦି ଜିନିଷ ଯୋଗାଇବା ପାଇଁ ଦରକାର ଅର୍ଥ । ସେମାନେ ଏତେ ଅର୍ଥ ଆଣିବେ କେଉଁଠୁ ? ଗାଁକୁ ଆସୁଥିବା ଉନ୍ନୟନମୂଳକ ସାମଗ୍ରୀ ଗାଁକୁ ନ ଆସି ଅନ୍ୟ ବାଟ ଦେଖନ୍ତି । ଲୋକଙ୍କୁ ବୁଝାଯାଏ କ'ଣ ନା ଉନ୍ନୟନ ପାଇଁ ସରକାରଙ୍କର ପାଣ୍ଠି ନାହିଁ ।

ପୁରୁଣା ଜିଲ୍ଲାପାଳ ଯିଏ ଥିଲେ, ସେ ଖାଣ୍ଟି ପରୋପକାରୀ, ପ୍ରମୋସନ ପାଇ ଜିଲ୍ଲାପାଳ ହୋଇଥିଲେ । ତାଙ୍କର ଅତ୍ୟଧିକ ଧର୍ମ ଭୟ ଥିବାରୁ ସେ ଉନ୍ନୟନ ଅର୍ଥକୁ ଏଭଳି ଭାବରେ ହେରଫେର କରିବାକୁ ଘୃଣା କରନ୍ତି । ଯାହା ଟଙ୍କା ସରକାରରୁ ଆସୁଛି, ସେ କେମିତି ଠିକ୍ ବାଟରେ ଖରଚ ହେଉ ସେଥିପ୍ରତି ତାଙ୍କର କଡ଼ା ଦୃଷ୍ଟି । ସେ ଥିଲାବେଳେ ଲୋକମାନଙ୍କୁ ଶିକ୍ଷା ଦେଇ ଯେଉଁ ସଘନ ଚାଷ କରାଇଥିଲେ ବର୍ତ୍ତମାନ ଏ ନୂଆ ଜିଲ୍ଲାପାଳ ସଘନ କୃଷି ପାଇଁ ଉନ୍ନତ ବିହନ, ସାର ଆଦି ସରକାରଙ୍କ ପକ୍ଷରୁ ଯାହା ଯୋଗାଯିବା କଥା ବନ୍ଦ କରି ଦେବାରୁ ଲୋକେ ବଡ଼ ହଇରାଣରେ ପଡ଼ିଗଲେ ।

ଗାଁ ଲୋକଙ୍କୁ ଓଲଟି ବୁଝାଗଲା, ସେମାନେ ସେସବୁ ସାମଗ୍ରୀ ବଜାରରୁ କିଣି କୃଷିରେ ଲଗାନ୍ତୁ । ସରକାର ଆଉ ସାହାଯ୍ୟ ଦେଇପାରିବେ ନାହିଁ । ସେସବୁ ସାମଗ୍ରୀ ପୁଣି ବଜାରରେ ଅଭାବ । କଳାପୋତେଇ ଦେଇ କଳାବଜାରରେ କିଣି ଚାଷରେ ଲଗାଇବା ପାଇଁ ଶକ୍ତି କାହାର ? ଫଳରେ ଯେଉଁ ଯୋଜନା ପୂର୍ବ ଜିଲ୍ଲାପାଳ କାର୍ଯ୍ୟକାରୀ କରିବା ଫଳରେ ଗୋବିନ୍ଦପୁର ଗାଁର ଉନ୍ନତି ହୋଇଥିଲା, ନୂଆ ଜିଲ୍ଲାପାଳ ସେହି ଯୋଜନାକୁ ବନ୍ଦ କରିଦେବାରୁ ଗାଁର ଅବନତି ଆରମ୍ଭ ହୋଇଗଲା ।

ପୂର୍ବ ଅଫିସରମାନଙ୍କ ଅମଳରେ ଗାଁର ମାଛଚାଷ, ଫଳଚାଷ ଯାହା ହୋଇଥିଲା, ସେଥିରୁ ଆୟ ହେଉଥିବା ଅର୍ଥ ସରକାରଙ୍କ ଟ୍ରେଜେରୀକୁ ଯିବା ବାଟରେ ବି.ଡ଼.ଓ.ଙ୍କ ପକେଟକୁ ଯାଇ ସେଠାରୁ ଜିଲ୍ଲାପାଳଙ୍କ ଖର୍ଚ୍ଚ ପାଇଁ ବାଟ ଦେଖିଲା । ବି.ଡ଼.ଓ. ନାନା

ଉପାୟରେ ହାତ ଚକ୍କଣ କରିବା ଦେଖି ଗ୍ରାମସେବକ ଓ ଅନ୍ୟମାନେ କାହିଁକି ବସି ରହିବେ, ଯେଝା ରୋଜଗାର ପନ୍ଥା ସେଝେ ଦେଖିଲେ ।

ଜିଲ୍ଲାପାଳ ନୂଆ ହୋଇ ଚାର୍ଜ ନେବାପରେ ଦିନେ ଟୁର୍ ପକାଇଥିଲେ ଗୋବିନ୍ଦପୁର ଗ୍ରାମପଞ୍ଚାୟତକୁ । ମହିଳା ସମିତିର ଉନ୍ନୟନ କାର୍ଯ୍ୟ ଦେଖୁ ଦେଖୁ ତାଙ୍କର ଦୃଷ୍ଟି ପଡ଼ିଗଲା ମହିଳା ସମିତିର ସେକ୍ରେଟେରି ଶାନ୍ତି ମହାନ୍ତି ଉପରେ ।

ବାଃ, ଝିଅଟି ତ ବେଶ୍ ସୁନ୍ଦରୀ, କର୍ମନିପୁଣା, ଅଫିସ୍ କାମରେ ବେଶ୍ ଦକ୍ଷ । ଜିଲ୍ଲାପାଳ ଗସ୍ତ ଶେଷକରି ଗାଁରୁ ଚାଲିଗଲେହେଁ ତାଙ୍କ ମାନସପଟରେ ରହିଗଲା ଶାନ୍ତିର ସେହି ସୁନ୍ଦର ହସ ହସ ମୁହଁ । ଝିଅଟି ତାଙ୍କର ମାନସପଟକୁ ଏତେ ଆଚ୍ଛାଦିତ କରି ରଖିଲା ଯେ ସେ ତାଙ୍କ ବିବାହିତା ସ୍ତ୍ରୀ ପ୍ରତି ହତାଦର ଦେଖାଇବାକୁ ଆରମ୍ଭ କରିଦେଲେ ।

ବି.ଡ଼ି.ଓ.ଙ୍କୁ ଦିନେ ଡାକି ଚୁପ୍ ଚୁପ୍ ମନ୍ତ୍ରଣା କଲେ ଝିଅଟି କେମିତି ତାଙ୍କ ଅକ୍ତିଆରକୁ ଚାଲି ଆସିବ । ସାହେବଙ୍କ ପାପ ଦୃଷ୍ଟି ଯେତେବେଳେ ଝିଅଟି ଉପରେ ପଡ଼ିଲାଣି, ସେମାନେ ଯଦି ସେତକ ଯୋଗାଡ଼ କରି ନ ଦେଉଛନ୍ତି, ତେବେ ସେମାନଙ୍କ ଚାକିରି ଟଳମଳ ହେବା ଉପରେ ।

ସାହେବ ରାଗିଗଲେ କ'ଣ ନା କ'ଣ ଚରିତ୍ର ପଞ୍ଜିକାରେ ଲେଖିଦେବେ, ସବୁଦିନ ପାଇଁ ସେମାନଙ୍କ ପ୍ରମୋସନ ବନ୍ଦ ହୋଇଯିବ । ଏହି ଭୟରେ ବି.ଡ଼ି.ଓ. ମନେ ମନେ ଯୋଜନା କଲେ ଶାନ୍ତିକୁ ନେଇ କେମିତି ଜିଲ୍ଲାପାଳଙ୍କ ପାଖରେ ଜୁଟାଇଦେବେ ।

ଶାନ୍ତି ଭଲ ଚରିତ୍ରର ଝିଅ । ବାପା ତା'ର ଏକ ଉଚ୍ଚ ଖାନଦାନୀ ବ୍ରହ୍ମସ୍ୱାମୀ କରଣ ବଂଶ ସମ୍ଭୂତ । ସେମାନେ ଅବସ୍ଥାଚକ୍ରରେ ପଡ଼ି ଗରିବ ହୋଇ ଯାଇଛନ୍ତି ନଚେତ୍ସେମାନେ ଏକ ସମୟରେ କଟକ ଜିଲ୍ଲାର ଉଚ୍ଚ କରଣ ଜମିଦାର ବଂଶର ଦାୟାଦ ଥିଲେ । ତେଣୁ ତାକୁ କେମିତି ଫାଶରେ ପକାଇ ଜିଲ୍ଲାପାଳଙ୍କ ପାଖକୁ ନେବେ ସେହି ହେଲା ତାଙ୍କର ସବୁଠାରୁ ବଡ଼ ଚିନ୍ତା ।

ବହୁ ଚିନ୍ତା ପରେ ଦିନେ ବି.ଡ଼ି.ଓ.ଙ୍କ ଯୋଜନା କାମ ଦେବ ବୋଲି ଜଣାପଡ଼ିଲା । ମହିଳା ସମିତିର ଅର୍ଥ ଆତ୍ମସାତ କରିଥିବା ଅଭିଯୋଗରେ ତାକୁ ଆରେଷ୍ଟ କରିବା ବନ୍ଦୋବସ୍ତ କରିଦେଲେ ଝିଅଟି ସେମାନଙ୍କ ହାତକୁ ଚାଲି ଆସିବ । ସେଥିପାଇଁ ଗ୍ରାମସେବିକା ରାଧିକାକୁ ହାତ କରି ଏକ ଜାଲ ବିଛାଇବା ଠିକ୍ ହେଲା । ଏହି ଯୋଜନାଟି କଥା ଜିଲ୍ଲାପାଳଙ୍କୁ ଜଣାଇ ତାଙ୍କ ସମ୍ମତି ମଧ୍ୟ ଅଣାଗଲା ।

ବ୍ଲକରୁ ବିଭିନ୍ନ ଉନ୍ନୟନ ପାଇଁ ଯେଉଁ ଅର୍ଥ ମହିଳା ସମିତିକୁ ଆସିଛି, ତାକୁ ବଦଳାବଦଳି କରି ବ୍ଲକର ରେକର୍ଡକୁ ବଦଳାଇ ଦିଆଗଲା । ବ୍ଲକରୁ ଆସିଥିବା ଟଙ୍କା ଓ ମହିଳା ସମିତିରେ ଖର୍ଚ୍ଚ ହୋଇଥିବା ଟଙ୍କା ଭିତରେ ପାର୍ଥକ୍ୟ ରଖାଗଲା ଅଠରଶହ ଟଙ୍କା ।

ବି.ଡ଼ି.ଓ. ଅଫିସରୁ ଯାହା ଟଙ୍କା ଆସିଛି, ମହିଳା ସମିତି ହିସାବରେ କମ୍ ଦେଖାଇ ମହିଳା ସମିତିର ସେକ୍ରେଟେରୀ ଅଠରଶହ ଟଙ୍କା ଆତ୍ମସାତ କରିଛନ୍ତି ବୋଲି କାଗଜ କଲମରେ ଦର୍ଶାଗଲା । ବି.ଡ଼ି.ଓ.ଙ୍କର ଏହି ଅଭିଯୋଗ କେତେଦୂର ସତ ତାହା ତନଖି କରିବେ ସ୍ୱୟଂ ଜିଲ୍ଲାପାଳ । ତେଣୁ ମହିଳା ସମିତି ସେକ୍ରେଟେରୀ ନିଜ କାଗଜପତ୍ର, ଖାତା ଧରି ନିକଟସ୍ଥ ମଧୁପୁର ଡାକବଙ୍ଗଳାକୁ ଯାଇ ଜିଲ୍ଲାପାଳଙ୍କୁ ସାକ୍ଷାତ କରିବା ପାଇଁ ନିର୍ଦ୍ଦେଶ ଆସିଗଲା ।

ଅର୍ଥ ଆତ୍ମସାତ୍ ଓ ଜିଲ୍ଲାପାଳଙ୍କୁ ଡାକବଙ୍ଗଳାରେ ସାକ୍ଷାତ କରିବା ଚିଠି ଦେଖି ଶାନ୍ତି ସ୍ତମ୍ଭିତ । ଟଙ୍କା ଆତ୍ମସାତ୍ ପରିମାଣ କିଛି କମ୍ ନୁହେଁ । ଦୁଇ ହଜାର ଟଙ୍କା ପାଖାପାଖି । ଶାନ୍ତି ନାଁରେ ଏହି ଅପବାଦ ଯିଏ ଶୁଣିଲା, ସିଏ କାନରେ ହାତ ଦେଲା । ଗାଁର ବୁଢ଼ା ବୁଢ଼ୀମାନେ ମୁଣ୍ଡରେ ହାତଦେଇ କହିଲେ, "ହାୟ ଭଗବାନ, ଧର୍ମ ଦେବତା କ'ଣ କୁଆଡ଼େ ଉଭେଇଗଲେ ? କି ମିଛ ଅପବାଦ ଝିଅଟା ନାଁରେ ?"

ପଞ୍ଚାୟତ ସମିତି ଚେୟାରମେନ୍ ଓ ତା'ର ବାପା ଯାଇ ମହିଳା ସମିତିର ହିସାବପତ୍ର ତନଖି କଲେ । କାହିଁ କେଉଁଠି ତ ଟଙ୍କା ଆତ୍ମସାତ୍‌ର କିଛି ପ୍ରମାଣ ମିଳୁନି । ଯାହା ଟଙ୍କା ଆସିଥିଲା ଠିକ୍ ରୂପେ ତ ଖରଚ ହୋଇଛି । ଖର୍ଚ୍ଚର ହିସାବ ଠିକ୍ ରଖା-ଯାଇଛି । ଟଙ୍କା ଆତ୍ମସାତ୍‌ର ଅଭିଯୋଗ ଆସିଲା କେଉଁଠୁ ?

ହରିବାବୁ ଏ ବିଷୟରେ ଅଧିକ ଜାଣିବାକୁ ବନମାଳିପୁର ବ୍ଲକକୁ ଦୌଡ଼ିଲେ । ବି.ଡ଼ି.ଓ. ସେଠି ନାହାନ୍ତି, ଜିଲ୍ଲା ହେଡ୍‌କ୍ୱାର୍ଟର କଟକକୁ ଯାଇଛନ୍ତି । ବଡ଼ ଅସୁବିଧା ହେଲା, କିଛି ଜାଣିପାରୁ ନ ଥାନ୍ତି କ'ଣ କରିବେ । ଜିଲ୍ଲାପାଳଙ୍କ ଚିଠି ଏଣେ ଅନ୍ୟଥା କରି ହେବନି ।

ତେଣୁ ଅନନ୍ୟୋପାୟ ହୋଇ ଶାନ୍ତି କାଗଜପତ୍ର ଧରି ଡାକବଙ୍ଗଳାକୁ ଗଲା ଜିଲ୍ଲାପାଳଙ୍କୁ ହିସାବପତ୍ର ବୁଝାଇଦେବା ପାଇଁ । ବାପା ତେଣେ ଯାଇଥାନ୍ତି କଟକକୁ ପ୍ରକୃତ କଥା କ'ଣ ବୁଝିବା ପାଇଁ । ଶାନ୍ତି ଯାଇ ଡ଼ାକବଙ୍ଗଳାରେ ପହଞ୍ଚିଲାବେଳକୁ ଜିଲ୍ଲାପାଳ ମଧ୍ୟାହ୍ନଭୋଜନ ସାରି ଶୋଇଥାନ୍ତି । ତାକୁ ବାରଣ୍ଡାରେ ଅପେକ୍ଷା କରିବା ପାଇଁ ନିର୍ଦ୍ଦେଶ ଆସିଲା । ବଡ଼ ମନ କଷ୍ଟରେ ବସିଥାଏ ଶାନ୍ତି । କି ଦୁର୍ଯୋଗ, ସେ ଏତେ ସାବଧାନ ହୋଇ ହିସାବପତ୍ର ଠିକ୍ ରଖୁ ରଖୁ ତା ନାଁରେ ଅର୍ଥ ଆତ୍ମସାତ୍ ଅଭିଯୋଗ ?

ଜିଲ୍ଲାପାଳ ଉଠୁ ଉଠୁ ସନ୍ଧ୍ୟା ପାଞ୍ଚଟା । ମହିଳା ସମିତି ସେକ୍ରେଟେରୀ ଶାନ୍ତି ମହାନ୍ତି ତାଙ୍କୁ ଦେଖା କରିବା ପାଇଁ ଅପେକ୍ଷା କରିଛି ବୋଲି ଜିଲ୍ଲାପାଳ ଉଠିବାମାତ୍ରେ ତାଙ୍କ ଚପରାଶୀ ଜଣାଇଦେଲା । ଜିଲ୍ଲାପାଳ ମନେ ମନେ ଭାରି ଖୁସି ହୋଇଗଲେ ।

ଯାହାହେଉ ଝିଅଟା ଏଥର ଜାଲରେ ପଡ଼ିଛି, ଆଉ ଯିବ କୁଆଡ଼େ ? ବି.ଡ଼ି.ଓ. ଯାଇଛନ୍ତି ଅନ୍ୟ ତଦ୍‌ବିରର ବନ୍ଦୋବସ୍ତ ପାଇଁ । ଡାକବଙ୍ଗଳାର ସାମନାପଟେ ନ ଆସି ବି.ଡ଼ି.ଓ. ପଛପଟେ ସାହେବଙ୍କ ପାଇଁ ଭଲ ଭଲ ମଦ ଆଣି ପହଞ୍ଚାଇ ଦେଲେ ।

ଜିଲ୍ଲାପାଳଙ୍କ ନିର୍ଦ୍ଦେଶରେ ପାଖ ଥାନାକୁ ଖବର ଦିଆଯାଇଥାଏ, ଝିଅଟିକୁ ଆରେଷ୍ଟ କରିନେଇ ହାଜତରେ ପକାଇ ଦେବାପାଇଁ । ରାତି ବାରଟାରେ ହାଜତରୁ ମୁକୁଳାଇ ସାହେବଙ୍କ ଗାଡ଼ିରେ ଡାକବଙ୍ଗଳାକୁ ଅଣାଯିବ ।

ଶାନ୍ତ ବାରଣ୍ଡାରେ ଖାତାପତ୍ର ଧରି ବସିଛି । କୋଠରି ଭିତରେ ଜିଲ୍ଲାପାଳ ଅତ୍ୟଧିକ ଖୁସି ହୋଇ ମଦ ପିଇବାରେ ଲାଗିଥାନ୍ତି । ଗିଲାସ ପରେ ଗିଲାସ ଚାଲା ଚାଲିଛି ।

ଏହି ସମୟରେ ହଠାତ୍ କେନ୍ଦ୍ରାଞ୍ଚଳ ରେଭିନ୍ୟୁ କମିସନର ସାହେବଙ୍କ ଗାଡ଼ି ଆସି ରହିଲା ଡାକବଙ୍ଗଳା ସାମନାରେ । ଗାଡ଼ିରୁ ଓହ୍ଲାଇଲେ କମିସନର ଭେଙ୍କଟରମନ ସାହେବ । ବାରଣ୍ଡାରେ ଝିଅଟିକୁ ଦେଖି ତା ପାଖକୁ ଚାଲି ଆସିଲେ । ଶାନ୍ତ କମିସନର ସାହେବଙ୍କୁ ଦେଖି ଠିଆ ହୋଇପଡ଼ି ନମସ୍କାର ଜଣାଇଲା । କମିସନର ସାହେବ ଶାନ୍ତକୁ ଆଗରୁ ଚିହ୍ନିଥିଲେ । ଶାନ୍ତ ସମ୍ବନ୍ଧରେ ତାଙ୍କ ଧାରଣା ଖୁବ୍ ଭଲ । ଝିଅଟିର କାର୍ଯ୍ୟଦକ୍ଷତା ଓ ସଚ୍ଚୋଟପଣିଆ ଦେଖି ତାକୁ ସେଦିନ ସଭାରେ କେତେ ପ୍ରଶଂସା କରି ନ ଥିଲେ ସତେ ?

ଝିଅଟି ଆସିବାର କାରଣ ଜଣାଇଲା । ତା ନାଁରେ ଅର୍ଥ ଆତ୍ମସାତ୍ ଅଭିଯୋଗର କାଗଜ ଦେଖାଇଲା । ଜିଲ୍ଲାପାଳଙ୍କ ଅଫିସରୁ ଝିଅଟି ନାଁରେ ଏଭଳି ଏକ ଅଭିଯୋଗ ଦେଖି ଆଶ୍ଚର୍ଯ୍ୟ ହେଲେ ଭେଙ୍କଟରମଣ । ଏତିକ ଛୋଟିଆ ସରଳା ଝିଅଟେ ଅଠରଶହ ଟଙ୍କା ଆତ୍ମସାତ୍ କରିଛି ବୋଲି ତାଙ୍କର ମୋଟେ ବିଶ୍ୱାସ ହେଲାନି । ତାଙ୍କୁ ଜଣାପଡ଼ିଲା ଏହା ଭିତରେ କେଉଁଠି କିଛି ଗୋଳମାଳ ରହି ଯାଇଛି । ଅନ୍ୟ କିଏ କେଉଁଠି ଟଙ୍କା ମାରିଦେଇ ସରଳା ଝିଅଟି ମୁଣ୍ଡରେ ଅଠା ବୋଳିଦେବାର ଅପଚେଷ୍ଟା ଚଳାଇଛି ।

ଝିଅଟିକୁ ଦେଖି କମିସନର ସାହେବ ନରମଗଳାରେ କହିଲେ, "ତୁ ମା ଏଥିପାଇଁ କ'ଣ ଏତେବାଟ ଧାଇଁ ଆସିଛୁ ? ଜିଲ୍ଲାପାଳ ତ ତୁମ ମହଲା ସମିତି ଅଫିସକୁ ଯାଇ ତନଖି କରି ଆସି ପାରିଥାନ୍ତେ । ବର୍ତ୍ତମାନ ଆସି ସନ୍ଧ୍ୟା ହେଲାଣି, ତୋତେ ଏକୁଟିଆ ଡକାଇଆଣି ଠିକ୍ କରାଯାଇନି ମା । ହେଉ ତୁ ବସ ମା, ମୁଁ ବୁଝୁଛି କଥା କ'ଣ ହୋଇଛି ।"

ଏତିକି କହି କମିସନର ସାହେବ, ଜିଲ୍ଲାପାଳଙ୍କ ନାଁ ଧରି ଡ଼ାକି ଡ଼ାକି ତାଙ୍କ ରୁମ୍ ଭିତରକୁ ପଶିଗଲେ । ସେତେବେଳେ ଜିଲ୍ଲାପାଳ ଗିଲାସ ପରେ ଗିଲାସ ପକାଇ ଅପେକ୍ଷାମାଣ ମିଳନ ସମୟ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ଜିଲ୍ଲାପାଳଙ୍କୁ ମଦ୍ୟପାନ କରୁଥିବା ଦେଖି କମିସନର ସାହେବ ଫେରିଆସି ନିଜ କୋଠରିକୁ ଚାଲିଗଲେ ।

ଜିଲ୍ଲାପାଳ କମିସନରଙ୍କୁ ଦେଖି ଡ଼ରରେ ତାଙ୍କ ପାଟି ଆଙ୍କା ଆଙ୍କା ମାରିଗଲାଣି । ଟେବୁଲ ଉପରେ ଥିବା ମଦ ବୋତଲ ଗିଲାସକୁ ଲୁଚାଇଦେଇ ମୁହଁରେ ମସଲା ପକାଇ କମିସନରଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କ ରୁମ୍‌କୁ ଗଲେ ।

କମିସନର ସାହେବ ସେତେବେଳେ ଦେହରୁ ପୋଷାକପତ୍ର କାଢୁଥାନ୍ତି । ଜିଲ୍ଲାପାଳ ତାଙ୍କ ରୁମ୍‌କୁ ପଶିଯାଇ ତାଙ୍କୁ ସଲାମ ପକାଇବା ଦେଖି କମିସନର ସାହେବ

କହିଲେ, "ଦେଖ ମିଷ୍ଟର ଓଝା, ତୁମେ ମହିଳା ସମିତିର ସେକ୍ରେଟେରୀ ସେହି ଝିଅଟିକୁ କ'ଣ ପାଇଁ ଡାକବଙ୍ଗଳାକୁ ଡକାଇ ଆଣିଛ ?"

"ସାର୍, ତା ନାଁରେ ଟଙ୍କା ଆତ୍ମସାତ୍ର ଅଭିଯୋଗ । ମହିଳା ସମିତିର ଅଠରଶହ ଟଙ୍କା ସେ ପୂର୍ବ ବି.ଡ଼ି.ଓ.ଙ୍କ ସଲସୁତରରେ ଆତ୍ମସାତ କରିଥିବା ପ୍ରମାଣ ଆମ କାଗଜପତ୍ରରୁ ମିଳୁଛି ।"

"ଏଡ଼େ ଗ୍ରେଟ ଝିଅଟେ, ଏତେଗୁଡ଼ାଏ ଟଙ୍କା ଆତ୍ମସାତ କରିଛି ବୋଲି ତୁମର କ'ଣ ବିଶ୍ୱାସ ହେଉଛି ମିଷ୍ଟର ଓଝା ?

"ହଁ ସାର୍, ନ ହେବ କାହିଁକି ? ତା ବାପା ଗାଁର ଏକ ଶିକ୍ଷକ । ଏକ ବଡ଼ ଟାଉଟର । ପୂର୍ବ ବି.ଡ଼ି.ଓ.ଙ୍କ ସଲସୁତରରେ ଟଙ୍କା ହେରଫେର ହୋଇ ଆତ୍ମସାତ୍ ହେବା କିଛି ଅସମ୍ଭବ ନୁହେଁ । ଟାଉଟର ବାପ ସେଥିପାଇଁ ଝିଅକୁ ବାଟ ଦେଖାଇଥିବ ଓ ସାହସ ଦେଇଥିବ ମଧ୍ୟ ।

"ଦେଖ ମିଷ୍ଟର ଓଝା, ମୁଁ ଏହି ଝିଅଟିକୁ ଭଲ ଭାବରେ ଜାଣେ । ତା ବାପାକୁ ମଧ୍ୟ ଭଲ ଭାବରେ ଜାଣେ । ପୂର୍ବ ବି.ଡ଼ି.ଓ. ମଧ୍ୟ ମୋର ଭଲ ଜଣାଶୁଣା । ତୁମେ ଏ ଜିଲ୍ଲାକୁ ଏବେ ଆସିଛ । ଏହି ଜିଲ୍ଲା ଓ ଡ଼ିଭିଜନରେ ମୁଁ ରହିଲିଣି ଗତ ଚାରିବର୍ଷ ହେଲା । ଏହି ଜିଲ୍ଲାରେ କେଉଁଠି କ କ କାମ ହେଉଛି ମୋତେ ଭଲ ଭାବରେ ଜଣା । ପୂର୍ବ ବି.ଡି.ଓ. ଓ ଏହି ଝିଅଟି ସଲସୁତର ହୋଇ ଟଙ୍କା ଖାଇଛନ୍ତି ବୋଲି ତୁମେ କିଛି ପ୍ରମାଣ ପାଇଛ ?"

"ହଁ ସାର୍, ସବୁ ପ୍ରମାଣ ମୋଠାରେ ଅଛି । ଆପଣ ଯଦି ଚାହିଁବେ ସବୁ ଦେଖାଇଦେବି ।"

"ହେଉ ମିଷ୍ଟର ଓଝା, ତୁମ କାଗଜପତ୍ର ମୋଠାକୁ ପଠାଇଦିଅ । ବାରଣ୍ଡାକୁ ଚାଲିଯାଇ ଝିଅଟି ପାଖରୁ ସବୁ ଖାତାପତ୍ର କଲେ କମିସନର ସାହେବ ନେଇନେଲେ । ତା'ପରେ କହିଲେ, ଦେଖ ଓଝା, ସନ୍ଧ୍ୟା ହୋଇ ଆସିଲାଣି । ଝିଅଟିକୁ ବର୍ତ୍ତମାନ ତା ଘରକୁ ବିଦା କରିଦିଅ । ଏଡ଼େ ଗ୍ରେଟ ଝିଅଟେ, ତା ବାପ ମା' ତା'ପାଇଁ କେତେ ବ୍ୟସ୍ତ ହେଉ ନ ଥିବେ ? ମୁଁ ତମର ଓ ତା'ର କାଗଜପତ୍ର ରଖି ନେଉଛି, ଆଜି ରାତିରେ ପରୀକ୍ଷା କରି ଦେଖିବି, ତା ବିରୁଦ୍ଧରେ ହୋଇଥିବା ଅଭିଯୋଗ କେତେଦୂର ସତ ।"

"ତୁମର ଡ୍ରାଇଭର ଅଛି ମିଷ୍ଟର ଓଝା ? ବି.ଡି.ଓ.ଙ୍କୁ ଡାକ, ସେ ତୁମ ଗାଡ଼ିରେ ଏହି ଝିଅଟିକୁ ନେଇ ତା ଘରେ ଛାଡ଼ିଦେଇ ଆସୁ ।"

ଏତକ କହି ପର ମୁହୂର୍ତ୍ତରେ କହିଲେ, "ନା ନା, ଥାଉ ଥାଉ, ମୋ ଡ୍ରାଇଭର ଝିଅଟିକୁ ନେଇ ଛାଡ଼ି ଦେଇ ଆସିବ । ସେ ଗ୍ରାମସେବିକାକୁ ଡାକ, ସେ ଝିଅଟି ସାଙ୍ଗରେ ଯାଉ ।"

"ଗ୍ରାମସେବିକା ତ ଏଠି ନାହିଁ ସାର୍ । ବି.ଡି.ଓ. ବି ତ ଆସିନି ।"

"ମୁଁ ଡାକବଙ୍ଗଳା ଗେଟ୍‌ରେ ପଶିଲାବେଳେ ଦେଖିଛି, ସେମାନେ ମୋ ଗାଡ଼ିକୁ ଦେଖି ଡ଼ାକବଙ୍ଗଳାର ପଛପଟରେ ଲୁଚି ଯାଇଛନ୍ତି । ବି:ଡ଼ି:ଓ: ସାଙ୍ଗରେ ସେ ଡ୍ରେସ୍ ହୋଇ ଗ୍ରାମସେବିକାକୁ ମୁଁ ପଶିଲାବେଳେ ଦେଖିଛି । ନିଜ ଡ୍ରାଇଭରକୁ ଡ଼ାକି କହିଲେ, "ଯାଅ ସେ ଗ୍ରାମସେବିକା କେଉଁଠି ଅଛି ଡାକିଆଣିବୁ । ସେ ତୋ ସହିତ ଏହି ଝିଅକୁ ନେଇ ତା ଘରେ ଛାଡ଼ିଦେଇ ଆସିବ ।"

ସର୍ବିସେଜନ ସାରି କମିସନର ସାହେବ, ଜିଲ୍ଲାପାଳଙ୍କ ଫାଇଲ ଓ ମହିଳା ସମିତି କାଗଜପତ୍ର ଭଲ ଭାବରେ ତନଖି କଲେ । ଦେଖିଲେ ଜିଲ୍ଲାପାଳଙ୍କ ଫାଇଲରେ ମହିଳା ସମିତିକୁ ଆସିଥିବା ଟଙ୍କାର ପରିମାଣ କଟା ହୋଇ ବଢ଼ା ହୋଇ ଲେଖା ହୋଇଛି । କଟା ହେବା ପୂର୍ବ ଟଙ୍କାର ପରିମାଣ ଓ ମହିଳା ସମିତି ଖାତାରେ ମିଳିଥିବା ଟଙ୍କାର ପରିମାଣ ସମାନ ଅଛି । ଝିଅଟିକୁ ହଇରାଣ କରିବା ପାଇଁ ଉଦ୍ଦେଶ୍ୟମୂଳକ ଭାବରେ କାଗଜପତ୍ରରେ ଗୋଲମାଲ କରି କୌଣସି ଅସତ୍ ଉଦ୍ଦେଶ୍ୟ ଚରିତାର୍ଥ ପାଇଁ ଝିଅଟିକୁ ଜବରଦସ୍ତି ଡ଼ାକବଙ୍ଗଳାକୁ ଡ଼କାଇ ଅଣା ଯାଇଛି ବୋଲି ଏଥିରୁ ତାଙ୍କର ସ୍ପଷ୍ଟ ଧାରଣା ହେଲା ।

କମିସନର ସାହେବ ଜିଲ୍ଲାପାଳ ପ୍ରେମନାଥ ଓଝାଙ୍କୁ ଭଲ ଭାବରେ ଜାଣନ୍ତି । ସେ ଏହିଭଳି ମିଛ ଅଭିଯୋଗ କରିବାରେ ଧୁରନ୍ଧର । ତାଙ୍କ ଅସତ୍ ଚରିତ୍ର ପାଇଁ ସେ ସବୁଆଡ଼େ ନିନ୍ଦିତ । ତାଙ୍କ ଭଳି ମଦୁଆ, ମାତାଲି, ବ୍ୟଭିଚାରୀ, ଅର୍ଥଲୋଭୀ ଅଫିସର ସେ ତାଙ୍କ ଜୀବନକାଳ ଭିତରେ କେଉଁଠି ଦେଖି ନାହାନ୍ତି । ଝିଅଟିକୁ ଧର୍ଷଣ କରିବା ଅଭିପ୍ରାୟରେ ସେ ଏଭଳି ମିଥ୍ୟା ଅଭିଯୋଗ କରି ଡ଼ାକବଙ୍ଗଳାକୁ ଡ଼କାଇ ଆଣିଥିବା ଉଦ୍ଦେଶ୍ୟ ତାଙ୍କୁ ଜଳ ଜଳ ଦିଶିଲା ।

ସେ ପିଅନ ହାତରେ ମିଷ୍ଟର ଓଝାଙ୍କୁ ଡ଼କାଇ ଆଣି କହିଲେ, "ଦେଖ ମିଷ୍ଟର ଓଝା, ମୁଁ ତୁମ କାଗଜପତ୍ର ଓ ମହିଳା ସମିତି କାଗଜପତ୍ରକୁ ଭଲ ଭାବରେ ମିଳାଇ ଦେଖି ସାରିଲିଣି । କେଉଁଠି ସେହି ଝିଅଟି ଟଙ୍କା ଆତ୍ମସାତ କରିଥିବାର ପ୍ରମାଣ ମିଳୁନି ।"

ତାକୁ ମିଛରେ ହଇରାଣ କରିବା ପାଇଁ ତୁମ ଅଫିସର କାଗଜପତ୍ର ଉପରେ କଟାଯାଇ ଅଧିକ ଟଙ୍କା ଲେଖା ଯାଇଛି । ଏ ଅଧିକ ଟଙ୍କା କୁଆଡ଼ୁ ଆସିଲା, ତା'ର ପ୍ରମାଣ ବି କିଛି ନାହିଁ । ଏସବୁ ଉଦ୍ଦେଶ୍ୟମୂଳକ ଭାବରେ ଝିଅଟିକୁ ହଇରାଣ କରିବା ପାଇଁ କରାଯାଇଛି ବୋଲି ଜଣାପଡ଼ୁଛି । ବହୁ ଚକ୍ରାନ୍ତ କରି ତୁମେ ଝିଅଟିକୁ ଖାପଚରେ ପକାଇ ତା'ଠାରୁ କିଛି ଫାଇଦା ହାସଲ ପାଇଁ ଏ ତୁମର ଏକ ଚାଲବାଜି । ବର୍ତ୍ତମାନ ମୁଁ ତୁମର ପ୍ରକୃତ ଉଦ୍ଦେଶ୍ୟ ଜାଣି ପାରିଲିଣି ।"

"ଦେଖ ପ୍ରେମନାଥ, ତୁମ ବିରୁଦ୍ଧରେ ମୋ'ଠାକୁ ବହୁ ଅଭିଯୋଗ ଆସିଲାଣି । ତୁମେ ଯୁବକ, ପୁଣି ବିବାହିତ । ତୁମର ସ୍ତ୍ରୀ ଅଛନ୍ତି । ତୁମେ ଏଭଳି ଅବସ୍ଥାରେ ଅନ୍ୟ ଝିଅ ବୋହୂଙ୍କ ଆଡ଼କୁ ପାପଦୃଷ୍ଟି ପକାଇବା ଉଚିତ ନୁହେଁ ।

ଏମିତି ସବୁରେ ଜାଲ ଖେଳାଇ ନଗଣ୍ୟ ଟଙ୍କା ବୋହୂମାନଙ୍କୁ କୁପଥକୁ ଟାଣିଆଣି ତୁମର ଯୌନତୃଷ୍ଣା ମେଣ୍ଟାଇବା ପ୍ରବୃତ୍ତି ଅତ୍ୟନ୍ତ ଘୃଣ୍ୟ । ମୁଁ ଲଜ୍ଜିତ, ତୁମଭଳି ଜଣେ ଦାୟିତ୍ୱସମ୍ପନ୍ନ ଅଫିସର ଏତେ ତଳକୁ ଖସି ଯାଇପାରେ ବୋଲି ।

ଏହା ତୁମର ପ୍ରଥମଥର ଚେଷ୍ଟା ହୋଇଥିଲେ, ମୁଁ ତୁମକୁ କ୍ଷମା ଦେଇଥାନ୍ତି । ଏଥିପୂର୍ବରୁ ତୁମେ ବହୁ ଅଫିସରଙ୍କୁ ଖାପଚରେ ପକାଇ, ପ୍ରମୋସନର ନାନା ମିଥ୍ୟା ପ୍ରତିଶ୍ରୁତି ଦେଇ, କେତେ ସ୍ଥାନରେ ଧମକ ଚମକ ଦେଇ ସେମାନଙ୍କ ଉପରୁ ଫାଇଦା ଉଠାଇଛ । ତୁମେ ଆମ ଶାସନର ଏକ କଳଙ୍କ । ତୁମେ ଯେ ବିଶ୍ୱାସୀ ଅଫିସର ନୁହଁ, ଏହା ମୁଁ ତୁମର ଚରିତ୍ର ପଞ୍ଜିକାରେ ଏଥର ଲେଖିବାକୁ ବାଧ୍ୟ ହେବି । ତୁମେ ମୋ ଡିଭିଜନରୁ କେମିତି ଅନ୍ୟତ୍ର ବଦଳି ହେବ, ସରକାରଙ୍କୁ ଲେଖିବି ।

## କୋଡ଼ିଏ

ରେଭିନ୍ୟୁ ମିନିଷ୍ଟରଙ୍କଠାରୁ ଡାକରା ପାଇ କମିସନର ଭେଙ୍କଟରମଣ ତାଙ୍କୁ କଟକ ସାର୍କିଟ୍ ହାଉସ୍‌ରେ ସାକ୍ଷାତ କଲେ । କମିସନରଙ୍କୁ ଦେଖି ମନ୍ତ୍ରୀ କହିଲେ, "ଦେଖନ୍ତୁ ମିଷ୍ଟର ଭେଙ୍କଟରମଣ, ଆପଣ କଟକ ଜିଲ୍ଲାପାଳ ମିଷ୍ଟର ପ୍ରେମନାଥ ଓଝାଙ୍କ ନାଁରେ ଏତେଗୁଡ଼ିଏ କଥଣ ଲେଖିଛନ୍ତି ? ତାଙ୍କୁ ସେ ଜିଲ୍ଲାରୁ ବଦଳି କରିବା ପାଇଁ ସୁପାରିଶ କରିଛନ୍ତି କାହିଁକି ?"

"ହଁ ସାର୍, ସେ ବିଶ୍ୱାସଭାଜନ ହେଲାଭଳି ଅଫିସର ନୁହଁନ୍ତି । ତାଙ୍କୁ ମୁଁ କଟକ ଜିଲ୍ଲାରେ ରଖିବାକୁ ରାଜି ନୁହେଁ । ଖାଲି କଟକ କାହିଁକି, ସେ କୌଣସି ଜିଲ୍ଲାରେ ରହିବା ଲୋକ ନୁହଁନ୍ତି । ସେଭଳି ମଦ୍ୟପୀ, ବ୍ୟଭିଚାରୀ, ଲାଞ୍ଚଖୋର ଅଫିସର ଜିଲ୍ଲା ମହକୁମାରେ ରହିଲେ ସରକାରଙ୍କର ବଦନାମ ହେବ । ଆପଣ ତାଙ୍କୁ ସେକ୍ରେଟେରିଏଟକୁ ନେଇ ଯାଆନ୍ତୁ ବା ଅନ୍ୟତ୍ର ପଠାଇ ଦିଅନ୍ତୁ, ମୋ ଡିଭିଜନରେ ରଖନ୍ତୁ ନାହିଁ । ଯେଉଁମାନେ ସାଧୁ ଅଫିସର, ଲମ୍ପଟ ବା ବ୍ୟଭିଚାରୀ ନୁହଁନ୍ତି, ଯେଉଁମାନେ ଲୋକମାନଙ୍କ ସହିତ ଭଲ ବ୍ୟବହାର କରିପାରିବେ, ସେହିଭଳି ଲୋକଙ୍କୁ ମୁଁ ଜିଲ୍ଲାପାଳ କରି ରଖିବାକୁ ଚାହେଁ । ମିଷ୍ଟର ଓଝା କୌଣସି ଜିଲାରେ ରହିବା ଭଳି ଅଫିସର ନୁହଁନ୍ତି ।"

"କିନ୍ତୁ ଆପଣ ଜାଣି ନାହାନ୍ତି ମିଷ୍ଟର ଭେଙ୍କଟରମଣ, ସେ ଜଣେ ଖୁବ୍ ଦକ୍ଷ ଅଫିସର । ସେ କଟକ ଜିଲ୍ଲାରେ ରହିଲା ଭିତରେ ବହୁ ଉନ୍ନୟନ କାର୍ଯ୍ୟରେ କୃତିତ୍ୱ ଅର୍ଜନ କରିଛନ୍ତି ।"

"ଆପଣ ଭୁଲ୍ ରିପୋର୍ଟ ପାଇଛନ୍ତି ସାର୍ । ମିଷ୍ଟର ଓଝା କଟକ ଜିଲ୍ଲାକୁ ଆସିଲା ଦିନଠାରୁ ତାଙ୍କ ସହିତ କେତେଜଣ ଦୁର୍ନୀତିଗ୍ରସ୍ତ ବି.ଡ଼ି.ଓ. ମିଶି ବ୍ଲକର ଟଙ୍କା ପଇସା ତୋଷରପାତଠାରୁ ଆରମ୍ଭ କରି ନାରୀହରଣ, ନାରୀ ଧର୍ଷଣ ପର୍ଯ୍ୟନ୍ତ କେତେ ଅମଣିଷ କାମ ଯେ କରିଛନ୍ତି, ତା'ର କଳନା ନାହିଁ । ମୁଁ ଜାଣେ ନିଜ ଜିଲ୍ଲାରୁ ଯଥେଷ୍ଟ ପାର୍ଣ୍ଣି ଉଠାଇ ଆପଣଙ୍କ ଦଳର ଶ୍ରେଷ୍ଠ ପାର୍ଣ୍ଣିକୁ ଦେଇଛନ୍ତି । ଯେତିକି ଦେଇଛନ୍ତି, ତା'ର ବହୁଗୁଣ ସେ ନିଜେ ଆତ୍ମସାତ କରିଛନ୍ତି । ସେ ପାର୍ଣ୍ଣି ଯେଉଁଭଳି ଭାବରେ ସଂଗ୍ରହ କରାଯାଇଛି, ଯଦି ପଦାରେ ପଡ଼ିଯାଏ, ତେବେ ଆପଣଙ୍କ ଦଳ ନିନ୍ଦିତ ହେବ ସାର୍ ।"

"ସେ କେମିତି ପାର୍ଣ୍ଣି ସଂଗ୍ରହ କଲେ, ତା ଭିତରକୁ ମୁଁ ଯିବାକୁ ଚାହେଁନି ମିଷ୍ଟର ଭେଙ୍କଟରମଣ । କିନ୍ତୁ ସେ ଯେ ଜଣେ ଖୁବ୍ ଦକ୍ଷ ଅଫିସର ଏହା ମୋର ଦୃଢ଼ ବିଶ୍ୱାସ । ସେଭଳି ଲୋକ ଜିଲ୍ଲା ମହକୁମାରୁ ଅନ୍ୟତ୍ର ବଦଳି ହେବାକଥା ନୁହେଁ । ମିଷ୍ଟର ଓଝାଙ୍କ ବିରୁଦ୍ଧରେ ଆପଣ ଯେଉଁସବୁ ଅଭିଯୋଗ କରିଛନ୍ତି, ତାହାକୁ ପ୍ରତ୍ୟାହାର କରିନେଲେ ମୁଁ ଖୁବ୍ ଖୁସି ହୁଅନ୍ତି ।"

"ପ୍ରତ୍ୟାହାର କରିବା ପୂର୍ବରୁ ଆପଣ ମୋତେ ଯଦି ଏଠାରୁ ବିଦାୟ କରି ଦିଅନ୍ତି, ତେବେ ମୁଁ ଖୁବ୍ ଖୁସି ହୁଅନ୍ତି ସାର୍ । ଗତ ତିନିମାସ ହେଲା ମୋର ଦିଲ୍ଲୀ ବଦଳି ଆଦେଶ ଆସିଲାଣି । ଆପଣ ତା' ଉପରେ କିଛି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ନାହାନ୍ତି ଏ ପର୍ଯ୍ୟନ୍ତ । ବର୍ତ୍ତମାନ ଯଦି ତା ଉପରେ କିଛି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ମୋତେ ଦିଲ୍ଲୀ ପଠାଇ ଦିଅନ୍ତି, ମୁଁ ସବୁଠାରୁ ଅଧିକ ଖୁସି ହୁଅନ୍ତି ସାର୍ ।"

"ଆପଣମାନଙ୍କ ଭଳି ଦକ୍ଷ ପୁରୁଖା ଅଫିସରଙ୍କୁ ଛାଡ଼ିଦେଲେ ଆମ ଶାସନ ଚାଲିବ କେମିତି ?"

"ଆଜ୍ଞା, ବହୁତ ଦକ୍ଷ ଅଫିସର ପାଇଯିବେ ଆପଣ । ମୁଁ ବହୁଦିନ ହେଲା ଏହି ରାଜ୍ୟରେ ରହିଲିଣି । ମୋତେ ଆପଣ ଦୟାକରି ଏଠୁ ବିଦାୟ କରିଦେଲେ ମୁଁ ଖୁବ୍ ଖୁସି ହୁଅନ୍ତି ସାର୍ ।"

"ହେଉ, ମୋତେ ଚିନ୍ତା କରିବାକୁ ଦିଅନ୍ତୁ ମିଷ୍ଟର ଭେଙ୍କଟରମଣ । ମୁଁ ପରେ ମୋ ସିଦ୍ଧାନ୍ତ ଜଣାଇବି ।"

× × × ×

ମଧୁପୁର ଡାକବଙ୍ଗଳାରେ ଜିଲ୍ଲା ମାଜିଷ୍ଟ୍ରେଟ ମିଷ୍ଟର ଓଝାଙ୍କ ଡେରା ପଡ଼ିଛି । ସେହି ଡ଼ାକବଙ୍ଗଳାରେ ଜିଲ୍ଲାପାଳ ଓ ବି.ଡ଼ି.ଓ. ମଦ ଖାଇବାରେ ବ୍ୟସ୍ତ । ମଦ ପରଶୁଥାଏ ସୁନ୍ଦରୀ ମେନକା । ମଦରେ ମଜଗୁଲ ହୋଇ ଜିଲ୍ଲାପାଳ କହୁଥାନ୍ତି "ଶଳା କମିସନରଟା ଏ ରାଜ୍ୟରୁ ଯାଇଛି, ନା ଶଳା ଭଲ ହୋଇଛି । ଶଳାଟା ମୋତେ ଧର୍ମବାଣୀ ଶୁଣାଉଥିଲା । ସେଇ ଶଳାଟା ଯୋଗୁଁ ସେଦିନ ସେ ଝିଅଟା ମୋ ହାତୁଡ଼ରୁ ଖସିଗଲା ନା ? ଶଳାଟା ଯାଇଛି ନା ମୋ କଣ୍ଟା ଯାଇଛି ।"

"ହୁଁ, ସେ ଝିଅଟାକୁ କ'ଣ ଆଉଥରେ ଏଠିକି ଆଣି ହେବନି ? ଶଳା ମାଲ ଖଣ୍ଡେ । ଶଳା, ଗୁରୁଖିଆ ମୋତେ ଧର୍ମବାଣୀ ଶୁଣାଉଥିଲା । "ଆପଣ ବିବାହିତ, ଆପଣଙ୍କ ସ୍ତ୍ରୀ ଅଛନ୍ତି ।" ଆରେ ଶଳା, ମୋର ସ୍ତ୍ରୀ ଅଛି, ହଁ ଅଛି—ନିଶ୍ଚୟ ଅଛି, ଆରେ ଶଳା ଅଲବତ୍ତି ଅଛି । ସେ ଅଛି ଘର ପାଇଁ । ଆଉ ଏଠିକା ପାଇଁ କ'ଣ ସେ ଘରଗୁଡ଼ି ଏଠାକୁ ଆସିବ ? ଶଳାଟା ଗୁରୁପାଣିଖିଆ, କ'ଣ ଏତିକି ଜାଣିଛି, ଘର ପାଇଁ ଘର ମାଲ, ବାହାର ପାଇଁ ବାହାର ମାଲ । ଶଳାଟାକୁ କିଏ ଆଇ.ଏ.ଏସ୍. କରିଥିଲା କେଜାଣି ? ଶଳାଟା ଏତିକି ଜାଣିନାହିଁ । ଆଇ:ଏ:ଏସ୍: କୁଳର ଶଳାଟା ଗୋଟାଏ କଳଙ୍କ ।

ମେନକା ହାତରୁ ମଦ ନେଇ ନେଇ କହିଲେ, "ଦେଖ ବି:ଡ଼ି:ଓ: ସେ ଝିଅଟାକୁ କ'ଣ ଆଉ ଆଣି ହେବନି ? ଆଉ ଗୋଟାଏ ଜାଲ ବିଛାଅନା । ଶଳା, ତା ନାଁରେ ଯେଉଁ ଅଭିଯୋଗଟା ଥିଲା, ସେ ଅଭିଯୋଗଟାକୁ ଫଇସଲା କରି ଲେଖିଦେଇ ଯାଇଛି, ଝିଅଟା ନିର୍ଦ୍ଦୋଷ ।"

"ନାଇଁ ଆଜ୍ଞା, ସେ ଝିଅଟାକୁ ଆଉ ଆଣି ହେବନି ? ସେ ବର୍ତ୍ତମାନ ମହିଳା ସମିତି ସେକ୍ରେଟେରି ପଦ ଛାଡ଼ି ଦେଇଛି । ଆମ ଜାଲଟା କେମିତି କେଜାଣି ସେହି ପଞ୍ଚାୟତରେ ପ୍ରଚାରିତ ହୋଇ ଯାଇଛି । ମୁଁ ସେଠାକୁ ଗଲାବେଳକୁ ଲୋକେ ମୋତେ ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି । ସେମାନେ ଆମକୁ ମୋଟେ ବିଶ୍ୱାସ କରୁ ନାହାନ୍ତି ସାର୍ । ସେମାନଙ୍କ ଭାଷାରେ ମୁଁ ହେଉଛି ଆପଣଙ୍କର ଦଲାଲ ।"

"ସେହି ଝିଅଟାକୁ ପୋଲିସ ସାହାଯ୍ୟରେ ହରଣଚାଲ କରି ଆଣିଲେ କେମିତି ହୁଅନ୍ତା ? ନଚେତ୍ କୌଣସି ଅଭିଯୋଗରେ ଆରେଷ୍ଟ କରି ଥାନା ହାଜତକୁ କ'ଣ ଆଣି ହେବନି ? ଥାନା ଅଫିସରଙ୍କ ସହିତ ପରାମର୍ଶ କରିଥିଲ ? ସେମାନେ କ'ଣ କହୁଛନ୍ତି ?"

ସେମାନେ କେହି ଧରାଛୁଆଁ ଦେଉ ନାହାନ୍ତି ସାର୍ । ତା'ଛଡ଼ା ସେହି ପଞ୍ଚାୟତର ଲୋକମାନେ ଏକ ମେଳ ହୋଇ ଆମ ବିରୁଦ୍ଧରେ ଲାଗିଛନ୍ତି । ବିହନ, ସାର, ଚାନ୍ଦା ନେଇ ଆମର ଯେଉଁସବୁ ଗୋପନ କାରବାର ସେମାନେ ସେସବୁକୁ ପଦାକୁ ବାହାର କରିବା ପାଇଁ ଲାଗି ପଡ଼ିଛନ୍ତି । ତା'ଛଡ଼ା ସରକାରଙ୍କ ବିରୁଦ୍ଧ ଦଳ ସେମାନଙ୍କୁ ଉସ୍‌କାଉଛନ୍ତି । ଆମର ସମସ୍ତ କାର୍ଯ୍ୟାବଳୀକୁ ସେମାନେ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟିକୁ ଆଣିବାକୁ ଚେଷ୍ଟା ଚଲାଇଛନ୍ତି ।"

"ଟଙ୍କା ଦେଇ ସେମାନଙ୍କ ମୁହଁ କ'ଣ ବନ୍ଦ କରିପାରୁ ନାହଁ ? ସେଥିପାଇଁ ଯେତେ ଟଙ୍କା ଦରକାର ମୁଁ ଯୋଗାଇଦେବି । ଅନ୍ୟ ବ୍ଲକର କିଛି କିଛି ଗ୍ରାଣ୍ଟ ଏ ବ୍ଲକକୁ ପଠାଇଦେଲେ ତୁମର ଏ ବାଟରେ ଖରଚ କରିବାକୁ କିଛି ଅଭାବ-ଅସୁବିଧା ହେବ ନାହିଁ । କଳେ, ବଳେ, କୌଶଳେ ଆମ ବିରୋଧୀ ଲୋକଗୁଡ଼ାଙ୍କୁ ହାତ କରିବାକୁ ଚେଷ୍ଟା କର ।"

"ମୁଁ ସେ ବାଟରେ ପ୍ରାଣପଣେ ଚେଷ୍ଟା ଚଲାଇଛି ସାର୍ । ଆପଣ ନିଶ୍ଚିନ୍ତ ରୁହନ୍ତୁ, ଆପଣଙ୍କ ଉପରକୁ କିଛି ବିପଦ ଆସିବ ନାହିଁ । ତା'ହେଲେ ମୁଁ ଆସୁଛି ସାର୍ । ମେନକା ଆଜି ଏଠି ରହୁ । କାଳେ ରାତିରେ କିଛି ଦରକାର ପଡ଼ିଲେ ସେ ସାହାଯ୍ୟ କରିପାରିବ ।"

ଦିନକୁଦିନ ଗୋବିନ୍ଦପୁର ବ୍ଲକରେ ଜନ ଅସନ୍ତୋଷ ବଢ଼ିବାକୁ ଲାଗିଲା । ଗ୍ରାମମାନଙ୍କୁ ଯାହା ଗ୍ରାଣ୍ଟ୍ ଆସିଲା, ତାହା ବ୍ଲକସ୍ତରରେ ରହିଗଲା । ଗ୍ରାମବାସୀଙ୍କ ଉନ୍ନତି ପାଇଁ କିଛି ଖର୍ଚ୍ଚ ହେଲା ନାହିଁ । ପୋଖରୀରୁ ମାଛ ମରା ହେଉଛି, ଆମ୍ବଗଛରୁ ଆମ୍ବ ତୋଳା ହେଉଛି, ନଡ଼ିଆଗଛରୁ ନଡ଼ିଆ ତୋଳା ହେଉଛି, ସେସବୁ ବିକ୍ରୀ ହୋଇ ସରକାରଙ୍କ ଟ୍ରେଜେରୀକୁ ଯାଉଛି ବୋଲି ଲୋକଙ୍କୁ କୁହାଯାଉଛି, କିନ୍ତୁ ଯାଉଛି ଅନ୍ୟଆଡ଼େ ।

ଏହିସବୁ ଯଥେଚ୍ଛାଚାରିତା ଫଳରେ ଗ୍ରାମପଞ୍ଚାୟତ ଆଉ କାମ କରୁନି । ପୂର୍ବ ବି:ଡ଼ି:ଓ:ଙ୍କ ସମୟରେ ଯାହାସବୁ ଉନ୍ନୟନମୂଳକ କାମ କରାଯାଇଥିଲା, ସେସବୁ ଏହି ବି:ଡ଼ି:ଓ:ଙ୍କ ଅମଳରେ ନଷ୍ଟ ହେବାକୁ ବସିଲାଣି ।

ସରକାରଙ୍କ ସାହାଯ୍ୟ ଅଭାବରୁ ଚାଷସବୁ ଉଜୁଡ଼ି ଗଲାଣି । ମହାଜନ ଓ ଜମି ମାଲିକମାନଙ୍କର ଅତ୍ୟାଚାର ଦିନକୁଦିନ ବଢ଼ି ବଢ଼ି ଚାଲିଛି ।

ଆଗରୁ ଯାହା ଦୁଇଦିନ ତିନିଦିନ ଭିତରେ ଥରେ ଚୁଲି ଜଳୁଥିଲା, ଆଜିକାଲି ଗାଁ ଲୋକମାନଙ୍କର ସାତ ଦିନରେ ବି ଥରେ ଚୁଲି ଜଳୁନି । ଶାନ୍ତି ଇସ୍ତଫା ଦେବା ଦିନଠାରୁ ମହିଳା ସମିତିର ଘର ଭାଙ୍ଗିଗଲାଣି । ସ୍କୁଲ ଅବସ୍ଥା ତଦ୍ରୂପ । ହରିବାବୁ ଦୌଡ଼ାଦୌଡ଼ି କରି ଘରକୁ ଘର ଯାଇ ଡ଼ାକହାକ ଯାହା ସ୍କୁଲଟିକୁ ଚଳାଇଥିଲେ । ସ୍କୁଲଘର ଛପର ଅଭାବରୁ ଭାଙ୍ଗିଯିବା ଉପରେ । ଇତିମଧ୍ୟରେ ପୁଣି ହରିବାବୁଙ୍କ ବଦଳି ହୋଇଗଲାଣି । ହରିବାବୁଙ୍କ ଭଳି ନୀତିବାନ୍ ଶିକ୍ଷକଙ୍କ ବଦଳି ଯୋଗୁଁ ସ୍କୁଲଟି ପୁରାପୂରି ବନ୍ଦ ହୋଇଯାଇଛି ।

ଗାଁର ଅବସ୍ଥା ଦିନକୁଦିନ ଯେତିକି ଖରାପ ହେଉଥାଏ, ବିରୁଦ୍ଧ ଦଳର ରାଜନୈତିକ ନେତାମାନେ ସେତେ ଗାଁକୁ ଆସିବା ଆରମ୍ଭ କରି ଦେଇଥାନ୍ତି । ଗାଁର ଏହି ଦୁରବସ୍ଥାରୁ ଫାଇଦା ଉଠାଇ ବର୍ତ୍ତମାନର ସରକାରକୁ ଦୁର୍ନାମ କରିବା ସେମାନଙ୍କ ଲକ୍ଷ୍ୟ ।

କିନ୍ତୁ ଗାଁ ଲୋକେ ଇତିମଧ୍ୟରେ ସବୁ ରାଜନୈତିକ ଦଳକୁ ଚହ୍ନିଗଲେଣି । ସବୁ ଦଳ ଫାଇଦା ଉଠାଇଲାବାଲା । ଲୋକଙ୍କ ଅବସ୍ଥା ସୁଧାରିବାବାଲା କେହି ନୁହଁନ୍ତି । ସମସ୍ତେ କୁମ୍ଭୀର କାନ୍ଦଣା କାନ୍ଦିବାରେ ଧୁରନ୍ଧର ।

ଦିନକୁଦିନ ଲୋକଙ୍କ ଅବସ୍ଥା ଯେତିକି ଖରାପ ହେଉଥାଏ, ସେମାନେ ରାଜନୈତିକ ଦଳମାନଙ୍କର ସେତିକି ବିରୋଧୀ ହେଉଥାନ୍ତି । ସେମାନେ ବୁଝିଗଲେଣି ସେମାନଙ୍କ ଦୁରବସ୍ଥା ପାଇଁ ସରକାରୀ ଅଫିସରମାନେ ଯେତିକି ଦାୟୀ ଏହି ରକ୍ତଶୋଷକ ରାଜନୈତିକ ଦଲାଲମାନେ ସେମାନଙ୍କଠାରୁ କମ୍ ଦାୟୀ ନୁହଁନ୍ତି । ଗୋବିନ୍ଦପୁର ଗାଁକୁ ଯଦି କୌଣସି ରାଜନୈତିକ ଦଳ କର୍ମୀ ଆସନ୍ତି, ତେବେ ଗାଁର ଲୋକେ ସେମାନଙ୍କୁ ଆଡ଼ ଆଖିରେ ଅନାନ୍ତି ନାହିଁ । ସେମାନେ ଜାଣିସାରିଲେଣି ଏଗୁଡ଼ାକ ପୁରାପୂରି ଦଲାଲ । ସମସ୍ତେ ପାଟିରେ ପକାଇଲାବାଲା, କେହି କାମ କଲାବାଲା ନୁହଁନ୍ତି ।

# ଏକୋଇଶି

ବିନୋବାଜୀ ତାଙ୍କ ଭୂଦାନ ପଦଯାତ୍ରାବେଳେ ଗୋବିନ୍ଦପୁର ଗ୍ରାମପଞ୍ଚାୟତ ଅଫିସ୍ ପାଖ ସ୍କୁଲ ପଡ଼ିଆରେ ଭାଷଣ ଦେଲେ । ସେ ଗାଁର ଲୋକମାନଙ୍କୁ ଭୂଦାନ ଯଜ୍ଞ ଓ ଗ୍ରାମଦାନର ଉପକାରିତା ଓ ମହତ୍ତ୍ୱ କଥା ବୁଝାଇଲେ । ଗାଁ ଲୋକମାନଙ୍କ ଅବସ୍ଥା ସୁଧୁରିବା ପାଇଁ ଆଉ କୌଣସି ବ୍ୟବସ୍ଥା ନାହିଁ, ଗ୍ରାମଦାନ ହିଁ ଏକମାତ୍ର ବ୍ୟବସ୍ଥା । ଲୋକମାନେ ଗ୍ରାମଦାନ କଲେ ସେମାନଙ୍କ ଅବସ୍ଥା କେମିତି ସୁଧୁରିବ ପୂର୍ବର ସୁସ୍ଥ ବାତାବରଣ କେମିତି ଫେରି ଆସିବ ସେ ବୁଝାଇଲେ ।

ଗ୍ରାମଦାନ କରିଥିବା ଗାଁରେ କେହି ଧନୀ ଦରିଦ୍ର ରହିବେନି । ସମସ୍ତେ ଖଟି ଗାଁର ଉନ୍ନୟନ କରିବେ । ଏହି ଗାଁରେ ଜମିର ମାଲିକାନା ବ୍ୟକ୍ତି ବିଶେଷଙ୍କର ରହିବନି । ଗାଁର ସମସ୍ତ ଚାଷ ଜମି ଓ ଅନ୍ୟ ଜମିର ମାଲିକ ହେବେ ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତ ଗ୍ରାମବାସୀ ।

ଗ୍ରାମରେ ଯାହା ଉତ୍ପାଦନ ହେବ, ତା'କୁ ଭୋଗକରିବେ ସମସ୍ତ ଗ୍ରାମବାସୀ ସମାନ ଭାବରେ । ପ୍ରତ୍ୟେକ ଗ୍ରାମବାସୀଙ୍କର ସୁଖ ଦୁଃଖ ସାରା ଗ୍ରାମର ସୁଖ ଦୁଃଖ ସହିତ ସାମିଲ ହୋଇଯିବ । କୌଣସି ଜଣେ ଲୋକର ଯଦି ବ୍ୟକ୍ତିଗତ ସମସ୍ୟା ଉପୁଜେ, ତେବେ ସେ ସମସ୍ୟା ସେହି ଗାଁର ସମସ୍ତଙ୍କର ବୋଲି ଧରିବାକୁ ପଡ଼ିବ ।

ମହାତ୍ମାଜୀ କହିଥିଲେ ଗାଁ ଗହଳର ଉନ୍ନୟନ ହିଁ ଦେଶ ତଥା ଜାତିର ପ୍ରକୃତ ଉନ୍ନୟନ, ତାହା ଉପରେ ଜୋର ନ ଦେଲେ ଆମ ଦେଶ ଉନ୍ନତି ପଥରେ ଆଗେଇ ପାରିବନି । ଗାଁ ଗହଳର ଉନ୍ନତି ନ ହେଲେ ଦେଶର ଉନ୍ନତି ପୁରାପୁରି ଅସମ୍ଭବ ।

ଜନସେବାଠାରୁ ବଡ଼ସେବା ପୃଥିବୀରେ ନାହିଁ । ଯେଉଁମାନେ ସେମାନଙ୍କ ଅର୍ଜିତ ଧନ ସମ୍ପତ୍ତି ଏହି ଗାଁର ଉନ୍ନତିକଲେ ଦାନ କରିବେ, ସେମାନଙ୍କଠାରୁ ବଡ଼ ପୁଣ୍ୟାତ୍ମା ଏହି ସାରା ବିଶ୍ୱରେ ଆଉ କେହି ନାହିଁ ।

ବିନୋବାଜୀ ସିନା ଭାଷଣ ଦେଇ ଚାଲିଗଲେ, ତାଙ୍କ ଭାଷଣର ସାରକଥା ଲୋକଙ୍କ ହୃଦୟରେ ଗାର ହୋଇ ରହିଗଲା । ଜନସେବା ହିଁ ଭଗବାନ୍ ସେବା, ଭୂଦାନ ହିଁ ଭଗବାନ୍ ଦାନ । ଗ୍ରାମଦାନ ହିଁ ଶ୍ରେଷ୍ଠତମ ଦାନ । ଲୋକମାନଙ୍କ ଭିତରେ ଏହି ଗ୍ରାମଦାନ ନେଇ ନାନା ଆଲୋଚନା ଚାଲିଲା ।

ଗ୍ରାମବାସୀମାନେ ଦେଖିଲେ ସେମାନଙ୍କ ଅବସ୍ଥା ଦିନକୁଦିନ ରସାତଳକୁ ଯାଉଛି । ଗାଁର ଜମିରୁ କିଛି ଉତ୍ପାଦନ ହେବାକୁ ନାହିଁ । ଲୋକେ ଡହଳବିକଳରେ ଆଉ କେତେଦିନ ପଡ଼ି ରହିବେ ? ଯଦି ଏହି ଅବହେଳିତ ଗ୍ରାମଟିକୁ ବିନୋବାଜୀଙ୍କୁ ଦାନ

କରି ଦିଆଯାଏ, ତେବେ ସେ ହୁଏତ ତାଙ୍କ ଗ୍ରାମଦାନ ନୀତିରେ ଏହାର ସ୍ଥାୟୀ ଉନ୍ନୟନ ପାଇଁ କିଛି କରି ପାରନ୍ତି । ବିନୋବାଜୀଙ୍କ ଆଶୀର୍ବାଦ ପାଇଲେ ହୁଏତ ଏହି ଗାଁଗୁଡ଼ିକର ଭାଗ୍ୟ ଦିନେ ବଦଳି ଯାଇପାରେ ।

ଏହା ନିଶ୍ଚିତ ଯେ ସରକାରଙ୍କ ପକ୍ଷରୁ ଗାଁର କିଛି ଉନ୍ନତି ସମ୍ଭବପର ନୁହେଁ । ଇଏ ସରକାର ଯାଇ ଆଉ ଯେଉଁ ସରକାର ଆସିଲେ ମଧ୍ୟ ଅବସ୍ଥା ସୁଧୁରିବ ନାହିଁ । ସେଇସ୍ଥା ହିଁ ରହିଥିବ ।

କଥାରେ ଅଛି ସବୁ ଚଢ଼େଇମୁହଁ ପଶ୍ଚିମକୁ । ସବୁ ରାଜନୈତିକ ଦଳ ସମାନ । ସମସ୍ତେ ଗରିବଙ୍କୁ ଶୋଷିଲାବାଲା । ଗରିବଙ୍କ ଉନ୍ନତି ପାଇଁ କାହାରି ଦରଜ ନାହିଁ । ନେତା ହେବାକ୍ଷଣି ତ ନିଜେ ଖାଇବା ଆରମ୍ଭ କରିଦେଲେ, ଦେଶର ଉନ୍ନତି ହେବ କେଉଁଠୁ ?

ଦିନେ ଗୋବିନ୍ଦପୁର ଗ୍ରାମପଞ୍ଚାୟତର ସାତ ଆଠଖଣ୍ଡ ଗାଁର ଲୋକେ ମିଳିତ ହୋଇ ଏକ ସଭା କଲେ । ସେହି ସଭାରେ ବହୁ ଆଲୋଚନା ପରେ ନିର୍ଦ୍ଧାର୍ଯ୍ୟ ହେଲା ଯେ ଏହି ଗାଁର ସବୁ ଲୋକେ ସେମାନଙ୍କ ସମସ୍ତ ଜମି ଓ ଘରଡିହକୁ ଗ୍ରାମଦାନ ନୀତିରେ ବିନୋବାଜୀଙ୍କୁ ଦାନ କରିଦେବେ । ତତ୍ପରେ ସେ ଯେଉଁ ପନ୍ଥାରେ ଏହାର ଉନ୍ନୟନ ଚାହିଁବେ, ସେମାନେ ସେଥିରେ ସହଯୋଗ କରି କାର୍ଯ୍ୟ କରିବେ ।

ସଭାରେ ସିନା ସ୍ଥିର ହୋଇଗଲା, ଏହି ସାତ ଆଠଖଣ୍ଡି ଗାଁ ବିନୋବାଜୀଙ୍କୁ ଗ୍ରାମଦାନ ନୀତିରେ ଦାନ କରି ଦିଆଯିବ, କିନ୍ତୁ ଗାଁର ଜମି ମାଲିକ ତ ମହାଜନମାନେ । ଏହି ସିଦ୍ଧାନ୍ତବେଳେ ସେମାନେ ସେହି ସଭାରେ ଉପସ୍ଥିତ ନ ଥିଲେ । ଗାଁ ଲୋକଙ୍କ ସର୍ବସମ୍ମତ ସିଦ୍ଧାନ୍ତ ଯେତେବେଳେ ସେମାନଙ୍କୁ ଜଣାଇ ଦିଆଗଲା, ସେମାନେ କହିଲେ, "ତୁମ୍ଭେମାନେ ଦେଇଦିଅ । ଆମେ ଆମ ସମ୍ପତ୍ତି ଦେବୁ ନାହିଁ ।" ଗାଁର ଶତକଡ଼ା ଅଶୀଭାଗ ଜମି ଏମାନଙ୍କ ଅକ୍ତିଆରରେ । ସେମାନେ ଯଦି ସେମାନଙ୍କ ଜମି ଦାନ ନ କରିବେ, ତେବେ ଗ୍ରାମଦାନ ହୋଇପାରିବ କେମିତି ?

ଗ୍ରାମଦାନ ସପକ୍ଷରେ ଥିବା ମୁଖିଆ ମୁଖିଆ ଲୋକମାନେ ଯାଇ ସେମାନଙ୍କୁ ବୁଝାଇଲେ । ସେମାନେ ଯଦି ଗ୍ରାମବାସୀଙ୍କ ସହିତ ମିଳିତ ନ ହୋଇ ଏହି ସିଦ୍ଧାନ୍ତକୁ ଗ୍ରହଣ ନ କରନ୍ତି, ସେମାନଙ୍କ ଜମି ସେମାନେ କାହାକୁ ନେଇ ଚାଷ କରିବେ ?

ଅଧିକାଂଶ ଜମି ମାଲିକ ଓ ମହାଜନମାନେ ନାନା ଅନ୍ୟାୟ ଭାବରେ ଗ୍ରାମବାସୀଙ୍କ ଜମିକୁ ମାଡ଼ି ବସିଥାନ୍ତି । ମହାଜନର ଟଙ୍କା ପରିଶୋଧ ହୋଇଥିଲେ ବି ତାହା ଖାତାରେ କିଛି ଲେଖା ନ ହୋଇ ଋଣ ଗଡ଼ି ଚାଲିଥାଏ ।

× × × ×

"କିଏ ସାହୁକାର ଗୋବିନ୍ଦବାବୁ ଘରେ ଅଛନ୍ତି ?"

ଘରୁ ଶୁଭିଲା "ହଁ ଅଛନ୍ତି, କ'ଣ ଦରକାର ?"

"ହେଉ, ବାହାରକୁ ଆସନ୍ତୁ । ଆପଣଙ୍କ ନାମରେ ଓ୍ୱାରେଣ୍ଟ ଅଛି ।"

ଓ୍ୱାରଣ୍ଟ ନା ଶୁଣି ମହାଜନଙ୍କ ହୃଦକ ଶୁଖିଗଲା । ସେ ଦୁଆରଖୋଲି ଦେଖନ୍ତି ତ ପାଖ ପୋଲିସ ଷ୍ଟେସନର ଦାରୋଗାବାବୁ ଦୁଆରମୁହଁରେ ଠିଆ । ପଛରେ ଦୁଇ ଚାରିଜଣ କନଷ୍ଟେବଲ ହାତକଡ଼ା ଧରି ଠିଆ ହୋଇଛନ୍ତି ।

ଲମ୍ବା ଲମ୍ବା ଓଲକ ପକାଇ ବସିବା ପାଇଁ ଅନୁରୋଧ କଲେ ଗୋବିନ୍ଦବାବୁ । "ହଜୁର, କ'ଣ ପାଇଁ ଓ୍ୱାରଣ୍ଟ ?"

"ଆପଣ ବିନା ଲାଇସେନ୍‌ସରେ ମହାଜନୀ କାରବାର କରୁଛନ୍ତି ।"

"ନାଇଁ ଆଜ୍ଞା, ମୁଁ ମହାଜନୀ ଫହାଜନୀ କିଛି କରେନି ଆଜ୍ଞା । ମୋ ନାଁରେ କିଏ ଆପଣଙ୍କଠାରେ ମିଛରେ ଫୋଡ଼ି ଦେଇଥିବ ।"

"ହେଉ, ମିଛରେ କି ସତରେ, ସେକଥା କୋର୍ଟ ବିଚାର କରିବ । ଆପଣ ଆଗେ ଥାନାକୁ ଚାଲନ୍ତୁ । ହାବିଲଦାର, ଏହାଙ୍କୁ ହାତକଡ଼ା ଲଗା ।"

ସାହୁକାରେ ଯେତେ ନେହୁରା ହେଲେବି କେହି ଶୁଣିଲେନି । ତାଙ୍କୁ ହାତକଡ଼ା ପିନ୍ଧାଇ ବିଚ୍ ରାସ୍ତାରେ ଚଲାଇ ଚଲାଇ ଥାନାକୁ ନିଆଗଲା । ସେତେବେଳକୁ ଗାଁ ସାରା ଲୋକେ ଦେଖିବା ପାଇଁ ସେଠି ଜମା ହୋଇଗଲେଣି । ଗୋବିନ୍ଦବାବୁଙ୍କର ଗାଁରେ କି ପ୍ରତିପତ୍ତି । ଅଥଚ ସେ ଆଜି ହାତକଡ଼ା ପିନ୍ଧି ଯାଉଥିବାର ଦେଖି ଗାଁର ଅନ୍ୟ ମହାଜନ-ମାନେ ଚୁପ୍‌ଚାପ୍ ଗୁମନିଆ । ସମସ୍ତଙ୍କ ମନରେ ସନ୍ଦେହ, ପୋଲିସକୁ ଖବର ଦେଲା କିଏ ? ନିଶ୍ଚୟ ଏହି ଗାଁରେ ସେମାନଙ୍କ ବିରୋଧରେ କେହି ଅଛନ୍ତି । ଏହା ସେମାନଙ୍କ କାରସାଦି ।

ଏହିଭଳି ଭାବରେ ଧୀରେ ଧୀରେ ଗାଁ ମହାଜନ ଓ ଜମି ମାଲିକମାନଙ୍କ ବିରୋଧରେ ବିଦ୍ରୋହ ତେଜି ଉଠିଲା । ଏହି ସମୟରେ ଗାଁର ବଡ଼ ବଡ଼ ମହାଜନଙ୍କୁ ବିନା ଲାଇସେନ୍‌ସରେ ମହାଜନୀ କାରବାର ଚଳାଇଥିବାରୁ ପୋଲିସ ତରଫରୁ ଆରେଷ୍ଟ କରି ନିଆଗଲା । ଇନ୍‌କମ ଟିକସ ଅଫିସରମାନେ ଆସି ସେମାନଙ୍କ ଘର ଖାନତଲାସ କରି ସେମାନଙ୍କର ସମସ୍ତ ସମ୍ପତ୍ତିକୁ ବାଜ୍ୟାପ୍ତ କରିନେଲେ । ବହୁ କଷ୍ଟରେ ସେମାନେ ଓକିଲଙ୍କୁ ଧରାଧରି କରି ଜାମିନରେ ଛାଡ଼ ପାଇ ଘରକୁ ଆସିଲେ । କିନ୍ତୁ ମୋକଦ୍ଦମା ଗଡ଼ି ଚାଲିଲା ।

ଗାଁ ଲୋକମାନେ ଯଦି ବର୍ତ୍ତମାନ ସେମାନଙ୍କ ବିରୋଧରେ ଯାଆନ୍ତି, ତେବେ ସେମାନେ ଦୋଷୀ ସାବ୍ୟସ୍ତ ହୋଇ ଜେଲଦଣ୍ଡ ଭୋଗିବେ । ତେଣୁ ସେହି ଭୟରେ ବାଧ୍ୟ ହୋଇ ସମସ୍ତ ଜମିକୁ ବିନୋବାଜୀଙ୍କୁ ଦାନ କରିଦେବାକୁ ବିଚାର କଲେ ।

ବଡ଼ ବଡ଼ ଜମି ମାଲିକମାନେ ଦେଖିଲେ ସେମାନେ ଯଦି ଗ୍ରାମବାସୀଙ୍କ ସହିତ ନ ମିଶି ଅଲଗା ହୋଇ ରହି ଯାଉଛନ୍ତି, ଏହି ଜମି ପାଇଁ ଦିନେ ଯଦି ରକ୍ତାକ୍ତ ବିପ୍ଳବ ହୁଏ, ତେବେ ସେମାନଙ୍କ ବଂଶ ନିପାତ ହୋଇଯିବ । ଏହି ଜମିକୁ ଭୋଗ ଦଖଲ କରିବାକୁ ସେମାନଙ୍କର କେହି ନ ଥିବେ ।

ଗ୍ରାମବାସୀମାନେ ଯେତେବେଳେ ସେମାନଙ୍କୁ ବୁଝାଇଦେଲେ ଜଳ ଓ ବାୟୁ ଉପରେ ଯେମିତି ସମସ୍ତଙ୍କର ସମାନ ଅଧିକାର ରହିଛି, କେହି ଏହାକୁ ନିଜର ବୋଲି

ଅଟକାଇ ରଖି ପାରୁନ, ଜମି ମଧ୍ୟ ସେହିଭଳି ସମସ୍ତଙ୍କର । ଜଳ, ବାୟୁ ଭଳି ଜମି ଭଗବାନଙ୍କ ସୃଷ୍ଟି । ଏହା ଉପରେ ସମସ୍ତଙ୍କର ସମାନ ଅଧିକାର ରହିବା କଥା ।

ସେମାନେ ସମସ୍ତେ ବୁଝିଗଲେ । ଗାଁ ତ ଉଚ୍ଛନ୍ନ ହେବା ଉପରେ, ଜମିରୁ କ'ଣ ବା ଲାଭ ମିଳୁଛି ? ଏହାକୁ ଆବୋରି ଧରି ଲାଭ କଅଣ ? ଗାଁର ଲୋକଙ୍କୁ ନେଇ ତ ସେମାନେ ଚାଷ କରିବେ । ସେମାନେ ଯେତେବେଳେ ଗ୍ରାମଦାନ ପାଇଁ ଅଡ଼ି ବସିଲେଣି, ସେମାନଙ୍କୁ ଅସନ୍ତୋଷ କଲେ ଜମିକୁ ଚାଷ କରିବ କିଏ ? ସହରରୁ କି ଦୂର ଗାଁରୁ କେହି ଆସି ତ ଏଠି ଚାଷ କରିବେନି ।

ଗୋବିନ୍ଦପୁର ଗ୍ରାମପଞ୍ଚାୟତର ଆଠଖଣ୍ଡି ଗାଁ ଏକମତ ହୋଇ ସେମାନଙ୍କ ଗାଁକୁ ବିନୋବାଜୀଙ୍କ ଗ୍ରାମଦାନ ସଂସ୍ଥାକୁ ଦାନ କରିଦେଲେ । ବିନୋବାଜୀଙ୍କ ଲୋକମାନେ ଆସି ଏହାକୁ ସରକାରଙ୍କ ରେଜିଷ୍ଟ୍ରି ଖାନାରେ ଗ୍ରାମଦାନ ସଂସ୍ଥା ନାଁରେ ରେଜେଷ୍ଟ୍ରି କରାଇ ନେଲେ । ଏହି ଗାଁର ସବୁ ଜମିର ମାଲିକ ହେଲେ ଗ୍ରାମବାସୀ । କାହାରି ବ୍ୟକ୍ତିଗତ ଜମି ବୋଲି କିଛି ରହିଲାନି ।

## ବାଇଶି

ବିନୋବାଜୀଙ୍କ ପ୍ରଧାନ ଶିଷ୍ୟ ରାଧେଶ୍ୟାମଜୀ କଟକ ସହରରେ ବିରାଟ ବାଲିଯାତ୍ରା ପଡ଼ିଆରେ ଭୂଦାନ ଓ ଗ୍ରାମଦାନ ନୀତି ଉପରେ ଭାଷଣ ଦେଇ ନିଜ କେମ୍ପ୍‌କୁ ଫେରି ଆସିଲାବେଳକୁ ତାଙ୍କୁ ସାକ୍ଷାତ କରିବା ପାଇଁ ଅପେକ୍ଷା କରିଥାନ୍ତି ରେଭେନ୍‌ସା କଲେଜର ବିଲାତ ଫେରନ୍ତା ପ୍ରସିଦ୍ଧ ବୈଜ୍ଞାନିକ ଡକ୍ଟର ଦେବସ୍ନାନ ଦାସ । ଏତେବଡ଼ ବୈଜ୍ଞାନିକ କ'ଣ ପାଇଁ ତାଙ୍କ ଦର୍ଶନାଭିଳାଷୀ ଭାବି ଠିକ୍ କରି ପାରିଲେନି । ରାଧେଶ୍ୟାମଜୀ କିଛି ସମୟ ପରେ ତାଙ୍କୁ ତାଙ୍କ କୋଠରୀକୁ ଡକାଇଲେ ।

ଦେବସ୍ନାନବାବୁ ରାଧେଶ୍ୟାମଜୀଙ୍କୁ ନମସ୍କାର ଜଣାଇ ତାଙ୍କ ସାମନା ସତରଞ୍ଜିରେ ବସିଲେ । ରାଧେଶ୍ୟାମଜୀଙ୍କ ପଛକୁ ବିନୋବାଜୀଙ୍କ ପ୍ରଧାନ ପ୍ରଧାନ ସହଚର ଭରତ ରାମଜୀ, ରତନ ଲାଲ୍‌ଜୀ, ଗୋବର୍ଦ୍ଧନ ପାଣ୍ଡେ ଆଦି ବସିଥାନ୍ତି । ଦେବସ୍ନାନବାବୁଙ୍କୁ ଦେଖି ଅଳ୍ପ ହସି ହସି ରାଧେଶ୍ୟାମଜୀ ପଚାରିଲେ, "କୁହନ୍ତୁ ଡ଼କ୍ଟର ସାହେବ, ଆପଣଙ୍କ ଗବେଷଣା କେମିତି ଚାଲିଛି ? ଆପଣଙ୍କ ଗବେଷଣା ଦ୍ୱାରା ଆମ ଜନତା କି କି ଉପକାର ପାଉଛି, ଆମକୁ ଟିକିଏ ବୁଝାଇ ଦିଅନ୍ତୁ ଡ଼କ୍ଟରଜୀ ।"

ଦେବସ୍ନାନ ଆସିଥିଲା ରାଧେଶ୍ୟାମଜୀଙ୍କ ପାଖରୁ ଭୂଦାନ ଓ ଗ୍ରାମଦାନ ସମ୍ପର୍କରେ କିଛି ନୂଆ କଥା ଶୁଣିବ । ତା ପରିବର୍ତ୍ତରେ ରାଧେଶ୍ୟାମଜୀ କ'ଣ ତାକୁ ଓଲଟି ତା ଗବେଷଣା କଥା ପଚାରିଲେଣି ? ବଡ଼ ଆଶ୍ଚର୍ଯ୍ୟ ହେଲା ଦେବସ୍ନାନ ।

"ନାହିଁ ଆଜ୍ଞା, ମୋ ଗବେଷଣା ଠିକ୍ ଚାଲିଛି । ମୋ ଗବେଷଣା ଦ୍ୱାରା ଆମ ଦେଶର ଜନତା ସେମିତି ଆଦୌ ଉପକୃତ ହେଉ ନାହାନ୍ତି । ଏହି ଗବେଷଣାବଳରେ ମୁଁ ଓ ମୋର ଗବେଷଣା କରୁଥିବା ଛାତ୍ର ଛାତ୍ରୀମାନେ କେବଳ ଯାହା ଉପକୃତ ହେଉଛୁ । ମୋ ଗବେଷଣାତ୍ମକ ପ୍ରବନ୍ଧର ସଂଖ୍ୟା ତଥା ପିଏଚ୍.ଡି: ପାଉଥିବା ଛାତ୍ରଙ୍କ ସଂଖ୍ୟା ବଢ଼ି ଚାଲିଛି । ପିଏଚ୍.ଡି: ପାଉଥିବା ଛାତ୍ରମାନେ ସେମାନଙ୍କ ନୂତନ ଡ଼ିଗ୍ରୀ ଦ୍ୱାରା ସରକାର ବା ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ଭଲ ଭଲ ଚାକିରି ଯାହା ପାଉଛନ୍ତି, ଫଳରେ ସେମାନଙ୍କ ନିଜର ଯାହାକିଛି ଉନ୍ନତି ଘଟୁଛି ଏତିକି । ଦେଶର ସେମିତି କିଛି ଉନ୍ନତି ହେଉନି ଆମ ଗବେଷଣାରୁ ।"

"ଦେଖନ୍ତୁ ଡ଼କ୍ଟର ସାହେବ, ଆପଣମାନଙ୍କ ଗବେଷଣା ପଛରେ ଆମ ଦେଶ ଖର୍ଚ୍ଚ କରୁଛି କୋଟି କୋଟି ଟଙ୍କା, ସେଥିରେ ମାତ୍ର କ'ଣ ଏହି କେତେଜଣ ଉପକୃତ ହେବା କଥା ? ଦେଶର ଶହ ଶହ ଲୋକ ଦରିଦ୍ର ଅବସ୍ଥାରେ ଥିଲାବେଳେ ଦେଶର ରାଜସ୍ୱ ମାତ୍ର ଏହି କେଇଜଣଙ୍କ ସ୍ୱାର୍ଥରେ କ'ଣ ଲାଗିବା ଉଚିତ ?"

"ନାଇଁ ଆଜ୍ଞା, ଏହା ହେବା ମୋଟେ ଉଚିତ୍ ନୁହେଁ । ସେ ଦୃଷ୍ଟିରୁ ମୁଁ ଆପଣଙ୍କ ସହିତ ଏକମତ ଆଜ୍ଞା ।"

"ଆମ ଦେଶର ଅସଂଖ୍ୟ ସମସ୍ୟା ସମାଧାନରେ ବିଜ୍ଞାନ କ'ଣ ଲାଗିପାରିବନି ଡକ୍ଟରଜୀ ? ଆମ ଦେଶରେ ଆଜି ଶହ ଶହ ସମସ୍ୟା ଅଛି, ସେଗୁଡ଼ିକର ସମାଧାନ କିଏ କରିବ ? ଆପଣମାନେ ତ କରିବେ ? ଏହି ସମସ୍ୟାର ସମାଧାନ ନ ହେଲେ ଆମେ ତ ଚାଲି ପାରିବାନି । ସେସବୁ ସମସ୍ୟାର ସମାଧାନ ଦିଗରେ ଆମ ଦେଶର ବୈଜ୍ଞାନିକମାନେ ଆଗଉଥିଲା ଭଳି ମୋର ତ ମନେ ହୁଏନି । ପାଶ୍ଚାତ୍ୟ ଦେଶମାନଙ୍କରେ ଯେଉଁସବୁ ସମସ୍ୟା ଉପୁଜୁଛି, ସେ ସବୁକୁ ସେ ଦେଶର ବୈଜ୍ଞାନିକମାନେ ତ ସମାଧାନ କରୁଛନ୍ତି । ଆମ ଦେଶର ସମସ୍ୟା ସମାଧାନ ପାଇଁ ଆମ ଦେଶର ବୈଜ୍ଞାନିକମାନେ ପଛାଉଛନ୍ତି କାହିଁକି ?"

"ମୁଁ ଆପଣଙ୍କ ସହିତ ପୂରାପୂରି ଏକମତ ଆଜ୍ଞା । ଆପଣ ଯେଉଁଭଳି ଗବେଷଣା କଥା କହୁଛନ୍ତି, ସେଭଳି ଗବେଷଣା ଆମ ଦେଶର ଲୋକେ କରିବାକୁ ଆଗ୍ରହ ପ୍ରକାଶ କରୁ ନାହାନ୍ତି । ସେଭଳି ଗବେଷଣାରେ ନିଜ ପ୍ରକୃତ ଜ୍ଞାନର ବିନିଯୋଗ ଦରକାର, ଯା'ପାଇଁ କି ଆମ ବୈଜ୍ଞାନିକମାନେ ସର୍ବଦା ପରାଙ୍ମୁଖ । ପାଶ୍ଚାତ୍ୟ ଦେଶର ଗବେଷଣାର ଗୋଡ଼ାଣିଆ ହୋଇ ଯାହାକିଛି ଏଠି ଗବେଷଣା ଚାଲିଛି । ଏବର ଗବେଷଣାରେ ଆମର ନିଜତ୍ୱ ବୋଲି କିଛି ନାହିଁ ।"

"ଆପଣଙ୍କୁ ଗବେଷଣା କେମିତି ଲାଗୁଛି ଡ଼କ୍ଟର ସାହେବ ? ଆପଣ ଆପଣଙ୍କ କାମରେ ବେଶ୍ ସନ୍ତୁଷ୍ଟ ତ ?"

"ନାଇଁ ଆଜ୍ଞା, ମୁଁ ମୋ ଗବେଷଣା କାର୍ଯ୍ୟରେ ମୋଟେ ସନ୍ତୁଷ୍ଟ ନୁହେଁ । ମୁଁ ଏହି ଧରଣର ଗବେଷଣା କରିବା ଫଳରେ ନିଜକୁ ଜଣେ ଅପରାଧୀ ବୋଲି ମନେକରୁଛି । ମୋ

ଗବେଷଣା ଫଳ ଦେଶର ବା ଲୋକମାନଙ୍କର ଉପକାରରେ ଆସୁ ନ ଥିବାରୁ ମୁଁ ବଡ଼ ଦୁଃଖିତ । ଯେଉଁମାନଙ୍କ ଅର୍ଥରେ ଆମେ ଗବେଷଣା କରୁଛୁ, ସେମାନଙ୍କୁ ଆମେ ଯଦି କିଛି ପ୍ରତିଦାନ ଦେଇ ନ ପାରିଲୁ, ତେବେ ଆମେ ଆମ ଦେଶର ଅର୍ଥକୁ ଲୁଟି ନେଉଛୁ ବୋଲି ଧରି ନ ଯିବ କାହିଁକି ?"

ସେଥିପାଇଁ ବହୁଦିନ ହେଲା ଏହିଭଳି ଗବେଷଣାରୁ ଛୁଟି ନେଇ ଜନସେବା କଲାଭଳି କାମରେ ମୁଁ ନିଜକୁ ନିୟୋଜିତ କରିବାକୁ ଚାହେଁ ।"

"ଆପଣ ଏହି ପଦକ୍ଷେପ ନେବା ପୂର୍ବରୁ ଏହା ଉପରେ ଭଲ ଭାବରେ ଚିନ୍ତା କରିଛନ୍ତି ତ ଡ଼କ୍ଟର ସାହେବ ?"

"ହଁ ଆଜ୍ଞା, ଗତ ଛଅମାସ ଧରି ମୁଁ ଏହା ଉପରେ ଗଭୀର ଚିନ୍ତା କରି ଆସିଛି । ଏହି ଚାକିରିରେ ଆଉ ଅଧିକ ଦିନ ରହିବା ପାଇଁ ମୋର ଆଦୌ ଇଚ୍ଛା ନାହିଁ । ମୋର ସର୍ବଦା ମନେ ହେଉଛି ଯେମିତି ମୋର ଜୀବନ ନଷ୍ଟ ହୋଇ ଯାଉଛି । ଯେଉଁ ଉଦ୍ଦେଶ୍ୟ ପାଇଁ ମଣିଷ ସୃଷ୍ଟି ହୋଇଛି, ସେହି ଉଦ୍ଦେଶ୍ୟଠାରୁ ମୁଁ ଯେମିତି ଦୂରକୁ ଚାଲି ଯାଉଛି ।"

ରାଧେଶ୍ୟାମଜୀଙ୍କ ପାଖରେ ବସିଥିଲେ ବିନୋବାଜୀଙ୍କ ଆଉ ଏକ ପଟ୍ଟଶିଷ୍ୟ ଭରତ ରାମଜୀ । ସେ କହି ପକାଇଲେ, "ଆପଣମାନଙ୍କ ଭଳି ଦେଶର ପ୍ରଖ୍ୟାତ ବୈଜ୍ଞାନିକ, ଯେଉଁମାନଙ୍କ ନାଁ ଦେଶ ବିଦେଶରେ ସମ୍ମାନିତ ହେଉଛି, ସେମାନେ ଚାକିରି ଛାଡ଼ିଦେଇ ଜନସେବା ପାଇଁ ଚାଲି ଆସିବା ଦେଶ ପକ୍ଷରେ କମ୍ ବଡ଼ ସୌଭାଗ୍ୟର ନିଦର୍ଶନ ନୁହେଁ । ଆମ ସଂସ୍ଥା ଆପଣମାନଙ୍କ ଭଳି ଉଚ୍ଚକୋଟୀର ବୁଦ୍ଧିଜୀବୀମାନଙ୍କୁ ପାଇଲେ କମ୍ ଗୌରବାନ୍ୱିତ ମନେ କରିବନି ।"

"ଦେଖନ୍ତୁ ଡ଼କ୍ଟର ସାହେବ । ଆପଣଙ୍କ ରାଜ୍ୟ ଓଡ଼ିଶାର ଲୋକେ ଅତ୍ୟଧିକ ଗରିବ । ଆମ ଦେଶର ସବୁ ରାଜ୍ୟ ବିନୋବାଜୀଙ୍କ ସହିତ ଆମେ ବୁଲି ସାରିଲୁଣି, ଓଡ଼ିଶା ଭଳି ଗରିବ ରାଜ୍ୟ ଆଉ କେଉଁଠି ନାହିଁ । ଏହି ରାଜ୍ୟଟି ପ୍ରାକୃତିକ ସମ୍ପଦରେ ପୁରି ରହିଛି । ଜମିଗୁଡ଼ିକ ଖୁବ୍ ଉର୍ବର । ହେଲେ ଏ ଦୁଇ ରାଜ୍ୟର ସବୁଠାରୁ ଲୋକ ଦାରିଦ୍ର୍ୟର ସୀମାରେଖା ତଳେ ।"

ରାଜ୍ୟର ପ୍ରାକୃତିକ ବିଭବକୁ ଯଦି କାର୍ଯ୍ୟରେ ଲଗାଯାଇ ପାରନ୍ତା, ତେବେ ଏ ଦେଶରେ ଦୁଧ ମହୁର ସ୍ରୋତ ଫିଟିଯା'ନ୍ତା ପ୍ରୋଫେସର । ଆପଣମାନଙ୍କ ଭଳି ବୁଦ୍ଧିମାନ୍ ଓ ଜ୍ଞାନୀ ଲୋକମାନେ ଯଦି ଲୋକଙ୍କ ଦୁର୍ଦ୍ଦଶା ପ୍ରତି ସଚେତନ ହୁଅନ୍ତେ, ତେବେ ଲୋକଙ୍କର ଅବସ୍ଥା ସୁଧୁରି ଯା'ନ୍ତା ।

ଦେଶର ଉନ୍ନତି ପାଇଁ ଆମ ଦେଶରେ ଯୋଜନାର ବନ୍ୟା ଚାଲିଛି, କିନ୍ତୁ ଯୋଜନା ସିନା ଗ୍ରାମ୍ୟ ସ୍ତରରୁ ଯାଇ ଜିଲ୍ଲାସ୍ତର, ଜିଲ୍ଲାସ୍ତରରୁ ଯାଇ ରାଜ୍ୟସ୍ତର, ରାଜ୍ୟସ୍ତରରୁ ଯାଇ ଦେଶ ସ୍ତରରେ ଦିଲ୍ଲୀରେ ପହଞ୍ଚନ୍ତା, କିନ୍ତୁ ଆମ ଦେଶର ତାହା ଓଲଟା କାମ କରୁଛି । ଯୋଜନା ଆସୁଛି ଦିଲ୍ଲୀରୁ । ସେ ରାଜ୍ୟ, ଜିଲ୍ଲା ଦେଇ ଗ୍ରାମ୍ୟସ୍ତରରେ ଠିକ୍ ଭାବରେ

ପହଞ୍ଚିପାରୁନି । ଫଳରେ ଯୋଜନା ଯୋଗୁଁ ଦେଶର ଯାହା ଉନ୍ନତି ଗ୍ରାମମାନଙ୍କରେ ହେବାକଥା ତାହା ହୋଇପାରୁନି ।

ଏଥିପାଇଁ ବିନୋବାଜୀ ଯେଉଁ ଗ୍ରାମଦାନ ଯୋଜନା ଆରମ୍ଭ କରିଛନ୍ତି, ତାହାର ଆରମ୍ଭ ଗ୍ରାମକୁ ନେଇ । ଗ୍ରାମ ଯଦି ଉନ୍ନତ ହୁଏ, ଜିଲ୍ଲା ଉନ୍ନତ ହେବ । ଜିଲ୍ଲା ଉନ୍ନତ ହେଲେ ରାଜ୍ୟ ଉନ୍ନତ ହେବ । ରାଜ୍ୟ ଉନ୍ନତ ହେଲେ ସାରା ଦେଶ ସାମୂହିକ ଭାବେ ଉନ୍ନତ ହେବ । ଗ୍ରାମଦାନର ପ୍ରଧାନ କାର୍ଯ୍ୟକାରିତା ହେଉଛି ଗ୍ରାମମାନଙ୍କର ଉନ୍ନୟନ, ଗ୍ରାମ୍ୟ ଲୋକଙ୍କର ସାମୂହିକ ଅବସ୍ଥାର ଉନ୍ନତି । ଗ୍ରାମଦାନ କରିଥିବା ଗ୍ରାମର ଲୋକେ ସମସ୍ତେ ସମାନ । ଲୋକଙ୍କ ଭିତରେ ଦାନ କରିଥିବା ଜମିର ପରିମାଣ ନେଇ ବାଛ ବିଚାର ନାହିଁ ।

ଭଗବାନଙ୍କ ସୃଷ୍ଟ ଜଳ, ବାୟୁ ଯେମିତି ସମସ୍ତଙ୍କର ସମାନ ଭାବରେ ଉପଭୋଗ୍ୟ, ଜମି ସେମିତି ସମସ୍ତଙ୍କର ଓ ସମାନ ଭାବରେ ଉପଭୋଗ୍ୟ ହେବାକଥା ।

ଏହି ରାଜ୍ୟର ପ୍ରତ୍ୟେକ ଗ୍ରାମର ଲୋକମାନେ ସରଳ, ପରିଶ୍ରମୀ, କଷ୍ଟସହିଷ୍ଣୁ, ସେମାନଙ୍କୁ ନେତୃତ୍ୱ ଦେଲେ ଗାଁଗୁଡ଼ିକର ଉନ୍ନତି ହୁ ହୁ ହୋଇ ଆଗେଇଯିବ ।

"ଆପଣ ଯାହା ଅନୁଭବ କରୁଛନ୍ତି, ମୁଁ ବି ତାହା ହିଁ ଅନୁଭବ କରୁଛି ଆଜ୍ଞା । ଆପଣଙ୍କ ମତ ହିଁ ମୋର ମତ ।"

"ଆପଣଙ୍କ ବାସସ୍ଥାନ କେଉଁଠି ଡକ୍ଟର ସାହେବ ?"

"ମୋ ନିଜ ଘର କଟକ ଜିଲ୍ଲା ବାଙ୍କି ପାଖ ରଘୁନାଥପୁର ଗ୍ରାମରେ । ମୋ ବାପା ବର୍ତ୍ତମାନ ପୁରୀ କଲେଜର ପ୍ରିନ୍‌ସପାଲ ।"

"ଆପଣ ଆମ ସେବା ସଂସ୍ଥା ଭିତରକୁ ଆସିବା ପୂର୍ବରୁ ଆପଣଙ୍କ ପିତା ମାତାଙ୍କ ଅନୁମତି ନେଇଛନ୍ତି ତ ଡକ୍ଟର ସାହେବ ? ସେମାନେ ଯଦି ଆପଣଙ୍କୁ ଏ ଦିଗରେ ଆସିବାକୁ ରାଜି ନ ଥିବେ, ତେବେ ସେମାନଙ୍କ ଅସନ୍ତୋଷ ଏହାର ଓଲଟା ଦିଗରେ କାମ କରିବ ନାହିଁ ତ ?"

"ମୋର ବିଶ୍ୱାସ ମୁଁ ଏ ସଂସ୍ଥାକୁ ଆସିଲେ ସେମାନେ କିଛି ଆପତ୍ତି କରିବେନି ।"

"ଆପଣ କହିଲେ ପରା ଆପଣ କଟକ ଜିଲ୍ଲାର ବାଙ୍କି ଅଞ୍ଚଳର ଲୋକ ।"

"ହଁ ଆଜ୍ଞା ।"

ତେବେ ଖୁବ୍ ଭଲ ହୋଇଛି । ଏହି କିଛିଦିନ ତଳେ ବିନୋବାଜୀଙ୍କ ଏହି ରାଜ୍ୟରେ ପଦଯାତ୍ରା ବେଳେ କଟକ ଜିଲ୍ଲାର ଗୋବିନ୍ଦପୁର ସମେତ ଆଠଗୋଟି ଗାଁ ଗ୍ରାମଦାନ ସୂତ୍ରରେ ଆମ ସଂସ୍ଥାକୁ ମିଳିଛି । ଏହି ଗ୍ରାମଗୁଡ଼ିକର ଲୋକମାନଙ୍କ ଅବସ୍ଥା ଅତି ଖରାପ । ଗ୍ରାମଗୁଡ଼ିକର ଶିକ୍ଷା, ସ୍ୱାସ୍ଥ୍ୟ, ରାସ୍ତାଘାଟ, ସବୁ ଅତି ନିକୃଷ୍ଟ ଧରଣର ।

ଆମ ଗ୍ରାମଦାନ ନୀତିରେ ଏହି ଗ୍ରାମଗୁଡିକର ଉନ୍ନୟନ କରିବା ଦାୟିତ୍ୱ ମୁଁ ଆପଣଙ୍କୁ ଦେଇପାରେ କି ଡକ୍ଟର ସାହେବ ? ସେମାନଙ୍କ ପରିଶ୍ରମରେ ସେମାନଙ୍କ ଗାଁର ଉନ୍ନତି ଘଟିବ । ବାହାରୁ କୌଣସି ସାହାଯ୍ୟର ଆଶା ନାହିଁ । ଆପଣ ଏହି ଦାୟିତ୍ୱ

ନେବାକୁ ପ୍ରସ୍ତୁତ ଅଛନ୍ତି ତ ଡକ୍ଟର ସାହେବ ? ପ୍ରଥମରୁ ଆମ ନୀତି ସହିତ ଅଭ୍ୟସ୍ତ ହୋଇ ଆପଣ କେମିତି ଏହି ଗ୍ରାମଗୁଡ଼ିକୁ ନେଇ ଆଗେଇଯିବେ, ସାହାଯ୍ୟ କରିବାପାଇଁ ମୁଁ ଭରତ ଭାଇଙ୍କୁ ଅନୁରୋଧ କରିବି । ମାସେ ଦୁଇମାସ ଭିତରେ ଆମ ନୀତି ସହିତ ଆପଣ ଅଭ୍ୟସ୍ତ ହୋଇଗଲେ ଏହି ଗ୍ରାମଗୁଡ଼ିକର ପୂରା ଦାୟିତ୍ୱ ସେ ଆପଣଙ୍କୁ ଦେଇ ଚାଲି ଆସିବେ । ଦେଖନ୍ତୁ, ଗ୍ରାମଦାନ ନୀତି ଅନୁସାରେ ଗ୍ରାମ ଉନ୍ନୟନ ଏକ ଅଗ୍ନି ପରୀକ୍ଷା, ଆମ ସମସ୍ତଙ୍କ ପାଇଁ ଓ ଆପଣଙ୍କ ପାଇଁ । ଗ୍ରାମଦାନ ନୀତିରେ ଗ୍ରାମ ଉନ୍ନୟନ ହେଉଛି ଆମର ସ୍ଲୋଗାନ, କିନ୍ତୁ ଏହା କେଉଁଠି ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ ହୋଇନାହିଁ । ଏହା ପ୍ରଥମତଃ ଆରମ୍ଭ ହେବ ଗୋବିନ୍ଦପୁର ଗ୍ରାମପଞ୍ଚାୟତରେ । ଏହା ଯଦି କୃତକାର୍ଯ୍ୟ ହୁଏ, ତେବେ ସାରା ଦେଶରେ ଏହା ଏକ ନୂତନ ଯୁଗ ଆଣିଦେବ ଓ ଏହା ଯଦି ଅକୃତକାର୍ଯ୍ୟ ହୁଏ, ତେବେ ସାରା ଦେଶର ଭବିଷ୍ୟତ ଅନ୍ଧକାରମୟ ।"

ଭୂଦାନ ସଂସ୍ଥାର କର୍ମୀମାନଙ୍କ ସହି ଦେବସ୍ମିନବାବୁ ଚାଲିଗଲେ ଗୋବିନ୍ଦପୁର । ନିଜ ଗାଁ ରଘୁନାଥପୁରଠାରୁ ବେଶି ଦୂର ନୁହେଁ ଗୋବିନ୍ଦପୁର । ଦେବବାବୁ ଗାଁକୁ କେବେ ଯାଇ ନାହାନ୍ତି । ଜାଣି ନାହାନ୍ତି ଗ୍ରାମ୍ୟଜୀବନ କେମିତି । ଏହା ତାଙ୍କର ପ୍ରଥମ ଅନୁଭୂତି ।

## ତେଇଶି

"ହଇହେ ଶୁଣିଲଣି, ତୁମ ଗୁଣବନ୍ତ ପୁଅଙ୍କ କାଣ୍ଡ ?" କହୁ କହୁ ଘର ଭିତରକୁ ପଶି ଆସିଲେ ପୁରୀ କଲେଜର ପ୍ରିନ୍‌ସପାଲ ନାରାୟଣବାବୁ । ସ୍ତ୍ରୀ ସୀମନ୍ତିନୀଦେବୀ ଭିତର ଘରେ କ'ଣ କାର୍ଯ୍ୟବ୍ୟସ୍ତ ଥିଲେ । କ'ଣ ହେଲା ଭାବି ସ୍ୱାମୀଙ୍କ ପାଖକୁ ଦୌଡ଼ି ଆସିଲେ । ନାରାୟଣବାବୁ ସ୍ତ୍ରୀକୁ ଦେଖି କହିଲେ, "ପିଲାଟା ପାଗଳ ହୋଇଗଲା ।"

"ହଇହେ, କିଏ ପାଗଳ ହୋଇଗଲା ?"

"ଆଉ କିଏ ହୁଅନ୍ତା ? ତୁମ ଗୁଣବନ୍ତ ପୁଅ ।

"ଆଁ, ପୁଅ ପାଗଳ ହୋଇଗଲା, କ'ଣ ତୁମେ କହୁଛ ? ତୁମେ କେମିତି ଜାଣିଲ ? କିଏ ତୁମକୁ କହିଲା ପୁଅ ପାଗଳ ହୋଇଗଲା ବୋଲି ।" କହୁ କହୁ କାନ୍ଦିବାକୁ ଆରମ୍ଭ କରିଦେଲେ ସୀମନ୍ତିନୀ ଦେବୀ । ସେମାନଙ୍କର ଗୋଟିଏ ବୋଲି ପୁଅ । ସେ ଯଦି ପାଗଳ ହୋଇଗଲା, ତେବେ ତାଙ୍କର ଆଉ ଏ ଜୀବନ ଧରି ଲାଭ କଅଣ ?

ସ୍ତ୍ରୀଙ୍କୁ କାନ୍ଦିବା ଦେଖି ନାରାୟଣବାବୁ କହିଲେ, "ତୁମ ମୁଣ୍ଡରେ ଦେଖୁଛି, ବୁଦ୍ଧିଶୁଦ୍ଧି କିଛି ନାହିଁ । କାନ୍ଦିବା କ'ଣ ଆରମ୍ଭ କରି ଦେଲଣି ? ମୁଁ କ'ଣ କହିଲି, ତୁମେ କ'ଣ ବୁଝିଲ ? ମୁଁ କହିଲି ବୋଲି କ'ଣ ପୁଅଟା ସତରେ ପାଗଳ ହୋଇଗଲା ?"

"ପାଗଳ ହୋଇନ ତ ? ଭଗବାନ ତାଙ୍କୁ ଘଣ୍ଟ ଘୋଡ଼ାଇ ରଖିଥାନ୍ତୁ ।" କହୁଁ କହୁଁ ତାଙ୍କ ମୁହଁରେ ଟିକିଏ ମୃଦୁ ହସ ଫୁଟି ଉଠିଲା, "କଥାଟା କ'ଣ ଟିକିଏ ଖୋଲିକରି କହୁନ ?"

"କଥାଟା ତୁମ ଗଣ୍ଡି ଓ ମୋ ମୁଣ୍ଡ । ଜାଣିଲଣି ତୁମ ଗୁଣବନ୍ତ ପୁଅ କ'ଣ ଏହା ଭିତରେ କରିଛି ?"

"କ'ଣ କରିଛି ?"

"ଚାକିରି ଛାଡ଼ିଦେଇ ବିନୋବାଙ୍କ ଭୂଦାନ ଦଳରେ ମିଶିଲାଣି । ପୁଅକୁ ଏତେକରି ପାଠ ପଢ଼ାଇଥିଲି । ପୁଅଟା ବିଲାତ ଗଲା, ସେଠୁ ଉଚ୍ଚ ଶିକ୍ଷା ପାଇ ଆସିଲା । ଭଲ ଚାକିରି ମିଳିଥିଲା । ଚାକିରି ଛାଡ଼ିଦେଇ ସେ ଭୂଦାନୀଙ୍କ ଦଳରେ ଯାଇ ହାଜର । ହେଇ ଦେଖ, ତୁମ ଗୁଣବନ୍ତ ପୁତ୍ରରତ୍ନ ଚିଠି ଲେଖିଛନ୍ତି ।"

'ପୁତ୍ରାତ୍ସ୍ୱାଦ ପିତା', ହେଇ ନିଅ ପଢ଼ । ଏତିକି କହି ପୁଅ ଦେଇଥିବା ଚିଠିଟିକୁ ସୀମନ୍ତିନୀ ଦେବୀଙ୍କ ହାତକୁ ବଢ଼ାଇଦେଲେ ।"

ସୀମନ୍ତିନୀ ଦେବୀ ସ୍ୱାମୀଙ୍କ ହାତରୁ ପୁଅ ଦେଇଥିବା ଚିଠିଟି ନେଇ ପଢିଲେ । ପୁଅ କାହିଁକି ଚାକିରି ଛାଡ଼ିଲା, ଏ ଚାକିରିରେ କେମିତି କଷ୍ଟ ହେବନି, ସେସବୁ ଟିକିନିଖି କରି ବାପାଙ୍କୁ ବୁଝାଇଥିଲା । ଏ ଦେଶର ଗବେଷଣା ଚମ୍ପୁକୁଟା ସହିତ ସମାନ ବୋଲି କହି ଗବେଷଣା ଜୀବନକୁ ପ୍ରତ୍ୟାଖ୍ୟାନ କରି ଜନସେବା ଭୂଦାନ କାର୍ଯ୍ୟକୁ ସେ କପରି ଆଦରି ନେଇଛି ବର୍ଣ୍ଣନା କରିଥାଏ ଖୁବ୍ ପ୍ରାଞ୍ଜଳ ଭାବରେ । ସୀମନ୍ତିନୀ ଦେବୀ ଚିଠି ପଢୁଁ ପଢୁଁ କହିଲେ, "ମୁଁ ପରା ସେହିଦିନୁ କହୁଛି ପୁଅକୁ ବିଭା କରି ପକାଅ । ବିଭା ହୋଇଥିଲେ ସେ କ'ଣ ଆଜି ଚାକିରି ଛାଡ଼ିଦେଇ ଭୂଦାନୀଙ୍କ ଦଳରେ ମିଶିଥାନ୍ତା ? ତୁମେ ତ ଜାଣିଛ ପିଲାଟା ମୂଳରୁ ସ୍ୱାଧୀନ ଚେତା, ସେ ଯାହା ଭାବିବ, ସେଇଆ କରିବ । ତା ବେକରେ ଯଦି ଜୁଆଳିଟାଏ ପଡ଼ି ଯାଇଥାନ୍ତା, ତେବେ ସେ କ'ଣ ଆଜି ଚାକିରି ଛାଡ଼ି ଯାଇପାରିଥାନ୍ତା ? ତା ଯିବା ପାଇଁ ତୁମେ ଦାୟୀ ।"

"ହେଉ ହେଲା, ପୁଅ ବାବାଜୀ ହେଲା, ଦୋଷ ହେଲା ମୋର । ସେ କୁଳାଙ୍ଗାରର ମୁହଁ ମୁଁ ଆଉ ଦିନେ ଚାହିଁବିନି । ମୋର କ'ଣ ନାହିଁ ? କେଉଁ ଖରାପ ଚାକିରିଟା ସେ କରିଥିଲା ? କି ବଢ଼ିଆ ଚାକିରି । ଗବେଷଣାରେ ରେଭେନ୍ସା କଲେଜରେ କି ସୁନାମ ? ସମସ୍ତଙ୍କ ମୁହଁରେ ତା କାମର ପ୍ରଶଂସା । ଏତେ ପ୍ରଶଂସା ଓ ସୁନାମ ପାଉ ପାଉ ଏତେ ଭଲ ଚାକିରିଟାକୁ ଛାଡ଼ି ଚାଲିଗଲା । ଆଇ.ଏ.ଏସ୍. ତ ଛାଡ଼ିଥିଲା, ଶେଷରେ ଏଟା'କୁ ବି ଛାଡ଼ିଲା । ଏ ପୁଅ ଭାଗ୍ୟରେ ଆଉ ସୁଖ ନାହିଁ ? ଦୁଧ ଭାତ ଗଲା କୁଣ୍ଡାଇ ହେଉଛି । ଏଭଳି ପୁଅ ଥାଇ ଯାହା, ନ ଥାଇ ତାହା ।"

"ତୁମେ ଏମିତି କ'ଣ କହୁଛ ମ ?" ସୁଁ ସୁଁ କରି ସୀମନ୍ତିନୀ ଦେବୀ ପୁଣି କାନ୍ଦିବାକୁ ଆରମ୍ଭ କରିଦେଲେ । "ଗୋଟିଏ ବୋଲି ପୁଅ । ଆଗକୁ ପଛକୁ କେହି ନାହାନ୍ତି । ସେ

ଏମିତି କି ଅପକର୍ମ କଲା ଯେ ତୁମେ କହୁଛ କ'ଣନା, ତୁମେ ତା ମୁହଁ ଗୁହିଁବନି । ସେ ପୁଅ ଥାଇ ଯାହା, ନ ଥାଇ ତାହା ।''

''ହଁ, ହଁ, ତା ମୁହଁ ଆଉ ଚାହିଁବନି । ସେ ମୋ କୁଳରେ କଳଙ୍କ ।''

''ପୁଅ କିଛି ଖରାପ କାମ କରିନି । ଦେଶସେବାରେ ଯାଇଛି । ଲୋକମାନଙ୍କର ଉପକାର କରିବ, ଗାଁମାନଙ୍କରେ ଉନ୍ନୟନ କାର୍ଯ୍ୟ କରିବ । ଗରିବ ଲୋକଙ୍କର ସେବା କରିବ । ଆମ ଦେଶକୁ ଖରାପ ଅବସ୍ଥାରୁ ରକ୍ଷା କରିବ ।''

''ଦେଶଟାକୁ ଟେକି ଧରିବ । ମୁଁ ଜାଣି ସାରିଲିଣି ସେ ଦେଶର କି ଉନ୍ନତିଟାଏ କରି ପକାଇବ ।''

''ତୁମେ ଏତେ ରାଗୁଛ କାହିଁକି ଶୁଣେ ? ପୁଅ ତ ଦେଶ ସେବା କରିବ । ଗରିବ ଲୋକଙ୍କ ସେବା କରିବ । ଲୋକେ ପୁଅକୁ କଲ୍ୟାଣ କରିବେ, ତା ଆୟୁଷ ବଢ଼ିବ ।''

''ରାଗିବିନି କ'ଣ ଖୁସି ହେବି ? ପୁଅ ଯଦି ଆଇ.ଏ.ଏସ୍.ରେ ଥାଆନ୍ତା, ସେ ଉଠି ଉଠି କେତେ ଉପରକୁ ଯାଇଥାନ୍ତା । ସେ ଯଦି କଲେଜ ବିଭାଗରେ ଥାଆନ୍ତା, ଅନ୍ତତଃ ପକ୍ଷେ ଡ଼:ପି:ଆଇ: ହୋଇଥାନ୍ତା ତ ? ଏଥିରେ ଯେ ଗଲା, କ'ଣଟାଏ ହେବ ? ଛେନାଟାଏ ?''

''କିଛି ନ ହେଉ । ଲୋକଙ୍କର ତ ଉପକାର କରିବ ।''

''କି ଉପକାର କରିବ ଜାଣ ? ଆମ ଗା ପାଖ ଯେଉଁ ଗୋବିନ୍ଦପୁର ଅଛି, ସେହି ଗୋବିନ୍ଦପୁର ସମେତ ସାତ ଆଠଖଣ୍ଡି ଗାଁ ବିନୋବାଜୀଙ୍କୁ ଦାନ କରି ଦିଆଯାଇଛି । ସେହି ଗ୍ରାମଗୁଡ଼ିକର ଅଧିବାସୀମାନେ ଅତି ଗରିବ । ପେଟ ବିକଳରେ ସେହି ଗାଁର ପାରନ୍ତା ଲୋକେ ଟାଟା, କଲିକତା ଯାଇ କୁଲିଗିରି କରି ପେଟ ପୋଷନ୍ତି । ଆମ ପୁତ୍ରଦେବ ସେହି ଗାଁଗୁଡ଼ିକ ଦାୟିତ୍ୱ ନେଇ ସେହି ଗାଁଗୁଡ଼ିକର ଉନ୍ନୟନ କରିବେ । ବିନୋବାଜୀଙ୍କ ଦଳ ତ ସ୍ୱପ୍ନରେ ଭାସୁଛନ୍ତି, ଏ ଜୁଟିଗଲେ ସେଠି କୁହୁଡ଼ିରେ ପହଁରିଲବାଲା । ଯେତକ ଅବାସ୍ତବ ଚିନ୍ତାଧାରା ସବୁ ଏହି ପିଲାଟି ପାଖରେ । ଇମିତି ଅବ୍ୟବସ୍ଥିତ ପିଲା ଦ୍ୱାରା ଶାଗ ସିଝିବ ନାହିଁ କି ଖଡ଼ା ସିଝିବ ନାହିଁ । ସେମିତି ପୁଅ ବଂଶର କୁଳାଙ୍ଗାର ହେବ ନାହିଁ ତ ଆଉ କ'ଣ ହେବ ?''

''ଇମିତି କଥା କାହିଁକି କହୁଛମ ? ଦେଖ ପୁଅ କ'ଣ କରୁଛି ? ସେ ଯେମିତି କିଛି ସାଧାରଣ ପିଲା ନୁହେଁ ଏମିତି ଭୁଲ୍‌ଭଟ୍‌କା କରି ପକାଇବ । ସେ ସେଠି ହୁଏତ ଏମିତି କାମ କରି ଦେଖାଇଦେବ, ଯାହାଫଳରେ ସାରା ଭାରତର ଆଖି ଫିଟିଯିବ ।''

''ଛେନାଟା କରିବ ? ମହାତ୍ମାଗାନ୍ଧି ତ ଏତେ କରି କରି ଶେଷରେ ଜୀବନ ଦେଲେ । ଲୋକଙ୍କ ଅବସ୍ଥା ସୁଧୁରିଲା ନାହିଁ । ତାଙ୍କ ଚେଲାମାନେ ତାଙ୍କ ନାଁକୁ ବିକି ଯିଏ ଯେତେ ପାରିଲା ସେତେ ଖାଇଲା । ଦେଶଟାରେ ଭର୍ତ୍ତି କରିଦେଲେ ଅନୀତି, ଭ୍ରଷ୍ଟାଚାର ।

ସ୍ୱପ୍ନବିଳାସୀ ଏ ବିନୋବାଙ୍କ ଦଳ ଦେଶର କଲ୍ୟାଣ କରି ପକାଇବେ ଏହି ଗ୍ରାମଦାନ ମାଡ ଦ୍ୱାରା ? ଯେତିକି ଅବାସ୍ତବ କଥା, ସବୁ ଏହିମାନଙ୍କ ପାଖରେ ।"

"ଆଉ ବିରକ୍ତ ହୁଅ ନାହିଁ । ମୁଁ ପୁଅକୁ ଚିଠି ଲେଖେ, ସେ ଆସୁ । ଆମେ ତା ପାଖରୁ ଶୁଣିବା ସେ କ'ଣ କରିବ । ତା ଯୋଜନା ଯଦି ଠିକ୍ ହୋଇଥାଏ, ତେବେ ସେ ସେହି ବାଟରେ ଯାଉ । ଆମର ଆପତ୍ତି କରି ଲାଭ କଅଣ ? ଗୃହକର୍ମ କରିଥିଲେ ଡ଼ି:ପି:ଆଇ: ହୋଇଥାନ୍ତା କି କମିସନର ହୋଇଥାନ୍ତା । ସେଥିରେ ସେ କ'ଣ ସ୍ୱର୍ଗକୁ ଉଠିଥାନ୍ତା ? ସେ ଯଦି ଗୃହକର୍ମ ନ କଲା, ନ କରୁ । ସେ ଯେଉଁଥିରେ ଶାନ୍ତି ପାଇବ, ତାହା ହିଁ କରୁ ।"

"ସେ ତ ଆମକୁ ପୋଷି ନ ଥାନ୍ତା, ଗୃହକର୍ମ କରିଥାନ୍ତା ନିଜ ପାଇଁ । ସେ ଯଦି ଗୃହକର୍ମ କରି ଗୃହକର୍ମରେ ଶାନ୍ତି ପାଉନି, ନ କରୁ । ସେ ଯଦି ଏଥିରେ ଶାନ୍ତି ପାଇବ ଏହାକୁ କରୁ । ଆମର ଚିନ୍ତା କରିବା କ'ଣ ଦରକାର । ପୁଅ ତ କିଛି ଅବାଟକୁ ଗୁଲି ଯାଉନି ଯେ ଆମେ ଚିନ୍ତା କରିବା ?"

"ମୋ ମୁହଁରେ କଳା ବୋଳି ଦେଇଗଲା ଜାଣ । ମୁଁ ଏ ମୁହଁ କ'ଣ ଆଉ କେଉଁଠି ଦେଖାଇ ପାରିବି ? ପୁଅଟା ଆଇ:ଏ:ଏସ୍: ଛାଡ଼ିଦେଲା, ଲୋକେ କେତେ କଥା କହିଲେ । ହେଲେ ସେ ଗୃହକର୍ମ ଛାଡ଼ିଦେଇ ଯେଉଁ ଗୃହକର୍ମଟା କରିଥିଲା, ସେଟା କିଛି ଖରାପ ଗୃହକର୍ମ ନୁହେ । ସେଥିରେ ଉପରକୁ ଉଠିବାର ଯଥେଷ୍ଟ ସମ୍ଭାବନା ଥିଲା । ବଡ଼ ବୈଜ୍ଞାନିକ ହୋଇଥିଲେ ଦେଶର ମୁଖ ଉଜ୍ଜ୍ୱଳ କରିଥାନ୍ତା । ହତଭାଗାଟା ସେ ଗୃହକର୍ମକୁ ବି ରଖିଲା ନାହିଁ ? ସେ ଗୃହକର୍ମଟାକୁ ଛାଡ଼ିଦେଇ ଭୂଦାନୀ ହେଲା ।"

ବର୍ତ୍ତମାନ ଲୋକେ କହିବେ କଅଣ ? କହିବେ, "ହେଇ ଦେଖ, ସ୍ୱାଙ୍କ ପୁଅ ଭୂଦାନରେ ଗଲା । ଗୃହକର୍ମ ଛାଡ଼ିବା ପୂର୍ବରୁ ପିଲାଟା ଟିକିଏ ଭଲ ପଗ୍ଭରିଥାନ୍ତା ମୋତେ ? ଏତେବଡ଼ ଭୁଲଟାଏ କରିବାକୁ ଦେଇ ନ ଥାନ୍ତି ତାକୁ ।

"ସେ ତୁମକୁ କାହିଁକି ପଗ୍ଭରିଥାନ୍ତା କହିଲ ? ସେ କ'ଣ ଗ୍ଲେଟ ପିଲା ହୋଇଛି ? ସେ ନିଜେ ଯାହା ବିଗ୍ଭରୁଛି କରୁଛି । ହେଇ ଆଇ.ଏ.ଏସ୍. ଗୃହକର୍ମ ଛାଡ଼ିଦେଲା, କାହାକୁ କଅଣ ପଗ୍ଭରିଲା ? ସେ ନିଜେ ଯାହା ଠିକ୍ ଭାବୁଛି କରୁଛି । ତୁମକୁ ସେ ପଗ୍ଭରିଥିଲେ ତୁମେ କ'ଣ ହଁ ଭରିଥାନ୍ତି ? ତୁମେ ଓଲଟି ବିଗିଡ଼ିଥାନ୍ତ, ସେଥିପାଇଁ ସେ ପଗ୍ଭରିଲା ନାହିଁ । ଆମର ତାକୁ ବାଧା ଦେବା ଉଚିତ୍ ନୁହେଁ । ସେ ଯାହା ଉଚିତ୍ ଭାବୁଛି କରୁ । ମୋର ବିଶ୍ୱାସ ଆମ ପୁଅ ଯେଉଁଠି ରହିବ ସେଠି ନାଁ କମେଇବ ।

"ହେଉ, ତୁମ ପୁଅ ନାଁ କମାଉଥାଉ । ତୁମେ ସେହି ନାଁକୁ ଧୋଇ ପାଦୁକା ପାଉଥାଅ । ଗୃହକର୍ମ ତ ଛାଡ଼ିଦେଲା, ନିଜ ପେଟ କେମିତି ପୋଷିବ ଶୁଣେ ? ଶେଷରେ ଆସିବ, ତୁମରି ପାଖକୁ ।"

"ତୁମେ ଆଉ ପାଟି କରନା । ମୁଁ ଆଜ ପୁଅ ପାଖକୁ ଚିଠି ଲେଖୁଛି । ସେ ଋଜେ ଆସି ମୋତେ ବୁଝାଇ ଦେଇଯିବ, ସେ ବର୍ତ୍ତମାନ କେଉଁ କାମରେ ଲାଗିଛି । ପୁଅର ବୟସ ଆସି ଏକତରିଶ ପୂରି ବତିଶ ଚାଲିଲା, କେବେ ତ ପୁଅ ବାହାଘର ନାଁ ଧରିଲାନି ।"

"ମୁଁ କ'ଣ କେବେ ମନା କରିଛି ସୀମନ୍ତୁମା ପୁଅ ବାହାଘର ପାଇଁ ? ଯେତେବେଳେ ଆଇ.ଏ.ଏସ୍. ଚାକିରି କରୁଥିଲା, ମନ୍ତ୍ରୀ ଚାହୁଁଥିଲେ ଜୋଇଁ କରିବା ପାଇଁ, ଡି.ପି.ଆଇ. ଚାହୁଁଥିଲେ ତାଙ୍କ ଝିଅ ଦେବାପାଇଁ । ଆଇ.ଏ.ଏସ୍. ଯେମିତି ଛାଡ଼ିଦେଲା, ଆଉ କେହି ପଚାରିଲେ ନାହିଁ । ଯେତେବେଳେ କେମ୍ବ୍ରିଜରୁ ଫେରି ରେଭେନ୍‌ସା କଲେଜରେ ରହିଲା, ବହୁ ବଡ଼ ବଡ଼ ଲୋକ ଆସିଥିଲେ ତାକୁ ଜୋଇଁ କରିବାକୁ । ବର୍ତ୍ତମାନ ସେ ତ ଭୂଦାନରେ ମିଶିଲାଣି । ଆଉ କେହି ତା ନାଁ ଭୁଲରେ ବି ଧରିବେନି । ଚାକିରି ବାକିରି ନ ଥିବା ଲୋକକୁ କିଏ କାହିଁକି ଝିଅ ଦେବ କହିଲ ? କିରାଣୀଟିଏ ହେଲେ ବି ସେ ନାକ ଟେକିବ ।"

"ଥାଉ, ଥାଉ, ମୋ ପୁଅକୁ ଆଉ ଏତେ କୁହନି । ମୋ ପୁଅ କେଉଁ ଅଗୁଣରେ କି ଲୋକେ ଝିଅ ଦେବେନି ? ମୋ ପୁଅ ଗୋଟେ ସୁନାମୁଣ୍ଡା । ତାକୁ ପୁଣି ଝିଅ ନ ଦେବ କିଏ ?"

× × × ×

"ତୁ ବାପା ଭୁଲ୍ କଲୁ ଚାକିରି ଛାଡ଼ିଦେଇ । ଚାକିରି ଛାଡ଼ିଦେବା ପୂର୍ବରୁ ଆମକୁ ଟିକିଏ ପଚାରିଲୁନି ? ତୋ ବାପାଙ୍କ ମନ ଭାରି କଷ୍ଟ । ଆମକୁ ଟିକିଏ ପଚାରି ଚାକିରି ଛାଡ଼ିଥାନ୍ତୁ, ଆମ ମନରେ କଷ୍ଟ ହୋଇ ନ ଥାନ୍ତା ।"

"ମୁଁ ତୋତେ କି ବାପାଙ୍କୁ ଚାକିରି ଛାଡ଼ିବା କଥା କହିଥିଲେ ତୁମେମାନେ କ'ଣ ରାଜି ହୋଇଥାନ୍ତ ? ମୁଁ ଜାଣେ ତୁମେ କେହି ରାଜି ହେବନି, ତେଣୁ ପଚାରିଲିନି ।"

"ତୁ କାହିଁକି ଚାକିରି ଛାଡ଼ିଲୁ କହିଲୁ ? କ'ଣ ତୋର ଅସୁବିଧା ହେଲା ଚାକିରିରେ ? ସେହି ଚାକିରିରେ ଯଦି କିଛି ଅସୁବିଧା ହେଲା, ବାପାଙ୍କୁ କହିଲୁନି, ତୋତେ ଅନ୍ୟ କେଉଁଠାକୁ ବଦଳି କରାଇ ଦେଇଥାନ୍ତେ ।"

"ନା ବୋଉ, ମୋର ସେ ଚାକିରିରେ କେଉଁଠି କିଛି ଅସୁବିଧା ହୋଇନି । ବେଶ୍ ଭଲରେ ଥିଲି । ଗବେଷଣା କରୁଥିଲି ।"

"ତେବେ ଚାକିରି ଛାଡ଼ିଲୁ କାହିଁକି ?"

"ମୋତେ ଏହି ଶିକ୍ଷା ଓ ଗବେଷଣା କାମରେ ଶାନ୍ତି ଲାଗିଲାନି । ଆମ ଦେଶରେ ଯେଉଁ ଗବେଷଣା ହେଉଛି ବା ମୁଁ ଯେଉଁ ଗବେଷଣା କରୁଛି, ତାହା କିଛି ନୁହେଁ । ଆମ ଦେଶର ଲୋକଙ୍କୁ ଠକି ସେମାନଙ୍କଠାରୁ ବାହାବା ନେବାଛଡ଼ା ଅନ୍ୟ କିଛି ନୁହେଁ । କ'ଣ ନା ଆମେସବୁ ଏ ଦେଶର ବଡ଼ ବଡ଼ ବୈଜ୍ଞାନିକ । ଆମ ଦେଶରେ ଯେଉଁ

ଗବେଷଣା ହେଉଛି, ସେ ଗବେଷଣା ଚମ୍ପୁକୁଟା ସଙ୍ଗେ ସମାନ । ସେ ଗବେଷଣାରେ ଆମ ଦେଶ ମୋଟେ ଆଗେଇବନି କି ଦେଶ ବିଦେଶରେ ନାଁ କରିବନି ।"

ଯେଉଁ ଗବେଷଣାକୁ ବିଳାତ, ଆମେରିକା ଦେଶର ଲୋକେ ଛାଡ଼ି ଫୋପାଡ଼ି ଦିଅନ୍ତି, ଆମେ ସେ ଗବେଷଣାକୁ ଗୋଟାଇ ଆଣି କାମରେ ଲଗାଉ । ସେଥିରୁ କିଛି ଫଳ ମିଳେନି । ଚମ୍ପୁକୁ କୁଟିଲେ କ'ଣ କେବେ ଗୃଢ଼ଲ ବାହାରେ ? ଏହା ଠିକ୍ ସେଇ କଥା । ଆମ ଦେଶର ଗବେଷଣା ଠିକ୍ ସେଇମିତି । ମୁଁ ଭାବିଲି ସାରା ଜୀବନ ଏହି ଚମ୍ପୁ କୁଟି କୁଟି କି ଲାଭ ? ସେମାନଙ୍କ ଦେଶଭଳି ଗବେଷଣା ତ ହୋଇ ପାରିବନି । ତେଣୁ ନ କଲେ ଭଲ ।

"ଆମ ଦେଶକୁ ଯୁହିଁ ଯାହା କରିଯାଇ ପାରିବ, ସେଥିରେ ବାପ ସନ୍ତୁଷ୍ଟ ହେବା କଥା । ସେ ତ ତୋ ହାତରେ ନାହିଁ କି ଆଉ କାହା ହାତରେ ନାହିଁ । ଆମ ଦେଶରେ ଯେତିକି ସୁବିଧା କି ସମ୍ବଳ ଅଛି, ତା'ରି ଭିତରେ ଯାହା କରିବା କଥା । ନିଜ କାମରେ ନିଜେ ଏତେ ଅସନ୍ତୁଷ୍ଟ ହେଲେ ଆଜିକାଲି ଦୁନିଆରେ ଚଳିହେବନି ବାପ ।"

"ନା ବୋଉ, ସେଟା ମୋତେ ଭଲ ଲାଗିଲାନି । ଦେଖିଲି ବିନୋବାଜୀ ଭଲ ରଚନାତ୍ମକ କାମ କରୁଛନ୍ତି । ସେଭଳି କାମ କଲେ ଲୋକଙ୍କର ପ୍ରତ୍ୟକ୍ଷ ଉପକାରରେ ଆସି ପାରିବ । ସେଇ ହେଲା ପ୍ରକୃତରେ ଜନସେବା । ତେଣୁ ଭାବିଲି, ଚାକିରି ଛାଡ଼ିଦେଇ ସେଥିରେ ଯିବି ।"

"ତୁ ବୋଉ ଗାଁ ଗହଳକୁ ଯାଇନୁ । ସେସବୁ ଗାଁର ଲୋକେ କେମିତି ଦୁଃଖ କଷ୍ଟରେ ରହୁଛନ୍ତି, ଜାଣିଲେ ତୁ ଧୈର୍ଯ୍ୟଧରି ରହି ପାରିବୁନି । ତୋ ଆଖିରେ ଲୁହ ଆସିଯିବ । ଆମ ଦେଶର ଶତକଡ଼ା ଅଶୀଭାଗ ଲୋକ ସେଇ ଦୁଃଖ କଷ୍ଟରେ ପଡ଼ି ରହୁଛନ୍ତି ।"

ଆମ ଦେଶ କେତେବର୍ଷ ହେଲା ସ୍ୱାଧୀନ ହେଲଣି, କିନ୍ତୁ ଲୋକଙ୍କ ଅବସ୍ଥାରେ ଟିକିଏ ବୋଲି ଉନ୍ନତି ଦେଖାଯାଉନି । ଦିନକୁଦିନ ସେମାନଙ୍କର ଅବସ୍ଥା ଆହୁରି ଖରାପଆଡ଼କୁ ଯାଉଛି । ମୁଁ ଯଦି ମୋ ପାଠଶାଠ ବିଦ୍ୟାବୁଦ୍ଧି ଖଟାଇ ସେହି ଦୁଃସ୍ଥ ଲୋକଙ୍କର ଦୁରବସ୍ଥାର କିଛି ଉନ୍ନତି କରିପାରେ, ତେବେ ତାହା କ'ଣ ମୋ ଚାକିରି କରିବା ଅପେକ୍ଷା ଭଲ କାମ ହେବନି ? ସେମାନେ କେମିତି ଦୁଇବେଳା ଖାଇବାକୁ ପାଇବେ, ଖଣ୍ଡେ ପିନ୍ଧିବାକୁ ପାଇବେ, ସେମାନଙ୍କ ପିଲାଏ କେମିତି ପାଠ ପଢ଼ିବେ, ମୁଁ ଯଦି ତହିଁର ବ୍ୟବସ୍ଥା କରିଦିଏ, ଏହାଠାରୁ ବଡ଼ ଜନହିତକର କାମ ଆଉ କ'ଣ ହୋଇପାରେ ବୋଉ ?

ମୁଁ ଜାଣେ ତୁମେ କେହି ମୋ ଉପରେ ନିର୍ଭରଶୀଳ ନୁହଁ, ଏମିତିକି ବାପା ଅବସର ନେଲେ ବି ତୁମେ ମୋ ଉପରେ ଅର୍ଥ ପାଇଁ ନିର୍ଭର କରିବ ନାହିଁ । ତେଣୁ ସେ ପରିସ୍ଥିତିରେ ମୁଁ ଚାକିରି ଛାଡ଼ିଦେଇ ଜନସେବାରେ ଗଲେ ତୁମ୍ଭମାନଙ୍କର ମନ କଷ୍ଟ କରିବାର କିଛି କାରଣ ତ ନାହିଁ ବୋଉ ?

"ଗୋବିନ୍ଦପୁର ଗାଁରେ ତୋର କାମ କ'ଣ ଟିକିଏ ମୋତେ ବୁଝାଇ କହିଲୁ ବାପ ? ମୁଁ ଟିକିଏ ଜାଣେ ତୁ ସେଠି କି ଜନସେବାରେ ଲାଗିଛୁ ।"

"ଦେଖ ବୋଉ, ବିନୋବାଜୀ ଗୋବିନ୍ଦପୁର ଗାଁକୁ ଲାଗି ସାତ ଆଠଖଣ୍ଡି ଗାଁ ଗ୍ରାମଦାନ ଭାବରେ ଲୋକଙ୍କଠାରୁ ପାଇଛନ୍ତି । ସେ ଗାଁ ଆମ ଗାଁ ଠାରୁ ସାତ ଆଠ ମାଇଲ ଦୂର । ଆମ ଗାଁ ଲୋକେ କି କଷ୍ଟରେ ରହନ୍ତି, ତୁ ତ ଜାଣୁ ବୋଉ । ସେମାନଙ୍କଠାରୁ ଆହୁରି କଷ୍ଟରେ ଥାଆନ୍ତି ଏ ଗାଁ ସବୁର ଲୋକେ ।"

ବିନୋବାଜୀଙ୍କ ଇଚ୍ଛା, ସେହି ସାତ ଆଠଖଣ୍ଡି ଗାଁକୁ ନେଇ ଏକ ରଚନାତ୍ମକ କାମ ଆରମ୍ଭ କରିବାକୁ, ଯେମିତି କି ସେ ଗାଁ ଲୋକଙ୍କ ଆର୍ଥିକ ଅବସ୍ଥାରେ ଉନ୍ନତି ଘଟିବ । ସେମାନେ ଦୁ'ବେଳା ଖାଇବାକୁ ପାଇବେ, ପିନ୍ଧିବାକୁ ଖଣ୍ଡେ ପାଇବେ, ସେମାନଙ୍କ ପିଲାଏ ପାଠ ପଢ଼ିବାକୁ ସୁବିଧା ପାଇବେ ।

"ତୁ କ'ଣ ସେସବୁ କାମ କରିପାରିବୁ ବାପ ? ତୋର ତ ସେ ଦିଗରେ କିଛି ଶିକ୍ଷା ନାହିଁ । ତୁ ତ ବିଦେଶରୁ ଗତାନୁଗତିକ ବିଜ୍ଞାନ ଶିକ୍ଷା ପାଇ ଆସିଛୁ । ଏସବୁ ଗାଉଁଲି କଥା କେମିତି କରାଯାଇ ପାରିବ, ତୁ ଜାଣିବୁ କେଉଁଠୁ ?"

ହସିଲି ଦେବସ୍ମାନ, "ଗୋଟିଏ କଥା ମନେ ରଖିବୁ ବୋଉ, ଯେଉଁମାନେ ଉପଯୁକ୍ତ ବିଜ୍ଞାନ ଶିକ୍ଷା ପାଇଛନ୍ତି, ସେମାନଙ୍କ ଦ୍ୱାରା କେଉଁ କାମ ଯେ ନ ହେବ, ସେମିତି ନାହିଁ । ସେମାନଙ୍କୁ ଯେଉଁ କାମରେ ଲଗାଇଦେବ, ସେମାନେ ସେ କାମ ସୁଚାରୁରୂପେ କରି ପାରିବେ ।"

"ତୁ କ'ଣ ସେହି ଗାଁରେ ରହୁଛୁ ? ତୋତେ ରାନ୍ଧି ବାଢ଼ି ଦେଉଛି କିଏ ? ତୁ ଖାଉଚୁ କେମିତି ?"

"ହଁ ବୋଉ, ମୁଁ ସେଇ ଗାଁରେ ରହୁଛି । ମୋ ରହିବା ପାଇଁ ଘରଟିଏ ତିଆରି ଚାଲିଛି । ମୁଁ ବର୍ତ୍ତମାନ ସେହି ଗାଁର ଜଣେ ସ୍କୁଲ ଶିକ୍ଷକଙ୍କ ଘରେ ରହୁଛି ଓ ଖାଉଛି । ମୋ ରହିବା ଘର ତିଆରି ସରିଗଲେ ମୁଁ ସେଠିକି ଚାଲିଯିବି । ଗୋଟିଏ ଲୋକ ରଖିବି, ସେ ମୋତେ ରାନ୍ଧି ଦେବ ।"

"ତୁ ତ ବଡ଼ କଷ୍ଟରେ ଚଳୁଥିବୁ ବାପ ? ମୁଁ କ'ଣ କହୁଥିଲି କି ତୋ ବାହାଘରଟା କରିଦେଲେ ବୋହୂକୁ ନେଇ ତୁ ସେଠି ରହନ୍ତୁ । ତୋ ଝିଅପିଆ, ହାଣ୍ଡିଶାଳ ବୋହୂ ବୁଝନ୍ତା । ତୁ ଦେଶ ସେବାରେ ଲାଗନ୍ତୁ ।"

ହସିଲି ଦେବସ୍ମାନ । କହିଲା, "ମୋ ଭଳି ବେକାର ଲୋକକୁ କିଏ କାହିଁକି ଝିଅ ଦେବ ବୋଉ କହିଲୁ ? ବାପ ମା'ଙ୍କୁ ଝିଅ କ'ଣ ପିତା ଲାଗୁଛି ? ତୁ ସେକଥା ଚିନ୍ତା କରନା ମୋଟେ । ମୋର ବର୍ତ୍ତମାନ ସେ ଆଡ଼କୁ ଦୃଷ୍ଟି ନାହିଁ । ତୁ ସେ ଗାଁରେ ରହିଲେ ବୋଉ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଦେଖିଲେ ତୁ ନିଜକୁ ବି ଭୁଲିଯିବୁ ।"

"ମୁଁ ଏଥି ଆସନ୍ତା ଖରା ଛୁଟିରେ ଆମ ଗାଁକୁ ଯିବି । ତୋ ବାପା କହୁଛନ୍ତି, ସେଠା ଘରସବୁ କାଳେ ଭାଙ୍ଗିରୁଜି ଗଲାଣି । ଟିକିଏ ଦେଖାଗୁହାଁ କରି ଆସିବା ମୋ ଇଚ୍ଛା । ତୋ ବାପା ତ ଗାଁ ନାଁ ଧରୁ ନାହାନ୍ତି । କଟକରେ ତ ଘର ଦୁଆର ସରିଲାଣି । ମୁଁ ଯଦି ଆମ ଗାଁକୁ ଯାଏ, ଫେରିଲାବେଳେ ତୁ ରହୁଥିବା ଗାଁ ଦେଇ ଆସିବି । ମୁଁ ଦେଖିବି ତୁ ସେଠି କି କାମ କରୁଛୁ । ତୁ କ'ଣ ଆଜି ଚାଲିଯିବୁ ବାପ ?"

"ହଁ ବୋଉ, ଆଜି କ'ଣ ? ଏଇ ବର୍ତ୍ତମାନ । ସେଠି ଏତେ କାମ ଯେ, ଘଡ଼ିଏ ନିଃଶ୍ୱାସ ମାରିବାକୁ ବେଳ ନାହିଁ । ମୁଁ କଟକ ଯାଇଥିଲି । ସେଠା ବେଙ୍କ୍‌ରେ ମୋର କେତେ ଟଙ୍କା ଥିଲା । ପ୍ରାୟ ପନ୍ଦର ହଜାର ହେବ । ସବୁ ଟଙ୍କା ଉଠାଇ ଆଣିଲି । ମୋର ଏତେ ଟଙ୍କା କ'ଣ ହେବ ? ଟଙ୍କା ତୋ ପାଖରେ ଥାଉ ବୋଉ । ଗାଁରେ ମୋର ତ କିଛି ଖରଚ ନାହିଁ । ଶହେ ଦୁଇଶହ ଟଙ୍କା ପାଖରେ ରଖିଲେ ଢେର୍ । ଏଥି ଟଙ୍କା ତୋ ପାଖରେ ଥାଉ, ଦରକାର ବେଳେ ତୋ'ଠାରୁ ନେବି । ତୋର କେତେବେଳେ ଟଙ୍କା ଦରକାର ହେଉଥିବ, ତୁ କେତେ ବାପାଙ୍କୁ ମାଗୁଥିବୁ ? ମୁଁ ଯେତେବେଳେ କଟକରେ ଥିଲି, ମୋର ପ୍ରତି ମାସରେ କିଛି କିଛି ଟଙ୍କା ଖର୍ଚ୍ଚ ନ ହୋଇ ବଳିପଡ଼େ । ମୁଁ ସେଗୁଡ଼ିକୁ ବେଙ୍କ୍‌ରେ ରଖି ଦେଇଥିଲି । ସେସବୁ ବଢ଼ି ବଢ଼ି ସୁଧମୂଳ ସହିତ ଏତିକି ହୋଇଛି ।"

"ନା ବାପ, ଏ ଟଙ୍କା ନେଇଯା । ତୋ ପାଖରେ ରଖିଥିବୁ । କେତେବେଳେ କ'ଣ ତୋର ଦରକାର ହେବ ।"

"ନା ବୋଉ, ସେସବୁ ଜାଗାରେ ଟଙ୍କା ସେମିତି କିଛି ଦରକାର ପଡ଼େନି । ଦରକାର ପଡ଼ିଲେ ତୋଠାକୁ ଆସି ନେଇଯିବିନି ? ସେସବୁ ତ ମୋଫସଲ ଜାଗା, ପାଖଆଖରେ କେଉଁଠି ବେଙ୍କ୍ ନାହିଁ, ରଖିବି କେଉଁଠି ?"

ଦେବସ୍ମାନ ମା'ଙ୍କଠାରୁ ବିଦାୟ ନେଇ ଚାଲିଗଲା । ମା' ତା'ର ଚାଲିଗଲା ବାଟକୁ ଅନାଇ ରହିଥାନ୍ତି । ଦୁଇ ଆଖିରୁ ଲୁହ ବହି ଚାଲିଥାଏ । ମନେ ମନେ ଭାବୁଥାନ୍ତି, ଆହାଃ ପିଲାଟିକୁ କେତେ ଗେଲବସରରେ ବଢ଼ାଇ ନ ଥିଲି ସତେ ? ସୁନା ଚାଙ୍ଗୁଡ଼ିରେ ବଢ଼ାଇଲା ଭଳି, କେତେ ଯତ୍ନ ନ ନେଇଥିଲି ତା'ର ? ଆଜି ସେ ପିଲା କେଉଁ ଗାଁ ମୋଫସଲରେ ପଡ଼ି ରହି ଦେଶ କାମ କରୁଛି । ଦୁଧ କଦଳୀ ଖୁଆଇ ଯାହାକୁ ବଢ଼ାଇଥିଲି, ସେ ଆଜି ସେହି ମୋଫସଲ ଜାଗାରେ କ'ଣ ଖାଇ ଦିନ କାଟୁଥିବ ? ପ୍ରାଇମେରୀ ସ୍କୁଲର ଶିକ୍ଷକ ଘରେ ବର୍ତ୍ତମାନ ଖାଉଛି । ତାଙ୍କ ଘରେ ସେମାନେ କ'ଣ ରାନ୍ଧୁଥିବେ, ପୁଅକୁ କ'ଣ ବା ଖାଇବାକୁ ଦେଉଥିବେ ? ପୁଣି ଘର ଦୁଆର ହୋଇଗଲେ ନିଜେ ନେଇକରି ରାନ୍ଧି ଖାଇବ । ସେସବୁ ଅଞ୍ଚଳରେ କ'ଣ ମିଳୁଥିବ, ପୁଅ କ'ଣ ଖାଉଥିବ ?" ଭାବୁ ଭାବୁ ଶ୍ରୀମନ୍ତିନୀ ଦେବୀଙ୍କ ଆଖିରୁ ଉଷ୍ଣଅଶ୍ରୁ ଟପ୍ ଟପ୍ କରି ଗଡ଼ି ପଡ଼ିଲା ।

## ଚବିଶି

"ବୋଉ, ତୁ କେତେବେଳୁଁ ଆସି ଏଠି ପହଞ୍ଚିଲୁଣି ? ମୋତେ ଆଗରୁ ଖଣ୍ଡିଏ ଚଠି ଦେଲୁନି ? ତୋତେ ଆଣିବା ପାଇଁ ବସ୍‌ଷ୍ଟାଣ୍ଡ ଯାଇଥାନ୍ତି । ତୁ ବସ୍‌ଷ୍ଟାଣ୍ଡରୁ କେମିତି ଆସିଲୁ ଏଠାକୁ ? ଚାଲି ଚାଲି ଆସିଥିବୁ ନିଶ୍ଚୟ । ତୁ ଏ ଘର ପାଇଲୁ କେମିତି ? ତୋତେ ଏ ଘରକୁ ଆଣିଲା କିଏ ?"

"ମୁଁ ପ୍ରଥମେ ବସ୍‌ରୁ ଓହ୍ଲାଇ ଚାଲି ଚାଲି ଆସିଲି ସେହି ସ୍କୁଲକୁ । ସେଠାରେ ଜଣେ ଶିକ୍ଷକ ପିଲାଙ୍କୁ ପଢ଼ାଉଥିଲେ । ତାଙ୍କୁ ତୋ ନାଁ କହିବାରୁ ସେ ମୋତେ ପ୍ରଥମେ ତାଙ୍କ ଘରକୁ ନେଇଗଲେ । ତାଙ୍କ ବଡ଼ ଝିଅଟି ଚାବି ନେଇ ଏହି ଘରକୁ ଖୋଲି ମୋତେ ଏଠି ବସାଇ ଦେଇଗଲା । ଝିଅଟି ତାଙ୍କ ଘରୁ ଗିଲାସେ ସରବତ୍ କରି ଆଣି ମୋତେ ପିଇବା ପାଇଁ ଦେଇଗଲା । ଖୁବ ଭଲ ଝିଅଟେ । ତା ନାଁ କହିଥିଲା କ'ଣଟି ଭୁଲି ଯାଉଛି ।"

"ଶାନ୍ତି ।"

"ହଁ, ହଁ, ଶାନ୍ତି । ଝିଅଟି ଅତି ଚମତ୍କାର । କି ଶାନ୍ତ ଶିଷ୍ଟ, କେତେ ଧୀରସ୍ଥିର, ମୋତେ ଝିଅଟି ଖୁବ ଭଲ ଲାଗିଲା । ଗଲାବେଳେ କହିଦେଇଗଲା, ଦେବସ୍ଥାନବାବୁଙ୍କ ଘରକୁ ଫେରିବା ଆଉ ଅଳ୍ପ ସମୟ ବାକି ଅଛି । ଆପଣ ଏଠି ବସିଥାନ୍ତୁ ମାଉସୀ, ମୁଁ ଆସୁଛି ।"

ତୁ ଯେତେବେଳେ ଘରୁ ବାହାରକୁ ଯାଉ, ସ୍କୁଲ୍'ଙ୍କର ଘରେ କ'ଣ ଚାବିକାଠି ଦେଇଯାଉ ?

"ହଁ, କ'ଣ କରିବ ? ଏ ପର୍ଯ୍ୟନ୍ତ ଚାକର ପିଲାଟେ ମିଳିନି ବୋଉ । ତାଙ୍କ ଘରର ଚାକର ପିଲା ଆସି ଏ ଘର ଓଳାଇ ସଫା କରି ଦେଇଯାଏ । ସେଥିପାଇଁ ମୁଁ ତାଙ୍କର ଘରେ ଚାବିକାଠି ଦେଇଯାଏ ।"

"ଚାକର ପିଲା ତ ମିଳିନି, ତୁ ଖାଉଛୁ କେମିତି ?"

"ଆଜିକାଲି ତ ଖରାଦିନ । ରାତିରେ ରାନ୍ଧିଦିଏ । ସେଥିରୁ କିଛି ପଖାଳ କରିଦିଏ । ସେହି ପଖାଳ ଦିନରେ ଖାଏ । ସେହି ଚାକର ପିଲାଟା ବାସନ ମଜା, ଘର ସଫାଠାରୁ ରନ୍ଧା ପାଇଁ ସବୁ କାମ କରି ଦେଇଯାଇଥାଏ । ମୁଁ ଖାଲି ଝିଆସିଲି ମାରି ଚୁଲ୍ଲୀ ଲଗାଇ ଦେଇ ଭଜା ଦି'ଖଣ୍ଡ ଭାଜିଦିଏ । ଏହି ଭଜା କରିବାକୁ କେତେ ସମୟ ଲାଗିବ ଯେ !"

"ହେଉ ବାପ, ତୁ ତ ଗାଧୋଇ ନ ଥିବୁ ? ଆସି ଦିନ ଗୋଟାଏ ବାଜିଲାଣି, ତୁ ଯା ଗାଧୋଇ ଆସିବୁ । ମୁଁ ଭଜା ଭାଜି ଦେଉଛି, ଖାଇବୁ ।"

"ତୁ କ'ଣ ଖାଇବୁ ବୋଉ ? ରହ ମୁଁ ହରିବାବୁଙ୍କ ଘରକୁ ଖବର ପଠାଇ ଦେଉଛି, ତାଙ୍କ ଘରେ ରନ୍ଧା ହୋଇଥିବ, ସେ ତୋ ପାଇଁ ଗରମ ଭାତ ପଠାଇ ଦେବେ ।"

"ଆରେ ପାଗଳା, ତୁ ପଖାଳ ଖାଇବୁ ? ମୁଁ କ'ଣ ପଖାଳ ଖାଇ ପାରିବିନି ? ତୁ ମୋ ପାଇଁ ଚିନ୍ତା କରନା । ଯା ଗାଧୋଇ ଆ' ।"

ତୁ ତ ଘରେ ପଖାଳ ଖାଇଲେ ବାପା ବଡ଼ ବିରକ୍ତ ହୁଅନ୍ତି ତୋ ଦେହ ଖରାପ ହେବ ବୋଲି । ତୁ ଏଠି ପଖାଳ ଖାଇବୁ ବୋଲି କେମିତି କହୁଛୁ ?"

"ଆରେ, ଦିନେ ଅଧେ ଖାଇଦେଲେ କ'ଣ ଦେହ ଖରାପ ହୋଇଯାଉଛି ? ତୁ ଗଲୁ ଶୀଘ୍ର ଗାଧୋଇ ଆସିବୁ । ଡେର୍ ଡେରି ହୋଇଗଲାଣି ଆଜି । ଡେରିରେ ଗାଧୋଇଲେ ତୋ ଦେହ ଖରାପ ହେବ । ତୁ ଗାଧୋଇବୁ କେଉଁଠି ?"

"କାହିଁକି, ସେହି ବଡ଼ ପୋଖରୀରେ । ତୁ ଏଠାକୁ ଆସିଲାବେଳେ ବାଟରେ ଦେଖି ନ ଥିବୁ ସେହି ବଡ଼ ପୋଖରୀଟା । ସେହି ପୋଖରୀଜଳ ଭାରି ଥଣ୍ଡା ।"

"ସେ ପୋଖରୀ ସାରା ତ ଦଳ, ପାଣି ତ କେଉଁଠି ଦିଶୁନି । ସେହି ଅସନା ପାଣିରେ ଗାଧୋଇଲେ ତୋ ଦେହ ଖରାପ ହେବନି ?"

"ସାରା ଗାଁ ଲୋକେ ତ ସେଇଠି ଗାଧୋଉଛନ୍ତି ବୋଉ, ମୁଁ ଗାଧୋଇଲେ ଦେହ ଖରାପ ହୋଇଯିବ ? କାହିଁ ଏତେଦିନ ହେଲାତ ସେଠି ଗାଧୋଇଲିଣି ? ମୋ ଦେହ ତ ଖରାପ ହେବାକୁ ନାହିଁ ?"

"ହେଉ, ତୁ ଗଲୁ, ଶୀଘ୍ର ଗାଧୋଇ ଆସିବୁ । ମୁଁ ତେଣେ ଦେଖେ କ'ଣ କରି ହେବ ।" ଏତକ କହି ସୀମନ୍ତିନୀ ଦେବୀ ପୁଅକୁ ଗାଧୋଇବା ପାଇଁ ବିଦାୟ କରିଦେଇ ହାଣ୍ଡିଶାଳକୁ ଗଲେ ଦେଖିବେ କ'ଣ ଅଛି । ହାଣ୍ଡିଶାଳଟି ଛୋଟିଆ, ତଳ ମାଟି, ଗୋଟିଏ ପାଖକୁ ଗୋଟିକିଆ ଚୁଲାଟିଏ । ଗୋଟିଏ ପାଖରେ ଶିଳଟିଏ ପଡ଼ିଛି । ଘରର ପିଲାଟି ଚୁଲା ସଫା କରି ଲିପି ପୋଛି ଚୁଲା ପାଖରେ ଜାଳକାଠ ସବୁ ଥୋଇଦେଇ ଯାଇଛି ।

ସୀମନ୍ତିନୀ ଦେବୀ ଚୁଲ୍ଲୀ ଲଗାଇ ପରିବା କାଟି ଭଜା ବସାଇଦେଲେ । ଦେଖିଲେ ବାଡ଼ିରେ ଲେଉଟିଆ ଶାଗ ହୋଇଛି । ଲଙ୍କାଗଛରେ ନାଲି ନାଲି ଲଙ୍କା ଫଳିଛି । କେରିଏ ଶାଗ ଆଣି ଖରଡ଼ି ଦେଲେ ।

ଖରଡ଼ୁ ଖରଡ଼ୁ ଭାବୁଥାନ୍ତି, "ଆହାଃ, ପିଲାଟିଦିନରୁ କି ଅଲିଅଳରେ ବଢ଼ାଇ ନ ଥିଲି ତାକୁ ? ସବୁଠାରୁ ଭଲ ଖାଦ୍ୟ ଯେମିତି ସେ ଖାଏ, ସେଇ ଥିଲା ମୋର ଝୁଙ୍କ୍ । କିନ୍ତୁ ଆଜି ପିଲାଟା ଖାଉଛି କଅଣ ? ବାଇଗଣ ଭଜା ଲେଉଟିଆ ଶାଗ । କ'ଣ ବା ନାହିଁ ଆମର ? ବାପା ତା'ର ମଟରଗାଡ଼ି ଚଢ଼ି ନଅର ଭଳି ପ୍ରାସାଦରେ ରହୁଛନ୍ତି । ଆଜି ପୁଅ ସେସବୁକୁ ଛାଡ଼ିଦେଇ ଅପନ୍ତରା ଗାଁରେ ଆସି ପଡ଼ିଛି ।" ଭାବୁ ଭାବୁ ସୀମନ୍ତିନୀ ଦେବୀଙ୍କ

ଆଖି ଲୁହରେ ଜକେଇ ହୋଇ ଆସିଲା । ପୁଅ ଆସିଗଲେ କାଳେ ଦେଖି ପକାଇବ, ସେ ପଣତକାନିରେ ଲୁହ ପୋଛି ପକାଇଲେ ।

ପୁଅ ଗାଧୋଇ ଆସି ପହଞ୍ଚିଗଲାରୁ ପୁଅକୁ ପିଢ଼ାଟିଏ ପକାଇ ଭାତ ଦ'ଗଣ୍ଡି ବାଢି ଦେଲେ । ଗୋଟିଏ ଥାଳିରେ ଶାଗ ଓ ଭଜା ବାଢିଦେଇ ଖଣ୍ଡିଏ ବଞ୍ଚଣା ନେଇ ବିଞ୍ଚି ବସିଲେ ।

ଦେବସ୍ମାନ ଖାଇ ସାରିଲାବେଳକୁ ଶାନ୍ତି ଆସି ପହଞ୍ଚିଗଲା । ଦେବବାବୁଙ୍କ ମା'ଙ୍କୁ ଅନାଇ କହିଲା, "ମାଉସୀ, ବୋଉ କହିଲା ଆପଣ ଆଜି ଆମ ଘରେ ଖାଇବେ । ଦେବସ୍ମାନବାବୁ ବି ।"

ସେତେବେଳକୁ ଦେବସ୍ମାନ ଖାଇ ସାରିଲାଣି । ସେ କହିଲେ, "ନା ମା, ଆଜି ପୁଅ ତ ଖାଇ ସାରିଲାଣି । ମୁଁ ଦ'ଟା ଏଠି ଖାଇଦେବି । ତୋ ବୋଉକୁ କହିଦେବୁ ଆମ ପାଇଁ ମୋଟେ ବ୍ୟସ୍ତ ହେବନି । ଯଦି ହେବ, ରାତିକୁ ତମ ଘରେ ଖାଇବୁ ।

ସୀମନ୍ତିନୀ ଦେବୀ ପୁଅ ପାଖରେ ଦିନଟାଏ ରହି ପୁଣି ଫେରିଯିବେ ବୋଲି ମନସ୍ଥ କରି ଆସିଥିଲେ । ନାରାୟଣବାବୁ ଜାଣି ନାହାନ୍ତି ସେ ପୁଅଠାକୁ ଆସିଛନ୍ତି ବୋଲି । ଗାଁକୁ ଆସିଛନ୍ତି ବୋଲି କହିଦେଇ ଗାଁରେ ଦିନଟାଏ ରହି ଏଠି ଆସି ହାଜର । ପୁଅର ଖାଇବା ପିଇବାରେ ଅବ୍ୟବସ୍ଥା ଦେଖି ତାଙ୍କ ଗୋଡ଼ ଉଠିଲାନି ପୁଣି ଫେରିଯିବା ପାଇଁ । ପୁଅ ଏଠାରେ ହାତରେ ରାନ୍ଧି ଏଣୁତେଣୁ କ'ଣ ଦିଇଟା ଖାଉଥିବ, ତେଣେ ସେ ପୁଣି କଲେଜ ପ୍ରିନ୍ସିପାଲଙ୍କ କୋଠିରେ ରହି ନଅ ତରକାରି ଛଅ ଭଜା ଖାଉଥିବେ ।

ସେଦିନ ରାତିରେ ହରିବାବୁଙ୍କ ଘରୁ ଖାଇ ଆସିଲାବେଳକୁ ରାତି ଦଶଟା । ପୁଅଘରେ ଗୋଟିଏ ବୋଲି ଖଟ । ମାଉସୀ କେଉଁଠି ଶୋଇବେ ବୋଲି ଶାନ୍ତି ନିଜ ଘରୁ ଗୋଟିଏ ଦଉଡ଼ିଆ ଖଟିଆ ଭୃକର ହାତରେ ମଗାଇ ଆଣି ସେଥିରେ ଶେଯ ପକାଇ ମାଉସୀଙ୍କ ପାଇଁ ଭଲ ବିଛଣା କରିଦେଇ ଯାଇଥାଏ । ତାଙ୍କ ପ୍ରତି ଝିଅଟିର ଏତାଦୃଶ ଆଦର ଦେଖି ସେ ତାଟଙ୍ଗା ।

ଖରାଦିନ । ରାତିହେଲେ ବି ଖୁବ୍ ଗରମ । ବିଦ୍ୟୁତ୍‌ପଙ୍ଖା ଏଠି ସ୍ୱପ୍ନ । ସୀମନ୍ତିନୀ ଦେବୀ ବରଢ଼ା ବିଞ୍ଚଣାରେ ବିଞ୍ଚି ହେଉ ହେଉ ଭାବୁଥାନ୍ତି, "ସେ କେଉଁ ସ୍ୱାନକପାଳୀ ସତେ ? ଏଡ଼େବଡ଼ ଯୋଗ୍ୟ ବିଲାତ ଫେରନ୍ତା ପୁଅ, ଏହିଭଳି କଷ୍ଟମୟ ଜୀବନଯାପନକୁ ଆଦରି ନେଇଛି । ଗୋଟିଏ ବୋଲି ପୁଅ । କ'ଣ ନାହିଁ ତାଙ୍କର ? ସେଥିରେ ପୁଅ ଆସି ଏ ଗାଁ ମୋଫସଲରେ ଏତେ କଷ୍ଟକର ଜୀବନ ଯାପନ କରିବ, କେଉଁ ମା ଧୈର୍ଯ୍ୟ ଧରି ରହି ପାରିବ ସତେ ?"

ସେ ଏହିଭଳି ଭାବି ଚାଲିଛନ୍ତି, ଦେବସ୍ମାନ ପଚାରିଲା, "ତୁ କ'ଣ କାଲି ସକାଳେ ଏଠୁ ଚାଲିଯିବୁ ବୋଉ ? ତୋର ଏଠି ଭାରି ଅସୁବିଧା ହେଉଥିବ । ସକାଳ ବସ୍ ଠିକ୍ ଆଠଟାରେ ଏଠି ପହଞ୍ଚି ଯାଉଛି । ଏହି ବସ୍ ଠିକ୍ ଏଗାରଟାବେଳକୁ ତୋତେ ପୁରୀରେ

ପହଞ୍ଚାଇ ଦେବ । ତୁ ସେହି ବସ୍‌ରେ ଚାଲିଯା । ବାପାଙ୍କର ତେଣେ ଅସୁବିଧା ହେଉଥିବ । ତୋତେ ତ ଏସବୁ ଜାଗା ଆଉ ଜଣା ନ ଥିବ ।

"ନା ବାପ, କାଲି ସକାଳେ ମୁଁ ଏଠୁ ଯାଉନି । ତୋ ବାପାଙ୍କୁ ଚିଠି ଲେଖିଦେବ ମୁଁ ଏଠି ସପ୍ତାହଟାଏ ରହି ତା'ପରେ ପୁଣି ଫେରିବି । ତୁ ଚାକର ପିଲାଟାଏ ଯୋଗାଡ଼ କରି ଆଣିଲେ ତାକୁ ତୋ ପାଇଁ ରନ୍ଧାବଢ଼ା ଶିଖାଇ ଦେଇଯିବି । ମୁଁ ଚାଲିଗଲେ ତୁ ସବୁବେଳେ ପଖାଳ ଖାଇ ତୋ ଦେହକୁ ଖରାପ କରିବୁ ।

"ତୁ କାହିଁକି ଏତେ ବ୍ୟସ୍ତ ହେଉଛୁ କହିଲୁ ? ଚାକର ପିଲାଟା ତ କାଲି ଆସିଯିବ । ସେ ଆସିଲେ ମୋର କିଛି ଅସୁବିଧା ହେବ ନାହିଁ । ସେ ତ ରାନ୍ଧିବ, ବାଢ଼ିବ, ମୋତେ ଖାଇବାକୁ ଦେବ । ଆଉ ଚିନ୍ତା କ'ଣ ?"

"ତୁ କ'ଣ କ'ଣ ଖାଇବୁ, ଏଠି କ'ଣ କ'ଣ ମିଳୁଛି, ଚାକର ପିଲାକୁ ରନ୍ଧାବଢ଼ା କେମିତି ଆସେ, ଭଲ ଭାବରେ ନ ଜାଣିଲା ପର୍ଯ୍ୟନ୍ତ ମୁଁ ଏ ଜାଗା ଛାଡ଼ି ଯାଉନି । ତୋ ମନଲାଖି ରନ୍ଧା ସେ କେମିତି ରାନ୍ଧିବ, ତାକୁ ଭଲ ଭାବରେ ଶିଖାଇ ସାରିଲେ ମୁଁ ପୁଣି ଯିବି । ମୁଁ ଜାଣେ ତୋ ବାପାଙ୍କର କିଛି ଅସୁବିଧା ହେଉ ନ ଥିବ ସେଠି । ଘରେ ତ ଚାକର ପୂଝାରୀ ଅଛନ୍ତି, ଆଉ ତାଙ୍କର ଚିନ୍ତା କ'ଣ ? ତୋତେ ଏଠି ଏକାଟିଆ ଛାଡ଼ିଦେଇ ଚାଲିଯିବାକୁ ମୋ ମନ ବଳୁନି ବାପ ।"

## ପଚିଶି

ସୀମନ୍ତିନୀ ଦେବୀ ମୂଳରୁ ସାତଦିନ କହି ପୁଅ ପାଖରେ ରହିଲେ ପୂରା ମାସଟିଏ । ପୁଅ ଏଠି କି କି କାମ କରୁଛି, ସେଥିସହିତ ପ୍ରତ୍ୟକ୍ଷଭାବେ ପରିଚିତ ହେବା ତାଙ୍କର ଉଦ୍ଦେଶ୍ୟ ।

ମା' ଆସିଲା ଦିନଠାରୁ ଦେବସ୍ଥାନର ପଖାଳଖିଆ ବନ୍ଦ । ସକାଳେ ଏବେ ଏଣିକି ଭାତମିତ ଜଳଖିଆ ତିଆରି ହେଲାଣି । ସକାଳୁ ଉଠି ଏଣୁତେଣୁ ଦି'ଟା ଖାଇଦେଇ ବାଲିକୁ ପଳାଇବା ଆଉ ହେଉନି ।

ଚାକର ପିଲାଟି ଆସିଲାପରେ ସୀମନ୍ତିନୀ ଦେବୀ ତାକୁ ଭାତ ରାନ୍ଧିବା, ଜଳଖିଆ କରିବା, ସବୁ ଶିଖାଇଦେଲେଣି । ସେ କେମିତି ରନ୍ଧାରନ୍ଧି କରୁଛି, ତାକୁ ତଦାରଖ କରିବା ତାଙ୍କର ବଡ଼ କାମ ।

ସକାଳ ହେଲାକ୍ଷଣି ଗାଁର ମୁଖିଆ ମୁଖିଆ ଲୋକେ ଦେବସ୍ଥାନ ପାଖରେ ପହଞ୍ଚି ଯାଆନ୍ତି । ସେମାନଙ୍କୁ ଧରି ଦେବସ୍ଥାନ ବିଭିନ୍ନ ଗାଁକୁ ଯାଏ । ମପା ଜୁପା କେତେ ଚାଲେ । ସକାଳୁ ବାହାରିଗଲେ ଦେବସ୍ଥାନ ଫେରୁ ଫେରୁ ଦିନ ଗୋଟାଏ ।

ପିଲାଙ୍କାତ ରନ୍ଧାବଢ଼ା କରୁଛୁ, ସୀମନ୍ତିନୀ ଦେବୀ ହରବାବୁଙ୍କ ଘରକୁ ବୁଲି ବୁଲିଯାନ୍ତି । ତାଙ୍କ ଝିଅ ଶାନ୍ତି ସୀମନ୍ତିନୀ ଦେବୀଙ୍କୁ ଖୁବ୍ ଭଲ ଲାଗେ । ସେ ତାଙ୍କୁ ନିଜ ଝିଅ ଭଳି ସ୍ନେହ କରନ୍ତି । ହରବାବୁଙ୍କ ସ୍ତ୍ରୀ ଅତି ଚମତ୍କାର ଲୋକ । ସେ ତ ଘରର କାମ ଧନ୍ଦାରେ ଲାଗିଥାନ୍ତି । ଶାନ୍ତି ସହିତ ଗପ କରି ସୀମନ୍ତିନୀ ଦେବୀ ଘରକୁ ଫେରନ୍ତି । ବେଳେ ବେଳେ ଶାନ୍ତିକୁ ନିଜ ସଙ୍ଗରେ ଡାକି ଆଣନ୍ତି ।

ସକାଳ ହେଲେ ହରବାବୁ ସ୍କୁଲକୁ ଚାଲିଯାନ୍ତି । ସାତ ଆଠଖଣ୍ଡ ଗାଁରେ ଗୋଟିଏ ବୋଲି ସ୍କୁଲ । ପିଲାଏ ସକାଳୁ ଦୂର ଗାଁରୁ ଚାଲି ଚାଲି ଆସନ୍ତି ।

ଏଣେ ଝିଅଟି ମେଟ୍ରିକ୍ ପାସ୍ ପରେ ଟ୍ରେନିଂ ପାସ୍ କରି ଘରେ ଅଛି । ଏହି ସ୍କୁଲର ପିଲା ସଂଖ୍ୟା ବଢ଼ିଗଲେ ଏଇଠି ମାଷ୍ଟ୍ରାଣୀ ହେବ ବୋଲି ତା'ର ଇଚ୍ଛା । କେତେ ଶିକ୍ଷକ-ଚାକିରି ମିଳୁଛି, କିନ୍ତୁ ତା ବାପା ତାକୁ ଦୂରସ୍ଥାନକୁ ଚାକିରି ପାଇଁ ଛାଡ଼ିବାକୁ ନାରାଜ । ଝିଅଟେ କ'ଣ ଏତେଦୂରରେ ଚାକିରି କରିବ ? ବୟସ ହେଲା । କେମିତି ତାକୁ ହାତକୁ ଦି'ହାତ କରିଦେଲେ ତାଙ୍କ ଦାୟିତ୍ୱ ଗଲା ।

ସୀମନ୍ତିନୀ ଦେବୀ ଓ ଶାନ୍ତି ମଧ୍ୟରେ ଗାଁ ନେଇ ନାନା କଥା ପଡ଼େ । ସେ ଶାନ୍ତି ପାଖରୁ ଶୁଣିବାକୁ ପାଆନ୍ତି, ଗ୍ରାମଦାନ ଆନ୍ଦୋଳନର ତାତ୍ପର୍ଯ୍ୟ । ପୁଅ ଏଠି ରହି କ'ଣ କ'ଣ କାମ କରୁଛି, ସେ ସମ୍ପର୍କରେ ସେ ଟିକିନିଖି ସବୁ ବୁଝନ୍ତି ଶାନ୍ତିଠାରୁ ।

ଶାନ୍ତି କହେ, ତାଙ୍କ ସ୍କୁଲଟି ଅପରପ୍ରାଇମେରୀ ହେଲେମଧ୍ୟ କେମିତି ମୂଳରୁ ମାତ୍ର ପଚିଶଜଣ ପିଲା ଥିଲେ, ବର୍ତ୍ତମାନ ଏହାର ପିଲାସଂଖ୍ୟା କେମିତି ଦୁଇଶହକୁ ଟପିଲାଣି ଓ ଏହି ଅଞ୍ଚଳରେ ଆଉ ଗୋଟିଏ ସ୍କୁଲ ତିଆରିର କେମିତି ଯୋଜନା ଚାଲିଛି, ଶାନ୍ତି ବୁଝାଏ ସୀମନ୍ତିନୀ ଦେବୀଙ୍କୁ ।

ସେ ଆହୁରି କହେ, ଏବେ ଏହି ଅଞ୍ଚଳର ସବୁଠାରୁ ଦୂର ଗାଁ କ୍ଷେତ୍ରରାଜପୁରରେ କେମିତି ଆଉ ଗୋଟିଏ ସ୍କୁଲ ବସୁଛି ଓ ଏହାର ଭିତ୍ତିପ୍ରସ୍ତର ସ୍କୁଲ ବିଭାଗର ଇନ୍‌ସ୍‌ପେକ୍ଟର ସ୍ଥାପନ କରିବେ, ସେ ସମ୍ପର୍କରେ ବିଶଦ ଆଲୋଚନା ପାଇଁ ଦେବସ୍ମାନବାବୁ କେମିତି ଗାଁର ମୁଖିଆ ମୁଖିଆ ଲୋକଙ୍କୁ ଧରି ସେଠାକୁ ଯାଇଛନ୍ତି ସବୁ ବୁଝାଏ ଶାନ୍ତି ସୀମନ୍ତିନୀ ଦେବୀଙ୍କୁ ।

ଭିତ୍ତିପ୍ରସ୍ତର ସ୍ଥାପନ ସଙ୍ଗେ ସଙ୍ଗେ ସ୍କୁଲ ଘର ତିଆରି ଚାଲିବ ଓ ଦୁଇ ତିନିମାସ ମଧ୍ୟରେ ଏହା ତିଆରି ହୋଇଯିବ । କେତେ ସୁବିଧା ହେବ ସେ ଗାଁର ପିଲାମାନଙ୍କର ! ଶାନ୍ତିଠାରୁ ସବୁ ଠିକ୍ କରି ବୁଝନ୍ତି ସୀମନ୍ତିନୀ ଦେବୀ ।

"ଏହିସବୁ ସ୍କୁଲ ଘର କ'ଣ ସରକାର କରିବେ ?" ବୁଝି ବୁଝି ସୀମନ୍ତିନୀ ଦେବୀ ଶାନ୍ତିକୁ ପଚାରିଲେ ।

"ନା ମାଉସୀ, ସରକାର ଓ ଗ୍ରାମ ଲୋକେ ଉଭୟଙ୍କ ସହଯୋଗରେ ଏ ସ୍କୁଲଘର ତିଆରି ହେବ । ସରକାର ଘର ତିଆରିର ଯାବତୀୟ ସରଞ୍ଜାମ ଯୋଗାଇଦେବେ ।

ଗ୍ରାମବାସୀମାନେ ସେମାନଙ୍କ ପରିଶ୍ରମ ଦାନ କରିବେ । ଦେବସ୍ମାନବାବୁଙ୍କ ତତ୍ତ୍ୱାବଧାନରେ ଏ ଘର ତିଆରି ଚାଲିବ ।"

"ଗାଁର ଲୋକେ କ'ଣ ମଜୁରି ନ ନେଇ ଏହି ଘର ତିଆରିରେ ଖଟିବେ ମା' ?"

"ନା ମାଉସୀ, ତା କେମିତି ହେବ ? ସେମାନେ ଯଦି ମଜୁରି ନ ନେବେ, ସେମାନେ ଖାଇବେ କ'ଣ ?"

"ତେବେ ସେମାନଙ୍କୁ ମଜୁରି ଦେବ କିଏ ?"

"କାହିଁକି, ଆମ ଗ୍ରାମଦାନ ସଂସ୍ଥା । ଏହି ସଂସ୍ଥା ବର୍ତ୍ତମାନ ପାଇଁ ଟଙ୍କା ଆକାରରେ ମଜୁରି ନ ଦେଇ ଧାନ ଆକାରରେ ମଜୁରି ଦେବ ।"

"ଏତେ ଧାନ ଆସିବ କେଉଁଠୁ ?" ଶ୍ରୀମନ୍ତିନୀ ଦେବୀ ପଚାରିଲେ ।

"ଆମ ସାତ ଆଠ ଗୋଟି ଗାଁରେ ଯେତିକ ଜମି ଅଛି, ସେସବୁର ମାଲିକ ଆମ ଗ୍ରାମଦାନ ସଂସ୍ଥା, ମାନେ ଆମେ ସମସ୍ତେ । କାହାର ନିଜର ବୋଲି ଜମି କେହି ଦାବୀ କରିପାରିବ ନାହିଁ । ଏହି ଜମିରୁ ଯେତେ ଧାନ ଆମଦାନୀ ହୁଏ, ସେତକ ଧାନର ମାଲିକ ଏହି ସାତ ଆଠଖଣ୍ଡି ଗ୍ରାମର ଲୋକେ ।

ଏହି ଗାଁଗୁଡ଼ିକର ପ୍ରତ୍ୟେକ ଲୋକଙ୍କୁ ବର୍ଷକ ପାଇଁ ହିସାବ କରିଯାଇ ଧାନ ଦେଇ ଦିଆଯାଏ । ବାକି ଧାନ ଯାହା ବଳିପଡ଼େ, ସେହି ଧାନ ମଜୁରି ଆକାରରେ ଗାଁର ଶ୍ରମିକମାନଙ୍କୁ ଦିଆଯାଏ ।

ଯେଉଁମାନେ ଜମି ଚଷୁଛନ୍ତି, ଯେଉଁମାନେ ସ୍କୁଲଘର ତୋଳୁଛନ୍ତି, ଯେଉଁମାନେ ଗାଁର ରାସ୍ତା ତିଆରିରେ ଲାଗି ପଡ଼ିଛନ୍ତି, ସେମାନେ ସମସ୍ତେ ଧାନ ଆକାରରେ ମଜୁରି ପାଆନ୍ତି ।

"ଏହିସବୁ କାମ ପାଇଁ କ'ଣ ଯଥେଷ୍ଟ ଧାନ ବଳେ ଝିଅ ? ଧାନ ଯଦି ନିଅଣ୍ଟ ପଡ଼ିବ, ତେବେ କ'ଣ କରିବ ମା' ?"

ବର୍ଷ ଆରମ୍ଭରୁ ହିସାବ କିତାବ ହୋଇ ଠିକ୍ କରି ହୋଇଥିବ । ଏବର୍ଷ ଏତିକ ଧାନ ହେଲା, ଏତିକ ଗାଁ ଲୋକଙ୍କୁ ବର୍ଷସାରା ଚଳିବା ପାଇଁ ଦିଆଯିବ । ଏତକ ଗାଁର ଉନ୍ନୟନ ପାଇଁ ଖର୍ଚ୍ଚ ହେବ । ଧାନର ପରିମାଣ ଦେଖି ବର୍ଷ ଆରମ୍ଭରୁ ଠିକ୍ କରିହେବ, କେଉଁ କେଉଁ ଉନ୍ନୟନ କାର୍ଯ୍ୟ ଏବର୍ଷ ହାତକୁ ନିଆଯିବ । ତେଣୁ ନିଅଣ୍ଟ ପଡ଼ିବା ପ୍ରଶ୍ନ ନାହିଁ ମାଉସୀ । ଯଦି ଧାନ ନିଅଣ୍ଟ ହୁଏ, ତେବେ ଟଙ୍କା ଆକାରରେ ମଜୁରି ଦିଆଯାଏ ।

"ଏହି ଯେଉଁ ଘରଟିରେ ଦେବସ୍ମାନ ରହୁଛି ଝିଅ, ସେ ଘରଟି କ'ଣ ତା ରହିବା ପାଇଁ ତିଆରି ହୋଇଅଛି ?"

"ନା ମାଉସୀ । ଆଗରୁ ଏହା ଥିଲା ଆମ ଗାଁର ମହିଳା ସମିତିର ଅଫିସ୍ ଘର । ସରକାରଙ୍କ ତତ୍ତ୍ୱାବଧାନ ଅଭାବରୁ ଏହି ଘରଟି ଭାଙ୍ଗିଗଲା । ଦେବସ୍ମାନବାବୁ ଆସି

ଗ୍ରାମବାସୀଙ୍କ ଦ୍ୱାରା ଏହି ଘରଟି ପୁଣି ମରାମତ କରି ସେହି ଘରେ ରହିଲେ । ସେହି ଘରଟିର ଗୋଟିଏ ପାଖ ମଧ୍ୟ ଆମ ଗ୍ରାମଦାନ ସଂସ୍ଥାର ଅଫିସ୍ ଗୃହ ହେଲା ।"

"ଏହି କେବଳ ଧାନ ଆୟ ଉପରେ ନିର୍ଭର କରି ଏହି ସାତ ଆଠଖଣ୍ଡି ଗାଁର ଉନ୍ନୟନ କ'ଣ ସମ୍ଭବପର ହିଅ ?"

"ନା ମାଉସୀ । ଆମ ଗାଁର ଆହୁରି ଆୟର ପନ୍ଥା ଅଛି । ଆମ ଗାଁ ମଝିରେ ଗୋଟିଏ ଗ୍ରେଟ ନଈ ବହି ଯାଇଛି । ସେହି ନଈରେ ସବୁଦିନେ ପାଣି ଥାଏ । ବର୍ଷାଦିନେ ବଢ଼ି ହୁଏ । ସେ ବଢ଼ି ସେମିତ କିଛି ବଡ଼ ବଢ଼ି ନୁହେଁ । ଆମର କିଛି କ୍ଷତି କରେନି, ବରଂ ଜମିରେ ପଟୁ ପକାଇ ଚାଷର ଉପକାର କରେ । ଏହି ନଈଟି ଆମର ଚାରି ପାଞ୍ଚଗୋଟି ଗାଁ ଭିତର ଦେଇ ଯାଇଛି ।

ଏହି ନଈର ଦୁଇପଟେ ଯେଉଁ ଜମି ଅଛି, ସେଥିରେ ସୋରିଷ, ଚିନାବାଦାମ, ଡମାଖୁ, ଝୋଟ, ଆଖୁ, ପନିପରିବା ଆଦି ଅର୍ଥକାରୀ ଫସଲ ଚାଷ କରାଯାଏ ମାଉସୀ । ସେହି ଚାଷରୁ ଆମଦାନୀ ହେଉଥିବା ଫସଲଗୁଡ଼ିକ ବିକ୍ରୟ ହୋଇ ଆମ ସଂସ୍ଥାକୁ ଢେର୍ ଟଙ୍କା ଆସେ ।

ପ୍ରଥମେ ପ୍ରଥମେ ଆମର ଯାହା ଫସଲ ଆମଦାନୀ ହେଉଥିଲା ମାଉସୀ, ସଙ୍ଗେ ସଙ୍ଗେ ସେସବୁ ବିକ୍ରୀ ହୋଇ ଯାଉଥିଲା । ଏବେ ଏଣିକି ଦେବସ୍ମାନବାବୁ ସଙ୍ଗେ ସଙ୍ଗେ ବିକ୍ରି ନ କରି ଗୋଦାମଘରେ ସାଇତି ରଖୁଛନ୍ତି । ଆଖୁକୁ ପେଡ଼ି ଗୁଡ଼ କରି ରଖି ଦିଆଯାଉଛି । ଯେତେବେଳେ ବଜାରରେ ଏଗୁଡ଼ିକର ଦର ସର୍ବାଧିକ ହେବ, ସେତେ-ବେଳେ ଛଡ଼ାଯାଇ ଆମ ଗାଁ ପାଇଁ ଅଧିକ ଅର୍ଥ ଉପାର୍ଜନ କରାଯିବ ।

ଦେବସ୍ମାନବାବୁଙ୍କ ଯୋଜନାନୁସାରେ ଆମ ଗାଁର ଲୋକମାନେ ଶ୍ରମଦାନ କରି ସବୁ କରିବାକୁ ଇଚ୍ଛୁକ । ସରକାରଙ୍କ ସାହାଯ୍ୟ ଉପରେ ସେମାନେ ମୋଟେ ଭରସା ରଖି ନ ଥାନ୍ତି । ଦେବସ୍ମାନବାବୁ ସରକାରୀ ସାହାଯ୍ୟକୁ ବିଶେଷ ପସନ୍ଦ କରନ୍ତିନି । ସେ କହନ୍ତି, ଆମେ ବିନା ସରକାରୀ ସାହାଯ୍ୟରେ ସବୁ କରିପାରିବା, ଖାଲି ଲୋକେ ଆଗ୍ରହର ସହିତ ଏକଜୁଟ ହୋଇ ତାଙ୍କ ପଛରେ ଠିଆ ହେଲେ ହୁଏ ।

"ଏତେ ଦାୟିତ୍ୱ ମୁଣ୍ଡକୁ ନେଇ ସେ ସବୁ କ'ଣ ସମାଧାନ କରି ପାରୁଛନ୍ତି ପୁଅ ?"

ହସିଲା ଶାନ୍ତ, "ଆପଣ ଦେବସ୍ମାନବାବୁଙ୍କୁ ଏମିତି କ'ଣ କହୁଛନ୍ତି ମାଉସୀ ? ଏହି ଗାଁଗୁଡ଼ିକର ସବୁ ଯୋଜନା ପରା ତାଙ୍କରି । ଆମ ଗାଁର ମୁଖିଆ ମୁଖିଆ ଲୋକମାନେ ତାଙ୍କରି ଆଦେଶକୁ ଅନାଇ ବସିଥାନ୍ତି । ଯେଉଁମାନେ ଟିକିଏ ଶିକ୍ଷିତ ଓ ଦାୟିତ୍ୱସମ୍ପନ୍ନ, ସେମାନଙ୍କୁ ଗୋଟିଏ ଗୋଟିଏ କାମର ପୂରା ଦାୟିତ୍ୱ ଦିଆଯାଇଛି । ସେମାନେ ପ୍ରତି ସପ୍ତାହରେ ଥରେ ଲେଖାଏଁ ଦେବସ୍ମାନବାବୁଙ୍କୁ ତାଙ୍କ ଦାୟିତ୍ୱର ହାନିଲାଭ ବୁଝାନ୍ତି । କେଉଁଠି କିଛି ଅସୁବିଧା ହେଲେ ତାଙ୍କ ପରାମର୍ଶ ନିଅନ୍ତି ।

ଆମ ଗାଁର ଆମ୍ବ୍ରବୃକ୍ଷ ପାଇଁ, ଝୋଟ ଗୃଷ ପାଇଁ, ତୈଳବୀଜ ଗୃଷ ପାଇଁ ଜଣେ ଜଣେ ଲୋକକୁ ଦାୟିତ୍ୱ ଦିଆଯାଇଛି । ଆମ ଗାଁର ପ୍ରତ୍ୟେକ ଲୋକ ଗାଁ ପାଇଁ କିଛି ନା କିଛି କାମ କରିବାକୁ ବାଧ୍ୟ । କାମ ନ କରି କେହି ଖାଇବାକୁ ପାଇବେନି । ଯେଉଁମାନେ ଅକର୍ମଣ୍ୟ ବା ଅସମର୍ଥ, ସେମାନଙ୍କୁ ବସାଇ ଯାହା ଖାଇବାକୁ ଦିଆଯାଉଛି । ଏବେ ଦେବସ୍ମାନବାବୁ ଏକ ଯୋଜନା କରିଛନ୍ତି, ସେଥିରେ ସେମାନେ ମଧ୍ୟ ଖଟି ଦି'ପଇସା ଅଧିକ ଅର୍ଜନ କରି ପାରିବେ ।

ଆପଣ ଜାଣନ୍ତି ମାଉସୀ, ଦେବସ୍ମାନବାବୁ ଏହି ଗାଁକୁ ଆସିବା ପୂର୍ବରୁ ଏହି ଗାଁର ଅଧିକାଂଶ ଲୋକ ପ୍ରତିଦିନ ଦୁଇବେଳା ଖାଇବାକୁ ପାଉ ନ ଥିଲେ । କାହା କାହା ଘରେ ଦୁଇ ତିନିଦିନରେ ବି ଥରେ ଚୁଲି ଜଳୁ ନ ଥିଲା । ବର୍ତ୍ତମାନ ଆମ ଗାଁରେ ପ୍ରତ୍ୟେକ ଲୋକ ଅନ୍ତତଃ ଦୁଇବେଳା ଖାଇବାକୁ ପାଉଛନ୍ତି ।

ପଇସା ଅଭାବରୁ ଆଗରୁ ବହୁଲୋକ ଅଧାଲଙ୍ଗଳା ରହୁଥିଲେ । ପିଲାମାନେ ଲୁଗାଖଣ୍ଡେ ପିନ୍ଧିବାକୁ ପାଉ ନ ଥିଲେ । ଆଜି ପ୍ରତ୍ୟେକ ଲୋକ, କି ସ୍ତ୍ରୀ କି ପୁରୁଷ, ଲଜ୍ଜା ନିବାରଣ କଲାଭଳି ପିନ୍ଧିବାକୁ ପାଉଛନ୍ତି । ପିଲାଗୁଡ଼ାକ ଲଙ୍ଗଳା ନ ରହି ପେଣ୍ଟ ଖଣ୍ଡିଏ ପିନ୍ଧିବାକୁ ପାଉଛନ୍ତି ।

ସ୍କୁଲକୁ ଆଗରୁ ପିଲାଗୁଡ଼ାକ ଯାଉ ନ ଥିଲେ । ଆଜିକାଲି ସ୍କୁଲକୁ ସବୁ ପିଲା ଯିବାକୁ ବାଧ୍ୟ । ପିଲାମାନଙ୍କ ପଢ଼ା ପାଇଁ ବହି, ସିଲଟ, ଖାତା, ପେନ୍‌ସିଲ, କାଗଜ, କଲମ ଆଦି ଆମ ଗ୍ରାମଦାନ ସଂସ୍ଥା ଯୋଗାଉଛି । ବାପା ମା'ଙ୍କୁ କିଛି କିଣିବାକୁ ପଡ଼ୁ ନାହିଁ ।

ସାତ ଆଠଖଣ୍ଡି ଗାଁରେ ଆଗରୁ ଏଇ ଗୋଟିଏ ସ୍କୁଲରେ ଚଳି ଯାଉଥିଲା । ଦେବସ୍ମାନବାବୁଙ୍କ ଆସିବା ଦିନରୁ ସ୍କୁଲରେ ପିଲା ସଂଖ୍ୟା ଏତେ ବଢିଗଲାଣି, ଯେ ଗୋଟିଏ ସ୍କୁଲ ଆଉ ହେଉନି । ଆଉ ଗୋଟିଏ ସ୍କୁଲ ଆର ଗାଁରେ ତିଆରି ହେଉଛି । ଦେବସ୍ମାନ-ବାବୁଙ୍କ ଯୋଜନା ଅନୁସାରେ ଧୀରେ ଧୀରେ ପ୍ରତ୍ୟେକ ଗାଁରେ ଗୋଟିଏ ଗୋଟିଏ ଅପର ପ୍ରାଇମେରୀ ସ୍କୁଲ ରହିବ । ଆମ ଏଇ ସ୍କୁଲଟି ମାଇନର ସ୍କୁଲ ହେବ ।

"ପୁଅ ଏତେ ଖଟୁଛି, ଖାଉଛି କଅଣ ? ଖାଲି ପଖାଳ ? ଏଥିରେ ତା ଦେହ ରହିବଟି ?"

"ଦେବସ୍ମାନବାବୁ ଯେତେବେଳେ ଆମ ଗାଁକୁ ଆସିଲେ, ସେ ପ୍ରଥମେ ପ୍ରଥମେ ଆମ ଘରେ ରହୁଥିଲେ । ଯେମିତି ତାଙ୍କ ପାଇଁ ଘର ତିଆରି ହୋଇଗଲା, ସେ ସଙ୍ଗେ ସଙ୍ଗେ ଆମ ଘରୁ ଯାଇ ସେଠି ରହିଲେ । ସେଠି ସିନା ରହୁଥିଲେ, କିନ୍ତୁ ଆମ ଘରେ ଖାଉଥିଲେ । କିଛିଦିନ ପରେ କହିଲେ, ସେ ନିଜେ ନିଜ ଘରେ ରାନ୍ଧି ଖାଇବେ । ଚାକର ପିଲାଟିଏ ତ ମିଳି ନ ଥାଏ । ରାନ୍ଧିବେ ବା କେମିତି ? ନିଜକୁ ପୁଣି ରନ୍ଧା ଜଣା ନାହିଁ ।"

"ସେହିଠୁ କ'ଣ ହେଲା ଝିଅ ?"

"ପ୍ରଥମେ ପ୍ରଥମେ ବୋଉ ମୋତେ କହୁଲା, ତାଙ୍କ ପାଇଁ ଏଠି ଆସି ରାନ୍ଧି ଦେବା ପାଇଁ । ମୁଁ କିଛିଦିନ ଏଠି ଆସି ଦୁଇବେଳା ରାନ୍ଧି ଦେଲି । ସେ ମୋ ପାଖରୁ ରାନ୍ଧା କେମିତି ହୁଏ ଶିଖିଗଲେ ।"

ତା'ପରେ ଦିନେ କହିଲେ, "ଦେଖ ଶାନ୍ତି, ତୁମେ ଢେର୍ ଦିନ ହେଲା ମୋ ପାଇଁ କଷ୍ଟ କଲଣି । ଆଉ ଅଧିକ କଷ୍ଟ କରିବା ଦରକାର ନାହିଁ । ମୁଁ ଏବେ ଏଣିକି ନିଜେ ନିଜେ ରାନ୍ଧି ପାରିବି । ତୁମେ ଯେତେହେଲେ ଅବିବାହିତା ଝିଅ । ତୁମେ ଯଦି ମୋ ପାଇଁ ଏଠି ଆସି ପ୍ରତିଦିନ ରାନ୍ଧିବ, ତେବେ ଲୋକମାନେ କାଲେ କଅଣ ଭାବିବେ । ଯେହେତୁ ଏ ଘରେ ମୁଁ ଏକୁଟିଆ ରହୁଛି, ତୁମେ ଏ ଘରେ ଏକୁଟିଆ ଆସି ରାନ୍ଧାରାନ୍ଧି କରିବା ଲୋକଙ୍କ ଆଖିରେ ଭଲ ଦିଶି ନ ପାରେ । ମୁଁ ଏବେ ଏଣିକି ରାନ୍ଧାବଢ଼ା କାମ ନିଜେ କରି ନେଇ ପାରିବି । ତୁମେ ଆଉ ଆସିବା ଦରକାର ନାହିଁ ।"

ମୁଁ ତାଙ୍କ କଥା ମାନି ଆଉ ଆସିଲିନି । ସେ ନିଜେ ରାନ୍ଧାବଢ଼ା କଲେ । ସେ କ'ଣ ରାନ୍ଧନ୍ତି, ଭଗବାନଙ୍କୁ ଜଣା । ଆମ ଘରର ପିଲା କହେ, "ସେ ରାତିରେ ରାନ୍ଧି ଦିଅନ୍ତି, ଦିନରେ ପଖାଳ ଖାଆନ୍ତି । କେଉଁଦିନ ତରକାରି ଲୁଣିଆ ତ କେଉଁଦିନ ଅଲଣା । ତାଙ୍କର ସେଆଡ଼କୁ ମୋଟେ ନଜର ନ ଥାଏ ମାଉସୀ ।" ଯାହାହେଲେ, ଦି'ଟା ଖାଇଦେଇ କାମ ଉପରକୁ ପଳାନ୍ତି ।

## ଛବିଶି

ଦିନକର କଥା, ଦେବସ୍ନାନବାବୁ ମିଟିଂ ଉପରକୁ ଆସିବା ପୂର୍ବରୁ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଅଫିସ୍ ଘରେ ଆସି ଭିଡ଼ ଜମାଇ ଦେଇଥାନ୍ତି । ସମସ୍ତଙ୍କ ଭିତରେ ଚାଲିଛି କୁମରବାବୁଙ୍କ ଝିଅ ସ୍ୱରୂଲତା ନେଇ କଥାବାର୍ତ୍ତା । ସ୍ୱରୂଲତା ପ୍ରେମ କରି ଖୋର୍ଦ୍ଧାର ହରଗୋବିନ୍ଦବାବୁଙ୍କ ପୁଅ ବିକାଶକୁ ବିବାହ କରିବ ବୋଲି ଠିକ୍ ହୋଇ ଯାଇଥାଏ । ଦୁହେଁ ବାଙ୍କି କଲେଜରେ ପଢିଲାବେଳେ ଦୁଇଜଣଙ୍କ ଭିତରେ ମିଶାମିଶି ଥିଲା ଅଧିକ । ସେହି ମିଶାମିଶି ବଢ଼ି ବଢି ଶେଷରେ ପ୍ରେମରେ ପରିଣତ ହୋଇ ବିଭାଘର ଠିକ୍ ହେବା ଉପରେ । ପୁଅର ବାପା ହରଗୋବିନ୍ଦବାବୁ ଖୋର୍ଦ୍ଧାର ଏକ ଜଣାଶୁଣା ମହାଜନ । ଖୋର୍ଦ୍ଧା ଟାଉନରେ ତାଙ୍କର ବିରାଟ ବ୍ୟବସାୟ । ଖୋର୍ଦ୍ଧା ସହରରେ ଚାରି ପାଞ୍ଚଗୋଟି ବଡ଼ ବଡ଼ ଗୋଦାମ ।

ହରଗୋବିନ୍ଦବାବୁଙ୍କ ପୁଅ ବିକାଶର ସ୍ୱରୂଲତାକୁ ବିବାହ କରିବା ପାଇଁ ଯେମିତି ଜିଦ୍, ସ୍ୱରୂଲତାର ବିକାଶକୁ ବିବାହ କରିବା ପାଇଁ ଠିକ୍ ସେମିତି ଜିଦ୍ । ଝିଅର ଏମିତି

ଜିଦ୍ ଦେଖି କୁମରବାବୁ ବାହାଘର ପ୍ରସ୍ତାବ ପଠାଇଲେ ବିକାଶର ବାପାଙ୍କ ପାଖକୁ । ହରଗୋବିନ୍ଦବାବୁ ବଡ଼ ଅର୍ଥଲୋଭୀ । ପୁଅର ବାହାଘର ପ୍ରସ୍ତାବ ଦେଖି ହରଗୋବିନ୍ଦବାବୁ ଦାବୀ କରି ବସିଲେ ଯାହାଯୌତୁକ ବାଦ୍ ନଗଦ ପଚିଶହଜାର ଟଙ୍କା । ହରଗୋବିନ୍ଦବାବୁ ଜାଣନ୍ତି, କୁମରବାବୁ ଏକ ସମୟରେ ଜଣେ ବଡ଼ ମହାଜନ ଥିଲେହେଁ ସେ ତାଙ୍କର ସମସ୍ତ ଧନସମ୍ପତ୍ତି ଜମିବାଡ଼ି ଗ୍ରାମଦାନ ସଂସ୍ଥାକୁ ଦାନ କରି ଦେଇଛନ୍ତି । ତେବେ ସେ ନିକଟରେ ଜୀବନବୀମା କର୍ପୋରେସନଠାରୁ ନିଜ ଜୀବନବୀମା ବାବଦକୁ ଲକ୍ଷେ ଟଙ୍କା ପାଉଥିବାରୁ ତାହାରି ଉପରେ ହରଗୋବିନ୍ଦବାବୁଙ୍କର ଆଖି । ସେ ଜାଣନ୍ତି, କୁମରବାବୁଙ୍କର ଗୋଟିଏ ବୋଲି ଝିଅ । ସେ ଦେବାନେବାରେ କିଛି କାର୍ପଣ୍ୟ କରିବେ ନାହିଁ ।

ହରଗୋବିନ୍ଦବାବୁଙ୍କ ଦାବୀ ଶୁଣି କୁମରବାବୁ ହଡ଼ବଡ଼େଇ ଗଲେ । ଜୀବନବୀମାରୁ ଯାହା ପାଇବେ, ସେଥିରେ ନିଜ ବାପାଙ୍କ ସ୍ମୃତି ପାଇଁ ଗାଁରେ ଗୋଟିଏ ମନ୍ଦିର ଗଢ଼ାଇବା ଇଚ୍ଛା । ଆଉ ଟଙ୍କା କେଉଁଠୁ ବାହାରିବ ଯେ, ପଚିଶହଜାର ଟଙ୍କା ଦାବୀ ତୁଲାଇବେ ।

ଆଲୋଚନା କରୁ କରୁ ମନ୍ଦରଧର ଦାସେ କହିଲେ, "ଯାହାକୁହ ଗୋପ୍ପିଏତ, ପିଲାଏ ଲଭ୍ କରି ବାହା ହେବେ । ସେଥିରେ ପୁଣି ଟଙ୍କା ଦାବୀ । ଇଏ କେଉଁ ଗାଁ କଥା କି ହୋ ?"

"ଆରେ ଭାଇ, ସେଇତ ହେଉଛି ଏ ଯୁଗର ବିଚିତ୍ରତା । ଆଗ ଯୁଗରେ ଯେଉଁଠି ପୁଅ ଝିଅ ପରସ୍ପରକୁ ଭଲ ପାଇ ବିବାହ କରୁଥିଲେ, ସେଠି ଯୌତୁକ ଦାବୀ କି ନଗଦ ଟଙ୍କା ଦାବୀ ନ ଥିଲା । ଏ ଯୁଗରେ ତହିଁର ଓଲଟା । ଲଭ୍‌କୁ ଲଭ୍, ଦାବୀକୁ ଦାବୀ । ତୁମେ ଜାଣିଛ ନା ଗୋପ୍ପିଏତ, କୁମରବାବୁ ଏ ବାହାଘରରେ ରାଜି ନୁହନ୍ତି । ସେ ଭାବୁଛନ୍ତି, ସେଠି ବାହାଘର ଭାଙ୍ଗି ଦେବେ । କିନ୍ତୁ ଝିଅ ତା କଥାରେ ଅଟଳ, ବିକାଶ ଛଡ଼ା ସେ ଆଉ କାହାକୁ ବିବାହ କରିବନି । ବାଧ କଲେ ସେ ଆତ୍ମହତ୍ୟା କରିବ ।"

ହରଗୋବିନ୍ଦବାବୁ ମହା ଅର୍ଥଲୋଭୀ । ପୁଅ ଚାରୁଲତା ଛଡ଼ା ଅନ୍ୟ କାହାକୁ ବିବାହ କରିବାକୁ ରାଜି ନୁହେଁ ବୋଲି ଜିଦ୍ ଧରିଲେହେଁ ବାପ କିନ୍ତୁ ନିଜ ଦାବୀରୁ ଟିକିଏ ବି ଓହରିବାକୁ ନାହିଁ । ଉପରୁ ଉପରୁ କିଛି ମିଳିଗଲେ ମନ୍ଦ ନୁହେଁ । ଝିଅକୁ ଝିଅ, ଟଙ୍କାକୁ ଟଙ୍କା ।

"ଆରେ ଟୋକାଟା ଭାରି ଚାଲାକରେ ଗୋବିନ୍ଦ । ଝିଅକୁ ଝିଅ ନେବ, ପୁଣି ଟଙ୍କାକୁ ଟଙ୍କା ।"

"ମୁଁ କେତେଥର ବାଙ୍କି କଲେଜ ଦେଇ ଗଲାବେଳେ ସେ ଦୁହିଁଙ୍କୁ ସାଙ୍ଗ ହୋଇ କଲେଜ ପଛପାଖ ବରଗଛମୂଳେ ବସି କଥାଭାଷା ହେଉଥିବାର ଦେଖିଛି । ସେତିକବେଳୁ ମୋର କାହିଁକି ସନ୍ଦେହ ହେଉଥିଲା । କୁମରବାବୁଙ୍କୁ ଦୁଇ ଚାରିଥର ଏହି କଥା କହିଲି । ସେ ସେଥିପ୍ରତି ସେତେ ଗୁରୁତ୍ୱ ଦେଇ ନ ଥିଲେ । କ'ଣ ବା ଗୁରୁତ୍ୱ ଦେବେ ? ପୁଅ ଝିଅତ ସାଙ୍ଗ ହୋଇ କଲେଜରେ ପାଠ ପଢ଼ୁଛନ୍ତି, ଏମିତି କଥାଭାଷା ହେଲେ କ'ଣ ହୋଇଗଲା ?

ସେତେବେଳେ ସେ ଯଦି ନିଜ ଝିଅକୁ ଆକଟ କରିଥାନ୍ତେ, ତେବେ କଥା ଏତେଦୂରକୁ ଯାଇ ନ ଥାନ୍ତା । ଯାହାକୁହ, ଇଏସବୁ କୁମରବାବୁଙ୍କ ଭୁଲ୍ ଯୋଗୁ ।”

“ହଁ, ହଁ, କା’ର ଭୁଲ୍ କଥା କହୁଛ ମନ୍ଦରଧରବାବୁ ? କ’ଣ ହେଲା କି ?” କହୁ କହୁ ଅଫିସ୍‌ଘର ଭିତରକୁ ପଶି ଆସିଲେ ଦେବସ୍ଥାନବାବୁ । ପଶୁ ପଶୁ କହିଲେ, “ମୋର ଆଜି ଢେର୍ ଢେର ହୋଇଗଲା । ଆପଣମାନେ ଅନେକବେଳୁ ମୋତେ ଅପେକ୍ଷା କରି ବସିଲେଣି । ଆଉ ସାହିରେ ସେ ଯେଉଁ ସ୍କୁଲଘର ତିଆରି ଚାଲିଛି, ସେହି ଘରର ନକ୍‌ସାରେ ଟିକିଏ ଭୁଲ୍ ରହି ଯାଇଥିଲା । ମିସ୍ତ୍ରୀ ସହିତ କଥା ହେଉ ହେଉ ଢେରି ହୋଇଗଲା । ଏତେବେଳଯାଏ କାହାକଥା ଆଲୋଚନା ଚାଲିଥିଲା କି ?”

“ଆଉ କାହା କଥା ହେବ ଆଜ୍ଞା ? ସେହି କୁମରବାବୁଙ୍କ ଝିଅ ଚାରୁଲତା କଥା ।”

“କ’ଣ ହୋଇଛି ଚାରୁଲତାର ? ଏଠି ଆଲୋଚନା ପଡ଼ିଛି କାହିଁକି ?”

ମନ୍ଦରଧରବାବୁ ସବୁକଥା ଗୋଟି ଗୋଟି କରି କହିଗଲେ ।

“ବାପା ମା’ମାନେ ପୁଅ ଝିଅମାନଙ୍କୁ ଆକଟ ନ କଲେ ଏମିତି ହୁଏ । କୁମରବାବୁ ଯଦି ମୂଳରୁ ଆକଟ କରିଥାନ୍ତେ, ତେବେ କଥାଟା ଏତେଦୂରକୁ ଯାଇ ନ ଥାନ୍ତା ।”

“ଆପଣ ଠିକ୍ କହିଛନ୍ତି ଆଜ୍ଞା । ବର୍ତ୍ତମାନ ଅବସ୍ଥା ଆସି ଏମିତି ହେଲାଣି, ବରପକ୍ଷ ଯାହା ଦାବୀ କରିବେ, କନ୍ୟାପକ୍ଷ ତାହା ଦେବାକୁ ବାଧ୍ୟ । ହରଗୋବିନ୍ଦବାବୁ କ’ଣ କମ୍ ଦାବୀ କରୁଛନ୍ତି ? ଯାନଯୌତୁକ ବାଦ୍ ନଗଦ କେଶ୍ ପଚିଶହଜାର ଟଙ୍କା ।”

“ଆଁ, ପଚିଶହଜାର ଟଙ୍କା ?”

“ହଁ, ଆଜ୍ଞା ।”

“ଆରେ, ଏତେଟଙ୍କା ହଠାତ୍ କୁମରବାବୁ ଆଣିବେ କେଉଁଠୁ ? ସେ ତ ଆଉ ଆଗଭଳି ମହାଜନ ନାହାନ୍ତି ଯେ ଘରୁ ଏତେଗୁଡ଼ାଏ ଟଙ୍କା ବାହାର କରିଦେବେ ? ସେ ତ ତାଙ୍କର ସମସ୍ତ ଜମିବାଡ଼ି, ଟଙ୍କା ପଇସା ଗ୍ରାମଦାନ ସଂସ୍ଥାକୁ ଦେଇ ସାରିଛନ୍ତି । ସେ ଏତେଗୁଡ଼ାଏ ଟଙ୍କା ଯୋଗାଡ଼ କରିବେ କେମିତି ? ଯୌତୁକ ଦାବୀ ଏକ ଅତି ଖରାପ କଥା । ଆମ ସମାଜରେ ଏହା ଏକ ଉତ୍କଟ ବ୍ୟାଧିଭଳି ହୋଇଛି । ଏହାକୁ ଦୂର ନ କଲେ ଆମ ସମାଜ ଭୂଶୁଡ଼ି ପଡ଼ିବ ।”

“ସେଥିପାଇଁ ମୁଁ କହୁଥିଲି କ’ଣ କି ଆଜ୍ଞା, ଆମେ ବର-ପିତାକୁ କୌଣସି ପ୍ରକାରେ ବୁଝାସୁଝି କରାଇ ଟଙ୍କା ଦାବୀଟାକୁ କଟାଇ ପାରିଲେ କେମିତି ହୁଅନ୍ତା ?”

“ହୁଅନ୍ତା ତ ଭଲ । ହେଲେ ଆମ କଥାରେ କ’ଣ ହରଗୋବିନ୍ଦବାବୁ ସହଜରେ ରାଜି ହେବେ ?” ଗୋବିନ୍ଦବାବୁ କହିଲେ ।

“ଆମେ ଏତେଗୁଡ଼ାଏ ଲୋକ କହିଲେ କ’ଣ ସେ ଶୁଣିବେ ନାହିଁ ? ନିଶ୍ଚୟ ଶୁଣିବେ ।” ମନ୍ଦରଧରବାବୁ କହିଲେ ।

“ଯଦି ନ ଶୁଣନ୍ତି ?” ଗୋବିନ୍ଦବାବୁ କହିଲେ ।

"ତେବେ ଶେଷ ଅସ୍ତ୍ର ? ପୋଲିସକୁ ଖବର ଦେବାପାଇଁ ଧମକ ଦେବା । ପୋଲିସ ଧମକ ନାଁ ଶୁଣିଲେ ସେ ଆମ କଥା ମାନିଯାଇ ପାରନ୍ତି ।'ଆଜିକାଲି ପଣ ଯୌତୁକ ନିରୋଧ ଆଇନ ହୋଇଗଲାଣି । ସେ ବଳେ ଦବ ଯିବେନି, ଆଉ କ'ଣ କିଦ୍ କରିବେ ?"

"ସେ ଓଲଟି ଯଦି ହୁଁ ହୁଁ କରି ବରଘର କରାଇଦେଇ ଝିଅକୁ ହାଇରାଣ ହରକତ କରି ଟଙ୍କା ଆଦାୟ କରିବାକୁ ଚେଷ୍ଟା କରନ୍ତି ? ଝିଅକୁ ନିର୍ଯ୍ୟାତନା ଦେଲେ କି ମାରି ଦେବାର ଧମକ ଦେଲେ, ଝିଅ ଆସି ବାପଘରେ କନ୍ଦାକଟା କରିବ । କୁମରବାବୁ ଶେଷରେ ଟଙ୍କା ଦେବାକୁ ବାଧ୍ୟ ହେବେ ।"

"ଏତେଗୁଡ଼ାଏ ଟଙ୍କା କୁମରବାବୁ ଆଣିବେ କେଉଁଠୁ ? ଟଙ୍କା ନ ପାଇଲେ ଶେଷରେ ଝିଅକୁ ପେଟ୍ରୋଲ ଢାଳି ନିଆଁ ଲଗାଇ ଧମକ ଦେଉଁ ଦେଉଁ ହଠାତ୍ ହନେ ନିଆଁ ଲାଗିଯିବ । ଶେଷରେ ଝିଅ ମରିବା ସାର ହେବ ।" ଗୌତମବାବୁ କହିଲେ ।

"ଆପଣମାନେ ଏତେ ଦୂରକୁ କାହିଁକି ଭାବି ଯାଉଛନ୍ତି ?" ଦେବସ୍ଥାନବାବୁ କଥାରେ ବାଧାଦେଇ କହିଲେ । "ଆରେ, ଆମେ ତ ହେଲେ ଭୂଦାନୀ-ଲୋକ । ଆମେ ସମସ୍ତେ ଯାଇ ତାଙ୍କୁ କହିବା । ଯଦି ରାଜି ନ ହୁଅନ୍ତି, ତାଙ୍କ ଘର ଦୁଆରେ ଅନଶନ କରିବା । ଆମ ସସ୍ଥାର ମୁଖିଆ ମୁଖିଆ ଲୋକେ ତାଙ୍କ ଘର ଆଗରେ ଅନଶନ କଲେ ସେ ବଳେ ଆମ କଥାକୁ ମାନି ଯିବେନି ? ଧମକ ଚମକ ଦେଇ କାମ ଆଦାୟ କରିବାଠାରୁ ହୃଦୟ ବଦଳାଇ କାମ ଆଦାୟ କରିବା ଢେର୍ ଭଲ । ଆମେ ଯଦି ହୃଦୟ ବଦଳାଇ ପାରିଲେ, ତେବେ ଏହା ଅନ୍ୟମାନଙ୍କର ଆଖି ଖୋଲିଦେବ । ତୁମେମାନେ କ'ଣ କହୁଛ ? ଧମକ ଚମକ ଦେବା ମୋଟେ ଭଲ ନୁହେଁ ।"

"ହଁ ଆଜ୍ଞା, ଆପଣ ଯାହା କହୁଛନ୍ତି ଠିକ୍ । ଆଗ କୁମରବାବୁଙ୍କୁ ଡକାଇ ତାଙ୍କ ମତ କ'ଣ ପଚାରିଯାଉ । ସେ ଯଦି ହରିଗୋବିନ୍ଦବାବୁଙ୍କ ମନ ପରିବର୍ତ୍ତନ କରିବାକୁ ଚାହାଁନ୍ତି, ଆମେ ସେ ଦିଗରେ ଆଗେଇଯିବା ।"

## ସଚେତଣି

ସେଦିନ ଦେବସ୍ଥାନ ଘରର ଦୁଆରମୁହଁ ପଣ୍ଡାଆରେ ସଭା ବସିଥାଏ । ସାଧାରଣ ସଭା ନୁହେ । କାର୍ଯ୍ୟକାରୀ କମିଟି ସଭା । ସଭ୍ୟ ସଂଖ୍ୟା ଆଠ ଦଶ ଜଣରୁ ଅଧିକ ନୁହେ । ପ୍ରତ୍ୟେକ ଗାଁରୁ ଜଣେ ଜଣେ ନିର୍ବାଚିତ ପ୍ରତିନିଧି ଏହି ସଭାରେ ଉପସ୍ଥିତ ଥାନ୍ତି । ତା'ଛଡ଼ା ଦେଖଣାହାରୀ କେତେକ ମଧ୍ୟ ଥାଆନ୍ତି ।

ଏହି କମିଟିର ଜଣେ ଜଣେ ସଭ୍ୟ ଗୋଟିଏ କମ୍ବା ଦୁଇଟି ଉନ୍ନୟନମୂଳକ କାମ ସହିତ ସମ୍ପୃକ୍ତ । କିଏ ଯଦି ଗାଁର ଧାନବ୍ୟାଙ୍କ ଦାୟିତ୍ୱରେ ରହିଲାଣି ତ ଅନ୍ୟଜଣେ ରହିଲାଣି

ଝୋଟଚାଷ କି ଆଖୁଚାଷ ଦାୟିତ୍ୱରେ । କିଏ ରହିଲାଣି ରାସ୍ତା ତିଆରି ବା ଘର ତିଆରି କାମରେ ।

ପ୍ରତ୍ୟେକ ବିଭାଗରେ ଆୟ ବ୍ୟୟ ସେମାନେ ନିଜ ଅକ୍ତିଆରରେ ରଖନ୍ତି । ପ୍ରତ୍ୟେକ ଦିନ ସେମାନେ କାମ ଉପରକୁ ଆସିବେ ଓ କାମ ତଦାରଖ କରିବେ । ଆମଦାନୀଠାରୁ ବିନିମୟ ପର୍ଯ୍ୟନ୍ତ ସବୁ ଦାୟିତ୍ୱ ସେମାନଙ୍କର ।

କାହା ବିଭାଗ କେମିତି ଚାଲିଛି, ପ୍ରତି ସପ୍ତାହରେ ସନ୍ଧ୍ୟାବେଳେ ଥରେ ଦୁଇଥର ମିଟିଂ ବସି ଆଲୋଚନା ହୁଏ । ଏହାଫଳରେ ଦେବସ୍ଥାନ ଜାଣିପାରେ ସେମାନଙ୍କ କାମର ଅଗ୍ରଗତି ।

ସେଦିନ ଯେଉଁ କମିଟି ବସିଥାଏ, ସେଥିରେ ମୁଖ୍ୟ ଆଲୋଚନା ଚାଲିଥାଏ ଗାଁର ଆୟ ବ୍ୟୟ ନେଇ । କାର୍ଯ୍ୟକାରୀ ସମିତିର ସଭାପତି ନିଜେ ଦେବସ୍ଥାନ । ତା'ର ଦାୟିତ୍ୱ ହେଲା ସବୁ । ତେଣୁ ପ୍ରତି ବିଭାଗରେ କେମିତି କାର୍ଯ୍ୟ ଚାଲୁଛି, କେଉଁଠି କି ଅସୁବିଧା ହେଉଛି, ସେ ଏଠି ଆଲୋଚନା ବ୍ୟତୀତ କାମ ଉପରେ ଯାଇ ମଧ୍ୟ ତଦାରଖ କରେ ।

ଦିନେ ହିସାବ ଚାଲିଥାଏ ସଭ୍ୟମାନଙ୍କ ଭିତରେ । ସାରା ଗାଁଗୁଡ଼ିକରେ ପରିବାର ସଂଖ୍ୟା ହେଲା ୫୭୦ ଗୋଟି । ଗାଁଗୁଡ଼ିକ ଅଧୀନରେ ଧାନଜମି ଅଛି ସାତହଜାର ଏକରରୁ କିଛି ବେଶି । ଏହି ଜମିରେ ମାତ୍ର ଗୋଟିଏ ଫସଲ ହୁଏ ବର୍ଷକୁ । ସେ ହେଉଛି ଧାନ ଫସଲ । ଧାନ ଯାହା ଆମଦାନୀ ହୁଏ, ସବୁ ଘରକୁ ଯୋଗାଇଦେଲା ପରେ ବଳେ ପ୍ରାୟ ହଜାରେ କୁଇଣ୍ଟାଲ । ଏହି ଧାନକୁ ରଖିବା ପାଇଁ ତିନୋଟି ବଡ଼ ବଡ଼ ଖମାର ଅଛି । ବର୍ଷସାରା ଧାନ ଓ ଅନ୍ୟାନ୍ୟ ଚାଷ ଓ ନାନା ଉନ୍ନୟନମୂଳକ କାମ ପାଇଁ ଏହି ଧାନ ମଜୁରି ଆକାରରେ ଦିଆଯାଏ ।

ନଦୀକୂଳ ଜମିରେ ବର୍ଷସାରା ଫସଲ ହୁଏ । ନଈରେ ପାଣିଥାଏ ସବୁଦିନେ । ନଦୀଟିର ଦୁଇମୁଣ୍ଡ ଶୁଖିଲା ଥିଲେହେଁ ଗାଁ ମଝିରେ ଯେଉଁ ଦୁଇ ମାଇଲ ଯାଇଛି, ସେଥିରେ ଖରାଦିନେ ପାଣି ଥାଏ ହାରାହାରି ପାଞ୍ଚଫୁଟ । ଦୁଇପାଖ ଚାଷ ଜମିକୁ ମଡ଼ାଇବାକୁ ଯଥେଷ୍ଟ । ଏହି ଦୁଇ ପାଖରେ ହଜାରେଏକର ସରସ ଚାଷଜମି ଅଛି, ଯେଉଁଥିରେ ବହୁ ପ୍ରକାର ଅର୍ଥକରୀ ଫସଲ ଚାଷ କରାଯାଏ ।

ସେଦିନ ପ୍ରତ୍ୟେକ ସଭ୍ୟ ସେମାନଙ୍କ ଆୟବ୍ୟୟ ରିପୋର୍ଟ ପଢ଼ିଲେ । ସେଥିରୁ ଜଣାପଡ଼ିଲା ଏହି ହଜାରେ ଏକରରୁ ଗୋଟିଏ ବର୍ଷ ଭିତରେ ସେମାନଙ୍କର ଲାଭ ହୋଇଛି ଦେଢ଼ଲକ୍ଷରୁ କିଛି ଅଧିକ ଟଙ୍କା । ଏହି ଜମିରୁ ଦୁଇଶହ ଏକର ପନିପରିବା ଚାଷ, ଦୁଇଶହ ଏକର ଲେଖାଏଁ ଚିନାବାଦାମ, ସୋରିଷ, ଆଖୁ, ଝୋଟ ଓ ଧୂଆଁପତ୍ର । ପ୍ରଥମବର୍ଷ ବୋଲି ଫସଲଟା ଆଶାଜନକ ହୋଇ ନ ଥିଲା । ତେବେ ଖର୍ଚ୍ଚ ଆଦି ବାଦ୍ ଯାଇ ଯଦି ଦେଢ଼ଲକ୍ଷ ଟଙ୍କା ଲାଭ ହୁଏ, ତେବେ ଏହାକିଛି କମ୍ ବଡ଼ କୃତିତ୍ୱର କଥା ନୁହେଁ ?

ପଳପଶ୍ରବାରୁ ଅଧିକ ଲାଭ ହୋଇଥାନ୍ତା । କିନ୍ତୁ ଦେବସ୍ଥାନବାବୁଙ୍କ ନିର୍ଦ୍ଦେଶ ଅନୁସାରେ ପଳପଶ୍ରବା ଗାଁ ଲୋକଙ୍କୁ ଶସ୍ତାରେ ଦରରେ ଦିଆଯାଉ ଥିବାରୁ ଆୟ ଏତେ କମ୍ ହେଲା ।

ବଡ଼ ସୁଖର କଥା, ଯେଉଁମାନେ ଗୋଟିଏ ଗୋଟିଏ ଦାୟିତ୍ୱରେ ଅଛନ୍ତି, ସେମାନେ ବିବେକ ଲବ୍ଧ ଧନରୁ ଗୋଟିଏ ପଇସା ମଧ୍ୟ ଏପଟ ସେପଟ କରନ୍ତିନି । ସଙ୍ଗେ ସଙ୍ଗେ ଯେଉଁ ଆୟ ହୁଏ, ପୋଷ୍ଟ ଅଫିସ୍‌ର ସେଭିଙ୍ଗସ୍ ବେଙ୍କ୍‌ରେ ଜମା କରି ଦିଆଯାଏ । ଦେବସ୍ଥାନବାବୁଙ୍କର ତାଗିଦ୍ ଏହି ଅର୍ଥ ସବୁ ଅନର୍ଥର ମୂଳ । ଏହା ଯେତେ କମ୍ ସମୟ ପାଇଁ ପାଖରେ ରହିବ ସେତେ ଭଲ । ଅଧିକ ସମୟ ପାଖରେ ରହିଲେ, ଟଙ୍କା ପ୍ରତି ଅହେତୁକ ମମତା ଗୁଲ୍ ଆସିବ, ଫଳରେ ନାନା ଗୋଳମାଳ ଦେଖାଦେବ ।

ମିଟିଂରେ ଆସନ୍ତା ବର୍ଷ ପାଇଁ ଅର୍ଥକରୀ ଓ ଧାନ ଫସଲର ଅଟକଳ ହୁଏ । କେତେ ବସ୍ତା ସାର ଲାଗିବ, କେତେ ବସ୍ତା ଉନ୍ନତ ବିହନ ଲାଗିବ, କେତେ ବସ୍ତା କୀଟନାଶକ ଲାଗିବ ସବୁ ହିସାବ କରାଯାଇ ଏକ ବଜେଟ ତିଆରି ହୁଏ, ସମସ୍ତଙ୍କ ସାମନାରେ । ସମସ୍ତେ ନିଜ ନିଜ ମତାମତ ଦିଅନ୍ତି, ସେଥିପାଇଁ ବାଧ୍ୟ କରେ ଦେବସ୍ଥାନ । ତାଙ୍କର ସବୁବେଳେ ଅନୁରୋଧ, ଯାହା କହିବ ସମସ୍ତଙ୍କ ସାମନାରେ କୁହ, ପଛରେ କହିବା ଗ୍ରାମବାସୀଙ୍କ ଏକତା ପ୍ରତି ଏକ ବଡ଼ ବିପଦ ।

କାର୍ଯ୍ୟକାରୀ ସମିତି ପରେ ଗାଁମାନଙ୍କର ସବୁ ଲୋକଙ୍କୁ ନେଇ ଏକ ସାଧାରଣ ମିଟିଂ ଡକାଗଲା । ସେଥିରେ କାର୍ଯ୍ୟକାରୀ ସମିତି ଦେଇଥିବା ଆସନ୍ତା ବର୍ଷ ପାଇଁ ଆୟବ୍ୟୟ ଅଟକଳ ପେଶ୍ କରାଗଲା । ଆସନ୍ତା ବର୍ଷ ପାଇଁ କ'ଣ କ'ଣ କରାଯିବ ସମସ୍ତଙ୍କ ଆଗରେ ଠିକ୍ କରାଗଲା । ଗୋଟିଏ ବର୍ଷ ଭିତରେ ଯଦି ସାଧାରଣ ଲୋକଙ୍କର ଏତିକ ଉନ୍ନତି ହୋଇଛି, ପାଞ୍ଚ ଦଶବର୍ଷ ଭିତରେ ସେମାନଙ୍କର କେତେ ଯେ ଉନ୍ନତି ହେବ ଗାଁର ଲୋକେ ଏହି ଆଲୋଚନା ସବୁରୁ ଅନୁମାନ କରି ପାରିଲେ ।

ଯେଉଁ ଗାଁମାନଙ୍କରେ ବର୍ଷେ ତଳେ ଶତକରା ଅଶୀ ନବେଭାଗ ଲୋକ ଦିନକୁ ଦୁଇବେଳା ଖାଇବାକୁ ପାଉ ନ ଥିଲେ, ଆଜି ତ ସେମାନେ ପେଟପୁରି ଖାଇବାକୁ ପାଉଛନ୍ତି, ଏହାଠାରୁ ଅଧିକ ଉନ୍ନତି ଆଉ କ'ଣ ଆଶା କରାଯାଇପାରେ ? ଗାଁର ଏହିସବୁ ଆୟ ଦେଖି ସମସ୍ତଙ୍କ ମନ ଆନନ୍ଦ । ଏଇ ପଇସା ଏବର୍ଷ ଖର୍ଚ୍ଚ କରିପାରିଲେ, ଆସନ୍ତା ବର୍ଷକୁ ଆହୁରି ଅଧିକ ଆୟ ହେବ । ସେମାନେ ଆହୁରି ଭଲ ଭାବରେ ଚଳି ପାରିବେ ।

ଦେବସ୍ଥାନବାବୁଙ୍କ ନିର୍ଦ୍ଦେଶନାରେ ଗ୍ରାମର ଉନ୍ନୟନ ଯେମିତି ଚାଲିଛି, ସମସ୍ତେ ଦେଖି ଆନନ୍ଦ । ମିଟିଂ ଶେଷ ହୋଇ ଆସିଲାବେଳକୁ ଗୋଟିଏ ଅଶୀବର୍ଷର ବୁଢ଼ୀ କାନ୍ଦି ପକାଇ କହିଲା, "ଦେବସ୍ଥାନବାବୁ ଆମ ଗାଁର ଏହି ଯେଉଁ ଉନ୍ନତି କଲେ, ସେଥିପାଇଁ ଆମେ ଭଗବାନଙ୍କଠାରେ ପ୍ରାର୍ଥନା କରୁଛୁ, ଭଗବାନ ତାଙ୍କୁ କୋଟି ପରମାୟୁ ଦେଇଥାନ୍ତୁ ।

ଅନାଉଁ ଅନାଉଁ ଦେବସ୍ମାନବାବୁଙ୍କ ନିର୍ଦ୍ଦେଶନାରେ ଗାଁକୁ ଭଲ ଭଲ ବିହନ, ସାର, କୀଟନାଶକ ସବୁ ସହରରୁ କିଣା ହୋଇ ଆସି ଗୋଦାମ ଘରେ ଗଚ୍ଛିତ ହୋଇ ରହିଲା । ବଜାରରେ ଚଢ଼ା ଦର ଦେଖି ତୈଳବୀଜ, ଝୋଟ, ଗୁଡ଼ ବଜାରକୁ ଛଡ଼ାଗଲା । ଗାଁମାନଙ୍କରେ ଯେତୋଟି ବଳଦଗାଡ଼ି ଥିଲା, ସେସବୁ ଏହି ପଦାର୍ଥ ସବୁ ନେବା ଆଣିବାରେ ଲାଗି ପଡ଼ିଲେ ।

ଗାଁ ଗୁଡ଼ିକ ଗ୍ରାମଦାନ ସଂସ୍ଥା ଅଧୀନକୁ ଆସିବା ପୂର୍ବରୁ ଯେଉଁ ଲୋକ ଯେଉଁ ଧନ୍ଦାରେ ଥିଲେ, ସେମାନେ ସେହି ଧନ୍ଦାରେ ରହିଲେ । ଯେ ବଳଦଗାଡ଼ି ଚଳାଉଥିଲା, ସେ ବଳଦଗାଡ଼ି ଚଳାଇଲା । ଯେ ଜମି ଚଷୁଥିଲା, ସେ ଜମି ଚଷିଲା । ଯେଉଁମାନେ ପନିପରିବା ଓ ଅର୍ଥକରୀ ଫସଲ ଚାଷ କରୁଥିଲେ, ସେହିମାନେ ସେହି ଚାଷ କାମରେ ରହିଲେ ।

ଗାଁର ଜମିଚାଷ ଯେଉଁ ମାଲିକମାନେ ତଦାରଖ କରୁଥିଲେ ସେହିମାନଙ୍କୁ ସେହି ତଦାରଖ କାମରେ ରଖାଗଲା । ଗାଁ ମହାଜନମାନଙ୍କୁ ସଂସ୍ଥାର ହିସାବ କିତାବ ରଖିବା ଦାୟିତ୍ୱ ଦିଆଗଲା ।

ଗାଁର କେହି ଜଣେ କିଛି ନା କିଛି କାର୍ଯ୍ୟ କରିବାକୁ ବାଧ୍ୟ । ଗାଁର ଯେଉଁମାନେ ଚାଲାଖ ଓ ଧାଁଦୌଡ଼ି କରିବାରେ ଧୁରନ୍ଧର, ବଜାରରେ ଗାଁ ଜିନିଷର କାଟତି କେମିତି ଭଲ ହେବ ଓ ଅଧିକ ଉପାର୍ଜ୍ଜନ ହେବ ସେମାନଙ୍କୁ ସେହି ଦାୟିତ୍ୱରେ ରଖାଗଲା । ସଂସ୍ଥାର ସର୍ବମୟ କର୍ତ୍ତା ହୋଇ ରହିଲା ଦେବସ୍ମାନ । ସଂସ୍ଥା ଅଧୀନରେ ଥିବା ଆଠଟିଯାକ ଗାଁ ଗୋଟିଏ ପରିବାର ଭଳି ଚଳିବାକୁ ଲାଗିଲେ ।

ପ୍ରତ୍ୟେକ ସ୍ତରରେ ଗାଁ ଲୋକମାନଙ୍କର କାମ କରିବା ଆଗ୍ରହ ଦେଖି ଦେବସ୍ମାନ ତାଟଙ୍କା ହୁଏ । ସେ ଏହି ଗାଁ ଲୋକଙ୍କ ଆଗ୍ରହକୁ ଏହି ସଂସ୍ଥା ଅଧୀନକୁ ଆସି ନ ଥିବା ଗାଁ ଲୋକଙ୍କ ଆଗ୍ରହ ସହିତ ତୁଳନା କରି ଦେଖେ ଆକାଶ ପାତାଳ ପ୍ରଭେଦ ।

ଅନ୍ୟ ସବୁ ଗାଁରେ ପ୍ରତ୍ୟେକ ଲୋକ ନିଜ ନିଜ ସ୍ୱାର୍ଥ ସହିତ ଏତେ ଭାବରେ ଜଡ଼ିତ ଯେ, ଗାଁର ସମୂହ ଲୋକଙ୍କ ସ୍ୱାର୍ଥ କଥା ଭାବିବା ସେମାନେ ମୋଟେ ଜାଣି ନାହାନ୍ତି । ହେଲେ ଏ ଗାଁର ଲୋକମାନେ ଯେତେ ଆଗ୍ରହର ସହିତ ପ୍ରତ୍ୟେକ ସମସ୍ୟାକୁ ସମାଧାନ କରିବା ପାଇଁ ଆଗଭର, ସେସବୁ ଗାଁରେ ସେପରି ନାହିଁ ।

ସରକାରୀ ସାହାଯ୍ୟକୁ ସେ ଗାଁର ଲୋକେ ଅନାଇ ବସିଥାନ୍ତି । ଯଦି କିଛି ଆସିଲା, ତେବେ ଅଫିସର, କର୍ମଚାରୀଠାରୁ ଆରମ୍ଭ କରି ଗାଁର ମୁଖିଆ ପର୍ଯ୍ୟନ୍ତ ସମସ୍ତେ କିଛି କିଛି ଯେପରି ମାରିନେବେ ସେହି ଚେଷ୍ଟାରେ ଥାଆନ୍ତି । ପୁଣି ଏହି ଭାଗବଣ୍ଟାରୁ ନେଇ କେତେ କଳିଗୋଳ, ଟଣା ଓଟରା ଯେ ଚାଲେ, ତା'ର ଇୟତ୍ତା ନାହିଁ ।

ଗାଁରେ କିଛି ଉନ୍ନୟନ ହେଉ ବା ନ ହେଉ, ସେ ଆଡ଼କୁ କାହାରି ଦୃଷ୍ଟି ନ ଥାଏ । ଅତ୍ୟଧିକ ସ୍ୱାର୍ଥପରତା ଏଥିପାଇଁ ଦାୟୀ ବୋଲି ଦେବସ୍ମାନ ଉପଲବ୍ଧି କରେ ।

ଗାଁ ପାଇଁ ଏହି ଗ୍ରାମର ଲୋକମାନେ ଯେମିତି ଅତ୍ୟଧିକ ପରିଶ୍ରମ କରିବାକୁ ଆଗ୍ରହାନ୍ୱିତ, ସେସବୁ ଗାଁରେ ସେମିତି ମୋଟେ ନାହିଁ ।

# ଅଠେଇଶି

"କିଏ ଶୁଭ୍ରା ? ତୁମେ ହଠାତ୍ ଏଠାକୁ ଆସିଲ କେମିତି ? ତୁମେ ଜାଣିଲ କେମିତି ମୁଁ ଏଠି ଅଛି ବୋଲି ? ମୁଁ ତ ତୁମକୁ କହି ନ ଥିଲି ଏଠାକୁ ଆସିବି ବୋଲି ।"

"ସାର୍, ଆପଣ ନ କହିଲେ ମୁଁ କ'ଣ ଜାଣି ପାରିବିନି ? ଆପଣ କଲେଜ ଛାଡ଼ି କେମିତି ଏଠାକୁ ଆସିଲେ, ମୁଁ ଭଲ ଭାବରେ ଜାଣିଛି । ଆପଣ ଘର ଛାଡ଼ିବା ପୂର୍ବଦିନ ସରକାରଙ୍କ ଭିଜିଲାନ୍ସ ବିଭାଗର ଅଫିସରମାନେ ଆପଣ ଘରେ ଶୋଇଥିଲାବେଳେ ରାତି ଅଧରେ ଆସି କେମିତି ଆପଣଙ୍କ ଘର ଖାନତଲାସ କଲେ ମୁଁ କ'ଣ ଜାଣିନି ? ଏହି ଖାନତଲାସ ମୂଳରେ କିଏ ଅଛନ୍ତି, ତା ବି ଜାଣିଛି । ଆପଣ ଜାଣି ନାହାନ୍ତି ବୋଧେ, ଏହି ନାଟର ଗୋବର୍ଦ୍ଧନ କିଏ ?"

"ଏହି ଖାନତଲାସ ମୂଳରେ କିଏ ଅଛନ୍ତି ତୁମେ କ'ଣ ସତରେ ଜାଣିଛ ? ତୁମେ କ'ଣ ଯେ କହୁଛ ମୁଁ ବୁଝିପାରୁନି ଶୁଭ୍ରା ।"

"ସାର୍, କଲେଜ ଅଧ୍ୟାପକମାନଙ୍କର ଟଙ୍କା ପଇସା ଖାଇଯିବା ପ୍ରଶ୍ନ ନାହିଁ । ପାଠପଢ଼ା ହେଲା ସେମାନଙ୍କର ପ୍ରଧାନ କାମ । ସେଥିରେ ପଇସାପତ୍ର ସମ୍ପର୍କ କୁଆଡ଼ୁ ଆସିଲା ଯେ ଭିଜିଲାନ୍ସବାଲା ରାତି ଅଧରେ ସେମାନଙ୍କ ଘର ଖାନତଲାସ କରିବେ ? ଯେଉଁମାନେ ସରକାରଙ୍କ ଲକ୍ଷ ଲକ୍ଷ ଟଙ୍କା ଖାଇ ଗୋଲ ବନି ଯାଉଛନ୍ତି, ସେମାନଙ୍କ ଘର ତ ଦିନେ ଖାନତଲାସ ହେବାକୁ ନାହିଁ, ଅଥଚ ଟଙ୍କା ପଇସାଠାରୁ ଦୂରରେ ଥିବା ସରସ୍ୱତୀଙ୍କ ଉପାସକଙ୍କ ଘର ଶ୍ରେଣୀଧନ ପାଇଁ ରାତି ଅଧରେ ଖାନତଲାସ ହେଉଛି । ଏହା ମୂଳରେ କେହିଜଣେ ଥିବେ ନା, ଯିଏ ଏହାକୁ ସବୁ କରାଇଛନ୍ତି । ସେମାନଙ୍କ ବିନା ଚେଷ୍ଟାରେ କ'ଣ ଏତେବଡ଼ କାମଟାଏ ହୋଇପାରିବ ସାର୍ ?"

"ଏହା ମୂଳରେ କିଏ ଅଛନ୍ତି, ମୁଁ ତ ଜାଣିନି ? ଏହା ମୂଳରେ କେହିଜଣେ ସତରେ ଅଛିବା କଥା ନା କ'ଣ ?"

"ନ ହେଲେ ଏତେବଡ଼ କଥାଟା ହେବ କେମିତି ସାର୍ ? କଲେଜ ଅଧ୍ୟାପକମାନଙ୍କ ଘର ଭିଜିଲାନ୍ସ ବିଭାଗ ଦ୍ୱାରା କ'ଣ ଖାନତଲାସ ହେବା କଥା ? ସେମାନେ କ'ଣ ଶ୍ରେଣୀ ବେପାରି, ନା କଳାପୋତିଆ, ନା ସରକାରଙ୍କ ପଇସାଖିଆ ଡିପାର୍ଟମେଣ୍ଟର ଲୋକ ହୋଇଛନ୍ତି, ଯାହାପାଇଁ କି ସେମାନଙ୍କ ଘର ଖାନତଲାସ ହେବ ?"

"ହଁ ଶୁଭ୍ରା, ମୁଁ ବି ତ ସେଇଆ ଭାବୁଛି । ମୋ ଘର କ'ଣ ପାଇଁ ଖାନତଲ୍ଲାସ ହେଲା ମୁଁ ଜାଣିପାରୁନି ?"

"ଆପଣ ଜାଣି ନାହାନ୍ତି ସାର୍, ଏହା ମୂଳରେ କିଏ ଅଛନ୍ତି ? କିଏ ଏହିସବୁ କାମ କରାଇଛନ୍ତି ?"

କିଏ ଅଛନ୍ତି ତୁମେ ଜାଣିଛ ?" ଦେବସ୍ମାନବାବୁ ଉତ୍ସୁକ ହୋଇ ଶୁଭ୍ରା ମୁହଁକୁ ଚାହିଁ ରହିଲେ ଜାଣିବା ପାଇଁ ।"

"ଆଉ କିଏ ରହିବେ ସାର୍ ? ଆପଣଙ୍କ ପରମବନ୍ଧୁ, ଆପଣଙ୍କ ପଡ଼ୋଶୀ, ଯାହାଙ୍କୁ ଆପଣ ଯମ ମୁହଁରୁ ଟାଣି ଆଣି ତାଙ୍କ ସଧବା ସ୍ତ୍ରୀଙ୍କୁ ବିଧବା ହେବାରୁ ରକ୍ଷା କରିଥିଲେ ।"

"କିଏ, ଡକ୍ଟର ସିହ୍ନା ?"

"ହଁ ସାର୍, ତାଙ୍କ ଛଡ଼ା ଆଉ କିଏ ହେବ ?"

"ତାଙ୍କ ସହିତ ମୋର ତ କିଛି କଳିକଜିଆ, କି ମାନ ମନାନ୍ତର ନାହିଁ । ସେ ମୋ ବିରୁଦ୍ଧରେ ଯାଇ ଏସବୁ କାଣ୍ଡ କରିବେ କାହିଁକି ? ଗତବର୍ଷ ତାଙ୍କର ଯେଉଁ ହାର୍ଟ ଆଟେକ୍ ହୋଇଥିଲା, ସେଥିରେ ମୁଁ ତାଙ୍କ ପାଇଁ କେତେ ଦୌଡ଼ିଛି । ଅଥଚ ସେ—"

"ମୁଁ କ'ଣ ଜାଣିନି ସାର୍ ? ଗତବର୍ଷ ତାଙ୍କର ହାର୍ଟ ଆଟେକ୍ ବେଳେ ସେ ପୁରାପୁରି ମରି ଯାଇଥିଲେ ଜାଣ । ତାଙ୍କ ସ୍ତ୍ରୀ ପରା ବିଧବା ହୋଇ ସାରିଥିଲେ । ଆପଣ ଓ ଡାକ୍ତର ରଥ ତାଙ୍କୁ ବୋମ୍ବେ ନେଇ ଚିକିତ୍ସା କରି ପୁଣି ବଞ୍ଚାଇ ପାରିଲେ, ତା କିଏ ଜାଣିନି ? ତାଙ୍କ ଭାଇ ପରା ଜିଦ୍ ଧରିଥିଲେ ତାଙ୍କ ମୃତ ଶରୀରକୁ ବୋମ୍ବେ ନ ନେଇ ଖାନନଗର ଶ୍ମଶାନକୁ ନେବା ପାଇଁ । ଆପଣମାନେ ନ ଥିଲେ ସେ କ'ଣ ପୁନର୍ଜୀବନ ପାଇ ପୁଣି ସଂସାରକୁ ଫେରି ଆସିଥାନ୍ତେ ? ତାଙ୍କ ଭାଇ ତାଙ୍କୁ କେଉଁ ଦିନରୁ ପୋଡ଼ି ଶୁଦ୍ଧି କାମ ଶେଷ କରନ୍ତେଣି । ଆପଣ ତାଙ୍କୁ ବଞ୍ଚାଇବାର ଇଏ ହେଲା ଫଳ ।"

"ତୁମେ ଯିନା କହୁଛ ଶୁଭ୍ରା, ମୋର କିନ୍ତୁ ମୋଟେ ବିଶ୍ୱାସ ହେଉନି ? ମୁଁ ତାଙ୍କର ଏତେ ଉପକାର କରିଛି, ଅଥଚ ସିଏ ମୋତେ ଏମିତି ହୀନ ଅବସ୍ଥାକୁ ଘେନି ଆସିଲେ ? କ'ଣ ପାଇଁ ସିଏ ଏସବୁ କଲେ ମୁଁ ତ ଜାଣିପାରୁନି ଶୁଭ୍ରା ।"

"ଆପଣ ରେଭେନ୍ସା କଲେଜରେ ରହିବା ଫଳରେ ତାଙ୍କ ପାଖକୁ କେହି ଗବେଷଣା କରିବା ପାଇଁ ଗଲେନି । ସମସ୍ତେ ଆସିଲେ ଆପଣଙ୍କ ପାଖକୁ । ସେ ଗ୍ରନ୍ଥ ଗ୍ରନ୍ଥୀମାନଙ୍କୁ ଗବେଷଣାର ସୁଯୋଗ ଦେଇ ଯେଉଁ ଦୁଇ ପଇସା ରୋଜଗାର କରୁଥିଲେ, ସେତକ ବନ୍ଦ ହୋଇଗଲା । ମଦ ପାଇଁ ପଇସା ପାଇଲେନି । ସିଏ ଯେତେବେଳେ ଜାଣିଲେ ଯେ, ଆପଣ ଥିଲା ପର୍ଯ୍ୟନ୍ତ କେହି ତାଙ୍କ ପାଖକୁ ଆସିବେନି, ନିଜ ବ୍ୟବସାୟ ବୁଡ଼ିଯିବା ଉପରେ, ସେ ଏହି ଚେଷ୍ଟାରେ ଲାଗି ପଡ଼ିଲେ । ସେ ଜାଣନ୍ତି, ଆପଣ ଅଭିମାନୀ

ଲୋକ, ଆପଣଙ୍କ ନାଁରେ ଅର୍ଥ ଆତ୍ମସାତ୍ର ଅଭିଯୋଗ ଲଗାଇଦେଲେ, ଆପଣ ମନକୁମନ ଏଠୁଁ ଗୁଡ଼ି ପଳାଇଯିବେ । ତେଣୁ ସେ ସେହି ଚେଷ୍ଟାରେ ରହିଲେ ।''

''କିନ୍ତୁ ତାଙ୍କର ତ ମୋ ସହିତ ବ୍ୟବହାର ଖୁବ୍ ଭଲ । ସକାଳୁ ଉଠିଲେ ମୁହଁ ଖୁହାଁଖୁହିଁ । ସବୁବେଳେ ମୋ ସହିତ ହସଖୁସି କଥାବାର୍ତ୍ତା କରନ୍ତି । ସେ କ'ଣ ଏମିତି କରି ପାରିଲେ ?''

''ସେ ଖୁବ ଚୁପ୍ ସଇତାନ ସାର୍ । ମୁହଁରେ ଗୋଟିଏ କଥା, ପେଟରେ ଆଉ ଏକ କଥା । ଆପଣ ଜାଣି ନାହାନ୍ତି ତାଙ୍କୁ । ସେ ଉପରେ ଉପରେ ପାଣି ସିଞ୍ଚୁ, ଭିତରେ ଭିତରେ ଚେର କାଟିବାବାଲା । ସେ ଆମ ଡିପାର୍ଟମେଣ୍ଟର କେତେଜଣଙ୍କୁ ଶିଖାଇ ଆପଣଙ୍କ ବିରୁଦ୍ଧରେ ଭିଜିଲାନ୍ସ ଡିପାର୍ଟମେଣ୍ଟକୁ ଦରଖାସ୍ତ କଲେ, କ'ଣ ନା ଆପଣ ପିଲମାନଙ୍କୁ ପିଏଇଚ୍.ଡି.ର ସୁବିଧା ଦେଇ ସେମାନଙ୍କଠାରୁ ବହୁ ପରିମାଣରେ ଟଙ୍କା ପଇସା ନେଉଛନ୍ତି ବୋଲି । ସିଏ ପ୍ରକୃତରେ ଯାହା କରୁଥିଲେ, ସେଇ କୁକର୍ମଟା ଗୋଟା-ସାରା ଆପଣଙ୍କ ଉପରେ ଲଦି ଦେଲେ । ଆପଣ ଯେଉଁ କୁକାମ ସ୍ୱପ୍ନରେ ସୁଦ୍ଧା ଭାବି ନାହାନ୍ତି, ସେହି କୁକର୍ମର ନାୟକ ଆପଣ ବୋଲି ଭିଜିଲାନ୍ସ ବିଭାଗକୁ ଜଣାଇଦେଲେ ।''

ସେ ଲେଖିଦେବା ସଙ୍ଗେ ସଙ୍ଗେ କ'ଣ ଖାନତଲାସ ହୋଇଗଲା ? କେତେ ବିଭାଗର ଉପରତଳ ହୋଇ କେତେ ଲେଖାଲେଖି ପରେ ଗୁପ୍ତ ଇନ୍‌କୁଆରୀରୁ ଏହାର ସତ୍ୟାସତ୍ୟ ଜାଣିବାପରେ ଯାଇଁ ଖାନତଲାସ ଅର୍ଡ଼ର ଆସେ । କିନ୍ତୁ ଏଠି କ'ଣ ସେସବୁ ହୋଇଛି ?

''ନା ସାର୍, ଏଠି ସେସବୁ କିଛି ହୋଇନି ।''

''ତେବେ ଖାନତଲାସ ହେଲା କେମିତି ?''

''ସିଏ ବଡ଼ ବିଚିତ୍ର ଧରଣର ଖାନତଲାସ ଅର୍ଡ଼ର । ଆପଣ ମୋଟେ ଧାରଣା କରି ପାରିବେନି ଏମିତି କରିଯାଇପାରେ ବୋଲି । ଏହି ଅର୍ଡ଼ର କେମିତି ହେଲା ଜାଣିପାରିଲେ, ଡକ୍ଟର ସିହ୍ନା କେତେ ନୀଚ ପ୍ରକୃତିର ଲୋକ ଓ ନିଜ ଲକ୍ଷ୍ୟ ହାସଲ ପାଇଁ ସେ କେତେ ତଳକୁ ଖସି ଯାଇପାରନ୍ତି, ଆପଣ ଧାରଣା କରିପାରିବେ ।''

''କ'ଣ ତୁମେ କହୁଛ, ମୁଁ କିଛି ବୁଝିପାରୁନି ଶୁଭ୍ରା । ବିଚିତ୍ର ପ୍ରକାର ଅର୍ଡ଼ର ପୁଣି କ'ଣ ।''

''ହଁ ସାର୍, ଅର୍ଡ଼ରଟା ଖୁବ୍ ବିଚିତ୍ର ଧରଣର । ଆପଣଙ୍କ ଘର ଖାନତଲାସ ପାଇଁ ଉପରୁ ମୋଟେ ଅର୍ଡ଼ର ଆସିନି । ଆପଣଙ୍କ ଘର ଖାନତଲାସ ହେବ କି କଅଣ ସେ ସିଦ୍ଧାନ୍ତ ଭିଜିଲାନ୍ସ ବିଭାଗର ଉପର ସ୍ତରରେ ମୋଟେ ଆଲୋଚିତ ହୋଇନି, କରିବା ତ ଦୂରର କଥା । ଆପଣଙ୍କ ବିରୁଦ୍ଧରେ ଅଭିଯୋଗ ଏତେ ଦୁର୍ବଳ ଯେ, ଆପଣଙ୍କ ଘର ଖାନତଲାସ ହେବା କଥା ନୁହେଁ ।''

''ତେବେ ହେଲା କେମିତି ?''

"ପବ୍ଲିକ୍ ଓ୍ୱାର୍କସ୍ ଡିପାର୍ଟମେଣ୍ଟରେ ଦେବସ୍ନାନ ଦାସ ନାମ ଥିବା ଜଣେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିଅର ଅଛନ୍ତି, ଯାହାଙ୍କ ପଛରେ ଭିଜିଲାନ୍‌ସ ଡିପାର୍ଟମେଣ୍ଟ ବହୁତ ଦିନ ଧରି ଲାଗିଥିଲା । ସେ କଂଟ୍ରାକ୍ଟର ଓ ବ୍ୟବସାୟୀଙ୍କଠାରୁ ଲକ୍ଷ ଲକ୍ଷ ଟଙ୍କା ଲାଞ୍ଚ ନେଇ କେତେ କ'ଣ ଯେ ସମ୍ପତ୍ତି କରି ପାରିଛନ୍ତି, ତା'ର କଳନା ନାହିଁ । ତାଙ୍କ ନାଁରେ ଭିନ୍ନ ଭିନ୍ନ ସହରରେ କେତେ କୋଠାଘର, କେତେ ବ୍ୟବସାୟ ପ୍ରତିଷ୍ଠାନ, କେତେ ବସ୍, ଟାକ୍‌ସି, ପେଟ୍ରୋଲ ପମ୍ପ ଯେ ବେନାମୀ ଭାବରେ ଚାଲିଛି, ତା'ର ଇୟତ୍ତା ନାହିଁ । ଭିଜିଲାନ୍‌ସ ବିଭାଗ ଠିକ୍ କରିଥିଲା, ତାଙ୍କ ଘର ଖାନତଲାସ କରି ଏସବୁକୁ ଧରି ପକାଇବ । ସେଥିପାଇଁ ତାଙ୍କ ଘର ଖାନତଲାସ ପାଇଁ ଉପରୁ ଅର୍ଡ଼ର ଆସି ଯାଇଥିଲା । ଡକ୍ଟର ସିହ୍ନା କ'ଣ କଲେ ନା, ଭିଜିଲାନ୍‌ସ ବିଭାଗର କେତେଜଣ କର୍ମକର୍ତ୍ତାଙ୍କୁ ଧରି ସେହି ଖାନତଲାସ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିଅରଙ୍କ ଘରେ ନ କରି ଆପଣଙ୍କର ଠିକ୍ ସେହି ନାମ ଥିବାରୁ ଆପଣଙ୍କ ଘରେ କରାଇଦେଲେ । ଡକ୍ଟର ସିହ୍ନାଙ୍କ ଧାରଣା, ଆପଣ ତ ଅତି ଅଭିମାନୀ ଲୋକ, ଏଭଳି କାଣ୍ଡଟାଏ କରିଦେଲେ ଆପଣ ଚୁପ୍‌ଚାପ୍ କଲେଜ ଛାଡ଼ି ପଳାଇଯିବେ । ଆପଣ ଚାଲିଗଲେ ସେ ତାଙ୍କ ବ୍ୟବସାୟ ପୁରାମାତ୍ରାରେ ଆରମ୍ଭ କରିଦେବେ । ସେ ଯାହା ଯୋଜନା କରିଥିଲେ ଠିକ୍ ସେଇଆ ହେଲା । ଆପଣ ଡିପାର୍ଟମେଣ୍ଟ ଛାଡ଼ିଦେଇ ଏଠାକୁ ଚାଲି ଆସିଲେ ।"

"କିନ୍ତୁ ଭିଜିଲାନ୍‌ସବାଲା ଆସିଲାବେଳକୁ ମୁଁ ତ ରିଜାଇନ୍ କରିସାରି ଘର ଛାଡ଼ିଦେବା ଉପରେ ।"

"ସେ କ'ଣ ତାହା ଜାଣିଛନ୍ତି ? ସେ ଆପଣଙ୍କୁ ଅପମାନ ଦେଇ ବିଦା କରିବା ପାଇଁ ଏହି କାଣ୍ଡ କରିଦେଲେ । ସେଥିପାଇଁ ତାଙ୍କୁ ବହୁତ କିଛି ହାତଗୁଞ୍ଜା ଦେବାକୁ ପଡ଼ିଥିଲା ସାର୍ ।"

"ତୁମେ ଏତେକଥା ଜାଣିଲ କେମିତି ଶୁଭ୍ରା ? କାହିଁ ମୁଁ ତ କିଛି ଏସବୁ ଜାଣିନି । ମୁଁ ଦେଖୁଛି, ତୁମେ ପ୍ରକୃତରେ ମୋ ଗୁରୁ ହେବା ଯୋଗ୍ୟ । ମୁଁ ତୁମ ଗୁରୁ ହେବା କଥା ନୁହେଁ ।"

"ଏ ଭିତର କଥା ମୁଁ କ'ଣ ଜାଣିପାରିଥାନ୍ତି ସାର୍ ? ବାପା ଏହାକୁ ଲୋକ ଲଗାଇ ବାହାର କଲେ । ସେ ଜାଣନ୍ତି, ଆପଣ ଅତି ସଚ୍ଚୋଟ ଲୋକ । ଆପଣଙ୍କ ନାଁରେ ଏତେବଡ଼ ଦୁର୍ନାମ କେଉଁଠୁ ଆସିଲା, ଏହାର ଭିତର ରହସ୍ୟ ଜାଣିବା ପାଇଁ ସେ ଲୋକ ଲଗାଇ ଏହାର ଅସଲ କଥା ବାହାର କଲେ । ମୁଁ ବାପାଙ୍କଠାରୁ ଏକଥା ଶୁଣି ଆପଣଙ୍କୁ କହୁଛି । ରେଭେନ୍‌ସା କଲେଜରେ ଅଧ୍ୟାପକ ଅଧ୍ୟାପକମାନଙ୍କ ଭିତରେ ଏଭଳି ହୀନକାର୍ଯ୍ୟ ଚାଲିଛି ବୋଲି ଶୁଣି ବାପା ଭାରି ଦୁଃଖ କରୁଥିଲେ । ଆପଣ ରେଭେନ୍‌ସା କଲେଜ ଛାଡ଼ିବାରେ ସେ ଭାରି ଦୁଃଖୀ । ସେ ଦିନେ ବୋଉକୁ କହୁଥିଲେ, ରେଭେନ୍‌ସା କଲେଜ ନଷ୍ଟ ହୋଇଗଲା ପ୍ରତିମା । ରେଭେନ୍‌ସା କଲେଜ ଆମ ରାଜ୍ୟର ସର୍ବଶ୍ରେଷ୍ଠ ଶିକ୍ଷାନୁଷ୍ଠାନ

ଭାବରେ ଯେଉଁ ଗୌରବ ଅର୍ଜନ କରିଥିଲା, ଡକ୍ଟର ଦାସ ଚାଲିଗଲା ପରେ ସେହି ଗୌରବ ଟିକକ ତାଙ୍କ ସହିତ ଏଠୁ ଚାଲିଗଲା ଜାଣ । ଆଉ ରେଭେନ୍‌ସା କଲେଜ ପୂର୍ବ ଗୌରବ ଫେରି ପାଇବନି । ଶୁଭ୍ରାର ଥିସିସ୍ କ'ଣ ହେବ କେଜାଣି ? ଡକ୍ଟର ଦାସ ତ ଯାଇ ଗୋବିନ୍ଦପୁରର ଗ୍ରାମଦାନ ସଂସ୍ଥା ସହିତ ସାମିଲ ହୋଇ ସେ ମୋଫସଲ ଅଞ୍ଚଳରେ ରହିଲେଣି । ଶୁଭ୍ରାର କାମକୁ କ'ଣ ସେ ଆଉ ତଦାରଖ କରିପାରିବେ ଯେ, ଶୁଭ୍ରାର କାମ ଶେଷ ହେବ ?''

"ଶୁଭ୍ରାର କାମ ପରା କ'ଣ ସରିଗଲାଣି ? ସେ କ'ଣ ସେଦିନ କହୁଥିଲା, ଏବେ ଥିସିସ୍ ଲେଖାଲେଖି ଆରମ୍ଭ କରିବ ବୋଲି ।'' ପ୍ରତିମା ଦେବୀ କହିଲେ ।

"ଆଁ, ସରି ଯାଇଛି ? ଭଲ ହୋଇଛି । ଡକ୍ଟର ଦାସ ରେଭେନ୍‌ସା କଲେଜ ଛାଡ଼ି ଦେଇଗଲେ ଝିଅର କିଛି କ୍ଷତି ହେବନି । ସେଠି ବର୍ତ୍ତମାନ ଯେଉଁ ସ୍ଥାନ ଖାଲିପଡ଼ି ରହିଛି, ତାଙ୍କଭଳି ଦେବପ୍ରତିମ ଲୋକ ସେଠି ସମ୍ମାନର ସହିତ ତିଷ୍ଠିପାରି ନ ଥାନ୍ତେ ।''

"ହେଉ, ମୁଁ ତ ଆସିଲି ଆସିଲି, ତୁମେ ହଠାତ୍ କୁଆଡ଼େ ଚାଲି ଆସିଲ ଶୁଣେ । ତୁମ ଥିସିସ୍ ଲେଖା ସରିଲାଣି ନା ନାହିଁ ?''

"ହଁ ସାର୍, ଲେଖା ସରିଲାଣି ।''

"ଏତେ ଡେରି ହେଲା କାହିଁକି ? ତୁମ କାମ ତ ମୁଁ ଆସିଲାବେଳକୁ ସରି ଯାଇଥିଲା । ତୁମ କାମ ନ ସରିଲା ପର୍ଯ୍ୟନ୍ତ ମୁଁ ତ ଶଜାଇନି କରୁ ନ ଥିଲି ।''

"ହଁ ସାର୍, ସରି ଯାଇଥିଲା । ତେବେ କେତୋଟା ରେଜଲ୍ଟ ମୋତେ ଚେକ୍ କରିବାକୁ ପଡ଼ିଲା । ସେଥିପାଇଁ ଏତେ ଡେରି ହୋଇଗଲା । ଚେକ୍ କଲାବେଳେ ମୋତେ ଡକ୍ଟର ସିହ୍ନା କ'ଣ କମ୍ ହଇରାଣ କରିଛନ୍ତି ସାର୍ ?''

"ଆଁ, ହଇରାଣ କଲେ ?''

"ହଁ ସାର୍, ଆପଣ ନ ଥିବାରୁ ମୋତେ କେମିକେଲ ଦେବାକୁ ଷ୍ଟୋରକୁ ମନା କରିଦେଲେ । ବାପା ଏ କଥା ଜାଣି କଲକତା, ବୋମ୍ବେ ଲୋକ ପଠାଇ ମୋର ଆବଶ୍ୟକ ସବୁ କେମିକେଲ ମଗାଇ ଆଣିଦେଲେ । ସେଥିପାଇଁ ଡେରି ହୋଇଗଲା । ଡକ୍ଟର ସିହ୍ନା ତ ଆଗରୁ ମୋ ଉପରେ ରାଗ ରଖିଥିଲେ, ଆପଣ ଚାଲି ଆସିଲାପରେ ସେ ରାଗତକ ଭଲ ଭାବରେ ଶୁଝାଇ ନେଲେ ।''

"ଆଁ, ଡକ୍ଟର ସିହ୍ନା ଏତେ ନୀଚ ଧରଣର ଲୋକ ବୋଲି ମୁଁ ଜାଣି ନ ଥିଲି ଶୁଭ୍ରା । ତୁମେ ତୁମ ଥିସିସ୍ କ'ଣ ସଙ୍ଗରେ ଆଣିଛ ?''

"ହଁ ସାର୍, ଆଣିଛି ।''

"ହେଉ, ତେବେ ଦେଇଯାଅ । ମୁଁ ଦେଖି ସଂଶୋଧନ କରି ରଖିଥିବି । ତୁମେ ଠିକ୍ ସପ୍ତାହକ ପରେ ଲୋକ ପଠାଇ ନେଇଯିବ ।''

"ନା ସାର୍, ମୁଁ ନିଜେ ଆସିବି । ଅନ୍ୟ କାହାକୁ ପଠାଇବିନି । ଆପଣ ଦେଖିସାରି ରଖିଥିବେ । ମୁଁ ଏଠି ଆପଣଙ୍କର ଯେଉଁ କାର୍ଯ୍ୟବ୍ୟସ୍ତତା ଦେଖୁଛି, ସେଥିରେ କ'ଣ ଆପଣ ବେଳ ପାଇବେ ମୋ ଥିସିସ୍ ଦେଖିବାକୁ ?"

"ତୁମେ କ'ଣ ଯେ କହୁଛ ମୁଁ ବୁଝିପାରୁନି ଶୁଭ୍ରା ? ମୁଁ ବେଳ ପାଇବିନି ତୁମ ଥିସିସ୍ ଦେଖିବାକୁ ? ମୁଁ ଏଠି ଖୁବ୍ କାର୍ଯ୍ୟବ୍ୟସ୍ତ ସତ, ହେଲେ ତୁମ ଥିସିସ୍ ପାଇଁ କ'ଣ ବେଳ ମିଳିବନି ? ତୁମେ ଗତ ଚାରିବର୍ଷ ଧରି କେତେ ଝାଳବାଳ ବୁହାଇ କାମ କରିଛ, ମୁଁ ସେତକ ଦେଖି ଦେବାକୁ ବେଳ ପାଇବିନି ବୋଲି ଭାବୁଛ କାହିଁକି ? ମୁଁ ଅନ୍ୟ ସବୁ କାମକୁ ପଛରେ ପକାଇ ଆଗ ତୁମ କାମ ଶେଷ କରିବି ।"

"ଆପଣ ମୋ ପାଇଁ ଏତେ ବ୍ୟସ୍ତ ହେବେନି ସାର୍ । ଏଠି ଆପଣ ଜନତାର ଯେଉଁ ସେବାରେ ଲାଗିଛନ୍ତି, ତା ଆଗରେ ମୋ ଥିସିସ୍ କିଛି ନୁହେଁ ସାର୍ ।"

"ଯେତେହେଲେବି ତୁମ କାମ କ'ଣ ଡେରି ହେବ ?"

"ଆପଣ ଏଠି ଲୋକମାନଙ୍କ ସହଯୋଗ କେମିତି ପାଉଛନ୍ତି ସାର୍ ? ଆମ ଲୋକେ ତ ଅଜ୍ଞ, ସେମାନେ ଆପଣଙ୍କ ଆଦର୍ଶକୁ ଠିକ୍ ରୂପେ ବୁଝିପାରିଲେ ସିନା ସହଯୋଗ କରିବେ ?"

"ତୁମେ ଜାଣିନି ଶୁଭ୍ରା, ଏଠାକାର ଲୋକେ ମୂର୍ଖ ସତ, କିନ୍ତୁ ସେମାନଙ୍କ ସହଯୋଗ ଏ କାମରେ ଏତେ ବେଶି ଯେ, ତୁମେ ଧାରଣା କରି ପାରିବନି ।"

"ତୁମେ ଜାଣିଛ ଶୁଭ୍ରା, ଗାଁରେ ଗୃହବାସଠାରୁ ଆରମ୍ଭ କରି ଉନ୍ନୟନ କାର୍ଯ୍ୟ ପର୍ଯ୍ୟନ୍ତ ସବୁଠାରେ ଲୋକେ ଅଟକଳଠାରୁ କମ୍ ସମୟ ଭିତରେ କାମ ଶେଷ କରନ୍ତି । ଅନ୍ୟ ଗାଁମାନଙ୍କରେ ଶ୍ରମିକମାନେ ଯେମିତି ଘଣ୍ଟା କଣ୍ଟାକୁ ଧରି କାମ କରନ୍ତି, ଏଠି ତା ନାହିଁ । ସେମାନେ କାମ ପାଇଁ ଏତେ ଆଗ୍ରହର ସହିତ ଲାଗିପଡ଼ନ୍ତି ଯେ ଘଣ୍ଟା କଣ୍ଟା ସହିତ ସେମାନଙ୍କର ସମ୍ପର୍କ ନ ଥାଏ । କାମ କେମିତି ଶେଷ ହେବ ସେମାନଙ୍କ ଝୁଙ୍କ୍ । ସେମାନେ ଜାଣନ୍ତି, ଏ ତ ଆଉ କାହା କାମ ନୁହେଁ, ସେମାନଙ୍କ ନିଜ କାମ । ଏଥିପାଇଁ ଘଣ୍ଟା କଣ୍ଟା କ'ଣ ଦେଖିବେ ?

ମୁଁ ଭାବେ ଶୁଭ୍ରା, ଏଭଳି ମନୋବୃତ୍ତି ଲୋକଙ୍କଠାରେ ଆସିବା କମ୍ ବଡ଼ କଥା ନୁହେଁ । ମନ ଥିଲେ ଅର୍ଥ ଆସେ ବୋଲି ଯେଉଁ କଥା ଆମର ଅଛି, ତାହା ଏହିଭଳି ଲୋକଙ୍କ ପାଇଁ ଜାଣ ।

ଲୋକଙ୍କର କାମ କରିବା ଆଗ୍ରହ ଦେଖି ମୁଁ ବଡ଼ ଖୁସି ହୋଇଯାଏ ଶୁଭ୍ରା ଓ ନିଜେ ଅଧିକ ଖଟିବା ପାଇଁ ମନରେ ପ୍ରେରଣା ଆସେ । ମୁଁ ଯେତେବେଳେ ଏଠି କାମ ଆରମ୍ଭ କଲି, ଆଶା କରି ନ ଥିଲି ଲୋକଙ୍କଠାରୁ ଏତେ ସାହାଯ୍ୟ ସହଯୋଗ ପାଇବି ବୋଲି ଓ ଲୋକେ ଏତେ ଆଗ୍ରହରେ ମୋ ସହିତ ସହଯୋଗ କରି ସବୁ କାମରେ

ମାତସିବେ ଏ ଧାରଣା ମୋର ନ ଥିଲା ଶୁଭ୍ରା । ଯେଉଁ କାମ ଆରମ୍ଭ କଲେ, ତାହା ଏତେଶୀଘ୍ର ସମ୍ପୂର୍ଣ୍ଣ ହୋଇଯିବ ବୋଲି ମୁଁ କେବେ ଆଶା କରି ନ ଥାଏ ।

"ଏହା ଭାରି ଶୁଭ ଖବର ସାର୍ ।" ମୁଁ ଜାଣେ, ଆପଣ ଯେଉଁଠି ଶୁଭ୍ରା କହିଲା, ଲାଗିବେ, ଲୋକଙ୍କ ଆଗ୍ରହ ଏତେ ବଢ଼ାଇ ଦେବେ ଯେ, ସେମାନେ କାମ ନ କରି ରହି ପାରିବେନି ।"

"ଆହୁରି ଆଶ୍ଚର୍ଯ୍ୟ ଶୁଭ୍ରା, ଦିନକୁଦିନ ଲୋକଙ୍କର ଆଗ୍ରହ ଓ ଅଧିକ ଅଧିକ କାମ କରିବା ସ୍ପୃହା ବଢି ଚାଲିଛି । ପୁରୁଷମାନେ ଯାହା ଖଟୁଛନ୍ତି, ସ୍ତ୍ରୀମାନେ ବି କମ୍ ଖଟୁ ନାହାନ୍ତି । ତା'ଛଡ଼ା ଖଟିବା ସହିତ ସେମାନେ ଚାହାନ୍ତି, ତାଙ୍କ ପିଲାମାନେ ମୂର୍ଖ ନ ରହି ପାଠ ପଢ଼ନ୍ତୁ । ବର୍ଷକ ପୂର୍ବେ ସେମାନେ ସେମାନଙ୍କ ପିଲାମାନଙ୍କୁ ସ୍କୁଲକୁ ପଠାଉ ନ ଥିବାରୁ ସ୍କୁଲ ଭାଙ୍ଗି ଯାଉଥିଲା । ଆଜିକାଲି ସ୍କୁଲରେ ପଢ଼ିବା ପାଇଁ ଏତେ ଭିଡ଼ ଯେ ମୋର ଏହା ଏକ ପ୍ରଧାନ ଚିନ୍ତାର ବିଷୟ ହୋଇ ପଡ଼ିଛି ।

ଗ୍ରାମଦାନ ସଂସ୍ଥା ଆରମ୍ଭ ଭିତରେ ଗୋଟିଏ ସ୍କୁଲ ବଢ଼ି ବଢ଼ି ଦୁଇଟି ସ୍କୁଲରେ ପରିଣତ ହୋଇଛି । ତଥାପି ଛାତ୍ର ସଂଖ୍ୟା ସମ୍ଭାଳି ହେଉନି ।

ଦିନେ ମୁଁ କାର୍ଯ୍ୟକାରୀ ସମିତିରେ ଯୋଜନା ବାଢିଲି ଗୋଟିଏ ସ୍କୁଲ କରିବାପାଇଁ ଓ ଗୋବିନ୍ଦପୁର ସ୍କୁଲଟିକୁ ମାଇନର ସ୍କୁଲରେ ପରିଣତ କରିବା ପାଇଁ । ତା ପାଇଁ ଅର୍ଥ କେଉଁଠୁ ଆସିବ, କାମ କେମିତି ହେବ ସ୍କୁଲ ବିଭାଗର ଇନ୍‌ସପେକ୍ଟରଙ୍କ ସହିତ ପରାମର୍ଶ କରିବାକୁ ମୁଁ କଟକ ଗଲି । ସେବର୍ଷ ଶିକ୍ଷା ବିଭାଗରେ ଖର୍ଚ୍ଚ କାଟ୍ । ଅଧିକ ସ୍କୁଲ ବସାଇବା ପାଇଁ ଇନ୍‌ସପେକ୍ଟର ଅକ୍ଷମତା ପ୍ରକାଶ କଲେ । ତେବେ ଗ୍ରାମବାସୀମାନେ ଯଦି ସ୍କୁଲ ପାଇଁ ନୂତନ ଘର ତୋଳି ଦେବେ, ତେବେ ସରକାର ଶିକ୍ଷକ ଦେବାକୁ ପଛାଇବେନି ବୋଲି କହିଲେ ।

ମୁଁ ଇନ୍‌ସପେକ୍ଟରଙ୍କ ଏହି ମତରେ ରାଜି ହୋଇଗଲି ଶୁଭ୍ରା । ଆମ ଗ୍ରାମଦାନ ସଂସ୍ଥା ସ୍କୁଲଘର ପୁରାପୁରି ନିଜ ଖର୍ଚ୍ଚରେ ତିଆରି କରିଦେବ ବୋଲି ଜବାବ ଦେଇ ଆସିଲି । ସ୍କୁଲଘର ତିଆରି ସରିଲେ ଇନ୍‌ସପେକ୍ଟର ଶିକ୍ଷକ ଯୋଗାଇଦେବା ଦାୟିତ୍ୱ ନେଲେ ଓ ସ୍କୁଲ ଖୋଲିବାର ଅନୁମତି ଦେବାକଥା ସ୍ଥିର ହେଲା ।

ଗାଁକୁ ଫେରିଆସି କାର୍ଯ୍ୟକାରୀ ସମିତିରେ ଯେତେବେଳେ ସ୍କୁଲ ଘର ତିଆରି କରିବା ପ୍ରସ୍ତାବ ଦେଲି, ଦୁଇଟି ସ୍କୁଲ ଘର ତିଆରିର ଖର୍ଚ୍ଚ ବହନ କରିବା ସଂସ୍ଥା ପକ୍ଷରେ ସମ୍ଭବ କି ନୁହେଁ ଆଲୋଚନା ପଡ଼ିଲା ।

ଏଥିପୂର୍ବରୁ ନିର୍ଦ୍ଧାରିତ ହୋଇ ଯାଇଥାଏ ଯେ, ଚଳିତବର୍ଷଠାରୁ ଚାଷ ପାଇଁ ବ୍ୟବହୃତ ହେଉଥିବା ପୁରୁଣା ଲଙ୍ଗଳର ବ୍ୟବହାର ବନ୍ଦ କରାହୋଇ ବୈଜ୍ଞାନିକ ରୀତିରେ ତିଆରି ଭଲ ଚଷି ପାରୁଥିବା ଲଙ୍ଗଳ ବ୍ୟବହୃତ ହେବ । ଏଥିପାଇଁ ସଂସ୍ଥାକୁ ଖରଚ କରିବାକୁ ପଡ଼ିବ ଅଠାବନ ହଜାର ଟଙ୍କା ।

ଦୁଇଟି ସ୍କୁଲ ଘର ଛାଆଣ କରିବାକୁ ହେଲେ ଗ୍ରାମବାସୀମାନଙ୍କର ଶ୍ରମ ବାଦ୍ ଯାଇ ପାଞ୍ଚିଏ ହଜାର ଟଙ୍କାରୁ କମ୍ ଲାଗିବନି । ସେମାନଙ୍କ ବଜେଟରେ ସେମିତି କିଛି ଟଙ୍କା ବଳନି, ଯେଉଁଥିରୁ ସେମାନେ ଏ କାମ ବାଦ୍ ସ୍କୁଲ ଘର ଦୁଇଟି ଛାଆଣ କରି ପାରିବେ ।

ତେଣୁ ଚନ୍ଦ୍ରା ପଡ଼ିଲା କରାଯିବ କଅଣ ? ଏଣେ ଯଦି ସ୍କୁଲଘର ଛାଆଣ କରା ନ ଯାଉଛି, ପିଲାମାନଙ୍କ ପଢ଼ାପଢ଼ିରେ ଅସୁବିଧା ହେବ । ପାଠ ପଢ଼ିବା ପାଇଁ ସେମାନଙ୍କ ଭିତରେ ଯେଉଁ ଆଗ୍ରହ ଓ ଅଦମ୍ୟ ଉତ୍ସାହ ଦେଖାଦେଇଛି ତାହା ମଉଳି ପଡ଼ିବ ।

ଏହି ପରିସ୍ଥିତିରେ କ'ଣ କରାଯିବ, ବଡ଼ ଅଡୁଆରେ ପଡ଼ିଲା କାର୍ଯ୍ୟକାରୀ କମିଟି । ସଦସ୍ୟମାନଙ୍କ ମୁଣ୍ଡରେ ପଶିଲାନି, ବର୍ତ୍ତମାନ କ'ଣ କରାଯିବ ? ସମସ୍ତେ ମୋ ମତାମତକୁ ଅନାଇ ରହିଲେ ।

ମୁଁ ବି ଏମିତି ଏକ ଦୋଦୁଲ୍ୟମାନ ଅବସ୍ଥାରେ ପଡ଼ି ଯାଇଥାଏ ଶୁଭ୍ରା ଯେ ଭାବିପାରୁ ନ ଥାଏ କ'ଣ କରାଯାଇ ପାରିବ । ବନ୍ଧୁ ଚନ୍ଦ୍ରାକର କହିଲା, "ଏବର୍ଷ ପାଇଁ ନୂଆ ଲଙ୍ଗଳ କିଣା ବନ୍ଦ ରଖାଯାଉ । ଆସନ୍ତାବର୍ଷକୁ ନୂଆ ଲଙ୍ଗଳ କିଣିବା । ପୁରୁଣା ଲଙ୍ଗଳରେ ଏ ବର୍ଷର କୃଷି କରାଯାଉ ।"

ମେମ୍ବରମାନେ ଟିକିଏ ଗୁଁ ଘୁଁ ହେଲେ । ସେମାନଙ୍କ ମତ ନୂଆ ଲଙ୍ଗଳ ବ୍ୟବହାର କଲେ ଭଲ ଫସଲ ହେବ । ଭଲ ଫସଲ ହେଲେ ଗାଁର ଅଧିକ ଆୟ ହେବ । ତେଣୁ ସେ ପରିସ୍ଥିତିରେ ଏହାକୁ ବନ୍ଦ କରିଦେବା ଉଚିତ ହେବନି । ବରଂ ସ୍କୁଲଘର ଛାଆଣ ବର୍ଷଟାଏ ଗଡ଼ାଇଦେଲେ ବିଶେଷ କିଛି କ୍ଷତି ହେବନି ।

ଯୁକ୍ତି ବାଢ଼ିଲି, "ପିଲାମାନଙ୍କର ଯେଉଁ ଉତ୍ସାହ ପାଠ ପଢ଼ିବା ପାଇଁ ଦେଖା-ଦେଇଛି ତାହା ଆମ ଗାଁ ପାଇଁ ଅତ୍ୟନ୍ତ ମଙ୍ଗଳପ୍ରଦ । ତେଣୁ ସେମାନଙ୍କ ଆଗ୍ରହକୁ ଭାଙ୍ଗିଦେବା ଉଚିତ୍ ହେବନି । ନୂଆ ଲଙ୍ଗଳ ପାଇଁ ଗୋଟିଏ ବର୍ଷ ଅପେକ୍ଷା କରିଗଲେ କିଛି କ୍ଷତି ନାହିଁ । କିନ୍ତୁ ପିଲାମାନେ ଯଦି ଗୋଟିଏ ବର୍ଷ ମୂର୍ଖ ରହିଯାନ୍ତି, ତେବେ ଏହା ଆମ ଗାଁ ପିଲାମାନଙ୍କ ଭବିଷ୍ୟତ ପାଇଁ କମ୍ ଅମଙ୍ଗଳସୂଚକ ହେବନି ।"

"ସାର୍, ମୁଁ ଗୋଟାଏ ଅନୁରୋଧ ଜଣାଇବି, ଆପଣ ରଖିବେ ?"

"କ'ଣ ଅନୁରୋଧ କରିବ ?"

"ମୁଁ ବାପାଙ୍କୁ କହିଲେ, ସେ ସ୍କୁଲଘର ଛାଆଣ ପାଇଁ ପାଞ୍ଚିଏହଜାର ଟଙ୍କା ଦେଇଦେବେ । ସେ ତ ଓଡ଼ିଶାର ବିଭିନ୍ନ ଅନୁଷ୍ଠାନକୁ ନାନା ଦାନ କରୁଛନ୍ତି । ଆପଣଙ୍କ ସ୍କୁଲଘର ପାଇଁ ଅମଙ୍ଗ ହେବେନି । ଏହାଫଳରେ ଆପଣଙ୍କ ସ୍କୁଲ ଘର ଛାଆଣ ହୋଇଯିବ, ତେଣେ ନୂଆ ଲଙ୍ଗଳ ବି କିଣା ହୋଇଯିବ, କିଛି ଅସୁବିଧା ହେବନି ।"

"ନା ଶୁଭ୍ରା, ଅନ୍ୟଠାରୁ ସାହାଯ୍ୟ ନେବା ଆମ ଆଦର୍ଶ ନୁହେଁ । ଆମେ ଯାହା କରିବୁ, ନିଜେ କରିବୁ । ଯାହାହେଉ, ତୁମର ଆମ ସଂସ୍ଥା ପ୍ରତି ଯେ ସଦିଚ୍ଛା ଅଛି, ସେତିକି ଯଥେଷ୍ଟ ।"

ମୋର ଏହିଭଳି ଯୁକ୍ତି ବଳରେ କାର୍ଯ୍ୟକାରୀ ସମିତିର ମତ ବଦଳିଲା । ନୂଆ ଲଙ୍ଗଳ କିଣିବା ପାଇଁ ବ୍ୟୟବରାଦ ହୋଇଥିବା ଟଙ୍କାକୁ ଶେଷରେ ସ୍କୁଲଘର ତିଆରିରେ ବ୍ୟୟ କରାଗଲା । ସ୍କୁଲରେ ଯାଗା ଅଭାବରୁ ଯେଉଁ ପିଲାମାନେ ପାଠ ପଢି ପାରୁ ନ ଥିଲେ, ନୂଆ ସ୍କୁଲ ହେବାରୁ ସେମାନଙ୍କ ଆନନ୍ଦର ସୀମା ରହିଲାନି ।

ଧୀରେ ଧୀରେ ଗାଁ ଲୋକଙ୍କ ଅବସ୍ଥା ଏହିଭଳି ଭାବରେ ଭଲ ଆଡ଼କୁ ଗଲିଲା । ଗ୍ରାମଦାନ ସଂସ୍ଥା ହାତରେ ଦିନକୁଦିନ ଅଧିକ ଆର୍ଥିକ ସମ୍ବଳ ଆସିବାରୁ ଗାଁର ଶ୍ରମିକମାନଙ୍କୁ ଆଉ ପୂର୍ବଭଳି ଧାନ ଆକାରରେ ମଜୁରି ଦିଆ ନ ଯାଇ ଟଙ୍କା ଆକାରରେ ଦିଆଗଲା । ଟଙ୍କା ଆକାରରେ ଦେବା ଫଳରେ ସୁବିଧା ହେଲା, ସେମାନେ ଏହି ପଇସାରେ ଡାଲି, ତେଲ, ମସଲା, ପନିପରିବା କିଣିବା ସଙ୍ଗେ ସଙ୍ଗେ ନିଜର ନିତ୍ୟ ବ୍ୟବହାର୍ଯ୍ୟ ଅନ୍ୟାନ୍ୟ ପଦାର୍ଥ ମଧ୍ୟ କିଣି ପାରିଲେ ।

ଲୋକମାନଙ୍କୁ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ଯେମିତି ସୁବିଧାରେ ଯୋଗାଯିବ ଆମ ସଂସ୍ଥା ତରଫରୁ ଦୁଇ ଗୋଟିଏ ସୁଲଭ ଦୋକାନ ବସାଗଲା । ସେମାନେ ଭଲ ଭଲ ଜିନିଷ ବାହାର ଦୋକାନଠାରୁ ଶସ୍ତାରେ ଦେଲେ । ଯେହେତୁ ଗ୍ରାମଦାନ ସଂସ୍ଥା ପ୍ରତ୍ୟେକ ଲୋକଙ୍କୁ ଖାଇବା ପାଇଁ ଧାନ ଯୋଗାଇ ଦେଉଛି, ବର୍ତ୍ତମାନ ଏହି ଯେଉଁ ଦୈନିକ ମଜୁରି ଦିଆଯାଉଛି, ତାହା ଅନ୍ୟ ଗ୍ରାମର ମଜୁରିଠାରୁ କମ୍ । ଗାଁର ସମ୍ବଳ ଦେଖି ଦୈନିକ ମଜୁରି କେତେ ହେବ ଠିକ୍ କରାଯାଏ ।

"ଅନ୍ୟମାନଙ୍କଠାରୁ ମଜୁରି କମ୍ ବୋଲି ଲୋକେ କ'ଣ ପାଟି କରନ୍ତିନି ସାର୍ ?"

"ନା, ଲୋକେ କେବେ ପାଟି ଫିଟାନ୍ତି ନାହିଁ । କହନ୍ତି ନାହିଁ ସେମାନଙ୍କ ମଜୁରି କେତେ ହେବା ଦରକାର । ସେମାନେ ଜାଣନ୍ତି, ସେମାନେ ତ ଅନ୍ୟ କାହା ପାଇଁ କାମ କରୁ ନାହାନ୍ତି, ସେମାନେ ଯାହା କରୁଛନ୍ତି ନିଜ ପାଇଁ । ତେଣୁ ସଂସ୍ଥା ଯେଉଁ ମଜୁରି ଦେଉଛି, ସେତିକି ଢେର୍ । ନିଜ ଗାଁ । ପଇସା ନିଜେ ନେବା କଥା । ତା'ଛଡ଼ା ଯାହା ମଜୁରି ପାଉଛନ୍ତି, ନିଜ ଚଳିବା ପାଇଁ ତ କମ୍ ହେଉନି । ତା ବାଦ୍ ସଂସ୍ଥା ତ ବର୍ଷସାରା ଚଳିବା ପାଇଁ ଧାନ ଦେଉଛି । ଅସନ୍ତୋଷ କାହିଁକି ?"

"ଆପଣ ଏଠି ଯାହା କରୁଛନ୍ତି, ତାହା ଅନନ୍ୟ ସାଧାରଣ ସାର୍ । ଆଉ ଯାହା-ହେଉ ପଛକେ, ଆପଣ ଲୋକମାନଙ୍କର ଯେଉଁ ଆତ୍ମବିଶ୍ୱାସ ବଢ଼ାଉଛନ୍ତି, ତାହାହେଲା ସବୁଠାରୁ ବଡ଼ କଥା । ଅନ୍ୟମାନଙ୍କଠାରୁ ସାହାଯ୍ୟ ନ ନେଇ ନିଜେ ସବୁ କରିବା କମ୍ ବଡ଼ ସାହସର କଥା ନୁହେଁ । ଆପଣଙ୍କର ଏହି କାମ ଚିର ନମସ୍ୟ ସାର୍ ।"

# ଅଣତିରିଶ

ଗ୍ରାମଦାନ ସଂସ୍ଥା ସାହାଯ୍ୟରେ ଗୋବିନ୍ଦପୁର ଓ ତା ଆଖପାଖ ଗାଁର ଯେଉଁ ଅଭୂତପୂର୍ବ ଉନ୍ନତି ହୋଇଛି, ତା'ର ଭୂରି ଭୂରି ପ୍ରଶଂସା ଶୁଣିଥିଲେ ନୂଆ ବି.ଡି.ଓ. । ଲୋକମାନଙ୍କୁ ଭୟ କରି ଗ୍ରାମସେବକ କି ଗ୍ରାମସେବିକାମାନେ ଏହି ଗାଁ ଭିତରକୁ ପଶନ୍ତିନି । ସେମାନଙ୍କ ପୂର୍ବ କିସ୍ମାକଳାପ ଗ୍ରାମବାସୀମାନଙ୍କ ପାଖରେ ସେମାନଙ୍କୁ ଅବିଶ୍ୱାସୀ କରାଇ ଠିଆ କରାଇଛି । ପୂର୍ବ ବି.ଡି.ଓ. ବଦଳି ହେଲା ପର୍ଯ୍ୟନ୍ତ ଏ ଗାଁକୁ କେବେ ସେମାନେ ଭୁଲରେ ବି ଆସି ନାହାନ୍ତି ।

ଏହି ନୂଆ ବି.ଡି.ଓ. ପୂର୍ବ ବି.ଡି.ଓ.ଙ୍କର ବିପରୀତ । ଇଏ ଗ୍ରାମବାସୀମାନଙ୍କୁ ସବୁ ପ୍ରକାର ସାହାଯ୍ୟ ସହାନୁଭୂତି ଦେବାପାଇଁ ପ୍ରସ୍ତୁତ । ସରକାରଙ୍କ ନୂତନ ନୀତି ଅନୁଯାୟୀ ଦେଶରେ ଅଧିକ ଦୁଗ୍ଧ ଓ ମାଂସ ଉତ୍ପାଦନ ପାଇଁ ଗ୍ରାମବାସୀମାନଙ୍କୁ ଗାଈ, ଛେଳି, ମେଣ୍ଢା, କୁକୁଡ଼ା ଆଦି ଯୋଗାଇଦେଇ ଦୁଧ ଓ ମାଂସର ଉତ୍ପାଦନ ବଢ଼ାଇବା ପାଇଁ ସେ ସର୍ବଦା ଚେଷ୍ଟିତ । ବିଭିନ୍ନ ଗ୍ରାମର ଅଭାବଗ୍ରସ୍ତ ଲୋକଙ୍କୁ ବାଛି ବାଛି ଏହି ଦାନ ଦେବାପାଇଁ ତାଙ୍କୁ ଦାୟିତ୍ୱ ଦିଆଯାଇଥାଏ । ତାଙ୍କ ବ୍ଲକର ପ୍ରାୟ ସବୁ ଗ୍ରାମରେ ଏସବୁ ବଣ୍ଟା ସରିଲାଣି, କେବଳ ଏହି ଆଠଗୋଟି ଗାଁକୁ କିଛି ଦିଆଯାଇନି । ଏଠି ତ ଅଲଗା ପ୍ରକାର ବ୍ୟବସ୍ଥା ।

ତେବେ କିପରି ଭାବରେ ଦିଆଯାଇ ପାରିବ, ସେ ସମ୍ପର୍କରେ କଥାବାର୍ତ୍ତା କରିବା ପାଇଁ ବି.ଡି.ଓ. ଦିନେ ସେହି ଗାଁରେ ଆସି ହାଜର । ଗାଁର ଉନ୍ନୟନ, କୃଷି, ଉନ୍ନତ ଶିକ୍ଷା ଆଦି ଦେଖି ତାଙ୍କୁ ବଡ଼ ଖୁସି ଲାଗିଲା । ଏହି ଗ୍ରାମଗୁଡ଼ିକର ଅଧିବାସୀମାନେ ଅନ୍ୟ ଗାଁର ଲୋକଙ୍କ ଭଳି ଏଣେତେଣେ ବୁଲାବୁଲି ନ କରି କି ନିଜ ନିଜ ମଧ୍ୟରେ କଳିକଜିଆ, ଚୁଗୁଲି ନ କରି ସେନାବାହିନୀର ସୈନ୍ୟମାନଙ୍କ ଭଳି ସେମାନଙ୍କ ଉପରେ ନ୍ୟସ୍ତ ଥିବା କାର୍ଯ୍ୟରେ ଲାଗି ପଡ଼ିଛନ୍ତି ଦେଖି ସେ ଆଶ୍ଚର୍ଯ୍ୟ ନ ହୋଇ ରହି ପାରିଲେନି ।

ଗ୍ରାମବାସୀମାନଙ୍କଠାରୁ ବୁଝି ସେ ଦେବବାବୁଙ୍କ ସହିତ କଥାବାର୍ତ୍ତା କରିବାକୁ ଆସିଲେ । ଦେବବାବୁ ସେତେବେଳକୁ ଅଫିସରେ ନ ଥାନ୍ତି । ସେ ରୂପ ହେଉଥିବା କ୍ଷେତରେ ଥାନ୍ତି । ବି.ଡି.ଓ. ଦେବବାବୁଙ୍କ ଅପେକ୍ଷାରେ ସେହି ଅଫିସ୍ ଘରେ ବସି ରହିଲେ ।

କିଛି ସମୟ ପରେ ଦେବବାବୁ କ୍ଷେତରୁ ଫେରିଲେ । ଅଫିସରେ କାମ କରୁଥିବା ଲୋକମାନେ ବି.ଡି.ଓ.ଙ୍କ ସହିତ ତାଙ୍କୁ ପରିଚିତ କରାଇଦେଲେ । କିଛି ସମୟ ପରସ୍ପର ଭିତରେ କଥାବାର୍ତ୍ତା ପରେ ବି.ଡି.ଓ. ତାଙ୍କ ଆସିବା ଉଦ୍ଦେଶ୍ୟ ଜଣାଇଲେ ।

ଏହି ଆଠଗୋଟି ଗାଁକୁ ସରକାରଙ୍କ ପକ୍ଷରୁ ପନ୍ଦର ଗୋଟି ଦୁଧିଆଳୀ ସଙ୍କର ଗାଈ ଓ ପଞ୍ଚତ୍ରିଶ ଗୋଟି ଉନ୍ନତ ଛେଳି ଓ ଦେଢ଼ଶହଟି ଉନ୍ନତ କୁକୁଡ଼ା ପାଳନ ପାଇଁ ଦିଆଯିବ ।

ଏହି ଆଠଗୋଟି ଗାଁର କେଉଁ କେଉଁ ଲୋକେ ଏହିସବୁ ପ୍ରାଣୀଙ୍କର ଦାୟିତ୍ୱ ନେବେ କହିଲେ, ସେମାନଙ୍କୁ ଏହି ପ୍ରାଣୀଗୁଡ଼ିକ ସରକାରଙ୍କ ପକ୍ଷରୁ ଦାନ କରାଯିବ । ସେମାନେ ସେଇ ଗାଈ, ଛେଳି, କୁକୁଡ଼ା ସବୁ ପାଳିପୋଷି ସେମାନଙ୍କଠାରୁ ଦୁଧ, ମାଂସ, ଅଣ୍ଡା ଉତ୍ପାଦନ କରିବେ ଓ ସେ ସବୁକୁ ବିକି ନିଜେ ପୋଷି ହେବେ ଓ ଗାଁରେ ସେ ସବୁର ଅଭାବ ଦୂର କରିବେ ।

ସରକାରଙ୍କ ଯୋଜନା ଶୁଣି ଦେବସ୍ନାନ ହସିଲା, କହିଲା "ଆପଣମାନେ ଅନ୍ୟ ଗାଁମାନଙ୍କରେ ଏହି ନୀତି ଅନୁସାରେ ବୋଧହୁଏ ବଣ୍ଟନ କରି ସାରିଲେଣି ? ଖାଲି ଆମ ଗାଁଗୁଡ଼ିକ ବାକି ଅଛି ବୋଧେ ?"

"ହଁ ଆଜ୍ଞା ।" ବି.ଡି.ଓ. କହିଲେ, "ଆପଣ ଠିକ୍ ଅନୁମାନ କରିଛନ୍ତି । ସେଇଥି-ପାଇଁ ତ ମୁଁ ଆଜି ଆସିଛି । ଆପଣମାନଙ୍କ ଗାଁର ସେହିଭଳି କେତେଜଣ ଅଭାବୀ ଲୋକଙ୍କ ନାମ ମୋର ଦରକାର ।"

ଦେବସ୍ନାନବାବୁ କହିଲେ, "ଦେଖନ୍ତୁ ବି.ଡି.ଓ. ସାହେବ, ଆମର ଏହି ଆଠଗୋଟି ଗାଁରେ ଆପଣଙ୍କ ସରକାରଙ୍କ ଦାନକୁ କେହି ଗ୍ରହଣ କରିବାକୁ ରାଜି ହେବେନି । ଆମର ଏହି ଗ୍ରାମରେ କୌଣସି ଲୋକର ବ୍ୟକ୍ତିଗତ ସମ୍ପତ୍ତି ବୋଲି ସେମିତି କିଛି ନାହିଁ । ପ୍ରତ୍ୟେକଙ୍କୁ ସାରା ବର୍ଷ ପାଇଁ ସ୍ତ୍ରୀ ପୁରୁଷ ନିର୍ବିଶେଷରେ କାମ ଦିଆ ହୋଇ-ଯାଇଛି । ଏଠି କେହି ବେକାର ନାହାନ୍ତି ଯେ ଆପଣମାନଙ୍କର ଏହି ଦାୟିତ୍ୱ ସେମାନେ ବହନ କରିବେ । ଆପଣଙ୍କର ଯଦି ଆପତ୍ତି ନ ଥାଏ, ତେବେ ଆପଣ ଏହି ପ୍ରାଣୀଗୁଡ଼ିକୁ ଆମ ଗ୍ରାମଦାନ ସଂସ୍ଥାକୁ ଦେଇପାରନ୍ତି । ଏହି ସଂସ୍ଥାକୁ ଦେଲେ ଏହାର ଉପକାର ସାରା ଗ୍ରାମବାସୀ ଉପଭୋଗ କରିପାରିବେ । ଆପଣ ଅନ୍ୟ ଗାଁରେ ଯେପରି କରୁଛନ୍ତି, ତା'ର ଉପକାର କେଇଜଣ ବ୍ୟକ୍ତିବିଶେଷ ପାଉଛନ୍ତି, ଏଠି ସେମିତି ହେବନି ।

"କିନ୍ତୁ ଦେବସ୍ନାନବାବୁ" ବି.ଡି.ଓ. କହିଲେ, "ସରକାରଙ୍କ ନିର୍ଦ୍ଦେଶ ହେଉଛି ବ୍ୟକ୍ତିବିଶେଷଙ୍କୁ ଦେବା, କୌଣସି ଅନୁଷ୍ଠାନକୁ ଦେବା ନୁହେଁ । ଏହି ଯୋଜନା ସାହାଯ୍ୟରେ ଅଭାବଗ୍ରସ୍ତ ଲୋକେ ସେମିତି ଉପକୃତ ହେବେ ସରକାର ତାହା ଚାହାନ୍ତି । ଗାଁର ସବୁଠାରୁ ଅଭାବୀ ଓ ପରିଶ୍ରମୀ ଲୋକଙ୍କୁ ଏହା ଦିଆଯିବ । ଅନ୍ୟ ଗ୍ରାମ ଭଳି କେତେଜଣ ବ୍ୟକ୍ତିବିଶେଷଙ୍କ ନାମ ମୋର ଦରକାର ।"

"ଏହା ଯଦି ଆପଣଙ୍କର ନୀତି, ତେବେ ଏହି ଦାନକୁ ଆପଣ ଫେରାଇ ନେଇ ଯାଇପାରନ୍ତି । ଆମ ଗ୍ରାମର ଲୋକେ ଏହି ଦାନ ଗ୍ରହଣ କରିବାକୁ ଅକ୍ଷମ । ଏହା ଆମ ନୀତି ବିରୁଦ୍ଧ । ଆପଣ ସରକାରଙ୍କୁ ଲେଖନ୍ତୁ, ସରକାର ଯଦି ଆମ ପ୍ରସ୍ତାବରେ ରାଜି

ହୁଅନ୍ତି, ତେବେ ଆମ ସଂସ୍ଥା ଗ୍ରହଣ କରିପାରେ, ନୋହିଲେ ନାହିଁ । ବ୍ୟକ୍ତିବିଶେଷଙ୍କ ପ୍ରଶ୍ନ ଆମର ଏଠି ଉଠୁନି ।”

“ହେଉ ଆଜ୍ଞା, ମୁଁ ତା’ହେଲେ ସରକାରଙ୍କୁ ଲେଖିବି । ସରକାର ଯଦି ରାଜି ହୁଅନ୍ତି, ତେବେ ଆପଣମାନଙ୍କୁ ଏହି ଗାଈ, ଛେଳି, କୁକୁଡ଼ା ଆଦି ଦିଆଯିବ ।”

ବି.ଡି.ଓ. ଚାଲିଗଲା ପରେ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଆସି ପହଞ୍ଚିଗଲେ । ଦେବସ୍ମିନର ସିଦ୍ଧାନ୍ତରେ ସେମାନେ ଖାଲି ଖୁସି ହେଲେନି, ଏମିତି ହାତଟେକା ଦାନ ବିରୁଦ୍ଧରେ ସେମାନେ ନିଜ ନିଜର ଅସନ୍ତୋଷତା ପ୍ରକାଶ କଲେ । ସରକାର ଏହିଭଳି ଦାନ ଅନ୍ୟ ଗାଁମାନଙ୍କରେ ଦେଇ ସେହି ଗାଁର ଲୋକମାନଙ୍କୁ ଯେଉଁ ହଲ୍ଦସଲ୍ଦରେ ପକାଇଛନ୍ତି—ତାହା ସେମାନେ ଦେବସ୍ମିନବାବୁଙ୍କ ଆଗରେ ବଖାଣି ବସିଲେ ।

ସରକାର ଗାଁମାନଙ୍କୁ ଗାଈ ଦେଇଛନ୍ତି ସତ, କିନ୍ତୁ ଯେଉଁ ଦୁଗ୍ଧ ଉତ୍ପାଦିତ ହେଉଛି ତାକୁ ସଂଗ୍ରହ କରିବା ବା ବିକ୍ରୟ କରିବାର କିଛି ବ୍ୟବସ୍ଥା କରି ନାହାନ୍ତି । ଗୋଟିଏ ଗୋଟିଏ ଗାଁରେ ଦୁଇ ତିନୋଟି ଲେଖାଏଁ ଗାଈ ଦିଆଯାଇଛି । ଦୁଗ୍ଧ ଉତ୍ପାଦନ ହୁଏ ଦିନକୁ ବାରହାର ତିରିଶ ଲିଟର । ଏହି ତିରିଶ ଲିଟର ଦୁଧ କିଣିବାକୁ ଗାଁରେ ବା କିଏ ଅଛି ? ଦୁଧର ଯେଉଁ ଦର ସେହି ଦରରେ ଗାଁରେ କିଏ ବା ଦୁଧ କିଣି ଖାଇ ପାରିବ ? ଦୁଧ ସହରକୁ ନେବାର କିଛି ବ୍ୟବସ୍ଥା ମଧ୍ୟ ନାହିଁ ।

ଦୁଧ ଯିବା ବିକ୍ରୀ ହେଲେ ସେମାନେ ଗାଈ ପାଇଁ ଗୋଖାଦ୍ୟ କିଣନ୍ତେ, ଦୁଧ ବିକ୍ରୀ ନ ହେଲେ ସେମାନେ ଗୋଖାଦ୍ୟ କିଣିବେ କେମିତି ? ତେଣୁ ଏସବୁ ଗାଈ ନେଇଥିବା ଗ୍ରାମବାସୀମାନଙ୍କ ପାଇଁ ଏହା ଗୋଟିଏ ମୁଣ୍ଡବ୍ୟଥା । ଆମକୁ ଅଯଥାରେ ସେ ମୁଣ୍ଡ-ବ୍ୟଥାରେ ପକାଇ ଲାଭ କଅଣ ?

ଦେବସ୍ମିନ ହସିଲା, କହିଲା, “ମୁଁ ସେଥିପାଇଁ କହୁଛି, ସେମାନେ ଆମ ଗାଁର ଯେଉଁମାନଙ୍କୁ ଯାହା ଦେବାକୁ ଚାହୁଁଛନ୍ତି, ସେମାନଙ୍କୁ ନ ଦେଇ ଆମ ସଂସ୍ଥାକୁ ଦେଇ ଦିଅନ୍ତୁ । ଆମ ସଂସ୍ଥା ତହିଁର ଦାୟିତ୍ୱ ନେବ । ଗ୍ରାମବାସୀମାନଙ୍କର ମୁଣ୍ଡବ୍ୟଥାର କାରଣ ହେବନି ।”

× × × ×

ଯେଉଁଦିନ ବି.ଡି.ଓ.ଙ୍କ ଅଫିସରୁ ପନ୍ଦରଗୋଟି ଦୁଧିଆଳି ଜରସି ଗାଈ, ପଞ୍ଚସ୍ତରି-ଗୋଟି ଜାଡିଆ ଛେଳି, ଦେଢ଼ଶହ ମେଣ୍ଢା ଓ ଅଢ଼େଇଶହ ଜାତିଆ କୁକୁଡ଼ା ଆସି ଗାଁରେ ପହଞ୍ଚିଲା, ସେଦିନ ଗ୍ରାମବାସୀମାନଙ୍କ ଆନନ୍ଦ କହିଲେ ନ ସରେ ।

ଏଗୁଡ଼ାକ ଆସିବା ପୂର୍ବରୁ ଦେବସ୍ମିନ ସେମାନଙ୍କ ରହିବା ପାଇଁ ଗୁହାଳି ଘର, ଛେଳି କୋଠି, କୁକୁଡ଼ା ଘର ଆଧୁନିକ ବୈଜ୍ଞାନିକ ରୀତିରେ ତିଆରି କରି ନେଇଥାଏ । ଯେଉଁ ଲୋକମାନେ ଏହି ପ୍ରାଣୀମାନଙ୍କ ଦାୟିତ୍ୱରେ ରହିବେ, ସେମାନଙ୍କୁ ନିକଟସ୍ଥ ଭେଟେରିନାରି ଅଫିସକୁ ପଠାଇ ସେମାନଙ୍କୁ ସାତଦିନିଆ ତାଲିମ୍ ଦେଇ ଆଣିଥାଏ ।

ଏହି ଗାଇ, ଛେଳି, କୁକୁଡ଼ାମାନେ ଖାଇବା ପାଇଁ ଗୋଖାଦ୍ୟ, କୁକୁଡ଼ା ଖାଦ୍ୟ ଚଢ଼ାଦରରେ ବଜାରରୁ ନ କିଣି ସେଗୁଡ଼ିକର ଗାଁରେ ଉତ୍ପାଦନ ପାଇଁ ଏକ କଳ ଆଣି ବସାଇଥାଏ ଦେବସ୍ମାନ । ନିଜ କ୍ଷେତରେ ତ ବୁଟ ହେଉଛି, ଗହମ ହେଉଛି, ଗୋଖାଦ୍ୟ ପ୍ରେକଡ଼ କି ଚୂନର ଅଭାବ ପଡ଼ିବ କାହିଁକି ? ତା'ଛଡ଼ା ଗାଁରେ ନଡ଼ା ଘାସର ତ ଅଭାବ ନାହିଁ । ଏଠି ଯେଉଁମାନେ ଗାଇ, ଛେଳି, କୁକୁଡ଼ାମାନଙ୍କର ହେପାଜତରେ ରହିଲେ, ସେମାନଙ୍କୁ ଏସବୁ ଖାଦ୍ୟ ସଂଗ୍ରହ କରିବା ଦାୟିତ୍ୱ ଦେଇ ଦେବସ୍ମାନ ନିଶ୍ଚିନ୍ତ ହେଲା ।

ଦେବସ୍ମାନ ଦିନେ ହିସାବ କରି ଦେଖିଲା, ଏହି ଆଠୋଟି ଗାଁରେ ଶିଶୁ ଓ ପିଲା ସଂଖ୍ୟା କେତେ ? ସେହି ଶିଶୁ ଓ ପିଲାମାନଙ୍କୁ ଏକ ନିର୍ଦ୍ଦିଷ୍ଟ ପରିମାଣରେ ଦୁଧ ଦେଇ-ସାରିଲା ପରେ ଯାହା ବଳିଲା, ତାକୁ ଗାଁ ଲୋକମାନଙ୍କ ଭିତରେ ବିକ୍ରୀ କରିଦେବାକୁ ଆଦେଶ ଦେଲା ।

ଶିଶୁମାନଙ୍କୁ ବିନା ପଇସାରେ ଦୁଧ ଦିଆଗଲା । ଗାଁର ପିଲାମାନେ ଯଦି ଦୁଧ ନ ଖାଉଛନ୍ତି, ତେବେ ବଡ଼କାଳକୁ ସେମାନେ ସୁସ୍ଥସବଳ ହୋଇ ବାହାରିବେ କେମିତି ?

ଦେବସ୍ମାନ ଦେଖିଲା, ଏହି ଗାଈମାନଙ୍କଠାରୁ ଯେତିକି ପରିମାଣରେ ଦୁଗ୍ଧ ଉତ୍ପାଦିତ ହେଉଛି ସେତିକି ଏହି ଗାଁ ପାଇଁ ଯଥେଷ୍ଟ ନୁହେଁ । ଯେତିକି ପରିମାଣରେ ଦୁଧ ଦୈନିକ ବିକ୍ରୀ ହୁଏ, ସେଥିରୁ ମିଳୁଥିବା ଟଙ୍କାକୁ ଅଲଗା ରଖିବା ପାଇଁ ନିର୍ଦ୍ଦେଶ ଦେଲା । ସେହି ଟଙ୍କାରେ ଅଧିକ ଗାଇ କିଣି ଗାଁମାନଙ୍କର ଦୁଗ୍ଧ ଉତ୍ପାଦନ ବଢ଼ାଇବା ପାଇଁ ମନସ୍ଥ କଲା ।

ସେହିପରି ଛେଳି ଓ କୁକୁଡ଼ା ଚାଷ ଆରମ୍ଭ କରାଗଲା । କୁକୁଡ଼ା ଅଣ୍ଡା ଓ ଛେଳି ମାଂସ ଆଗେ ଗ୍ରାମବାସୀମାନଙ୍କୁ ବିକ୍ରୟ ହେଲା, ଯାହା ବଳିଲା ଅନ୍ୟ ଗାଁରେ ବିକ୍ରୀ କରିବାର ବ୍ୟବସ୍ଥା ହେଲା । ଏଥିରୁ ଯାହା ଲାଭ ହେଲା, ସେସବୁ ଦୁଧ ପାଣ୍ଠିରେ ଜମା ହୋଇରହିଲା । ଯେଉଁଲୋକ ଏ ଦାୟିତ୍ୱରେ ରହିଲେ ତାଙ୍କୁ କୁହାଗଲା, ଧୀରେ ଧୀରେ ଏହି ଅର୍ଥରୁ ଗାଈ ସଂଖ୍ୟା ବଢ଼ାଇବା ପାଇଁ । ଦେବସ୍ମାନର ଇଚ୍ଛା ଦୁଇ ତିନିବର୍ଷ ଭିତରେ ଯେମିତି ଏହି ଗାଁର ଲୋକମାନେ ସମସ୍ତେ ଆବଶ୍ୟକ ପରିମାଣରେ ଦୁଧ ଖାଇବାକୁ ପାଇବେ ।

କୁକୁଡ଼ା ଚାଷ, ଛେଳି ଚାଷ ସାଥୀକୁ ଜୁଟିଗଲା ମାଛ ଚାଷ ଓ ମହୁ ଚାଷ । ଏହି ଗ୍ରାମଦାନ ଅଧୀନରେ ଥିବା ଗାଁମାନଙ୍କରେ ପୋଖରୀ ସଂଖ୍ୟା ତେର୍ । ଛୋଟ ବଡ଼ ମିଶି ଦଶଗୋଟିରୁ କମ୍ ହେବନି । ଏହି ପୋଖରୀଗୁଡ଼ିକ ମଧ୍ୟ ଖରାଦିନେ ଶୁଖେନି । ତା'ଛଡ଼ା ଗାଁ ଭିତରେ ଛୋଟ ନଈଟିଏ ବହି ଯାଉଛି, ଯେଉଁଥିରେ ବର୍ଷସାରା ପାଣି ରହେ ।

ଦେବସ୍ମାନ ପ୍ରଥମେ ଯେତେବେଳେ ଆସି ଏହି ଗାଁରେ ଯୋଗ ଦେଲା, ତା'ର ପ୍ରଧାନ କାମ ହୋଇଥିଲା ଏହି ପୋଖରୀଗୁଡ଼ିକର ଦଳ ଗ୍ରାମବାସୀଙ୍କ ଦ୍ୱାରା ସଫା କରାଇ ସେଥିରେ ମାଛଚାଷ କରାଇବା । ରାଜ୍ୟ ସରକାରଙ୍କ ମତ୍ସ୍ୟ ବିଭାଗ ତାକୁ ଏ ଦିଗରେ କମ୍

ସାହାଯ୍ୟ କର ନାହାନ୍ତି । ବିନା ପଇସାରେ ମତ୍ସ୍ୟ ବିଭାଗ ସେମାନଙ୍କୁ ଯାଆଁଳ ଯୋଗାଇ ଦେଇଛି ।

ଦୁଇଟି ବର୍ଷ ଭିତରେ ପୋଖରୀଗୁଡ଼ିକର ମାଛର ସଂଖ୍ୟା ଦେଖି ଗାଁ ଲୋକଙ୍କ ଖୁସି କହିଲେ ନ ସରେ । ଆଗରୁ ଏହିସବୁ ପୋଖରୀରେ ଦଳ ଭର୍ତ୍ତି ହୋଇଥିବାରୁ ମାଛ ତ ମିଳିବା ସ୍ୱପ୍ନ ହୋଇଥିଲା, ଦଳଗୁଡ଼ିକ ଯୋଗୁ ମଶା ଆଦିଙ୍କର ପ୍ରାଦୁର୍ଭାବ ଗାଁରେ ଖୁବ୍ ବଢ଼ି ଯାଇଥିଲା । ପୋଖରୀଗୁଡ଼ିକରେ ମାଛଚାଷ ହେବାରୁ ପାଣି ନିର୍ମଳ ହେଲା, ମଶାଙ୍କ ପ୍ରାଦୁର୍ଭାବ ଆଗଭଳି ସେତେ ରହିଲାନି ।

ପ୍ରଥମ ଦୁଇବର୍ଷ ପରେ ଯେତେବେଳେ ମାଛମାନେ ବେଶ୍ ବଡ଼ ବଡ଼ ହେବାର ଜଣାପଡ଼ିଲା, ଦେବସ୍ନାନ ନିମନ୍ତ୍ରଣ କଲି ରାଜ୍ୟର ବଡ଼ ବଡ଼ ମାଛ ବେପାରୀଙ୍କୁ । ସେମାନେ ଏହି ପୋଖରୀର ମାଛ ଦେଖି ଭାରି ଖୁସି ହୋଇଗଲେ । ସେମାନଙ୍କ ସହି ମାଛର ଦର ଚୁକ୍ତି ହେବାପରେ, ଗୋଟିକ ପରେ ଗୋଟିଏ ସବୁ ପୋଖରୀ ଧରାଗଲା । ବଡ଼ ବଡ଼ ମାଛ ବିକ୍ରି ପାଇଁ ରଖି ଛୋଟ ଛୋଟ ମାଛକୁ ପୁଣି ପୋଖରୀରେ ଛାଡ଼ି ଦିଆଗଲା । ଆଶା, ପରବର୍ଷକୁ ସେମାନେ ବଡ଼ ହୋଇ ବିକ୍ରି ଅବସ୍ଥାକୁ ଆସିଯିବେ ।

ଏହି ମାଛ ବିକ୍ରୀରୁ ସେହିବର୍ଷ ଏହି ଗ୍ରାମମାନଙ୍କରେ ଲାଭ ହେଲା ଦୁଇଲକ୍ଷ ଟଙ୍କା ପାଖାପାଖି । ଗାଁ ପାଣ୍ଠିର ଦିନକୁଦିନ ଏତାଦୃଶ ଅଭିବୃଦ୍ଧି ଦେଖି ଲୋକଙ୍କ ଆନନ୍ଦର ସୀମା ରହିଲା ନାହିଁ । ଏହି ଟଙ୍କା ଗ୍ରାମର ବିଭିନ୍ନ ଉନ୍ନୟନ କାର୍ଯ୍ୟରେ ଖର୍ଚ୍ଚ ହେଲେ ସେମାନଙ୍କ ଅବସ୍ଥା ଆହୁରି କେତେ ଭଲ ହେବ ?

ମହୁଚାଷରୁ ଲାଭ ଏତେ ହେଉନି ସତ, ଯାହାହେଲେ ତାହା ବି କମ୍ ନୁହେଁ । ଲୋକମାନଙ୍କର ଯେଉଁ ସମସ୍ତ ବଳ ପଡୁଥିଲା, ସେଥିରେ ଏଇ ଚାଷ ଭଲ ଭାବରେ ଚାଲିଲା । ଗାଁର ସ୍ତ୍ରୀ ଲୋକମାନେ ଏଥିରେ ମୁଖ୍ୟ ଭାଗ ନେଲେ ।

## ତରଣି

ଦେବସ୍ନାନବାବୁ ଓ ତାଙ୍କ ମା ଘର ବାରଣ୍ଡାରେ ବସି କଥାବାର୍ତ୍ତା ହେଉଥାନ୍ତି । ଦେବବାବୁଙ୍କୁ ଟିକିଏ ଥଣ୍ଡା ଥଣ୍ଡା ଲାଗିବାରୁ ଘରୁ ଚାଦରଟାଏ ଆଣି ଘୋଡ଼ି ହୋଇ ବସିଲେ । ଶ୍ରୀମନ୍ତିନୀ ଦେବୀ ପୁଅକୁ ଗ୍ରାମଦାନ ସଂସ୍ଥା ସମ୍ପର୍କରେ କେତେ କଥା ପଚାରୁଥାନ୍ତି, ହଠାତ୍ ଗୋଟିଏ କଳାରଙ୍ଗର ଆମେରିକାନ୍ କାର୍ ତାଙ୍କ ଘର ସାମନା ରାସ୍ତାରେ ଆସି ଠିଆ ହେଲା । କାର୍‌ରେ କିଏ ଆସିଲା ବୋଲି ଦେବସ୍ନାନବାବୁ ଅନାଇଲାବେଳକୁ କାର୍‌ରୁ ଓହ୍ଲାଇଲା ତାଙ୍କ ପ୍ରିୟବନ୍ଧୁ ଶୁଭ୍ରା । ଶୁଭ୍ରା ଦେବସ୍ନାନବାବୁଙ୍କୁ ବାରଣ୍ଡାରେ ବସିଥିବାର ଦେଖି

ପିଣ୍ଡା ଉପରକୁ ଉଠି ଆସି ତାଙ୍କୁ ପ୍ରଣାମ କରି ଗୋଡ଼ଧୂଳି ନେଉଁ ନେଉଁ କହିଲା, "ଆପଣ କ'ଣ ଏ ଗରମରେ ଚାଦରଟାଏ ଘୋଡ଼ି ହୋଇ ବସିଛନ୍ତି ସାର୍ ? ଆପଣଙ୍କ ଦେହ ଭଲ ନାହିଁ ନା କଅଣ ?"

"ନା ଶୁଭ୍ରା, ମୋ ଦେହ ଭଲ ଅଛି । ଟିକଏ ଥଣ୍ଡା ପବନ ବୋହିବାରୁ ଚାଦରଟାଏ ଆଣି ଘୋଡ଼ହୋଇ ବସିଛି । ତୁମେ ଆଜି ହଠାତ୍ କୁଆଡ଼େ ଚାଲି ଆସିଲ ଶୁଣେ ? ତୁମ ପିଏଇଚ୍.ଡି. ଫଳ ତ ଏହା ଭିତରେ ବାହାରି ସାରିବଣି ?"

"ହଁ ସାର୍, ଗତକାଲି ବାହାରିଲା ।" ଶୁଭ୍ରା ଏତକ କହି ସାରିଛି କି ନାହିଁ, ଡ୍ରାଇଭର ଗୋଟାଏ ମିଠାଇ ହାଣ୍ଡି ଆଣି ସେଠି ଥୋଇଦେଲା ।

"ଏ କ'ଣ ଶୁଭ୍ରା ? ଆଶ୍ଚର୍ଯ୍ୟ ହୋଇ ପଚାରିଲେ ଦେବସ୍ନାନବାବୁ । "ଏ ମିଠାଇ-ହାଣ୍ଡି କ'ଣ ପାଇଁ ? ତୁମ ବାହାଘର ହେଉଛି ନା କଅଣ ? ତା ପାଇଁ ଏ ମିଠାଇ ହାଣ୍ଡି ଆଗତୁରା ନିମନ୍ତ୍ରଣ ବୋଧେ ?"

" ନା ସାର୍, ତା ନୁହେଁ । ମୁଁ ପିଏଇଚ୍.ଡି. ଡିଗ୍ରୀ ପାଇଲି । ଆପଣ କ'ଣ ଟିକଏ ମୁହଁ ମିଠା କରିବେନି ? ମୋ ଫଳ ବାହାରିବା କଥା ଆପଣଙ୍କୁ କହିବାକୁ ଆସିଲା-ବେଳକୁ ବୋଉ ମିଠାଇହାଣ୍ଡି ଆଣି କହିଲା, "ତୁ ତୋ ସାର୍‌ଙ୍କ ପାଖକୁ କ'ଣ ଖାଲି ହାତରେ ଯିବୁ ମା ? ଏହା ସୁନ୍ଦର ଦର୍ଶିବନି । ତୁ ସାଙ୍ଗରେ କିଛି ମିଠା ନେଇଯା ।"

"ତା ବୋଲି କ'ଣ ହାଣ୍ଡିଏ ମିଠା ? ତୁମର ସେଇ ବଡ଼ଲୋକପଣିଆ ଗଲାନି ଶୁଭ୍ରା । ଆରେ, ମୁଁ ସତରେ କେଡ଼େ ଅଭଦ୍ରଟାଏ ? ଏ ପର୍ଯ୍ୟନ୍ତ ମୁଁ ତୁମକୁ ମୋ ମା'ଙ୍କ ସହିତ ପରିଚୟ କରାଇ ଦେଇନି ।"

ମା'ଙ୍କୁ ଲକ୍ଷ୍ୟ କରି, "ଇଏ ହେଉଛି ମୋ ଛାତ୍ରୀ ଶୁଭ୍ରା । ରେଭେନ୍‌ସା କଲେଜରେ ମୋ ଅଧୀନରେ ଗବେଷଣା କରୁଥିଲା । ଏବେ ପିଏଇଚ୍.ଡି. ଡିଗ୍ରୀ ପାଇଥିବାରୁ ଏଇ ମିଠାଇହାଣ୍ଡି ନେଇ ଏଠି ହାଜର ।" ଶୁଭ୍ରା ଆଡ଼କୁ ଅନାଇ "ଏ ହେଉଛନ୍ତି ମୋ ମା, ମୋତେ ଦେଖିବାକୁ ଆସି ଏଠି ରହି ଯାଇଛନ୍ତି । ଏବେ ସମ୍ବଲପୁର ଯିବେ ବାପାଙ୍କ ପାଖକୁ ।"

ଦେବସ୍ନାନବାବୁଙ୍କ ମୁହଁରୁ କଥା ସରିଛି କି ନାହିଁ, ଶୁଭ୍ରା ଉଠିପଡ଼ି ସୀମନ୍ତିନୀ ଦେବୀଙ୍କୁ ପ୍ରଣାମ କରି ତାଙ୍କ ଗୋଡ଼ଧୂଳି ନେଉଁ ନେଉଁ କହିଲା, "ସାର୍ ଏଠି ଏକୁଟିଆ ରହୁଥିଲେ, ଆପଣ ଆସି ଯାଇଛନ୍ତି, ଖୁବ ଭଲ ହୋଇଛି ମାଉସୀ ।"

ସୀମନ୍ତିନୀ ଦେବୀ ଶୁଭ୍ରାକୁ ଉଠାଇ ଦେଉଁ ଦେଉଁ କୁଣ୍ଢାଇପକାଇ ଆଶୀର୍ବାଦ କରି କହିଲେ, "ତୁ ବୁଢ଼ୀଟିଏ ହୋଇଥା ମା । ଭଗବାନ ତୋତେ କୋଟି ପରମାୟୁ ଦେଇଥାନ୍ତୁ । ତୁମ ଘର କ'ଣ କଟକରେ ମା ? କ'ଣ ରେଭେନ୍‌ସା କଲେଜ ପାଖରେ ?"

"ନା ମାଉସୀ, ଆମ ଘର ରେଭେନ୍‌ସା କଲେଜ ପାଖରେ ନୁହେଁ । ରେଭେନ୍‌ସା କଲେଜ ପାଖରୁ ଟିକଏ ଦୂର ତୁଳସୀପୁରରେ । ମୋ ବାପା ବ୍ୟବସାୟ କରନ୍ତି

କଟକରେ । ତାଙ୍କ ନାଁ ହେଉଛି କୃଷ୍ଣ ପ୍ରସାଦ ସାମନ୍ତରାୟ । ତୁଳସୀପୁରରେ ଆମର ନିଜର ଘର ଅଛି ମାଉସୀ ।"

"ତୁ ବୋଉ, ସ୍ୱାଙ୍କ ତୁଳସୀପୁର ଘର ଦେଖିନୁ । ସିଏ ଘର ନୁହେଁ ବୋଉ, ରଜା ନଅର ଜାଣ । ପାଞ୍ଚ ମହଲା କୋଠା । ମହାନଦୀ କୂଳେ କୂଳେ ଲମ୍ବି ଯାଇଛି । ଇନ୍ଦିରା ଗାନ୍ଧିଙ୍କ ଶାସନକାଳରେ ରଜାମାନେ ତ ଗଲେ, ଏମାନେ ହେଲେ ଆଧୁନିକ ଯୁଗର ରଜା । ସ୍ୱାଙ୍କ ବାପା ଓଡ଼ିଶାରେ ଯିନା ବ୍ୟବସାୟ କରନ୍ତି, କିନ୍ତୁ ଓଡ଼ିଶାରେ ଖୁବ୍ କମ୍ ସମୟ ରହନ୍ତି । ସେ ନିଜ ବ୍ୟବସାୟ ନେଇ ଏ ଦେଶ ସେ ଦେଶ ହୋଇ ପୃଥିବୀ ସାରା ଘୁରି ବୁଲୁଥାନ୍ତି । ଆଜି ଏଠି ତ କାଲି ଆଉ କେଉଁଠି । ଇଏ ତାଙ୍କ ବାପାଙ୍କର ଗୋଟିଏ ବୋଲି ଝିଅ । ଆଗକୁ ପଛକୁ କେହି ନାହାନ୍ତି । କଟକରେ ଇଏ ତାଙ୍କ ମା'ଙ୍କ ପାଖରେ ଥାଆନ୍ତି ।"

"ସାର୍, ମୁଁ ଆଉ ଗୋଟିଏ କଥା ଆପଣଙ୍କୁ କହିବା ପାଇଁ ଆସିଛି । ଆପଣ ମୋତେ ଆମେରିକା ଯିବା ପାଇଁ ଯେଉଁ ସୁପାରିଶପତ୍ର ଦେଇଥିଲେ, ତା ବଳରେ ମୋତେ ନିଉୟର୍କର କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ପୋଷ୍ଟ ଡକ୍ଟରାଲ ଫେଲୋସିପ୍ ମିଳି ଯାଇଛି । ଦରଖାସ୍ତ ଆମେରିକାରେ ପହଞ୍ଚୁ ପହଞ୍ଚୁ ଏପଏଣ୍ଟମେଣ୍ଟ କେମିତି ମିଳିଗଲା, ମୁଁ ଖୁବ୍ ଆଶ୍ଚର୍ଯ୍ୟ ହେଉଛି । ଆମେରିକା ଯିବି କି କଅଣ, ସେଇଆ ଆପଣଙ୍କୁ ପଚାରିବା ପାଇଁ ଆସିଛି ସାର୍ ।"

"ଆମେରିକାରୁ ଫେଲୋସିପ୍ ପାଇଛ ? ଖୁବ୍ ଭଲ ହୋଇଛି ଶୁଭ୍ର । ମୋତେ ପଚାରିବ କ'ଣ ? ଆଖିବୁଜି ଗ୍ରହଣ କରିନେବା କଥା । ଉଚ୍ଚତର ଗବେଷଣା ପାଇଁ ତୁମେ ଆମେରିକାରେ ଯେଉଁସବୁ ସୁବିଧା ସୁଯୋଗ ପାଇବ, ସାରା ପୃଥିବୀରେ ଆଉ କେଉଁଠି ପାଇବନି । ଆମ ଦେଶରେ ତହିଁର କାଣିଚାଏ ବି ମିଳିବନି । ମୁଁ କେମିତି ହନ୍ତସନ୍ତ ହୋଇ ଗବେଷଣା କରୁଥିଲି ତୁମେ କ'ଣ ଦେଖିନାହଁ ? ମୋତେ ପଚାରିବ କ'ଣ ? ସଙ୍ଗେ ସଙ୍ଗେ ଗ୍ରହଣ କରିନେଇ ଆମେରିକା ଚାଲିଯିବା କଥା । ତୁମ ବାପା କ'ଣ କହୁଛନ୍ତି ? ସେ ରାଜି ତ ?"

"ବାପା ଏଥିରେ ଅରାଜି ହେବାର କିଛି କାରଣ ନାହିଁ ସାର୍ । ବାପା ତ ଅଧିକାଂଶ ଦିନ ଆମେରିକାରେ ଥା'ନ୍ତି । ସେଠାରେ ଆମର ନିଜର ଘର ଓ ଅଫିସ୍ ଅଛି । ମୁଁ ସେଠାକୁ ଗଲେ ଆମ ଘରେ ରହି ଗବେଷଣା କରିବି । ମୁଁ ଯେତେଦିନ ସେଠି ରହିବି, ମା ମୋ ପାଖରେ ରହିବ । ବାପା ମଝିରେ ମଝିରେ ଯିବା ଆସିବା କରୁଥିବେ । ଆମ ଘର କଲମ୍ବିଆ ବିଶ୍ୱବିଦ୍ୟାଳୟଠାରୁ ବେଶି ଦୂର ନୁହେଁ ।"

"ବାଃ, ଖୁବ୍ ବଢ଼ିଆ ହେବ ଶୁଭ୍ର । ତୁମକୁ ଆମେରିକା ଆଉ ବିଦେଶ ଭଲ ଲାଗିବନି । ହେଉ, ତୁମେ ବୋଉ ସହିତ କଥା ହେଉଥାଅ, ମୁଁ ଯାଇ ଟିକିଏ ଶୁଏଁ । ମୋ ଦେହଟା କେମିତି କେମିତି ଲାଗୁଛି, ଭାବୁଛି ଶୋଇଲେ ଟିକିଏ ଭଲ ଲାଗିବ ।"

ସାର୍‌ଙ୍କ ଏ କ'ଣ ହେଲା ଭାବି ହଠାତ୍ ତାଙ୍କ ଦେହରେ ହାତ ମାରି ଚମକି ଉଠିଲା ଶୁଭ୍ରା । "ଏ କ'ଣ ସାର୍, ଆପଣଙ୍କ ଦେହରେ ତାତି । ଆପଣଙ୍କ ଦେହରେ ଜ୍ୱର ନା କ'ଣ ? ଏଠି ଫିବରଥ୍ୟାନ୍ ମିଳିବ କି ମାଉସୀ ? ଦେଖିଲେ ହୁଅନ୍ତା, ସାର୍‌ଙ୍କ ଦେହରେ କେତେ ଉତ୍ତାପ ଅଛି ।"

ଶୁଭ୍ରା ମୁହଁରୁ ଦେବକୁ ଜ୍ୱର ହେବା କଥା ଶୁଣି ସୀମନ୍ତନୀ ଦେବୀ ଚମକି ପଡ଼ିଲେ । ସଙ୍ଗେ ସଙ୍ଗେ ପୁଅ ଦେହରେ ହାତ ବୁଲାଇ ଆଣି କହିଲେ, "ହଁ, ସତରେ ଝିଅ, ପୁଅ ଦେହରେ ତ ଜ୍ୱର ?"

"ମାଉସୀ, ଏଠି କ'ଣ ଫିବରଷ୍ଟେନ୍ ମିଳିବନି ? ମିଳିଲେ ସାର୍‌ଙ୍କ ଦେହରେ କେତେ ଜ୍ୱର ଅଛି, ଜାଣିପାରନ୍ତେ ।"

'ଫିବରଷ୍ଟେନ୍' ନାଁ ଶୁଣି ସୀମନ୍ତନୀ ଦେବୀ ଚମକି ପଡ଼ିଲେ । "ସିଏ ପୁଣି କି ଯନ୍ତ୍ର ଝିଅ । ସେ ଯନ୍ତ୍ର କ'ଣ ମୁଁ ତ ଜାଣିନି । ଏଠି ମିଳିବ କୁଆଡ଼ୁ ? ଥର୍ମୋମିଟରଟାଏ ହେଲେ ତ ଜ୍ୱର ଜାଣି ହୁଅନ୍ତା । ସମ୍ଭବ ହରିବାବୁଙ୍କ ଘରେ ଥର୍ମୋମିଟର ଥିବ । କାହାକୁ ପଠାଇ-ଦେଲେ ତାଙ୍କ ଘରୁ ନେଇ ଆସନ୍ତା ।"

ଶୁଭ୍ରା ସଙ୍ଗେ ସଙ୍ଗେ ଡ୍ରାଇଭରକୁ ଡକାଇ ହରିବାବୁଙ୍କ ଘର ଠିକଣା ଦେଇ ତାଙ୍କ ଘରୁ ଥର୍ମୋମିଟର ଆଣିବା ପାଇଁ ପଠାଇ ଦେଲା । ଦେବବାବୁଙ୍କୁ ଜ୍ୱର ହୋଇଛି ଶୁଣି ହରିବାବୁଙ୍କ ଝିଅ ଶାନ୍ତି ସଙ୍ଗେ ସଙ୍ଗେ ଥର୍ମୋମିଟର ଧରି ହାଜର । ଶାନ୍ତି ହାତରୁ ଥର୍ମୋମିଟର ନେଉଁ ନେଉଁ ଶୁଭ୍ରା ପଚାରିଲା, "ତୁମ ଘରେ କ'ଣ ଫିବରଥ୍ୟାନ୍ ନାହିଁ ? ଫିବରଥ୍ୟାନ୍ ଥିଲେ ଶରୀରର ପ୍ରକୃତ ତାପ ଜାଣିବା ସହଜ ହୁଅନ୍ତା ।"

'ଫିବରଥ୍ୟାନ୍' ନାଁ ଶୁଣି ଶାନ୍ତି ଶୁଭ୍ରା ମୁହଁକୁ କିଛି ନ ବୁଝିଲା ଭଳି ବଲବଲ କରି ଅନାଇ ରହିଲା । ଶାନ୍ତିକୁ ଆଶ୍ଚର୍ଯ୍ୟ ହେବାର ଦେଖି ଶୁଭ୍ରା ତାପ ନେବା ପାଇଁ ଥର୍ମୋମିଟରକୁ ଝାଡ଼ୁ ଝାଡ଼ୁ କହିଲା, "ଫିବରଥ୍ୟାନ୍ ହେଉଛି ଆଧୁନିକ ଯୁଗର ଶରୀରର ତାପ ମାପିବା ପାଇଁ ସର୍ବାଧୁନିକ ଯନ୍ତ୍ର । ସେଥିରେ ଶରୀରର ତାପମାତ୍ରା ଖୁବ୍ ନିର୍ଭୁଲ ଭାବରେ ଓ ସୁବିଧାରେ ମାପି ହୁଏ । ଏହି ଥର୍ମୋମିଟର ଆଜିକାଲି ପୁରୁଣା ହୋଇଗଲାଣି । ଦେବବାବୁଙ୍କ ପାଟିରେ ଥର୍ମୋମିଟର ଦେଉଁ ଦେଉଁ ଶାନ୍ତି ଆଡ଼କୁ ଅନାଇ କହିଲା, "ଏଥିରେ କ'ଣ ତାପମାତ୍ରା ଠିକ୍ ଭାବରେ ଜାଣି ହେବ ? ତେବେ ଯେତେବେଳେ ନାହିଁ, ଏଥିରେ କାମ ଚଳାଇବାକୁ ପଡ଼ିବ । ନାହିଁ ମାମୁଁଠାରୁ କଣାମାମୁଁ ଭଲ । କ'ଣ କହୁଛ ?" ଶାନ୍ତି କିଛି ଉତ୍ତର ନ ଦେଇ ସେହିଭଳି ଠିଆ ହୋଇ ରହିଲା ।

ଦୁଇ ମିନିଟ୍ ଅପେକ୍ଷା କରିବା ପରେ ପାଟିରୁ ଥର୍ମୋମିଟର କାଢ଼ି ଆଣି ଦେଖିଲା-ବେଳକୁ ତାପର ମାତ୍ରା ୧୦୩ ଡିଗ୍ରୀ । ଏତେ ତାପମାତ୍ରା ଦେଖି ବଡ଼ ବ୍ୟସ୍ତ ହୋଇ ଶୁଭ୍ରା କହିଲା, "ଏଠି କ'ଣ ଡାକ୍ତର ମିଳିବେନି ମାଉସୀ ? ଡାକ୍ତର ଦେଖି କହନ୍ତେ, ସାର୍‌ଙ୍କୁ କି

ଜ୍ୱର ହେଲା । ଅଣ୍ଟାଜ୍ୱର ହୋଇଥିଲେ ଚିନ୍ତା ନାହିଁ । ଅନ୍ୟ କିଛି ହୋଇଥିଲେ ଏଠି ହଇରାଣ ହୋଇଯିବା କଥା ।"

ସୀମନ୍ତିନୀ ଦେବୀ ଶାନ୍ତିକୁ ପଚାରିଲେ, ତାଙ୍କ ଗାଁରେ ଡାକ୍ତର ମିଳିବେ କି କଅଣ ? ଶାନ୍ତି ସଙ୍ଗେ ସଙ୍ଗେ ମୁଣ୍ଡ ହଲାଇ କହିଲା, "ନା ମାଉସୀ, ଏଠି ଡାକ୍ତର ନାହାନ୍ତି । ଜଣେ କବିରାଜ ଅଛନ୍ତି । ସେ ଗାଁଟା ଯାକର ସମସ୍ତଙ୍କୁ ଚିକିତ୍ସା କରନ୍ତି । ଆମ ଲୋକେ ଡାକ୍ତର କ'ଣ ଜାଣନ୍ତିନି । ତାଙ୍କୁ ଡାକ ଆଣିଲେ କ'ଣ ଚଳିବନି ?"

କବିରାଜ ନାଁ ଶୁଣି ଶୁଭ୍ରାର ନାକ ଟେକ ହୋଇଗଲା । ତା ପାଟିରୁ ବାହାରି ପଡ଼ିଲା "ହୁଁ, କବିରାଜ କ'ଣ ଦେଖିବେ ? ସେମାନେ କ'ଣ ସଠିକ୍ ଭାବରେ କହିପାରିବେ ସାର୍‌ଙ୍କୁ କି ଜ୍ୱର ହୋଇଛି । ସେମାନେ ଏଣୁତେଣୁ ଗୁଡ଼ାଏ କ'ଣ କହିବେ, ଯାହାକୁ ଆମେ ବୁଝି ପାରିବାନି । ଏଠୁ ସରକାରୀ ଡାକ୍ତରଖାନା କେତେ ଦୂର ? ଡାକିଲେ, ସେମାନେ କ'ଣ ଘରକୁ ରୋଗୀ ଦେଖି ଆସିବେନି ?" ଶୁଭ୍ରା ପଚାରିଲା ।

"ସରକାରୀ ବଡ଼ ଡାକ୍ତରଖାନା ଯାଇ ଖୋର୍ଦ୍ଧାରେ । ଏଠୁଁ ଢେର୍ ଦୂର । ସେମାନେ କ'ଣ ଏତେଦୂରକୁ ଆସିବେ ରୋଗୀ ଦେଖିବା ପାଇଁ ?" ଶାନ୍ତି କହିଲା ।

"ହେଉ, ଥାଉ ଥାଉ । ମୁଁ ଡ୍ରାଇଭରକୁ ବର୍ତ୍ତମାନ କଟକ ପଠାଇ ଦେଉଛି । ସେ ଯାଇ କଟକରୁ ଆମ ଡାକ୍ତରଙ୍କୁ ସଙ୍ଗେ ସଙ୍ଗେ ଗାଡ଼ିରେ ନେଇ ଆସିବ । ସେ ଦେଖିଲେ କହିଦେବେ, ସାର୍‌ଙ୍କୁ କି ଜ୍ୱର ହୋଇଛି ଓ ତାଙ୍କ ଚିକିତ୍ସା କେମିତି କରାଯିବ ।"

ଏତିକ କହି ଶୁଭ୍ରା ଚିଠି ଲେଖି ଡ୍ରାଇଭର ହାତରେ ପଠାଇଦେଲା ନିଜ ପରିବାରର ଚିକିତ୍ସକ ଡାକ୍ତର ନାୟକଙ୍କ ପାଖକୁ । ଚିଠି ପାଇ ସେ ଯେମିତି ଶୀଘ୍ର ସେହି କାର୍‌ରେ ଏଠାକୁ ଚାଲି ଆସନ୍ତି, ଅନୁରୋଧ ଜଣାଇଲା । ଏହା ଅତି ଜରୁରୀ ବୋଲି ଚିଠିରେ ଜଣାଇବାକୁ ଭୁଲିଲାନି ଶୁଭ୍ରା ।

ଡାକ୍ତର ଆସୁ ଆସୁ କାଳେ ଦେବବାବୁଙ୍କ ଶରୀରର ତାପମାତ୍ରା ବଢ଼ିଯିବ, ଏହି ଭୟରେ ସେ ଦେବବାବୁଙ୍କ ମୁଣ୍ଡରେ ନିଜେ ପାଣିପଟି ଦେବାକୁ ଆରମ୍ଭ କରିଦେଲା । ଦେବବାବୁଙ୍କ ପାଇଁ ଶୁଭ୍ରାର ଏତାଦୃଶ ତତ୍ପରତା ଦେଖି ଆଶ୍ଚର୍ଯ୍ୟ ହେଲା ଶାନ୍ତି । ଶୁଭ୍ରା କିଏ, ଏ ହଠାତ୍ ଏଠାକୁ ଆସିଲେ କୁଆଡ଼ୁ, ଦେବବାବୁଙ୍କ ପ୍ରତି ତାଙ୍କର ଏତେ ମମତା କାହିଁକି, ଦେବବାବୁଙ୍କର ସେ କ'ଣ ହେବେ ଆଦି ଭାବି ଭାବି ଅନ୍ୟମନସ୍କ ହୋଇପଡ଼ିଲା ଶାନ୍ତି ।

ଦେବବାବୁଙ୍କର ଜ୍ୱର ହୋଇଛି ବୋଲି ପ୍ରଚାର ହୋଇଯିବାକ୍ଷଣି ଗାଁର ମୁଖିଆ ମୁଖିଆ ଲୋକେ ଦେବବାବୁଙ୍କୁ ଦେଖିବାକୁ ତାଙ୍କ ଘରକୁ ଦୌଡ଼ି ଆସିଲେ । ହରିବାବୁଙ୍କ ପରିବାର ସେମାନଙ୍କ ଭିତରେ ଆଗୁଆ । ସମସ୍ତଙ୍କର ଚିନ୍ତା, ଦେବବାବୁଙ୍କୁ ଏ କ'ଣ ଜ୍ୱର ହେଲା ? ଦେବବାବୁଙ୍କ ବିଛଣା ପାଖରେ ଜଗି ବସିଥିବା ଝିଅଟି କିଏ ସମସ୍ତେ ଆଶ୍ଚର୍ଯ୍ୟ ହେଉଥାନ୍ତି । ସମସ୍ତଙ୍କ ମନରେ ଦେବବାବୁଙ୍କ ଚିନ୍ତା ଏତେ ଅଧିକ ଯେ, ଏହି ନବାଗତା

ଝିଅଟି କଥା କେହି କାହାକୁ ପଗ୍ଭରପାରୁ ନ ଥାନ୍ତି । ଦେବବାବୁ ଯଦି ଏମିତି ଶଯ୍ୟାଶାୟୀ ହୋଇପଡ଼ନ୍ତି, ତେବେ ସେମାନଙ୍କ ଗାଁର ଉନ୍ନୟନମୂଳକ କାମକୁ ତଦାରଖ କରିବ କିଏ ? ଲୋକମାନେ ଏହିଭଳି କେତେ କ'ଣ ଭାବି ଏପଟ ସେପଟ ହେଉଥାନ୍ତି, କଟକରୁ ଡାକ୍ତରଙ୍କୁ ଘେନି ଗାଡ଼ି ଆସି ପହଞ୍ଚିଗଲା । ଶୁଭ୍ରା ଗାଡ଼ିଠାକୁ ଦୌଡ଼ିଯାଇ ଡାକ୍ତରବାବୁଙ୍କୁ ପାଛୋଟି ଆଣିଲା । ଡାକ୍ତର ନାଏକ ଦେବବାବୁଙ୍କୁ ସଙ୍ଗେ ସଙ୍ଗେ ପରୀକ୍ଷା କରି ଟାଇଫଏଡ୍ ହୋଇଛି ବୋଲି ପ୍ରକାଶ କଲେ । ତାଙ୍କର ଯଥାଯଥ ଚିକିତ୍ସା ପାଇଁ ଏ ଗାଁ ମୋଫସଲରେ ତାଙ୍କୁ ନ ରଖି କଟକ ଘେନିଯିବା ପାଇଁ ମତ ଦେଲେ ।

ପୁଅକୁ ଟାଇଫଏଡ୍ ହୋଇଛି ଶୁଣି ସୀମନ୍ତିନୀ ଦେବୀଙ୍କ ହୃଦୟ ଶୁଖିଗଲା । ସ୍ୱାମୀ ତ କଟକରେ ନାହାନ୍ତି, ପୁଅର ଚିକିତ୍ସା କରାଇବ କିଏ ? ପୁଅକୁ ନେଇ କ'ଣ ଏତେଦୂର ସମ୍ବଲପୁରକୁ ଯାଇ ହେବ ? କଟକରେ ଚିକିତ୍ସା କଲେ କେଉଁ ନର୍ସିଂହୋମ୍‌ରେ ତାଙ୍କ ଚିକିତ୍ସା ଭଲ ହେବ, ସେସବୁ ଠିକ୍ କରିବ କିଏ ? ସୀମନ୍ତିନୀ ଦେବୀ ଏହିସବୁ କଥା ଭାବି ଭାବି ମ୍ରିୟମାଣ ହୋଇପଡ଼ିଲେ ।

ସୀମନ୍ତିନୀ ଦେବୀ ମନେ ମନେ ଏହିସବୁ କଥା ଚିନ୍ତା କରୁ କରୁ ଅନ୍ୟମନସ୍କ ଭାବେ କହି ପକାଇଲେ, "ବୁଝିଲୁ ଝିଅ, ଦେବକୁ ତ କଟକ ନେବା କଥା କହୁଛୁ, କିନ୍ତୁ ତା ବାପା ତ କଟକରେ ନାହାନ୍ତି, ତା'ର ଚିକିତ୍ସା କଥା ବୁଝିବ କିଏ ? ମୁଁ ଭାବୁଛି, ତାକୁ କଟକ ନ ନେଇ ସମ୍ବଲପୁରରେ ତା ବାପାଙ୍କ ପାଖକୁ ଘେନିଗଲେ ଅସୁବିଧା କ'ଣ ହୁଅନ୍ତା ?"

"କାହିଁକି ଏତେଦୂର ନେବେ ମାଉସୀ ? ସାର୍ କଟକରେ ଆମ ଘରେ ରହି ଚିକିତ୍ସିତ ହେଲେ କ୍ଷତି କ'ଣ ? ଆମ ଘର କଟକର ଯେକୌଣସି ନର୍ସିଂହୋମ୍‌ଠାରୁ ଅଧିକ ସଫାସୁତୁରା ଓ ସ୍ୱାସ୍ଥ୍ୟକର । ଆମର ନିଜର ଡାକ୍ତର, ନର୍ସ, କମ୍ପାଉଣ୍ଡର ଆଦି ଅଛନ୍ତି । ସାର୍‌ଙ୍କ ଦେଖାସୁହାଁରେ କିଛି ଅସୁବିଧା ହେବନି ମାଉସୀ ।"

"ତୁ ମା, ପୁଅ ପାଇଁ କାହିଁକି ଏତେ ହଇରାଣ ହେବୁ କହିଲୁ ? ଗୋଟିଏ ରୋଗୀକୁ ନିଜ ଘରେ ରଖି ଚିକିତ୍ସା କରିବା କେତେ ଝଞ୍ଝାଳପୂର୍ଣ୍ଣ, ତୁ ଜାଣିନୁ ମା' । ମୁଁ ତାକୁ କାର୍‌ରେ ତା ବାପାଙ୍କ ପାଖକୁ ସମ୍ବଲପୁର ଘେନିଯିବି । ତୋତେ ଅସୁବିଧାରେ ପକାଇବାକୁ ମୋ ଇଚ୍ଛା ନୁହେଁ ମା ।"

"ଏଥିରେ ହଇରାଣ ହେବାର କିଛି ନାହିଁ ମାଉସୀ । ମୋ ବାପା ସାର୍‌ଙ୍କୁ ଏତେ ଖାତିର କରନ୍ତି ଯେ, ସେ ଭାରି ଖୁସି ହେବେ ଆମ ଘରେ ରହି ଚିକିତ୍ସିତ ହେଲେ ।"

ଶୁଭ୍ରାର ଜିଦ୍ ଆଗରେ ସୀମନ୍ତିନୀ ଦେବୀଙ୍କୁ ହାର୍ ମାନିବାକୁ ପଡ଼ିଲା । ଶୁଭ୍ରା ଦେବବାବୁ ଓ ସୀମନ୍ତିନୀ ଦେବୀଙ୍କୁ ଧରି ଯଥା ସମୟରେ ତୁଳସୀପୁର ଘରେ ପହଞ୍ଚିଲା । ମହାନଦୀ କୂଳେ କୂଳେ ଶୁଭ୍ରାର ବିରାଟ ପାଞ୍ଚମହଲା କୋଠା ଲମ୍ବି ଯାଇଛି ଅଧ କିଲୋମିଟର ଯାଏ । ରଜା ନଅର ଭଳି ଏଡ଼େ ବିରାଟ କୋଠା ଦେଖି ସୀମନ୍ତିନୀ ଦେବୀ

ଛାଟଗା । କାର୍ ଫାଟକ ପାର୍ ହୋଇ ପୋର୍ଟିକୋରେ ପହଞ୍ଚିଛି କି ନାହିଁ, ଘରର ଚାକର-ଚାକରାଣୀ, ଖାନସମା, ବବୁର୍ଚି ଆଦି ସମସ୍ତେ କାର୍‌ଠାକୁ ଦୌଡ଼ି ଆସିଲେ । ଝିଅ ଆସିଲା ଦେଖି ଶୁଭ୍ରାର ମା' କାର୍ ପାଖକୁ ନ ଆସି ରହି ପାରିଲେନି । ଶୁଭ୍ରା ଗାଡ଼ିରୁ ଓହ୍ଲାଇ ଦେବବାବୁଙ୍କୁ ଧରି ଧରି ଘର ଭିତରକୁ ନେଉଥାଏ । ଶୁଭ୍ରାର ମା' ଝିଅକୁ କ'ଣ ପଚାରିବାକୁ ଯାଉଥିଲେ, ସେ ପଚାରିବା ପୂର୍ବରୁ ଶୁଭ୍ରା କହିଲା, "ଇଏ ମୋର ମୋ ସାର୍ ଦେବସ୍ମିତବାବୁ । ଆଜି ତୁ ମିଠାଇହାଣ୍ଡି ଦେଇ ଯାହାଙ୍କ ପାଖକୁ ମୋତେ ପଠାଇ ନ ଥିଲୁ, ଇଏ ହେଉଛନ୍ତି ସେଇ ସାର୍ ? ମୁଁ ସେଠି ପହଞ୍ଚି ଦେଖିଲି, ସାର୍‌ଙ୍କୁ ଜ୍ୱର ହୋଇଛି । ଡାକ୍ତର ନାଏକଙ୍କୁ ସେଠାକୁ ଡକାଇ ନେଇ ସାର୍‌ଙ୍କୁ ପରୀକ୍ଷାକରାରୁ ଟାଇଫଏଡ୍ ବୋଲି ଜଣାପଡ଼ିଲା । ଡାକ୍ତର ନାଏକଙ୍କ ଉପଦେଶମତେ ମୁଁ ତାଙ୍କ ଚିକିତ୍ସା ପାଇଁ ସେଠୁ ଆମ ଘରକୁ ନେଇ ଆସିଲି ମା । ସୀମନ୍ତିନୀ ଦେବୀଙ୍କୁ ନିଜ ମା'ଙ୍କ ସହିତ ଚିହ୍ନାଇ ଦେଉଁ ଦେଉଁ ଶୁଭ୍ରା କହିଲା, "ଇଏ ହେଉଛନ୍ତି ସାର୍‌ଙ୍କ ମା । ତାଙ୍କର ଭାରି ଇଚ୍ଛା, ସେ ସାର୍‌ଙ୍କୁ ସମ୍ବଲପୁର ତାଙ୍କ ବାପାଙ୍କ ପାଖକୁ ନେଇଯିବେ । ରୋଗୀକୁ ଏତେ ଦୂରକୁ ନେବା ଉଚିତ୍ ହେବନି ବୋଲି ଡାକ୍ତର ନାଏକ ମତ ଦେବାରୁ ମୁଁ ସାର୍‌ଙ୍କୁ ଆମ ଘରକୁ ନେଇ ଆସିଲି ମା ।"

"ତୁ ଏଠାକୁ ଆଣି ଠିକ୍ କରିଛୁ ମା । ଏଠି ତାଙ୍କର ଚିକିତ୍ସା ହେବାରେ କିଛି ଅସୁବିଧା ହେବନି ।" ସୀମନ୍ତିନୀ ଦେବୀଙ୍କ ଆଡ଼କୁ ଅନାଇ "ଆପଣ ଚିନ୍ତା କରନ୍ତୁନି ଭଉଣୀ । ଦେବବାବୁଙ୍କ ଚିକିତ୍ସାରେ ଏଠି କୌଣସି ତ୍ରୁଟି ହେବନି । ସେ ଦିନ କେଇଟାରେ ଉଠି ବସିବେ । ତାଙ୍କ ଯତ୍ନ ନେବାପାଇଁ ଆମର ନର୍ସ, କମ୍ପାଉଣ୍ଡର ଆଦି ଅଛନ୍ତି, ଆଉ ଯଦି ବିଶେଷଜ୍ଞ ଦରକାର ପଡ଼ନ୍ତି, ଡାକ୍ତର ନାଏକ ସେଥିରେ କିଛି ଅବହେଳା କରିବେନି । ଆପଣ ନିଶ୍ଚିନ୍ତ ହୁଅନ୍ତୁ ଭଉଣୀ, ଦେବବାବୁ ଏଠାରେ ଖୁବ୍ ସୁବିଧାରେ ରହି ଚିକିତ୍ସିତ ହୋଇପାରିବେ ।

× × × ×

ଶୁଭ୍ରାର ଦିନ ରାତି ସେବା ଶୁଶ୍ରୂଷା ଓ ଅକ୍ଳାନ୍ତ ପରିଶ୍ରମ ଫଳରେ ଦେବବାବୁ ଧୀରେ ଧୀରେ ଭଲ ହେବାକୁ ଲାଗିଲେ । ଶୁଭ୍ରା ବାପାଙ୍କ ଅନୁରୋଧରେ ବିଶେଷଜ୍ଞମାନେ ଦିନକୁ ଦୁଇଥର ଲେଖାଏଁ ଦେବବାବୁଙ୍କୁ ଦେଖିବାକୁ ଆସୁଥାନ୍ତି । ନର୍ସମାନେ ନିଯୁକ୍ତ ଥାଇ ମଧ୍ୟ ଦେବବାବୁଙ୍କୁ ପଥ୍ୟ ଖୋଇବା, ଔଷଧ ଦେବା କାମ ଶୁଭ୍ରା ନିଜେ କରେ । ନର୍ସମାନେ ପଥ୍ୟ ଖାଇବାକୁ ଦେଲେ ପାଟିକୁ ଭଲ ଲାଗୁନି ବୋଲି କହି ଦେବବାବୁ ବାଆଁରେଇ ଦିଅନ୍ତି, ଖାଆନ୍ତୁନି । କିନ୍ତୁ ଶୁଭ୍ରା ଖାଇବାକୁ ଦେଲେ ସେ ସେଭଳି କରି ପାରନ୍ତୁନି । ସେ ଜାଣନ୍ତି, ଶୁଭ୍ରା ସହଜରେ ଛାଡ଼ିବ ନାହିଁ । ସେ ଏ ଯୁକ୍ତି ସେ ଯୁକ୍ତି ଦେଖାଇ ଏମିତି ଭାବରେ ଖୁଆଇବ ଯେ, ରୋଗୀ ନ ଖାଇ ରହି ପାରିବନି । ଶୁଭ୍ରାର ପୁଅ ପ୍ରତି ଏତାଦୃଶ ଯତ୍ନ ସୀମନ୍ତିନୀ ଦେବୀଙ୍କୁ ଅତ୍ୟଧିକ ମୁଗ୍ଧ କଲା । ତା'ଛଡ଼ା ଶୁଭ୍ରାର

ସୀମନ୍ତିନୀ ଦେବୀଙ୍କ ପ୍ରତି ଯତ୍ନ ତାଙ୍କୁ ଏତେ ଅଜର କରି ନେଇଥିଲା ଯେ, ସେ ଏତ୍ୱାମଧ୍ୟରେ କେବେ ନିଜ ସ୍ୱାମୀଙ୍କ କଥା କି ଘର କଥା ମନେ ପକାଇବାକୁ ସମୟ ପାଇ ନ ଥିଲେ । ସ୍ୱାମୀଙ୍କର ପୁଅ ପ୍ରତି ଯେଉଁ ମନୋଭାବ, ସେଥିରେ ସେ ତାଙ୍କୁ ଲେଖିଲେ ଆସିବା ତ ଦୂରର କଥା, ଚିଠିର ଉତ୍ତରଟାଏ ଦେବେ କି ନାହିଁ ସନ୍ଦେହ । ଶୁଭ୍ରା ଆଜି ସାହାଯ୍ୟ କରି ନ ଥିଲେ ସେ ଯେ ପୁଅକୁ ଆଣି କଟକରେ କେମିତି ଭଲ କରିଥାନ୍ତେ ଭାବିଲାବେଳକୁ ଆଖିରେ ଲୁହ ରହୁ ନ ଥାଏ । ଶୁଭ୍ରା ପୁଅର ଏମିତି ଯତ୍ନ ନେଉଥାଏ, ଦେବର ସ୍ତ୍ରୀ ଥିଲେ ବି ସେ ଏମିତି ଯତ୍ନ ନେଇଥାନ୍ତା କି ନାହିଁ ସନ୍ଦେହ । ପୁଅର ମୁଣ୍ଡ ବିନ୍ଧିଲେ, ମୁଣ୍ଡ ଚିପିବା ପାଇଁ କାହାକୁ କହିବା ପୂର୍ବରୁ ଶୁଭ୍ରା ନିଜେ ମୁଣ୍ଡ ଚିପି ବସେ । ମୁଣ୍ଡଚିପା ଭିତରେ ସେ ଦେବବାବୁଙ୍କୁ ଭଲ ଲାଗିଲାଭଳି କେତେ କଥାର ଯେ ଅବତାରଣା କରେ, ତା'ର ଇୟତ୍ତା ନାହିଁ ।

ଦିନେ ସନ୍ଧ୍ୟାବେଳେ ଦେବବାବୁଙ୍କ ଗୋଡ଼ ଭୟାନକ ଭାବରେ ବିନ୍ଧିଲା । ଦେବବାବୁ ଭାବିଲେ, ଶୁଭ୍ରା ଘରର ଚାକରକୁ ଡାକିଲେ, ସେ ଟିକିଏ ଗୋଡ଼ ଚିପି ଦିଅନ୍ତା । କାହାକୁ କହିବେ ଡାକି ଦେବାପାଇଁ ? ଏହି ସମୟରେ ହଠାତ୍ ଶୁଭ୍ରା ସେହି ଘର ଭିତରକୁ ପଶି ଆସିଲା । ଘର ଭିତରକୁ ପଶି ଆସିଲେ ଦେବବାବୁଙ୍କଠାରେ କିଛିକ୍ଷଣ ଠିଆ ହୋଇ ସେ କେମିତି ସୁସ୍ଥ ଅନୁଭବ କରୁଛନ୍ତି, ନ ପଚାରି ଯାଏନି । ସେଦିନ ସାରଙ୍କ ପାଖକୁ ଆସିଲାବେଳକୁ ସାର୍ ଗୋଡ଼ ଏପାଖ ସେପାଖ କରି ଚିଡ଼ି ହେଉଥାନ୍ତି । କିନ୍ତୁ କିଛି କହୁ ନ ଥାନ୍ତି କ'ଣ ହୋଇଛି ବୋଲି । ଶୁଭ୍ରା ଅନୁମାନ କରିନେଲା ସାରଙ୍କ ଗୋଡ଼ ବୋଧେ ବିନ୍ଧାବିନ୍ଧି କରୁଛି । ସାର୍‌ଙ୍କୁ ପଚାରିଲାବେଳକୁ ସେ ତାଙ୍କର ଚାକର ସନିଆକୁ ଟିକିଏ ଡାକି ଆଣିବା ପାଇଁ କହିଲେ, ସେ ଆସିଲେ ଗୋଡ଼ ଟିକିଏ ଚିପି ଦିଅନ୍ତା । ଗୋଡ଼ର ତଳ ଅଂଶ ଭୟାନକ ଭାବରେ ବିନ୍ଧୁଥିବାରୁ ସେ ସ୍ଥିର ହୋଇ ଶୋଇପାରୁ ନ ଥାନ୍ତି । ସାର୍‌ଙ୍କୁ ଏଭଳି କଲବଲ ହେବାର ଦେଖି ଶୁଭ୍ରା ସନିଆକୁ ଡାକିବ କ'ଣ, ନିଜେ ସାର୍‌ଙ୍କ ଗୋଡ଼ ପାଖରେ ବସିଯାଇ ଗୋଡ଼ ଚିପିବାକୁ ଆରମ୍ଭ କଲା । ଶୁଭ୍ରାକୁ ନିଜେ ଗୋଡ଼ ଚିପିବା ଦେଖି ଦେବବାବୁ ବ୍ୟସ୍ତ ହୋଇପଡ଼ି କହିଲେ, "ହାଁ, ହାଁ, ଏ କ'ଣ କରୁଛ ଶୁଭ୍ରା । ତୁମେ କ'ଣ ମୋ ଗୋଡ଼ ଚିପି ଦେବାକୁ ବସିଲଣି ? କିଏ ଯଦି ଦେଖିବ ସେ କ'ଣ ଭାବିବ କହିଲ ? ଥାଉ, ଥାଉ, ତୁମେ ଚିପ ନାହିଁ । ସନିଆକୁ ଟିକିଏ ଡାକିଆଣ ।" ଏତିକି କହି ଗୋଡ଼ଟାକୁ ଶୁଭ୍ରା ହାତରୁ ଟାଣିନେଇ କୁଞ୍ଚିକାଞ୍ଚି ହୋଇ ଶୋଇ ରହିଲେ ।

"ମୁଁ ଆପଣଙ୍କ ଗୋଡ଼ ଯେମିତି ଭାବରେ ଚିପି ପାରିବି, ସନା କ'ଣ ପାରିବ ? ସେ ପରା ମୂର୍ଖଟାଏ, ଏଣୁତେଣୁ କରି ଚିପିବ, ଆପଣଙ୍କୁ ଆରାମ ଲାଗିବନି । ଏଥିରେ ଆପଣ ବ୍ୟସ୍ତ ହେଉଛନ୍ତି କାହିଁକି ? ଆପଣ ମୋ ସାର୍, ସାର୍‌ଙ୍କ ସେବା କଲେ କେହି କିଛି ଭାବିବେ ନାହିଁ ସାର୍ ।

"ନା, ନା, ଶୁଭ୍ରା, ସାର୍‌ଙ୍କୁ ଭକ୍ତି କରିବାରେ ଏକ ସୀମା ଅଛି । ମୋ ପାଦ ଚିପିବା, କଥା ତୁମେ କେମିତି ଭାବି ପାରୁଛ ? ତୁମେ ଯାଅ ସନାକୁ ଟିକଏ ଡାକିଆଣ । ସେ ଯେମିତି ଚିପିଲେ ବି ଚଳିବ । ନରେନ୍ଦ୍ର ଡାକ୍ତର ନାଏକଙ୍କୁ ଫୋନ୍ କର । ସେ ଗୋଟାଏ ବଟିକା ବତାନ୍ତୁ, ଯାହାକୁ ଖାଇଲେ ମୋ ଗୋଡ଼ବିନ୍ଧା ବନ୍ଦ ହୋଇଯିବ ।"

ଏହି ସମୟରେ ସୀମନ୍ତିନୀ ଦେବୀ ଘର ଭିତରକୁ ପଶି ଆସିଲେ । ଶୁଭ୍ରା ପୁଅର ଗୋଡ଼ ଟାଣିବା ଓ ପୁଅ ଗୋଡ଼କୁ କୁଞ୍ଚି କରି ନେଉଥିବା ଦେଖି ଶୁଭ୍ରାକୁ ପଚାରିଲେ, "ପୁଅ ଏମିତି ଗୋଡ଼କୁ କାହିଁକି କରୁଛି ମା ? ଗୋଡ଼ ବିନ୍ଧୁଛି ନା କ'ଣ ?"

"ହଁ, ମାଉସୀ, ଗୋଡ଼ ଭୟାନକ ଭାବରେ ବିନ୍ଧୁଛି । ହେଲେ ମୋତେ ଚିପି ଦେବାପାଇଁ ଦେଉ ନାହାନ୍ତି । କହୁଛନ୍ତି କ'ଣ ନା ସନାକୁ ଡାକ, ସେ ଚିପି ଦେବ । ମୁଁ ଚିପିବାକୁ କହିଲାରୁ ସେ ମୋଟେ ରାଜି ହେଉ ନାହାନ୍ତି ।"

"ନା, ଝିଅ, ତୁ ଚିପିଲେ ସୁନ୍ଦର ଦିଶିବନି । ତୁ ଛାଡ଼ ମା, ମୁଁ ଚିପି ଦେଉଛି ।"

"ତା କେମିତି ହେବ ମାଉସୀ ? ଆପଣ ଚିପିବେ ? ମୁଁ ସନାକୁ ଡାକି ଆଣୁଛି ।"

ଶୁଭ୍ରାର ପୁଅ ପ୍ରତି ଏତାଦୃଶ ମମତା ଓ ଶ୍ରଦ୍ଧା ଦେଖି ସୀମନ୍ତିନୀ ଦେବୀ ସ୍ତବ୍ଧ ହୋଇଗଲେ । କେଡ଼େ ବଡ଼ଲୋକ ଘରର ଝିଅ, କେତେ ପାଠୁଆ, ସେଥିରେ ପୁଅର ଗୋଡ଼ ଚିପି ଦେବା ପାଇଁ କେତେ ଆଗ୍ରହ ? ଶୁଭ୍ରାର ଏତାଦୃଶ ଆତ୍ମୀୟତା ଦେଖି ଶୁଭ୍ରା ପ୍ରତି ତାଙ୍କର ଆକର୍ଷଣ ଆହୁରି ବଢ଼ିଗଲା । ମନେ ମନେ ଭାବିଲେ, ଆଃ, ଶୁଭ୍ରାଭଳି ବୋହୂଟାଏ ମିଳନ୍ତା କି, ସେ ନିଜକୁ ଅତି ଭାଗ୍ୟବାନ ବୋଲି ମଣନ୍ତେ । ପର ମୁହୂର୍ତ୍ତରେ ଭାବନ୍ତି, ଆଁ, ମୁଁ କ'ଣ ଭାବୁଛି ସତେ ? ଶୁଭ୍ରା କେଡ଼େ ବଡ଼ଲୋକର ଝିଅ, ପୁଣି ଜାତିରେ ବ୍ରାହ୍ମଣ । ତା'ଛଡ଼ା ବାପା ମା'ଙ୍କର ଗୋଟିଏ ବୋଲି ଝିଅ, ଅଚଳାଚଳ ସମ୍ପତ୍ତି, ସେଥିରେ ସେ କ'ଣ ତାଙ୍କ ବୋହୂ ହୋଇ ପାରିବ ? ଭଗବାନ କ'ଣ ସତରେ ପୁଅ ଭାଗ୍ୟରେ ଶୁଭ୍ରା ଭଳି ବୋହୂଟେ ଲେଖିଛନ୍ତି ?

ଦୁଇଁ ତିନିଁ ଦିନ କେଇଟାରେ ଦେବବ୍ରତ ଭଲ ହୋଇ ଆସିଲେ । ଭଲ ହୋଇଗଲା ପରେ ସେ ଯେତେବେଳେ ଗୋବିନ୍ଦପୁରକୁ ଫେରିବା ପ୍ରସ୍ତାବ ଦିଅନ୍ତି, ଶୁଭ୍ରା ତାକୁ ଗ୍ରହଣ କରିବାକୁ ନାରାଜ । ତା'ର ଜିଦ୍ ଟାଇଫଏଡ଼ରୁ ଭଲ ହେବାପରେ ଦେବବ୍ରତ ଏତେ ଦୁର୍ବଳ ହୋଇ ପଡ଼ିଛନ୍ତି ଯେ, ସେ ଆହୁରି କିଛିଦିନ ବିଶ୍ରାମ ନେବା ଦରକାର । ସେ ଏତେ ଦୁର୍ବଳ ଅବସ୍ଥାରେ ଗୋବିନ୍ଦପୁର ଗଲେ, ସେଠି ସେଇ କାର୍ଯ୍ୟ ସେ ନିଜକୁ ଆୟତ୍ତରେ ନ ରଖି ବହୁ କାର୍ଯ୍ୟରେ ନିଜକୁ ବ୍ୟସ୍ତ ରଖିବେ, ଯା'ଫଳରେ ତାଙ୍କ ଦେହ ପୁଣି ଖରାପ ହୋଇଯିବାର ସମ୍ଭାବନା । ସେ ପୂରାପୂରି ଭଲ ହୋଇଗଲେଣି ବୋଲି ଶୁଭ୍ରାକୁ ଯେତେ କହିଲେ ମଧ୍ୟ ସେ ତାଙ୍କୁ ଗୋବିନ୍ଦପୁର ଛାଡ଼ିବାକୁ ନାରାଜ । ତା'ର ଯୁକ୍ତି ସେ ପୂରାପୂରି ଭଲ ହୋଇଯାନ୍ତୁ, ତାଙ୍କ ଦୁର୍ବଳତା ଯାଉ, ତା'ପରେ ସେ ଯିବେ । ଶୁଭ୍ରାର ଯାହା ମତ, ତା ବାପ ମା'ଙ୍କର ମଧ୍ୟ ଠିକ୍ ସେହି ମତ ।

ଦିନେ ଏକାନ୍ତରେ ସୀମନ୍ତିନୀ ଦେବୀ ପୁଅ ସହିତ କଥା ହେଉ ହେଉ ଶୁଭ୍ରାର ଅଲୌକିକ ଯତ୍ନ ନେବା କଥା ପକାଇଲେ । ଶୁଭ୍ରା ଏହି କେତେଦିନ କାଳ ପୁଅର ଯେଉଁ ଯତ୍ନ ଓ ସେବାଶୁଶ୍ରୂଷା କରିଛି, ସୀମନ୍ତିନୀ ଦେବୀ ସେଥିରେ ବିଭୋର ହୋଇ ପଡ଼ିଥାନ୍ତି । ସେ ଶୁଭ୍ରା ଉପରେ ଏତେ ପ୍ରୀତ ଯେ, କେହି ଯଦି କହନ୍ତା, ଶୁଭ୍ରା ବାପ ମା, ଶୁଭ୍ରାକୁ ଦେବବାବୁଙ୍କ ସହିତ ବିଭା ଦେବାପାଇଁ ରାଜି, ତେବେ ସେ ସଙ୍ଗେ ସଙ୍ଗେ ବ୍ରାହ୍ମଣ ଜ୍ୟୋତିଷ ଡାକିଆଣି ସେଇଠି ବିଭାଘର କରି ଦିଅନ୍ତେ । ଦିନେ ସୀମନ୍ତିନୀ ଦେବୀ ପୁଅ ପାଖରେ ଶୁଭ୍ରାକୁ ବୋହୂ କରିବାର ଇଚ୍ଛା ପ୍ରକାଶ କରନ୍ତେ ଦେବବାବୁ ଚମକିପଡ଼ି କହିଲେ, "ଦେଖ ବୋଉ, ତୁ ସେ ଭୁଲ କେବେ କରିବୁନି ? ଶୁଭ୍ରାର ବାପା ଯେଭଳି ଭାବରେ ବଡ଼ଲୋକ, ଶୁଭ୍ରା ଯେଭଳି ଭାବରେ ବଢ଼ି ଆସିଛି, ଯେଭଳି ଉଚ୍ଚ ଶିକ୍ଷିତା, ସେଥିରେ ସେ କ'ଣ ଆମ ଘରେ ବୋହୂ ହୋଇ ଚଳି ପାରିବ ? ସେମାନେ ବ୍ରାହ୍ମଣ, ସେମାନଙ୍କ ପରିବାରର ଚାଲିଚଳଣି, ଆଦବକାଏଦା ଦେଖୁଛୁ ତ, ସେଥିରେ ତୁ ଶୁଭ୍ରାକୁ ବୋହୂ କରିବୁ ବୋଲି କେମିତି ଭାବୁଛୁ କହିଲୁ ? ମୋ ଭଳି ଜଣେ ବେକାର ଲୋକକୁ ଜଣେ ସାଧାରଣ ଲୋକ ବି ଜୋଇଁ କରିବାକୁ ପଛାଇବ । ସେ ପରିସ୍ଥିତିରେ ଶୁଭ୍ରାର ବାପ ମା କେମିତି ରାଜି ହେବେ କହିଲୁ ? ଶୁଭ୍ରା କଥା ଭାବି ନିଜ ମୁଣ୍ଡକୁ ଆଉ ଖରାପ କର ନା ବୋଉ ?"

"ତୁ ଯା କହ ପୁଅ, ଶୁଭ୍ରା ମୋ ମନକୁ ଘାରି ପାଇଛି । ମୁଁ ଜାଣିପାରୁଛି ସେ ତୋର ଉପଯୁକ୍ତ ସ୍ତ୍ରୀ ହୁଅନ୍ତା । ସେ ତୋତେ ଯେଭଳି ଭାବରେ ଭଲ ପାଏ ଓ ତୋର ସେବା ଶୁଶ୍ରୂଷା ଓ ଯତ୍ନ ନେବାରେ ଯେଭଳି ଆଗ୍ରହ ଦେଖାଏ, ତୋର ନିଜର ସ୍ତ୍ରୀ ଥିଲେବି ସେମିତି ନିଅନ୍ତା କି ନାହିଁ ସନ୍ଦେହ ।

"ଥାଉ ଥାଉ ବୋଉ, ଆଉ କହନା । ସେମାନଙ୍କ ଘରେ କିଏ ଯଦି ଶୁଣିବ ଖରାପ ଭାବିବ । ତୁ ଜାଣିଛୁ, ଶୁଭ୍ରାକୁ ବିଭା ହେବାପାଇଁ ପରା କେତେ ଆଇ.ଏ.ଏସ୍. ଅଫିସର ଅନାଇ ବସିଛନ୍ତି ।"

"ମୋ ପୁଅ ଆଉ କେଉଁ ଅଯୋଗ୍ୟ କି ? ସେ ବି ତ ଦିନେ ଆଇ.ଏ.ଏସ୍. ଅଫିସର ଥିଲା ।"

"ସେସବୁ ତ ମୋ ଅତୀତ କଥା । ବର୍ତ୍ତମାନ ଦେଖିଲେ କ'ଣ ? ମୁଁ ଜଣେ ବେକାର ତ ? ତୁ ଆଉ ମୁଣ୍ଡ ଖରାପ କରନା । ଆମେ ଶୀଘ୍ର ଏଠୁ କେମିତି ବିଦା ହେବା ସେ ଦିଗରେ ଚେଷ୍ଟା କର ।"

ଦିନେ ସୀମନ୍ତିନୀ ଦେବୀ ଶୁଭ୍ରାଘରର ଡ୍ରଇଂରୁମ୍‌ରେ ବସି ଗୋଟାଏ ମେଗାଜିନ୍ ପଢୁଥାନ୍ତି । ଦେବବାବୁଙ୍କ ଶୋଇବା କକ୍ଷରେ ଦେବବାବୁ ଶୁଭ୍ରା ସହିତ ଆଲୋଚନାରେ ବ୍ୟସ୍ତ । ଆଲୋଚନାର ମୂଳ ଗ୍ରାମଦାନ ଓ ଭୂଦାନର ମହତ୍ତ୍ୱ । ଦେବବାବୁ ଏହି ମହତ୍ତ୍ୱ କାର୍ଯ୍ୟର ପ୍ରଶସ୍ତି ଗାଇ ଚାଲିଥାନ୍ତି । ଶୁଭ୍ରା ସେସବୁକୁ ପିଇଗଲା ଭଳି ମନଦେଇ ଶୁଣୁଥାଏ ।

ଏହି ସମୟରେ ଶୁଭ୍ରାର ମା ପ୍ରତିମା ଦେବୀ ଡ୍ରଇଂରୁମ୍‌କୁ ପଶି ଆସି ସୀମନ୍ତିନୀ ଦେବୀଙ୍କ ପାଖ ସୋଫାରେ ବସିଲେ । ଦେବବାବୁଙ୍କ ଭବିଷ୍ୟତ ଜୀବନ ନେଇ କେତେକଥା ପଡ଼ିଲା । ସେ କେମିତି ଗୋବିନ୍ଦପୁରରେ ଏକାକିଆ ପଡ଼ି ରହି ଦେଶ କାମରେ ଲାଗିଛନ୍ତି, ଗ୍ରାମଦାନ ଭଳି ଏକ ଉଚ୍ଚ ଚିନ୍ତାଧାରାକୁ କାର୍ଯ୍ୟରେ ପ୍ରତିଫଳିତ କରିବାକୁ ଜିପରି ଚେଷ୍ଟା କରୁଛନ୍ତି, ବର୍ତ୍ତମାନ ଯୁଗରେ ଏହା କିଛି କମ୍ ବଡ଼ କଥା ନୁହେଁ । ସାରା ଦୁନିଆର ଲୋକେ ଯେତେବେଳେ ନିଜ ନିଜ ସ୍ୱାର୍ଥ ପାଇଁ ପାଗଳ, ସ୍ୱାର୍ଥ ନେଇ ବ୍ୟକ୍ତି ବ୍ୟକ୍ତି ଭିତରେ ଯେଉଁ ସଂଘର୍ଷ, ସେତିକବେଳେ ସେ ଏତେବଡ଼ ଏକ ଅପରୀକ୍ଷିତ ଚିନ୍ତାଧାରାକୁ ପରୀକ୍ଷା କରି ଏହାର ବାସ୍ତବତାକୁ ପ୍ରତିପାଦନ କରିବାରେ ଲାଗିଛନ୍ତି, ଏହା କିଛି ସାଧାରଣ କଥା ନୁହେଁ । ଶୁଭ୍ରାର ବାପା ଏଭଳି କାର୍ଯ୍ୟକୁ କେମିତି ଭାରି ପସନ୍ଦ କରନ୍ତି ସେକଥା ବୁଝାଇବାକୁ ଭୁଲିଲେନି ପ୍ରତିମାଦେବୀ । ତାଙ୍କ ମତରେ ଦେବବାବୁ ଆଜିକାଲି ଦୁନିଆରେ ମଣିଷ ନୁହଁନ୍ତି, ଜଣେ ଦେବତା । ଦେବତା ନ ହୋଇଥିଲେ ନିଜ ପ୍ରତି ଦୃଷ୍ଟି ନ ଦେଇ ଗୋବିନ୍ଦପୁର ଅଞ୍ଚଳରେ ହଜାର ହଜାର ଦୁଃଖୀ ରଙ୍କିଙ୍କ ଉନ୍ନତି ପାଇଁ ସେ କ'ଣ ଦିନରାତି ଏତେ ପରିଶ୍ରମ କରୁଥାନ୍ତେ ? ତାଙ୍କ ମତରେ, ଦେବବାବୁ ହେଉଛନ୍ତି ମହାତ୍ମା ଗାନ୍ଧୀଙ୍କ ପରେ ଦ୍ୱିତୀୟ ମହାତ୍ମା ଗାନ୍ଧୀ । ଆମ ଲୋକେ ତାଙ୍କ ମାହାତ୍ମ୍ୟ ବୁଝିଲେ ହିଁ ଏ । ପ୍ରତିମା ଦେବୀ ଓ ତାଙ୍କ ସ୍ୱାମୀ ଦେବବାବୁଙ୍କ ସରଳତା, ଆଦର୍ଶ, ପରୋପକାରିତାରେ ଏତେ ମୁଗ୍ଧ ଯେ, ସୀମନ୍ତିନୀ ଦେବୀ ଯଦି ଅନୁମତି ଦିଅନ୍ତେ, ତେବେ ସେ ତାଙ୍କ ଆଗରେ ଗୋଟିଏ ପ୍ରସ୍ତାବ ରଖନ୍ତେ ବୋଲି କହିଲେ ।

ପ୍ରତିମା ଦେବୀଙ୍କ ପ୍ରସ୍ତାବ ଦେବାକଥା ଶୁଣି ସୀମନ୍ତିନୀ ଦେବୀ ଉତ୍ସୁକ ହୋଇ-ପଡ଼ିଲେ । ସୋଫା ଉପରେ ଟିକିଏ ସଳଖି ବସି କହିଲେ, "ଆପଣ ଗୋଟିଏ ପ୍ରସ୍ତାବ ଦେବେ, ଏଥିରେ ମୋ ଅନୁମତି ଦରକାର କ'ଣ ଭଉଣୀ ? ଆପଣ କହନ୍ତୁ ନାହାନ୍ତି କ'ଣ କହିବେ ।"

"ଆପଣ ତ ଏହି କେତେଦିନ ହେଲା ଦେଖିବେଣି ଭଉଣୀ, ଶୁଭ୍ରା କେମିତି ଦେବବାବୁଙ୍କ ପ୍ରତି ଅନୁରକ୍ତ । ଶୁଭ୍ରା ଦେବବାବୁଙ୍କୁ ଅତି ନିଜର ବୋଲି ଭାବେ । ପାଠ-ପଢ଼ାଠାରୁ ଆରମ୍ଭ କରି ଗବେଷଣା ପର୍ଯ୍ୟନ୍ତ ସବୁଥିରେ ଦେବବାବୁ ତା'ର ଆଦର୍ଶ । ଦେବବାବୁଙ୍କ ସହିତ ଶୁଭ୍ରାର ବିବାହର କରିଦେଲେ କେମିତି ହୁଅନ୍ତା ? ତା ବାପା ମୋତେ କାଲି ରାତିରେ ଆପଣଙ୍କୁ ଏକଥା ପଚାରିବା ପାଇଁ କହିଦେଇ ଯାଇଛନ୍ତି ।"

ପ୍ରସ୍ତାବଟି ଶୁଣି ସୀମନ୍ତିନୀ ଦେବୀ ଏତେ ଖୁସି ହୋଇଗଲେ ଯେ, ତାକୁ ଭାଷାରେ ବର୍ଣ୍ଣନା କରିବା କଷ୍ଟକର । ତାଙ୍କ ମନ ଆନନ୍ଦରେ ପୁରି ଉଠୁଥାଏ । ଭଗବାନ ତାଙ୍କ ମନକଥା ଜାଣି ଏ ପ୍ରସ୍ତାବଟା ପଠାଇଲେ ସତେ ! ଶୁଭ୍ରା ଭଳି ବୋହୂଟେ ପାଇଲେ ସେ କେତେ ଯେ ଖୁସି ହୁଅନ୍ତେ ତା'ର ସୀମା ନାହିଁ । ଭଗବାନ କରନ୍ତୁ ପ୍ରସ୍ତାବଟି କାର୍ଯ୍ୟରେ ପରିଣତ ହେଉ । ନିଜ ଖୁସିକୁ ନିଜ ମନ ଭିତରେ ଚାପି ରଖି ସୀମନ୍ତିନୀ ଦେବୀ କହିଲେ,

"ଆପଣଙ୍କ ପ୍ରସ୍ତାବଟି ଅତି ଭଲ ପ୍ରସ୍ତାବ ଭଉଣୀ । ଦୁହେଁ ତ ପରସ୍ପରକୁ ପ୍ରାୟ ଚାରି ପାଞ୍ଚ ବର୍ଷ ହେଲା ଭଲ ଭାବରେ ଜାଣନ୍ତି, ତେଣୁ କେହି ଅରାଜି ହେବାର ଆଶଙ୍କା ନାହିଁ । ପ୍ରସ୍ତାବଟି ବେଶ୍ ମୋ ମନକୁ ପାଇଛି । କିନ୍ତୁ ଗୋଟିଏ କଥା, ଆପଣମାନେ ହେଲେ ବ୍ରାହ୍ମଣ, ଆମେ ତ କରଣ, ଜାତିଗତ ପାର୍ଥକ୍ୟ ଏଥିରେ କ'ଣ ପ୍ରତିବନ୍ଧକ ସୃଷ୍ଟି କରିବନି ଭଉଣୀ ?"

ହସିଲେ ପ୍ରତିମା ଦେବୀ, "ଆଜିକାଲି ଯୁଗରେ ଏହି ଜାତିଭେଦ ପ୍ରଥାକୁ କିଏ ମାନୁଛି କହିଲେ ? ଆଜିକାଲି ଭିନ୍ନ ଭିନ୍ନ ଜାତି ଭିତରେ କେତେ ବାହାଘର ହେଉଛି ଦେଖୁ ନାହାନ୍ତି ଆପଣ ।"

"ଦେଖୁଛି ଯେ ! ହେଲେ ସେସବୁ ପୁଅ ଝିଅଙ୍କ ମନାମନି ବାହାଘର । ଏମିତି ଯୋଗାଡ଼ କରି କଥାବାର୍ତ୍ତା କରିଆରେ ବାହାଘର କ'ଣ ଭିନ୍ନ ଭିନ୍ନ ଜାତି ଭିତରେ ହେଲଣି ? ପୁଅ ଭଲ ପାଇଲା ଝିଅକୁ, ଝିଅ ଭଲ ପାଇଲା ପୁଅକୁ, ବାହାଘର କରିବାକୁ ବାଧ୍ୟ । ସେଥିରେ ଜାତିଫାତି କ'ଣ ? କିନ୍ତୁ ଭିନ୍ନ ଭିନ୍ନ ଜାତି ମଧ୍ୟରେ କଥାବାର୍ତ୍ତା କରି ପୁଅ ଝିଅଙ୍କ ବାହାଘର ତ ଏ ପର୍ଯ୍ୟନ୍ତ କେଉଁଠି ହୋଇନି । ଆମର ପୁରୁଣାକାଳିଆ ବ୍ରାହ୍ମଣମାନେ ଏମିତି ବାହାଘର କରାଇବାକୁ କ'ଣ ଆଗେଇ ଆସିବେ । ସେମାନେ ତ କେତେ ଗୋଳମାଳ ବାହାର କରିବେ ।"

"ହଁ, ଆପଣ ଯାହା କହିଲେ କେଉଁଠି ହୋଇନି ତା ସତ । ହେଲେ ବର୍ତ୍ତମାନ ଆମେ କଲେ କ୍ଷତି କ'ଣ ? ଆମେ ଦୁଇପକ୍ଷ ଯେତେବେଳେ ରାଜି, ସେଥିରେ ବାଧା ଦେବ କିଏ ? ପୁରୋହିତମାନଙ୍କ କଥା କହୁଛନ୍ତି ? କିଛି ଅଧିକ ପାଉଣା ଦେଇଦେଲେ ସେମାନେ କ'ଣ ଅରାଜି ହେବେ ? ପଇସା ଆଗରେ ଶାସ୍ତ୍ର ପୁରାଣ ସବୁ ମିଳେଇ ଯିବ ।"

"ଆପଣଙ୍କ ଭାଇ ବିରାଦରମାନେ ? ସେମାନେ ତ ନିଶ୍ଚୟ ପାଟିତୁଣ୍ଡ କରିବେ ।"

"ସେମାନଙ୍କୁ ପଚାରିବ କିଏ ? ଆଜିକାଲି ଜାତି ଜାତି ଭିତରେ ଆଉ ଆଗଭଳି କଠୋର ମନୋଭାବ ନାହିଁ । ତା'ଛଡ଼ା ବାବୁଙ୍କ ମୁହଁ ଉପରେ କହିଲାଭଳି ଆମର କେହି ଭାଇ ବିରାଦରି ବନ୍ଧୁବାନ୍ଧବ ନାହାନ୍ତି । ବାବୁ ଯାହା କହିବେ, ସେମାନେ ସାଦରେ ଗ୍ରହଣ କରିବେ । ଆପଣ ସେ ବିଷୟରେ ନିଶ୍ଚିନ୍ତ ରହନ୍ତୁ ଭଉଣୀ । ଦେବବାବୁଙ୍କର ମତାମତ କ'ଣ କହନ୍ତୁ । ଆମେ ଏମିତି ଗୋଟିଏ ବାହାଘର କରିଦେଲେ, ଏହା ସବୁଦିନ ପାଇଁ ଆଦର୍ଶ ହୋଇ ରହିବ । ଏହି ଅଲଗା ଅଲଗା ଜାତି ଭିତରେ ବାହାଘର ଯେତେ ବଢିବ, ଆମ ଦେଶ ପାଇଁ ସେତେ ମଙ୍ଗଳ ।"

"ଠିକ୍ କଥା କହୁଛନ୍ତି ଆପଣ । ମଣିଷ ତ ଗୋଟିଏ ଜାତି । ତା ଭିତରେ ପୁଣି ଏ ଜାତି ସେ ଜାତି କଅଣ ? ଆପଣଙ୍କ ରାଜି ଉପରେ ମୋର ରାଜି । ମୁଁ ଦେବକୁ ଏ ପର୍ଯ୍ୟନ୍ତ ଏ ବିଷୟରେ ପଚାରିନି ଭଉଣୀ । ସେ ବର୍ତ୍ତମାନ ପାଇଁ ରାଜି ହେବ କି କଅଣ ଟିକିଏ ମୁଁ ବୁଝିନିଏ ।"

"ଆଉ ତାଙ୍କ ବାପା ?"

"ହଁ, ତାଙ୍କୁ ବି ପଚ୍ଚାରିବାକୁ ପଡ଼ିବ । ତେବେ ମୁଁ ଯେତେବେଳେ ରାଜି, ସେ ସମ୍ଭବତଃ ଅରାଜି ହେବେନି ।"

"ହେଉ, ଆପଣ ତା'ହେଲେ ଦେବବାବୁଙ୍କ ମତ ନିଅନ୍ତୁ । ଆମେ ଶୁଭ୍ରାର ମତ ନେଇ ସାରିଛୁ । ଶୁଭ୍ରା ଏହି ପ୍ରସ୍ତାବରେ ପୂରାପୂରି ରାଜି । ବାହାଘର କଥା ଯଦି ହୁଏ, ତେବେ ସେ ଆମେରିକା ଯିବା ମଧ୍ୟ ବାତିଲ କରି ଦେଇପାରେ । ଶୁଭ୍ରାର ଇଚ୍ଛା ଦେଖି ତା ବାପା ଆମେରିକା ଯିବା ବନ୍ଦ କରିଛନ୍ତି । ଯଦି ଉଭୟ ପକ୍ଷ ରାଜି ହୋଇଯାନ୍ତି, ତେବେ ସେ ଆସନ୍ତା ମାସରେ ଏହି ଶୁଭ କାମଟା ଶେଷ କରିଦେବାକୁ ଇଚ୍ଛୁକ ।"

× × × ×

ସେଦିନ ଦେବବାବୁ ତାଙ୍କ ମା'ଙ୍କ ସହିତ ଗୋବିନ୍ଦପୁରକୁ ଫେରିବା ସମ୍ବନ୍ଧରେ କଥା ହେଉଥାନ୍ତି । ହଠାତ୍ ତାଙ୍କ ମା କହି ପକାଇଲେ, "ମୁଁ ତେର୍ ଦିନ ହେଲା ସମ୍ବଲପୁରରୁ ଆସିଲିଣି ବାପ । ମୋ କଥା କି ତୋ ଦେହ ଖରାପ କଥା, ତୋ ବାପାଙ୍କୁ ଜଣାଇନି । ସେ ଭାରି ବ୍ୟସ୍ତ ହେଉଥିବେ । ମୁଁ ଭାବୁଛି, ତୁ ଏଠୁ ଗୋବିନ୍ଦପୁରକୁ ଫେରିଗଲେ ମୁଁ ସମ୍ବଲପୁର ଚାଲିଯାନ୍ତି । ସେଠି ତୋ ବାପାଙ୍କ ଦେହପା .କେମିତି ଅଛି ତେର୍ ଦିନ ହେଲା କିଛି ଖବର ପାଇନି ।"

"ହଁ ବୋଉ, ମୋ ଦେହ ତ ଭଲ ହୋଇଗଲାଣି । ତୁ ଏଥର ବାପାଙ୍କ ପାଖକୁ ଚାଲିଯା । ତେର୍ ଦିନ ହେଲା ତୁ ଏଆଡ଼େ ରହିଗଲୁଣି । ବାପା ମନେ ମନେ ତୋ ଉପରେ ବିରକ୍ତ ହେଉଥିବେ । ମୋର କିଛି ଅସୁବିଧା ହେବନି ଗୋବିନ୍ଦପୁରରେ । ମୁଁ ଏକା ଏକା ବେଶ୍ ଚଳି ପାରିବି ସେଠି ।"

"ନା ପୁଅ, ତୁ ସେଠି ଏକା ଏକା ଚଳିବା ମୋତେ ଭଲ ଲାଗିବନି । ତୁ ଏତେବଡ଼ ବେମାରୀରୁ ଉଠିଛୁ, ଅତ୍ୟଧିକ ପରିଶ୍ରମ କଲେ ଫେର୍ ଯଦି ରୋଗ ଲେଉଟିବ ନା ବଡ଼ ହଇରାଣ ହୋଇଯିବୁ । ମୁଁ କ'ଣ କହୁଥିଲି କି ଏ ଭିତରେ ତୋର ବାହାଘର କରିଦେଲେ, ବୋହୂକୁ ନେଇ ତୁ ସେଠାରେ ରହନ୍ତୁ । କିଛି ଅସୁବିଧା ହୁଅନ୍ତାନି । ସେ ତୋର ଯତ୍ନ ନିଅନ୍ତା, ତୁ ତୋ କାର୍ଯ୍ୟରେ ଲାଗନ୍ତୁ । ମୁଁ ସମ୍ବଲପୁରରେ ନିଶ୍ଚିନ୍ତରେ ରହି ପାରନ୍ତି । ତୁ ଏକା ଏକା ସେଠି ରହିଲେ ମୁଁ ନିଶ୍ଚିନ୍ତ ହୋଇ ରହି ପାରିବିନି ତୋ ବାପାଙ୍କ ପାଖରେ ।"

"ଫେର୍ ସେଇ ଗୋଳମାଳ କାହିଁକି ପୂରାଉଛୁ କହିଲୁ ? ମୁଁ ବର୍ତ୍ତମାନ ଯେଉଁ କାମରେ ହାତ ଦେଇଛି, ସେଥିରେ ବାହାଘର ଗୋଳମାଳ କଥା ପୂରାଇଲେ ସବୁ କାମ ଭଣ୍ଡୁର ହୋଇଯିବ ବୋଉ । କିଛି ହୋଇ ପାରିବନି ।"

"ବାହାଘର ନାଁ ଧରିଲେ ତୁ ମୋତେ ଧମକୁଆଁ ଦେଉନୁ କାହିଁକି ? ମୁଁ ଏଥର ତୋତେ ଛାଡ଼ିବିନି । ତୋର ବାହାଘର ନିଶ୍ଚୟ କରାଇ ତୋତେ ଛାଡ଼ିବି ।"

"ତୁ ଯଦି ଏତେ ଜିଦ୍ ଧରୁ, ତେବେ ମୁଁ ନାଚାର । ତୁ ଦେଖୁନୁ ବୋଉ, ମୋର ଚାକିରିବାକିରି ନାହିଁ, ମୋତେ ଝିଅ ଦେବ କିଏ ? ବେକାର ଲୋକକୁ ଝିଅ ଦେବାକୁ ଗଳାବଳିଏ ହେଲେବି ପଛେଇବ ।"

"ମୋ ପୁଅର ଏମିତି କ'ଣ ହୋଇଛି କି କେହି ଝିଅ ଦେବେନି ? ମୋ ପୁଅ, ପୁଣି ଆଉ କାହା ପୁଅ ? ହଜାରକରେ ଏମିତି ପୁଅ କାହାର ଗୋଟିଏ ନ ଥିବ ?"

"ଥାଉ ଥାଉ, ତୋ ପୁଅ ଖୁବ ଭଲ । ଆଉ କହନା । ସବୁ ମା'କୁ ତା ପୁଅ ଭଲ ଲାଗେ । ବେକାରିଆ ପୁଅକୁ ଯେ ତୁ ପୁଅ ଭିତରେ କେମିତି ଗଣୁଛୁ, ମୁଁ ଆଶ୍ଚର୍ଯ୍ୟ ହେଉଛି ।"

"ଗତକାଲି ଶୁଭ୍ରାର ମାଆ ମୋତେ ଶୁଭ୍ରାର ବିବାହ ପ୍ରସ୍ତାବ କଥା କହୁଥିଲେ । ସେ ଚାହୁଁଛନ୍ତି, ଶୁଭ୍ରା ଆମେରିକା ଯିବା ପୂର୍ବରୁ ତା ବାହାଘର କରିଦେବେ ।"

"ଆଁ, କରିଦେବେ ? ବରପାତ୍ର ଠିକ୍ ହୋଇଯାଇଛି ନା କ'ଣ ? ହୋଇଥିବ ନିଶ୍ଚୟ, ନ ହେବ କାହିଁକି ? ଶୁଭ୍ରା ଭଲ ଉଚ୍ଚ ଶିକ୍ଷିତା, ଭଦ୍ର ଝିଅକୁ ବରପାତ୍ର ଅଭାବ ହେବେନି । ସେ ପରା କେତେ ଆଇ.ଏ.ଏସ୍.ଙ୍କୁ ଗୋଡ଼ରେ ଠେଲି ଦେଇଛି ।"

"ତା ବାପା ମା କ'ଣ ଚାହୁଁଛନ୍ତି ଜାଣୁ ? ସେମାନେ ଚାହାଁନ୍ତି ତା ବାହାଘର ତୋ ସହିତ କରିବାକୁ । ମୁଁ ସେଥିରେ ରାଜି ହୋଇ ଯାଇଛି । ତୋ ବାପାଙ୍କୁ ମୁଁ ରାଜି କରାଇ-ନେବି ବୋଲି କହିଛି । ତୋ ମତ କ'ଣ କହିଲୁ ? ଶୁଭ୍ରା ଭଲି ଝିଅଟେ ଦୁନିଆରେ ମିଳିବା କଷ୍ଟ । ମୋ ମନକୁ ଖୁବ ପାଇଛି ।"

ଶୁଭ୍ରା ବାହାଘର ମୋ ସହିତ କରିବାକୁ ତୁ ଚାହୁଁଛୁ ? ତୋ ମୁଣ୍ଡ ଠିକ୍ ଅଛି ତ ? କେତେଥର କହିଲିଣି, ସେ ଭୁଲ୍ ତୁ କରନା ବୋଉ । ସେମାନେ ପରା ବ୍ରାହ୍ମଣ, ଆମେ କରଣ । ବାହାଘର କେମିତି ହେବ କହିଲୁ ? ସେମାନଙ୍କୁ ସେମାନଙ୍କ ଭାଇ-ବରାଦର ଏକଘରିଆ କରିଦେବେନି ?"

"କାହିଁକି ? ତା ବାପା ମା ତ ତୋ ସହିତ ତା ବାହାଘର କରିବାକୁ ଚାହୁଁଛନ୍ତି, ସେମାନେ ତ ମୋତେ ପ୍ରସ୍ତାବ ଦେଇ ସାରିଲେଣି । ତା'ଛଡ଼ା କରଣ-ବ୍ରାହ୍ମଣ ପାର୍ଥକ୍ୟ ସେମାନେ ମୋଟେ ମାନନ୍ତିନି । ସେମାନଙ୍କର ସେଥିପ୍ରତି ଟିକିଏ ବି ଖାତିର ନାହିଁ । ସେମାନଙ୍କ ଭାଇ ବରାଦର ସେଥିରେ ମୋଟେ ବାଧା ଦେବେନି ।"

"ହେଲେବି ତୁ ଏଥିରେ ମୋଟେ ରାଜି ହଅନା ବୋଉ । ଶୁଭ୍ରା ଏବେ ଅତି ଆଗ୍ରହରେ ଆମେରିକା ଯାଉଛି । ସେଠି ସେ ଉଚ୍ଚତର ଗବେଷଣା କରିବ । ମୁଁ ଜାଣେ ସେ ନିଜ ଗବେଷଣାରେ ଖୁବ୍ କୃତକାର୍ଯ୍ୟ ହେବ । ଆମ ଦେଶ ପାଇଁ ନାଁ କମେଇବ । ତା'ର ପ୍ରତିଭା ଅଛି । ତା ପ୍ରତିଭା ପ୍ରତି ସମ୍ମାନ ଦେଖାଇ ତାକୁ ଆମେରିକା ପଠାଇବା କଥା । ତାକୁ ଆଣି ମୋ ସହିତ ବାନ୍ଧିଦେଇ ଗୋବିନ୍ଦପୁରକୁ ପଠାଇଦେବୁ ? ତା'ର ବିରାଟ ଭବିଷ୍ୟତକୁ ଜଳାଞ୍ଜଳି ଦେଇ ତାକୁ ଗୋଟିଏ ନିପଟ ମୋଫସଲ ଗାଁରେ ପଡ଼ି ରହିବାକୁ

ବାଧ୍ୟ କରିବୁ ? ତୁ ଯା'କର ବୋଉ, ଏମିତି ଭୁଲ୍ କର ନା । ଶୁଭ୍ରାକୁ ବିବାହ କରି ତା'ର ବୈଜ୍ଞାନିକ ପ୍ରତିଭାକୁ ହତ୍ୟା କରିବାକୁ ଚେଷ୍ଟା କର ନା ।''

''କିନ୍ତୁ ସେମାନେ ଯେ ମୋ'ଠାରୁ ଜବାବ ଚାହୁଁଛନ୍ତି ? ସେମାନଙ୍କୁ ମୁଁ କ'ଣ ଉତ୍ତର ଦେବି ?''

''କହିଦେ, ଶୁଭ୍ରା ଏବେ ଆମେରିକା ଯାଉଛି ଯାଉ । କିଛିଦିନ ସେଠି ଗବେଷଣା କରୁ । ତୁ ବାପାଙ୍କୁ ପଚାରି ସେମାନଙ୍କୁ ଜବାବ ଦେବୁ । ବାପାଙ୍କୁ ନ ପଚାରି ହଠାତ୍ ତୁ କେମିତି ଜବାବ ଦେବୁ, ସେ କଥା ସେମାନଙ୍କୁ କହିଦେଉନୁ ।''

''ତୋ ବାପା ତ ତୋ ବିବାହର ନାଁ ଧରୁ ନାହାନ୍ତି । ତାଙ୍କୁ ପଚାରି କି ଲାଭ ?''

''ସତରେ ତୁ ବାପାଙ୍କୁ ପଚାରିବୁ ନା କଅଣ ? ସେମିତି କହି ପ୍ରସ୍ତାବଟାକୁ ବାଆଁରେଇ ଦେଲେ ହେଲା ।''

''କିନ୍ତୁ ବାପ, ମୋ ମନଟା ତୋ କଥାରେ ମୋଟେ ମାନୁନି । ଶୁଭ୍ରାଭଳି ଭଲ ଝିଅଟେ ଆଉ ମିଳିବେନି କେଉଁଠି । ସେ ତୋର ପ୍ରତ୍ୟେକ କାମରେ ଆଗ୍ରହୀ । ତୋ ଯୋଜନାଗୁଡ଼ିକୁ ସେ ଭାରି ପସନ୍ଦ କରେ । ସେ କହେ, ତୋ କାମ ଆଗରେ ତା ଗବେଷଣା କି ଆମେରିକା ଯିବା କିଛି ନୁହେଁ । ସେ ତୋ ସହିତ ମିଶି ତୋ ଦେଶ କାମରେ ଆଗେଇ-ଯିବାକୁ ଭାରି ଆଗ୍ରହୀ । ତୁ ତାକୁ ଗ୍ରହଣ କରିନେଲେ ତୋ ସାଙ୍ଗକୁ ତୋ କାର୍ଯ୍ୟରେ ଆଗ୍ରହୀ ଆଉ ଏକ ସଙ୍ଗୀନି ମିଳି ଯାଆନ୍ତା । ଆଗ ଅପେକ୍ଷା ଅଧିକ କାମ କରିପାରନ୍ତୁ ସେ ଗାଁରେ । ତୁ କାହିଁକି ଅରାଜି ହେଉଛୁ ମୁଁ ବୁଝିପାରୁନି ବାପ ?''

''ତୁ ମୋଟେ ବୁଝୁନୁ ବୋଉ । ଶୁଭ୍ରା ମୋତେ ଭଲ ପାଏ ବୋଲି, ସେ ତା'ର ଭବିଷ୍ୟତକୁ ଜଳାଞ୍ଜଳି ଦେଇ ମୋ ଆଦର୍ଶକୁ ଗ୍ରହଣ କରିନେବାକୁ ପ୍ରସ୍ତୁତ । ଏହାକୁ ମୁଁ ଶୁଭ୍ରାର ବିରାଟ ସ୍ୱାର୍ଥତ୍ୟାଗ ବୋଲି କହିବି । ତୁ ଜାଣିନୁ ବୋଉ, ଶୁଭ୍ରା ଯଦି ଆମେରିକାରେ ଗବେଷଣା କରେ, ତେବେ ସେ ଦେଶରେ ସେ ଖୁବ୍ ନାଁ କରିବ । ତା'ର ମେଧାଶକ୍ତି ଅଛି, ପ୍ରତିଭା ଅଛି, ତାକୁ ମୁଁ ମୋ ନିଜ ସୀମା ଭିତରକୁ ଟାଣି ଆଣି ତା'ର ପ୍ରତିଭାକୁ ହତ୍ୟା କରିବାକୁ ଚାହେଁନି । ମୋର ଜଣେ ଛାତ୍ରୀ ଯଦି ବିଜ୍ଞାନ ଗବେଷଣାରେ ନାଁ କରେ, ଏହା କ'ଣ ମୋ ଗୌରବକୁ ବଢ଼ାଇବନି ବୋଉ ? ସେଥିସହିତ ଆମ ଦେଶର ଗୌରବ ମଧ୍ୟ ବଢିବ । ତା'ଛଡ଼ା ଶୁଭ୍ରା ମୋର ଛାତ୍ରୀ, ମାନେ ଝିଅ ଭଳି । ଜଣେ ଛାତ୍ରୀକୁ ସ୍ତ୍ରୀ ଭାବରେ ଗ୍ରହଣ କରିବାକୁ ମୋତେ ସଙ୍କୋଚ ଲାଗିବ । ମୁଁ ତ ତାକୁ କେବେ ସେଭଳି ଆଖିରେ ଦେଖିନି, କେମିତି ବିଭା ହେବି କହିଲୁ ?''

''ତୁ ପାଠ ପଢ଼ାଇଲାବେଳେ ତାକୁ ସେପରି ଆଖିରେ ଦେଖିଥାନ୍ତୁ ନା କଅଣ ? ଛି, ଛି, ସିଏ ଭାରି ଖରାପ । ପାପ କଥା, ମୁହଁରେ ଧର ନା । ବିବାହ ପରେ ସେ ତୋର ସ୍ତ୍ରୀ ହୋଇଗଲେ ଯିନା ତାକୁ ସେଭଳି ଆଖିରେ ଦେଖିବୁ ।''

"ତୁ ଯେତେ କହିଲେ ବୋଉ, ମୋତେ ଭାରି ଅଡୁଆ ଲାଗୁଛି ତୋ କଥା । ସ୍ତ୍ରୀଟିକୁ ବର ହୋଇ ସ୍ତ୍ରୀ ବୋଲି ଗ୍ରହଣ କରିବ କେମିତି କହିଲୁ ?"

"ଗୁଡ଼ ସେସବୁ ଯୁକ୍ତି, ଆଜିକାଲି କେତେ ଅଧ୍ୟାପକ ସେମାନଙ୍କ ଛାତ୍ରୀକୁ ବର ହୋଇଗଲେଣି, ତୁ କ'ଣ ଜାଣିନୁ ? ତୁ କ'ଣ ଆଜି ନୂଆ ହୋଇ ବର ହେଉଛୁ ? ଏଥିରେ ଅନୈତିକତା ବୋଲି କିଛି ନାହିଁ । ମନକୁ ଏକ ଅବାନ୍ତର ଯୁକ୍ତି ଆଣି ପ୍ରସ୍ତାବଟାକୁ ତୁ ଅଯଥା ଆଡ଼େଇ ଦେଉଛୁ । ଛାତ୍ରୀ ଯଦି ବର ହୋଇ ସ୍ତ୍ରୀ ହୋଇଯାଏ, ତେବେ ମହାଭାରତ ଅଶୁଦ୍ଧ ହୋଇଯିବନି ।"

"ତୁ ମୋତେ ବଡ଼ ଦ୍ୱଇଧଣରେ ପକାଇ ଦେଉଛୁ ବୋଉ ? ଛାତ୍ରୀଟିକୁ ସ୍ତ୍ରୀ ଭାବରେ ଗ୍ରହଣ କରିବା ପାଇଁ ମୋ ମାଇଣ୍ଡ୍ ମେକ୍‌ଅପ୍ ଦରକାର । ତା ତ ମୁଁ କରିପାରିନି ଏ ପର୍ଯ୍ୟନ୍ତ ।"

"ତୁ ମେକ୍‌ଅପ୍ ଫେକ୍‌ଅପ୍ କଥା କ'ଣ କହୁଛୁ ରେ ? ଯଦି କରିନୁ, ଏବେ କର । ତୋ ବାପା ଯେତେବେଳେ ରେଭେନ୍‌ସା କଲେଜରେ ପ୍ରଥମେ ଅଧ୍ୟାପକ ଭାବରେ ଜଏନ୍ କଲେ, ସେ ପରି ତାଙ୍କର ଜଣେକା ଛାତ୍ରୀକୁ ବର ହେବାପାଇଁ ଜିଦ୍ ଧରି ବସିଥିଲେ । ତୋ ସାଆନ୍ତ ତ ଭାରି କଡ଼ା ଲୋକ । ସେ ସେଥିରେ ବାଧା ଦେବାରୁ ସେଠି ବାହାଘର ହୋଇ ପାରିଲାନି । ତୁ ତାଙ୍କରି ପୁଅ ହୋଇ ଏମିତି କ'ଣ କହୁଛୁ ?"

"ତା ମାନେ ତୁ କହୁଛୁ, ବାପା ଯାହା ଚାହିଁଥିଲେ ସେ କରି ପାରିଲେନି ବୋଲି ତାଙ୍କ କାମଟା ମୋତେ କରିବାକୁ ପଡ଼ିବ ? ଏଇଆ ନା ଆଉ କିଛି ?"

"ହଁ, ସେଇଆ । ତା କଲେ ମୁଁ ଜାଣନ୍ତି ତୋ ବାପାଙ୍କର ତୁ ଉପଯୁକ୍ତ ପୁଅ । ମନେରଖ, ତୁ ଯଦି ଶୁଭ୍ରାକୁ ବର ନ ହେଉଛୁ, ମୁଁ ତୋତେ ଛାଡ଼ି ତୋ ବାପାଙ୍କ ପାଖକୁ ସମ୍ବଲପୁର ମୋଟେ ଯିବନି, ତୋ ବାପାଙ୍କର ସେଠି ଯେତେ ଅସୁବିଧା ହେଉଛି ହେଉ । ତୁ ସେ ଗାଁ ମୋଫସଲରେ ପଡ଼ି ହଇରାଣ ହରକତ ହେଉଥିବୁ, ମୁଁ ସେଠି ପ୍ରିନ୍‌ସିପାଲ କୋଠିରେ ରହି ହାଓ୍ୱା ଖାଉଥିବି ?"

ମୁଁ ଦେଖୁଛି ବୋଉ, ତୁ ମୋତେ ଛାଡ଼ିବୁନି । ତୋ ଜିଦ୍ ଆଗରେ ମୋତେ ମୁଣ୍ଡ ନୁଆଁଇବାକୁ ପଡ଼ିବ । ହେଉ, ତୋରି କଥା ହେଲା । ତୁ ସେମାନଙ୍କୁ କହିଦେ, ମୁଁ ବିବାହ ପ୍ରସ୍ତାବରେ ରାଜି । ତେବେ ଗୋଟିଏ ସର୍ତ୍ତ, ଶୁଭ୍ରା ବର୍ତ୍ତମାନ ପାଇଁ ଆମେରିକା ବାହାରିଛି, ସେ ଆମେରିକା ଯାଉ । ସେଠାରେ କିଛିଦିନ ଗବେଷଣା କରି ଆସୁ । ମୁଁ ଗୋବିନ୍ଦପୁର ଜଞ୍ଜାଳରୁ ଟିକିଏ ମୁକ୍ତ ହୁଏ । ତା'ପରେ ବାହାଘର ହେବ ।"

# ଏକତ୍ତରଣି

ଗାଁର ମାଇନର ସ୍କୁଲରେ ହରିବାବୁ ହେଡ୍‌ମାଷ୍ଟର ପଦରେ ରହି ସାରିଲେଣି । ଭାଙ୍ଗି ଯାଇଥିବା ଗାଁ ସ୍କୁଲଟି ଆଜି ତାଙ୍କର ଚେଷ୍ଟାରୁ ବଢ଼ି ବଢ଼ି ମାଇନର ସ୍କୁଲରେ ପରିଣତ ହେଲାଣି । ଆଠଗୋଟି ଗାଁରେ ଗୋଟିଏ ମାତ୍ର ମାଇନର ସ୍କୁଲ । ପିଲାସଂଖ୍ୟା ଖୁବ୍ ବେଶି । ପିଲା ସଂଖ୍ୟା ଦେଖି ଶିକ୍ଷକଙ୍କ ସଂଖ୍ୟା ତିନିରୁ ଆସି ଆଠରେ ପହଞ୍ଚିଲାଣି ।

ଖାଲି ଏହି ସ୍କୁଲରେ ଝିଅଙ୍କ ସଂଖ୍ୟା ଶହେ । ସେମାନଙ୍କ ପାଇଁ ଗୋଟିଏ ଶିକ୍ଷୟିତ୍ରୀ ଦରକାର ପଡ଼ିବାରୁ ଶାନ୍ତ ଏକ ଶିକ୍ଷୟିତ୍ରୀ ଭାବରେ ସେଠି ଯୋଗ ଦେଲାଣି । ସବୁ ଶିକ୍ଷକ ପ୍ରାଣପଣେ ଲାଗି ପଡ଼ିଥାନ୍ତି ସ୍କୁଲର କେମିତି ଉତ୍ତରୋତ୍ତର ଉନ୍ନତି ହେବ ଓ ଏ ସ୍କୁଲରେ କେମିତି ପଢ଼ାପଢ଼ି ଅନ୍ୟ ସ୍କୁଲ ଅପେକ୍ଷା ଭଲ ହେବ ।

ଶିକ୍ଷୟିତ୍ରୀ ଭାବରେ ଯୋଗଦେବା ପରେ ଶାନ୍ତର ବାହାଘର ନେଇ କେତେ ପ୍ରସ୍ତାବ ଆସି ହରିବାବୁଙ୍କଠାରେ ପହଞ୍ଚିଲା । ନ ପହଞ୍ଚିବ ବା କେମିତି ? ଶାନ୍ତ ଦେଖିବାକୁ ସୁନ୍ଦରୀ, ଜାଣ ଗୋଟିଏ ଛାଞ୍ଚରେ ଗଢ଼ା । କଥାବାର୍ତ୍ତା ଚାଲିଚଳଣି ଖୁବ୍ ଧୀର ସ୍ଥିର । ବେଶ୍ ପରିଶ୍ରମୀ ଓ ସରଓ୍ୱାର୍ଡ଼୍ । ଗାଁର ସବୁ ସ୍ତ୍ରୀଲୋକେ ତାକୁ ନିଜର ଝିଅ ଭଳି ସ୍ନେହ କରନ୍ତି । ଶାନ୍ତର ବାହାଘର କରିଦେବା ପାଇଁ ହରିବାବୁ ବଡ଼ ତତ୍ପର, ନ ହେବେ ବା କେମିତି ? କଥାରେ ଅଛି, ଘିଅ ଝିଅ ବେଶିଦିନ ଘରେ ରଖିହେବନି । ଝିଅକୁ ବିବାହ ଦେଇ ଘର ସଂସାରରେ ପୁରାଇଦେଲେ ବାପ ମା'ଙ୍କର ବୋଝ ଟିକିଏ ହାଲୁକା ହେବ । ଶାନ୍ତର ବାହାଘର କଥା ନେଇ ହରିବାବୁ ଦେବସ୍ନାନବାବୁଙ୍କ ସହିତ ପରାମର୍ଶ କରିବାକୁ ଚାହିଁଲେ । ସେ ସେତେବେଳେ ସାରା ଗ୍ରାମ ପଞ୍ଚାୟତ ଭିତରେ ସବୁଠାରୁ ଜ୍ଞାନୀ, ତାଙ୍କୁ ନ ପଚାରି ଏତେବଡ଼ କଥାଟା ସେ କରିବେ କେମିତି ?

ଦିନେ ସନ୍ଧ୍ୟାବେଳେ ହରିବାବୁ ଦେବବାବୁଙ୍କ ସହିତ ଏ ସମ୍ପର୍କରେ କଥାବାର୍ତ୍ତା କରିବା ପାଇଁ ଆସିଲାବେଳକୁ ଦେବବାବୁଙ୍କ ମା ସେହିଦିନ ସନ୍ଧ୍ୟା ବସ୍‌ରେ ଭୁବନେଶ୍ୱରରୁ ଆସି ପୁଅ ପାଖରେ ପହଞ୍ଚିଥାନ୍ତି । ଦେବବାବୁଙ୍କ ବାପା ଏ ଭିତରେ ସମ୍ବଲପୁରରୁ ବଦଳି ହୋଇ ଭୁବନେଶ୍ୱର ଆସି ଗଲେଣି । ଭୁବନେଶ୍ୱରଠାରୁ ଗୋବିନ୍ଦପୁର ବେଶି ଦୂର ନୁହେଁ । ତେଣୁ ମଝିରେ ମଝିରେ ଏଠାକୁ ଚାଲି ଆସୁଥାନ୍ତି । ଦେବବାବୁଙ୍କ ମା'ଙ୍କୁ ଦେଖି ହରିବାବୁ ଆହୁରି ଖୁସି । କାରଣ ତାଙ୍କ ପରାମର୍ଶ ମଧ୍ୟ ଏହି ଶୁଭ କାର୍ଯ୍ୟରେ ବେଶ୍ ସହାୟକ ହେବ । ଦୁଇଜଣଙ୍କୁ ଲମ୍ବ ଲମ୍ବ ନମସ୍କାର ପକାଇ ଗୋଟିଏ ଚେୟାରରେ ବସିଲେ ।

ଦେବବାବୁ ହରିବାବୁଙ୍କୁ ଦେଖି ସ୍କୁଲର ସୁବିଧା ଅସୁବିଧା କଥା ପଚାରିଲେ । ପିଲାମାନଙ୍କୁ ସ୍କୁଲରେ ଯେଉଁ କ୍ଷୀର ମାଗଣା ଦେବାର ବ୍ୟବସ୍ଥା ସେ କରିଛନ୍ତି, ସେ କେମିତି ଚାଲିଛି ପଚାରିଲେ । ପିଲାମାନଙ୍କର ପ୍ରତି ମାସରେ ଓଜନ ନିଆଯାଇ ସେମାନଙ୍କ ହେଲ୍‌ଥ

ସ୍କୁଲଟି ଠିକ୍ ଭାବରେ ତିଆରି ହେଉଛି କି ନାହିଁ, ସେ କଥା ହରିବାବୁଙ୍କୁ ପଚାରିବାକୁ ଭୁଲିଲେ ନାହିଁ ଦେବସ୍ମାନବାବୁ ।

ପିଲାମାନଙ୍କୁ ଦୁଧ ପିଆଇବା ଦାୟିତ୍ୱରେ କେବଳ ଶାନ୍ତି ରହିଛି ଓ ସେମାନଙ୍କ ହେଲଥ ଗ୍ରାଉଣ୍ଡ୍ ସେ କପିରି ନିଜେ ବସି ତିଆରି କରେ, ହରିବାବୁଙ୍କଠାରୁ ଶୁଣି ଭାରି ଖୁସୀ ହେଲେ ଦେବସ୍ମାନବାବୁ ।

ଏହିଭଳି ନାନା ପ୍ରକାର କଥା ହେଉ ହେଉ ହରିବାବୁ ଶାନ୍ତିର ବାହାଘର କଥା ପକାଇଲେ । ବିଭିନ୍ନ ସ୍ଥାନରୁ ଆସିଥିବା ତିନି ଗୋଟିଏ ପ୍ରସ୍ତାବ ଦେବସ୍ମାନ ଓ ତାଙ୍କ ମା'ଙ୍କ ଆଗରେ ହରିବାବୁ ବଖାଣିଲେ । ଏହିସବୁ ପ୍ରସ୍ତାବ ଭିତରୁ କେଉଁଟି କଲେ ଭଲ ହେବ, ଦେବବାବୁଙ୍କର ପରାମର୍ଶ ଚାହିଁଲେ ହରିବାବୁ ।

ଦେବବାବୁ ଗୋଟି ଗୋଟି କରି ସବୁ ପ୍ରସ୍ତାବ ଶୁଣିଲେ । ହରିବାବୁ ଓ ସେ ମିଶି ଜିଲ୍ଲା ସଦର ବ୍ଲକ୍‌ର ଏସ୍.ଇ.ଓ. ବଳରାମବାବୁଙ୍କ ପ୍ରସ୍ତାବଟିକୁ ବାଛିଲେ । ବଳରାମବାବୁ ବି.ଏ. ପାସ୍ କରିଛନ୍ତି, ଦେଖିବାକୁ ବେଶ୍ ସୁନ୍ଦର, ଭଲ ସ୍ୱାସ୍ଥ୍ୟ, ଖରାପ ଅଭ୍ୟାସ ବୋଲି କିଛି ନାହିଁ, ତାଙ୍କ ଘରର ଅବସ୍ଥା ମଧ୍ୟ ବେଶ୍ ସ୍ୱଚ୍ଛଳ, ଗୋବିନ୍ଦପୁରଠାରୁ ସାତ ଆଠ ମାଇଲ ଦୂରରେ ତାଙ୍କ ଘର । ଘରେ ବାପ, ମା, ଭାଇମାନେ ଅଛନ୍ତି, ତେଣୁ ସେହି ପ୍ରସ୍ତାବଟିକୁ ଚୂଡ଼ାନ୍ତ କରିବାକୁ ଦେବବାବୁ ଉପଦେଶ ଦେଲେ ହରିବାବୁଙ୍କୁ ।

ହରିବାବୁ ଉଠି ଯିବାପାଇଁ ବାହାରିଲା ବେଳକୁ ଦେବସ୍ମାନବାବୁ କହିଲେ, "ଦେଖନ୍ତୁ ହରିବାବୁ, ଶାନ୍ତି ବାହାଘରରେ ବିବାହ ଖରଚ ପାଇଁ ଆପଣ ମୋଟେ ବ୍ୟସ୍ତ ହେବେନି । ଆମ ସଂସ୍ଥା ତରଫରୁ ଏହି ବାହାଘରରେ ଯଥେଷ୍ଟ ସାହାଯ୍ୟ ଦେବାର ବ୍ୟବସ୍ଥା ରହିଛି । ଖାଲି ଶାନ୍ତି ନୁହେଁ, ଏହି ଗାଁର ଯେକୌଣସି ଝିଅର ବାହାଘର ସମସ୍ତ ଗ୍ରାମବାସୀଙ୍କ ଦାୟିତ୍ୱ ବୋଲି ଆମକୁ ବୁଝିବାକୁ ପଡ଼ିବ । ତେଣୁ ବିବାହ ଖରଚ ପାଇଁ ଆପଣ ବ୍ୟସ୍ତ ହୋଇ ପଡ଼ିବେନି । ଆପଣ ବିବାହ ଦିଗରେ ଆଗେଇଯାଆନ୍ତୁ । ଯାହା ଯାହା ସାହାଯ୍ୟ ଦିଆଯିବା କଥା, ଠିକ୍ ସମୟରେ ପହଞ୍ଚିଯିବ ।

ଶାନ୍ତିର ବାହାଘର ବେଶ୍ ଧୂମ୍‌ଧାମ୍‌ରେ ଆରମ୍ଭ ହେଲା । ବାହାଘରର ଯାବତୀୟ ଖରଚ ଗ୍ରାମଦାନ ସଂସ୍ଥା ତରଫରୁ କରାଯାଉଥାଏ । ଶାନ୍ତିକୁ ଗାଁର ପ୍ରତ୍ୟେକ ଲୋକ ନିଜର ଝିଅ ଭଳି ଦେଖୁଥିଲେ । ସେ ଏହି ଗାଁରୁ ଚାଲିଯିବ୍ ଶୁଣିଲାବେଳକୁ ଲୋକମାନେ ଦୁଃଖରେ ମ୍ରିୟମାଣ ହୋଇ ପଡ଼ୁଥାନ୍ତି ।

ଶାନ୍ତି ଏହି କେତେଦିନ ଧରି ଗ୍ରାମଦାନ ସଂସ୍ଥା ସହିତ ଏମିତି ଭାବରେ ଜଡ଼ିତ ହୋଇ ପଡ଼ିଥାଏ ଯେ, ଏହି ଗ୍ରାମକୁ ଛାଡ଼ି ଚାଲିଯିବାକୁ ତା'ର ମନ ହେଉ ନ ଥାଏ । ଶ୍ୱଶୁରଘରକୁ ଚାଲିଯିବ ବୋଲି ଭାବିଲାବେଳକୁ ତା ଆଖିରେ ଲୁହ ଆସିଯାଉଥାଏ ।

ଯେଉଁ ସ୍କୁଲକୁ ସେ ଓ ତା'ର ବାପା ଏତେ କଷ୍ଟକରି ଗଢ଼ି ତୋଳିଛନ୍ତି, ସେ ସ୍କୁଲକୁ ସେ କେମିତି ଛାଡ଼ି ଚାଲିଯିବ, ଭାବିଲାବେଳକୁ କୋହ ଉଠୁଥାଏ । କ'ଣ କରିବ

ବା କିଏ ? ସମାଜର ରୀତି ତ ହେଲା ସେଇଆ । ଝିଅ ହେଲେ ତ ବାପଘର ସୁଖ ଅଢ଼େଇ ଦିନ ।

ବିଭାଘର ଦିନ ଯେତେ ପାଖେଇ ଆସୁଥାଏ, ଶାନ୍ତିର ଚିନ୍ତାର ସ୍ରୋତ ସେତେ ପ୍ରଖର ହୋଇ ଉଠୁଥାଏ ।

ବିଭାଘର ଦିନ ସନ୍ଧ୍ୟା । ଗ୍ରାମଦାନ ଫଣ୍ଡ ତରଫରୁ ଖର୍ଚ୍ଚ କରାଯାଇ ହରିବାବୁଙ୍କ ଘର ସାମନାରେ ବିବାହ ମଣ୍ଡପ ବନ୍ଧା ହୋଇଥାଏ । ଚ୍ଛରିଆଡ଼େ ସାମିଆନା ଟଙ୍ଗା ଯାଇ ସ୍ଥାନଟିକୁ ସୁନ୍ଦର କରି ସଜାଯାଇଥାଏ । ସକାଳଠାରୁ ବାଜାବାଲାମାନେ ଆସି ବିବାହ ବାଦ୍ୟ ପରିବେଷଣ କରିବା ଆରମ୍ଭ କରି ଦେଇଥାନ୍ତି । ହରିବାବୁଙ୍କ ବନ୍ଧୁ-ବାନ୍ଧବମାନେ ଦୁ'ତିନିଦିନ ହେଲା ଆସି ତାଙ୍କ ଘରଟିକୁ ପୂର୍ଣ୍ଣ କରିଦେଇଥାନ୍ତି । ସୀମନ୍ତିନୀଦେବୀ କେତେବେଳୁ ଶାନ୍ତି ଘରେ ଯାଇ ହାଜର ।

ବର, ବରଯାତ୍ରୀମାନେ ଯଥା ସମୟରେ ଆସି ପହଞ୍ଚିଗଲେ । ବିଭିନ୍ନ ବାଦ୍ୟଯନ୍ତ୍ର ଓ ଶଙ୍ଖ ହୁଳହୁଳି ଶବ୍ଦରେ ସେ ଅଞ୍ଚଳ କମ୍ପି ଉଠିଲା । ଦେବସ୍ନାନବାବୁ ଓ ଗାଁର ମୁଖିଆ ମୁଖିଆ ଲୋକମାନେ ବରଯାତ୍ରୀମାନଙ୍କୁ ସ୍ୱାଗତ କରିବାରେ ଲାଗି ପଡ଼ିଲେ ।

ବରଯାତ୍ରୀ ମେଳରେ ପୂର୍ବ ବି.ଡି.ଓ.ଙ୍କୁ ଦେଖି ଗ୍ରାମବାସୀମାନେ ଏକରକମ ରାଗି ଗଲେଣି । ଯଦିଚ ସେ ଏହି ବ୍ଲକରୁ ବଦଳି ନେଇ ଗଲେଣି, ତେବେ ସେ ବରଘର ତରଫରୁ ନିମନ୍ତ୍ରିତ ହୋଇ ବରଯାତ୍ରୀ ମେଳରେ ଆସିଥାନ୍ତି ।

ଏହି ବି.ଡି.ଓ. ବେଳରେ ଶାନ୍ତିକୁ ନେଇ ଯେଉଁ ଗଣ୍ଡଗୋଳ ହୋଇଥିଲା, ତାକୁ ଭୁଲି ନ ଥାନ୍ତି ଗ୍ରାମବାସୀମାନେ । ବି.ଡି.ଓ.କୁ ବରଯାତ୍ରୀ ମେଳରେ ଦେଖି ଗ୍ରାମବାସୀ-ମାନେ ରାଗରେ ଦାନ୍ତ କଡ଼ମଡ଼ କରୁଥାନ୍ତି । ଜିଲ୍ଲା ମାଜିଷ୍ଟ୍ରେଟ ଓଏ୍ା ମଧ୍ୟ ଅନ୍ୟତ୍ର ବଦଳି ହୋଇ ନ ଥାନ୍ତି । ତାଙ୍କରି ଅଧୀନରେ ବର ଏସ୍.ଇ.ଓ. । ଜିଲ୍ଲା ମାଜିଷ୍ଟ୍ରେଟଙ୍କ ପ୍ରରୋଚନାରେ ବି.ଡି.ଓ. ବରଯାତ୍ରୀ ମେଳରେ ଆସି ବର-ପିତାଙ୍କ କାନରେ କ'ଣ କହିଦେଇ ସେଠୁ ଅନ୍ତର୍ଦ୍ଧାନ ହୋଇଗଲେ ।

ବେଦୀ କାମ ଜୋରସୋରରେ ଚ୍ଛଲିଥାଏ । ପୁରୋହିତମାନେ ବେଦୀ ଉପରକୁ ଆସିଗଲେଣି । ଆଉ କିଛି ସମୟ ପରେ ବିଭାଘର କାର୍ଯ୍ୟ ଆରମ୍ଭ ହେବ । ବରଯାତ୍ରୀମାନେ ଆସି ଖାଦ୍ୟ ପାନୀୟ ଆଦର ଯାହା ବ୍ୟବସ୍ଥା ହୋଇଥିଲା, ସେମାନେ ଖାଇ ପିଇ ନିଜ ନିଜ ଭିତରେ କଥାବାର୍ତ୍ତା ହସଖୁସିରେ ମାତିଯାଇଥାନ୍ତି । ଦେବସ୍ନାନ ଓ ଗାଁର ମୁଖିଆ ମୁଖିଆ ଲୋକମାନେ ବିଭାଘରର ସବୁ ତଦାରଖ କରିବାରେ ବ୍ୟସ୍ତ । ହଠାତ୍ ବରର ପିତା ହରିବାବୁଙ୍କୁ ସେମାନଙ୍କ ନିକଟକୁ ଡକାଇ ପଠାଇଲେ ।

ହରିବାବୁ ଘର ଭିତରେ ଥିଲେ, ଡାକରା ପାଇ ବରପିତାଙ୍କ ପାଖରେ ହାଜର ହୋଇଗଲେ । ବରପିତା ଓ ଆଉ ତିନି ଚ୍ଛରିଜଣ ହରିହାବୁଙ୍କୁ ଘେରିଯାଇ ପଚ୍ଛରିଲେ,

"କ'ଣ ହରବାବୁ, ଆମେ ଆପଣଙ୍କ ଝିଅ ବିଷୟରେ କ'ଣ ସବୁ ଶୁଣିବାକୁ ପାଉଛୁ, ଏହା କ'ଣ ସତ ?"

ହରବାବୁ ଏଭଳି କଥାବାର୍ତ୍ତା ଶୁଣି ତାଟଙ୍ଗା ହୋଇଗଲେ, "କ'ଣ ଆଜ୍ଞା, ଆପଣମାନେ କ'ଣ ଶୁଣିବାକୁ ପାଇଲେ ?".

"ଆମେ ଯାହା ଶୁଣୁଚୁ, ସେ କଥା କହିବାଭଳି ନୁହେଁ । ଆପଣ ସେ କଥା ଆମକୁ ପୂର୍ବରୁ କହିଥିଲେ ଆମେ ଏ ପ୍ରସ୍ତାବରେ ଆଗେଇ ନ ଥାନ୍ତୁ । ଆପଣ ସେକଥା ଲୁଚାଇ ଭଲ କରିନାହାନ୍ତି ହରବାବୁ ।"

"କ'ଣ ଆଜ୍ଞା କୁହନ୍ତୁ । ମୁଁ ତ ଜାଣିପାରୁନି, ମୁଁ କେଉଁକଥା ଆପଣମାନଙ୍କଠାରୁ ଲୁଚାଇଚି ।"

"ଆପଣ ସବୁ ଜାଣିକରି ଯଦି କହିବେ କିଛି ଜାଣି ନାହାନ୍ତି, ତେବେ ଆମେ ନାଚାର ।"

"ଆପଣମାନେ ବିଶ୍ୱାସ କରନ୍ତୁ, ଆପଣମାନେ କ'ଣ କହିବାକୁ ଚାହୁଁଛନ୍ତି, ମୁଁ କିଛି ଜାଣିନି ।"

"ଆପଣଙ୍କ ଝିଅ ସହିତ ଆମ ଜିଲ୍ଲା ମାଜିଷ୍ଟ୍ରେଟ ଓଝା ସାହେବଙ୍କର କ'ଣ ଗୁପ୍ତ ସମ୍ପର୍କ ଅଛି ?"

"ଆଁ, ମୋ ଝିଅ ସହିତ ? ଜିଲ୍ଲା ମାଜିଷ୍ଟ୍ରେଟଙ୍କର !" ଆପଣମାନେ କ'ଣ କହୁଛନ୍ତି ମୁଁ ବୁଝିପାରୁନି ।"

"ହଁ, ହଁ, ଆମେ ତାହାର ପ୍ରମାଣ ବର୍ତ୍ତମାନ ପାଇଛୁ । ଆଜକୁ ତିନିବର୍ଷ ତଳେ ଆପଣଙ୍କର ମଧୁପୁର ଡାକବଙ୍ଗଲାରେ ଦିନେ ରାତି ନଅଟାବେଳେ ଆପଣଙ୍କ ଅବିବାହିତା ଝିଅ ଜିଲ୍ଲାପାଳଙ୍କ ପାଖକୁ ଏକାକିନୀ ଯିବାର ଉଦ୍ଦେଶ୍ୟ କ'ଣ ହୋଇପାରେ ?"

ଏକଥା ଶୁଣି ହରବାବୁଙ୍କ ମଥା ଗରମ ହୋଇଗଲା । ସେ ଥର ଥର ଗଳାରେ କହିଲେ, "ହଁ, ଯାଇଥିଲା ମହିଳା ସମିତିର ସେକ୍ରେଟେରୀ ଭାବରେ ଶାନ୍ତିକୁ ସେ ଡକାଇ ଥିଲେ, ମହିଳା ସମିତିର କାଗଜପତ୍ର ତନଖି ପାଇଁ ।"

"ଯଦି କାଗଜପତ୍ର ତନଖି କଥା, ତେବେ ଆପଣମାନେ ଝିଅଟିକୁ ଏକା ନ ପଠାଇ ତା ସଙ୍ଗରେ ତ ଜଣେ ଦି'ଜଣ ପୁରୁଷ ଲୋକ ପଠାଇ ପାରିଥାନ୍ତେ ? ତାକୁ ଏକା ପଠାଇଦେବାର ଉଦ୍ଦେଶ୍ୟ କ'ଣ ଜଣାପଡୁନି ? ହେଉ, ଏ ବିଭାଘର ବନ୍ଦ କରନ୍ତୁ । ଆମେ ଏ ବିଭାଘର କରିପାରିବୁ ନାହିଁ । ଗୋଟାଏ କୁଳଟାକୁ ମୁଁ ବୋହୂକରି ନେବାକୁ ପ୍ରସ୍ତୁତ ନୁହେଁ ।"

ଦେବବାବୁ ଏସବୁ କଥାବାର୍ତ୍ତା ଶୁଣି କିଛି ବୁଝିପାରୁ ନ ଥାନ୍ତି । ଗାଁ ଲୋକମାନେ ବରପିତାକୁ ଏହା ମିଥ୍ୟା ବୋଲି ଯେତେ ବୁଝାଇଲେହେଁ ସେ ବୁଝିବାକୁ ପ୍ରସ୍ତୁତ ନ ଥିଲେ । ଫେରି ଯାଉଥିବା ବର ଓ ବରଯାତ୍ରୀ ଦଳକୁ ବୁଝାଇବାକୁ ଚେଷ୍ଟାକଲେ ଦେବସ୍ନାନବାବୁ ।

ସେମାନେ ଗଲାବେଳେ କହିଦେଇଗଲେ, "ଦେଖନ୍ତୁ ଦେବସ୍ମାନବାବୁ, ଆପଣ ସେସବୁ କିଛି ଜାଣି ନାହାନ୍ତି । ସେ ଝିଅର ଚରିତ୍ର ନେଇ ଆମ୍ଭମାନଙ୍କର ଯଥେଷ୍ଟ ସନ୍ଦେହ ଅଛି । ଜିଲ୍ଲା ମାଜିଷ୍ଟ୍ରେଟଙ୍କର ସେହି ଝିଅ ସହିତ ଗୁପ୍ତ ପ୍ରଣୟ ଅଛି ବୋଲି ଆମେ ସ୍ପଷ୍ଟ ପ୍ରମାଣ ପାଇଛୁ ।

ଏହି ଗୋଳମାଳ ଲଗାଇଦେଇ ବି.ଡି.ଓ. କେତେବେଳୁ ସେଠୁ ଖସି ଗ୍ଲଲିଗଲାଣି କାହାରିକୁ ଜଣା ନାହିଁ । ଏହି ଗୋଳମାଳ ମୂଳରେ ଯେ ସେହି ବଦମାସ୍ ବି.ଡି.ଓ. ଅଛି, ଏହା ପରିଷ୍କାର ଜଣାପଡ଼ିଗଲା । ଗ୍ରାମବାସୀମାନେ ବି.ଡି.ଓ.ଙ୍କୁ ଖୋଜିଲାବେଳକୁ ସେ କେତେବେଳୁ ଅନ୍ତର୍ଦ୍ଧାନ ହୋଇଗଲେଣି । ଦେବବାବୁ, ଗ୍ରାମବାସୀ, ହରିବାବୁ ବରପକ୍ଷଙ୍କ ହାତ ଧରି ଯେତେ ଅଟକାଇଲେହେଁ ସେମାନେ କଥା ନ ରଖି ବରକୁ ନେଇ ଗ୍ଲଲିଗଲେ ।

ଶାନ୍ତି କୁଳଟା, ଶାନ୍ତି ଅସତୀ, ଶାନ୍ତି ଜିଲ୍ଲା ମାଜିଷ୍ଟ୍ରେଟଙ୍କ ରକ୍ଷିତା ବୋଲି ବରପକ୍ଷର ଉକ୍ତି ହରିବାବୁଙ୍କ ଘରେ ସ୍ପଷ୍ଟ ହୋଇଗଲା । ସେଥିପାଇଁ ବର ଓ ବରଯାତ୍ରୀ-ମାନେ ଫେରିଗଲେ ଶୁଣି ହରିବାବୁଙ୍କ ସ୍ତ୍ରୀ ବେହୋସ ହୋଇଗଲେ । ଗାଁର ଅନ୍ୟ ସ୍ତ୍ରୀ ଲୋକମାନେ ପାଟିକରି କନ୍ଦାକଟା ଆରମ୍ଭ କରିଦେଲେ । ହେ ଭଗବାନ, ଶାନ୍ତି ଭଳି ଝିଅ ନାଁରେ ଦୁର୍ନାମ, ସଜ ଫୁଲରେ ପୋକ ପକାଇଲା ଭଳି ଦଇବ କ'ଣ ଏହା ସହିବ ? ଶାନ୍ତି ଦେଖିଲା, ଏତେବଡ଼ ମିଥ୍ୟା ଅପବାଦକୁ ନେଇ ସେ କ'ଣ ବଞ୍ଚିପାରିବ ?

ସେ ବିବାହବେଦୀକୁ ଆସୁଥିବା ପୋଷାକରେ ଘରୁ ବାହାରିଗଲା ସମସ୍ତଙ୍କ ଅଲକ୍ଷ୍ୟରେ । ଲୋକେ କାନ୍ଦ ବୋବାଳିରେ ବ୍ୟସ୍ତ । ଶାନ୍ତି କୁଆଡ଼େଗଲା ସେଆଡ଼କୁ କାହାରି ଲକ୍ଷ୍ୟ ନାହିଁ । ସେ ଘରୁ ବାହାରି ଅନ୍ଧାରରେ ଧାଇଁଲା ଗାଁ ପୋଖରୀ ଆଡ଼େ ପୋଖରୀରେ ଝାସ ଦେଇ ଆତ୍ମହତ୍ୟା କରିବ ବୋଲି ।

ହଠାତ୍ ଶାନ୍ତି କୁଆଡ଼େ ଗଲା ବୋଲି ଖୋଜା ପଡ଼ିଲା । ସମସ୍ତେ ତାକୁ ଲଣ୍ଠନ, ଡିବିରି ଧରି ଖୋଜିବାକୁ ବାହାରିଗଲେ । ଦେବସ୍ମାନ ଧରିନେଲା, ଏହି କୁତ୍ସାରଟନା ଶୁଣି ଶାନ୍ତି ନିଶ୍ଚୟ ଆତ୍ମହତ୍ୟା କରିବା ପାଇଁ ଗାଁର ବଡ଼ ପୋଖରୀ ଆଡ଼କୁ ଧାଇଁଥିବ । ଶାନ୍ତି କେଉଁ ପ୍ରକୃତିର ଝିଅ ଦେବସ୍ମାନକୁ ବେଶ୍ ଭଲ ରୂପେ ଜଣା । ଏତେବଡ଼ ମିଥ୍ୟା ଅପବାଦ ତା ମୁଣ୍ଡରେ ଲଦି ଦେଲେ ସେ କ'ଣ ଆଉ ଜୀବନ ଧରି ରହିପାରିବ ?

ଦେବସ୍ମାନବାବୁ ଏହି ଆଶଙ୍କା କରି ଦୌଡ଼ିଲେ ଗାଁର ସେଇ ପୋଖରୀକୂଳକୁ । ସେ ଶାନ୍ତି, ଶାନ୍ତି ଡାକି ସେଇ ପୋଖରୀଆଡ଼େ ଧାଇଁଛନ୍ତି, ଗାଁର ଅନ୍ୟ ଲୋକମାନେ ତାଙ୍କ ପଛରେ ଧାଇଁଥାନ୍ତି । ଦେବସ୍ମାନ ଯାଇ ପୋଖରୀକୂଳରେ ପହଞ୍ଚିଛି କି ନାହିଁ, ଶାନ୍ତି ଏକ ଲମ୍ଫ ପ୍ରଦାନ କଲା ପୋଖରୀ ଭିତରକୁ । ଦେବସ୍ମାନବାବୁ ଆଉ ଅପେକ୍ଷା ନ କରି ତା ପଛରେ ପୋଖରୀକୁ ଲମ୍ଫ ପ୍ରଦାନ କଲେ । ପୋଖରୀର ଗଭୀରଜଳରେ ବୁଡ଼ି ଯାଉଥିବା ଶାନ୍ତିକୁ ବହୁ କଷ୍ଟରେ ଉଦ୍ଧାର କରି କୂଳକୁ ଘେନି ଆସିଲେ ଦେବସ୍ମାନବାବୁ ।

ସେତେବେଳକୁ ଶାନ୍ତିର ଚେତା ନ ଥାଏ । ଶାନ୍ତିର ପାଟିବାଟେ ପାଣି ତା ପେଟ ଭିତରେ ପଶି ଯାଇଥାଏ । ଗାଁର ଅନ୍ୟମାନେ ସେତେବେଳକୁ ସେଠାରେ ପହଞ୍ଚିଗଲେଣି । କେତେଜଣ ଲୋକ ଶାନ୍ତିକୁ ଶୁଆଇଦେଇ ତା ପିଠିକୁ ଚପି ତାପେଟ ଭିତରୁ ପାଣି ବାହାର କରିବାକୁ ଲାଗିଗଲେ ।

କିଛି ସମୟ ପରେ ଶାନ୍ତିର ଚେତା ଆସିଲା । ସେତେବେଳକୁ ହରିବାବୁ ଓ ତାଙ୍କ ସ୍ତ୍ରୀ ସେଠାରେ ଆସି ପହଞ୍ଚିଗଲେଣି । ସେମାନେ ଟେକାଟେକି କରି ଝିଅକୁ ଘରକୁ ନେଲେ । ଯେଉଁ ଝିଅ ମଙ୍ଗୁଳା ସରିଛି, ସେ ଝିଅକୁ ବାହାହେବ କିଏ ? ବର୍ତ୍ତମାନ ସମସ୍ତଙ୍କ ମୁଣ୍ଡରେ ଚିନ୍ତା ପଶିଲା କ'ଣ କରାଯିବ ?

ସୀମନ୍ତିନୀ ଦେବୀ ଏହି ଅଧଘଣ୍ଟାଏ ଭିତରେ ତାଙ୍କ ଆଖି ଆଗରେ ରୂପେଲି ପରଦା ଭଳି କ'ଣ ସବୁ ଘଟିଗଲା ଭାବି ପାରିଲେନି । ମଙ୍ଗୁଳା ହୋଇଥିବା ଝିଅଟି ତ ଅବିବାହିତା ରହିପାରିବନି । ମଙ୍ଗୁଳା ହୋଇଥିବା ଝିଅକୁ ଅନ୍ୟ କେହି ବିଭା ହେବେନି । ଆମ ସମାଜର ରୀତି ଯାହା, ସେଥିରେ ଅନ୍ୟ କେହି ବିଭା ହେବାପାଇଁ ଆଗେଇ ଆସିବା ମଧ୍ୟ ସମ୍ଭବ ନୁହେଁ । ସେ ଦେବବାବୁଙ୍କୁ ଏକାନ୍ତରେ ଡାକିନେଇ କହିଲେ, "ଦେଖ ବାପ ଦେବ, ତୁ ତ ଶାନ୍ତିକୁ ଭଲ ଭାବରେ ଜାଣୁ । ତା ଉପରେ ଏହି ଯେଉଁ ଅପବାଦ ଲଦି ଦିଆଯାଇଛି ମୋତେ ପୁରାପୁରି ମିଥ୍ୟା ବୋଲି ଜଣାପଡ଼ୁଛି । ତୋର ଏହି ବେଳରେ କିଛି କର୍ତ୍ତବ୍ୟ ଥିଲାଭଳି ମୋର ମନେହେଉଛି । ତୁ ଯଦି ରାଜି କହି, ମୁଁ ହରିବାବୁଙ୍କୁ ପ୍ରସ୍ତାବ ଦେବି । ଝିଅଟିକୁ ତୁ ଯେତେବେଳେ ମୃତ୍ୟୁମୁଖରୁ ଫେରାଇ ଆଣିଛୁ, ତାକୁ ଗ୍ରହଣ କରି ତାକୁ ଏ ଅପବାଦରୁ ରକ୍ଷାକର । ତୁ ତାକୁ ଯଦି ଏ ବେଳରେ ରକ୍ଷା ନ କରୁ, ଆଉ କେହି ତାକୁ ରକ୍ଷା କରିବାକୁ ଆଗେଇ ଆସିବେନି ବାପ ।"

ସୀମନ୍ତିନୀ ଦେବୀ ସିନା ପୁଅକୁ ଏମିତି ଉପଦେଶ ଦେଇଦେଲେ, ପରମୁହୂର୍ତ୍ତରେ ମନେ ପଡ଼ିଗଲା ଶୁଭ୍ରା କଥା । ସେ ଯେ ପୁଅକୁ ସ୍ୱାମୀ ରୂପେ ବରଣ କରି ସାରିଛି । ସେ ଆମେରିକାରୁ ଫେରିଲେ ବିଭାଘର ହେବ । ତା ବାପା ମା ତା ବିଭାଘର ପାଇଁ କେତେ କ'ଣ ବନ୍ଦୋବସ୍ତରେ ଥିବେ । ଏ ପରିସ୍ଥିତିରେ ସେ କଲେ କ'ଣ ? ଜଣକୁ ରକ୍ଷା କରିବା ପାଇଁ ଅନ୍ୟ ଏକ ଝିଅର ଆଶା ଆକାଙ୍କ୍ଷାକୁ ଧୂଳିସାତ୍ କରିଦେଲେ ? ଜଣକୁ ରକ୍ଷା କରିବା ପାଇଁ ଅନ୍ୟଜଣକୁ ବଳି ଦେଇଦେଲେ ? ଏହା କ'ଣ ତାଙ୍କର କରିବା ଠିକ୍ ହେଲା ? ଏହିକଥା ଭାବିଲାବେଳକୁ ସୀମନ୍ତିନୀ ଦେବୀଙ୍କ ମୁଣ୍ଡ ଗୋଳମାଳ ହୋଇଗଲା । ଭାବିଲେ, "ସତରେ ସେ କଲେ କ'ଣ ? ଶୁଭ୍ରାର ବିଭାଘର ନେଇ ତା ମା' ବାପାଙ୍କୁ ସେ ଯେଉଁ ଜବାବ ଦେଇଥିଲେ, ତା କ'ଣ ହେବ ? ଶୁଭ୍ରାକୁ ସେ ନିଜ ବୋହୂ ଭାବରେ ଗ୍ରହଣ କରି ନେଇଥିଲାବେଳେ ଶାନ୍ତିକୁ ଗ୍ରହଣ କରିବା ପାଇଁ ପୁଅକୁ ଉପଦେଶ ଦେବା କ'ଣ ଶୁଭ୍ରା ପ୍ରତି ଅନ୍ୟାୟ ହେବନି ?

ପରମୁହୂର୍ତ୍ତରେ ଭାବୁଥାନ୍ତି, ସେ ଯଦି ପୁଅକୁ ବର୍ତ୍ତମାନ ଏଭଳି କରିବାକୁ ଉପଦେଶ ନ ଦେଉଛନ୍ତି, ତେବେ ଶାନ୍ତିର ଭବିଷ୍ୟତ କ'ଣ ହେବ ? ମଙ୍ଗୁଳିଟିଏ ଅବିବାହିତ ରହିଲେ ଆମ ସମାଜ ତାକୁ ବଞ୍ଚିବାକୁ ଦେବ ? ପୁଅ ଯଦି ତାକୁ ବର୍ତ୍ତମାନ ଏଥିରୁ ଉଦ୍ଧାର ନ କରୁଛି, ଅନ୍ୟ କେହି ଆଗେଇ ଆସିବେନି ଏଥିପାଇଁ । ସେ କ୍ଷେତ୍ରରେ ଶାନ୍ତିକୁ ଜୀବନ୍ତ ଦେଖିବା କ'ଣ ସମ୍ଭବ ହୋଇପାରିବ ? ଶୁଭ୍ରାକୁ ଦେଇଥିବା ପ୍ରତିଶ୍ରୁତି ଓ ଶାନ୍ତିର ଜୀବନରକ୍ଷା, ଏ ଭିତରୁ କେଉଁଟି ବଡ଼, ଭାବି ଭାବି ତାଙ୍କ ମୁଣ୍ଡ ଗୋଳମାଳ ହୋଇଗଲା ।

ମା'ଙ୍କ ଉପଦେଶ ପାଇବା ପୂର୍ବରୁ ଦେବବାବୁ ମଧ୍ୟ ମନେ ମନେ ସେଇଆ ଠିକ୍ କରି ସାରିଥିଲେ । ଆମ ସମାଜ ଏତେ ରକ୍ଷଣଶୀଳ ଯେ, ମଙ୍ଗୁଳାଟିଏ ଝିଅକୁ ବାହା ହେବାପାଇଁ କେହି ବାହାରିବେନି । ସେ ଯଦି ନିଜେ ବାହା ନ ହେଉଛନ୍ତି, ତେବେ ଶାନ୍ତି ପୁଣି ଆତ୍ମହତ୍ୟା କରିପକାଇବ । ଏଣେ ମଙ୍ଗୁଳା ହୋଇଛି ବୋଲି ଲୋକେ କମ୍ ଅପବାଦ ଦେବେନି ତାକୁ । ସେ କେବେ ଶାନ୍ତିକୁ ବାହାହେବା କଥା ମନରେ ଆଣି ନ ଥିଲେହେଁ ବର୍ତ୍ତମାନ ପରିସ୍ଥିତିରେ ନିଜେ ବାହା ହେବାକୁ ପଡ଼ିବ ।

ଶାନ୍ତିର ବାହାଘର ଦେବବାବୁଙ୍କ ସହିତ ସେହି ରାତିରେ ସମ୍ପନ୍ନ ହୋଇଗଲା । ଗାଁ ସାରା ଚାରିଆଡ଼େ ଆନନ୍ଦର ଢେଉ ଖେଳିଗଲା । ଶାନ୍ତିଟି କେଡ଼େ ସୌଭାଗ୍ୟବତୀ ସତେ ? ଦେବସ୍ମାନ ଭଳି ସ୍ୱାମୀ ପାଇଲା । ଗାଁ ଲୋକେ ଦେବସ୍ମାନର ଏଭଳି ଉଦାରତା ଦେଖି ଧନ୍ୟ ଧନ୍ୟ କଲେ । କାହିଁ ଦେବସ୍ମାନ, କାହିଁ ଶାନ୍ତି ? ସେ ଉଦାର ହୋଇ ନ ଥିଲେ ଶାନ୍ତିକୁ କ'ଣ ସ୍ତ୍ରୀ ଭାବରେ ଗ୍ରହଣ କରିଥାନ୍ତେ ?

ଦେବସ୍ମାନର ବାହାଘରରେ ସୀମନ୍ତିନୀ ଦେବୀ ଖୁସୀ ହୁଅନ୍ତୁ ବା ନ ହୁଅନ୍ତୁ ତାଙ୍କ ମନ ଭିତରେ ଏକ ପ୍ରକାର ଭୟ ଉଙ୍କିମାରି ଉଠୁଥାଏ । ଦେବସ୍ମାନର ବାପାଙ୍କୁ ନ ପଚାରି, ତାଙ୍କ ମତକୁ ନ ନେଇ ସେ ପୁଅକୁ ବାହା କରେଇଥିବାରୁ ସେ ମନେ ମନେ ଭୟ କରୁଥିଲେ କାଳେ ଦେବର ବାପା ତାଙ୍କର ଏଭଳି କାମକୁ ନାପସନ୍ଦ କରିବେ'ବୋଲି । ପୁଅ ଉପରେ ତ ମୂଳରୁ ଏତେ ରାଗ, ପୁଣି ତାଙ୍କୁ ନ ପଚାରି ନ ଉଚ୍ଚାରି ବାହା ହୋଇଥିବାରୁ ସେହି ରାଗ ଯେ ପୁଣି କେତେଗୁଣକୁ ବୃଦ୍ଧି ପାଇଥିବ, ତା'ର କଳନା କରିପାରୁ ନ ଥାନ୍ତି ସୀମନ୍ତିନୀ ଦେବୀ । ତା'ଛଡ଼ା ତାଙ୍କ ମନରେ ଆଉ ଏକ ଡର, ଶୁଭ୍ରାର ବାପା ମା'ଙ୍କୁ ସେ ମୁହଁ ଦେଖାଇବେ କେମିତି ? ଶୁଭ୍ରା ସହିତ ଦେଖାହେଲେ ସେ ତାକୁ କ'ଣ କହିବେ ? ଏହି ବାହାଘର କଥା ଶୁଣିଲେ ଶୁଭ୍ରା ମନରେ ଯେଉଁ ଆଘାତ ପାଇବ, ତା ସେ କେମିତି ସମ୍ଭାଳିବ, ଏଇଆ ଭାବି ଭାବି ସେ ଅସ୍ଥିର ହୋଇପଡ଼ିଲେ ।

ବାହାଘର ଗୋଳମାଳ ତୁଟାଇ ଦେବସ୍ମାନର ପୁରାପୁରି ଦାୟିତ୍ୱ ଶାନ୍ତି ହାତରେ ଦେଇ ସୀମନ୍ତିନୀ ଦେବୀ ଭୁବନେଶ୍ୱର ଫେରିଆସିଲେ । ଦେବସ୍ମାନ କେଉଁ ପରିସ୍ଥିତିରେ ପଡ଼ି ବାହା ହେଲା, ତାଙ୍କୁ ଖବର ଦେଇ ତାଙ୍କ ଅନୁମତି ନେବା କିଭଳି ସମ୍ଭବ ନ ଥିଲା, ସେ ସମ୍ପର୍କରେ ସ୍ୱାମୀଙ୍କୁ ଅବଗତ କରାଇବା ଥିଲା ତାଙ୍କର ଉଦ୍ଦେଶ୍ୟ ।

ସୀମନ୍ତନୀ ଦେବୀ ସ୍ୱାମୀଙ୍କ ପାଖରେ ପହଞ୍ଚିବା ପୂର୍ବରୁ ନାରାୟଣବାବୁ ପୁଅର ବାହାଘର କଥା ଖବର ପାଇ ଯାଇଥିଲେ । ପୁଅ ତ ପଇଁଲେନି ଛାଡ଼, ତାଙ୍କ ନିଜ ସ୍ତ୍ରୀ ବି ଟିକିଏ ପଚାରିଲେନି ? ଏତେବଡ଼ କାମ ତାଙ୍କୁ ନ ଜଣାଇ କରିଥିବାରୁ ମନେ ମନେ ବଡ଼ କ୍ଷୋଭ କଲେ ନାରାୟଣବାବୁ । ସୀମନ୍ତନୀ ଦେବୀ ଘରେ ପହଞ୍ଚିଛନ୍ତି କି ନାହିଁ, ନାରାୟଣ-ବାବୁଙ୍କର ଗାଳି ଆରମ୍ଭ ହୋଇଗଲା । ପୁଅର ଏହିଭଳି ମନମୁଖୀ କାରବାର ପାଇଁ ସେ ତାକୁ ସବୁଦିନ ପାଇଁ ପୁଅ ତାଲିକାରୁ କାଟି ଦେଇଥିଲେ, ଏବେ ତାଙ୍କ ସ୍ତ୍ରୀ ମଧ୍ୟ ସେହି ପଥର ପଥିକ ହେଲେ । ତାଙ୍କ ପାଇଁ ଖାଲି ଦେବସ୍ମାନ ମରିନି, ସୀମନ୍ତନୀ ଦେବୀ ମଧ୍ୟ ମରି ଯାଇଛନ୍ତି ।

## ବନ୍ଧିଶି

"ଆଜି କେଉଁଠୁ କିଛି ଚିଠିପତ୍ର ଆସିନାହିଁ କି ଶାନ୍ତି ?" କ୍ଷେତରୁ ଫେରୁ ଫେରୁ ଦେବସ୍ମାନ ପଚାରିଲା ସ୍ତ୍ରୀ ଶାନ୍ତିକୁ ।

"ହଁ, ଆସିଛି ଗୋଟିଏ ଚିଠି ଆମେରିକାରୁ । ତୁମ ଗୁରୁଜୀ ଶ୍ରୁତିଭା ତୁମଠାକୁ ଚିଠି ଦେଇଛନ୍ତି ।"

"କ'ଣ ଲେଖିଛି ସେଥିରେ ?" ଗୋଡ଼ ଧୋଉଁ ଧୋଉଁ ଦେବସ୍ମାନ ପଚାରିଲା ।

"ମୁଁ ତୁମ ଚିଠି କ'ଣ ଖୋଲିଛି କି ? ତୁମ ପାଇଁ ସେମିତି ରଖି ଦେଇଛି ।

"ଖୋଲି ଦେଖିଲ ନାହିଁ କ'ଣ ଲେଖିଛି ସେ ?"

"ପର ଚିଠି ଖୋଲିବା ମହାପାପ ତୁମେ କ'ଣ ଜାଣିନ ? ମୁଁ ତୁମ ଚିଠି ଖୋଲିବି କାହିଁକି ଯେ ?"

"ମୋ ନାଁରେ ଚିଠି, ତୁମକୁ ପର ହେଲା କେମିତି ଶୁଣେ ?"

"ଯେତେହେଲେ ସିଏ ଆଉଜଣେ ଝିଅ । ସେ ତୁମଠାକୁ କ'ଣ ଲେଖିଥିବେ, ମୋର ପଢିବା କ'ଣ ଉଚିତ ହେବ ?"

"ସେ ସେମିତିକା ଝିଅ ନୁହେଁ ଶାନ୍ତି ।"

"ବୋଉ କାଳେ ତୁମ ସହିତ ତାଙ୍କ ବାହାଘର କରିବା ପାଇଁ ଚାହିଁଥିଲେ ?"

"ହଁ" ।

"ତୁମେ ବି ରାଜି ଥିଲ ?"

"ବୋଉର ଏକାନ୍ତ ଜିଦ୍ ଯୋଗୁଁ ମୁଁ ବାଧ୍ୟ ହୋଇ ରାଜି ହୋଇଥିଲି ।"

"ତୁମେ ରାଜି ହେଉନ ଥିଲ କାହିଁକି ଯେ ? ସେ ତ ସୁନ୍ଦରୀ, ଉଚ୍ଚ ଶିକ୍ଷିତା, ଆଧୁନିକା, ତୁମକୁ ଖୁବ୍ ଭଲ ପା'ନ୍ତି । ଅରାଜି ହେବାର ତ କିଛି କାରଣ ନାହିଁ ?"

"ତୁମେ ଜାଣିଛ ଶାନ୍ତି, ସେ କେଡ଼େ ଧନୀଘରର ଝିଅ । ବାପର ଗୋଟିଏ ବୋଲି ଝିଅ ହୋଇଥିବାରୁ କେତେ ଅଲଥଲରେ ବଢ଼ିଥିବ । କେତେ ଆଇ.ଏ.ଏସ୍. ତାକୁ ବିବାହ କରିବାକୁ ଆଗେଇ ଆସିଛନ୍ତି, ସେ କିନ୍ତୁ ରାଜି ହୋଇନି । ତାଙ୍କ ଘରେ ଚଳାଚଳି ଅତି ଉଚ୍ଚ ଧରଣର । ସେ କ'ଣ ଆସି ଆମ ଘରେ ଚଳି ପାରିଆନ୍ତା ଯେ ମୁଁ ତାକୁ ବିଭା ହୋଇଥାନ୍ତି ? ତା'ଛଡ଼ା ମୋର ରୁଜିରୋଜଗାର ନାହିଁ । ମୁଁ ଜଣେ ବେକାର । ମୋତେ ସେମାନେ ଜୋଇଁ କଲେ ସେମାନଙ୍କ ସମ୍ମାନରେ କେତେ ବାଧା ଆସିବ କହିଲ ?"

"ଶୁଭ୍ରାଙ୍କ ବାପା ମା' ତ ତୁମକୁ ଜୋଇଁ କରିବାକୁ ଚାହୁଁ ଥିଲେ । ଶୁଭ୍ରାଙ୍କର ମଧ୍ୟ ଖୁବ୍ ଇଚ୍ଛା ଥିଲା । ସେମାନଙ୍କ ସମ୍ମାନରେ ବାଧା ଆସିବାର ଆଶଙ୍କା ଥିଲେ, ସେମାନେ କଦାପି ବିଭାଘର ପ୍ରସ୍ତାବ ଦେଇ ନ ଥାନ୍ତେ ।"

"ତୁମେ କେମିତି ଜାଣିଲ ?"

"ବୋଉ କହୁଥିଲେ । ତୁମେ ଯେତେବେଳେ କଷ୍ଟକରେ ରୋଗ ଚକିତ୍ସିତ ହେଉଥିଲ, ସେ ତୁମର ଯେମିତି ସେବା ଶୁଶ୍ରୂଷା କରିଛନ୍ତି, କାହାର ବିବାହିତ ସ୍ତ୍ରୀ ବି ସେମିତି କରିପାରିବ କି ନାହିଁ ସନ୍ଦେହ ।"

"ହଁ, ସେହି ସେବା ଶୁଶ୍ରୂଷାରୁ ହିଁ ବୋଉର ଧାରଣା ହେଲା ଯେ ସେ ମୋତେ ଅତ୍ୟଧିକ ଭଲ ପାଏ ବୋଲି । ସେଇଠୁ ବୋଉ ମନରେ ବିଭାଘର କଥା ଉଠିଲା ।"

"ବୋଉଙ୍କର ତାହାକିଛି ଭୁଲ ଧାରଣା ନ ଥିଲା । ଶୁଭ୍ରା ଦେଖି ତୁମର ଜ୍ୱର ହେବା ଦେଖି ତୁମକୁ ଯେଉଁଭଳି ଭାବରେ ଗୋବିନ୍ଦପୁରରୁ ତାଙ୍କ ନିଜ ଘରକୁ ନେଇଗଲେ, ତାହାଦେଖି ମୋର ମଧ୍ୟ ସେମିତି ଧାରଣା ହୋଇଥିଲା । ଅତି ନିଜର ନ ହେଲେ କେହି ସେଭଳି ବ୍ୟବହାର ଦେଖାଇ ପାରିବନି । ମୁଁ ମଧ୍ୟ ସେହିଦିନଠାରୁ ଧରି ନେଇଥିଲି ସେ ତୁମକୁ ଖୁବ୍ ଭଲ ପାଆନ୍ତି ବୋଲି । ମୋର ମଧ୍ୟ ଧାରଣା ହୋଇଥିଲା, ସେ ଦିନେ ତୁମକୁ ବିବାହ କରିବେ ।"

"ସେଇଟା ତୁମର ପୁରାପୂରି ଭୁଲ ଧାରଣା ଶାନ୍ତି । ଶୁଭ୍ରାର ପ୍ରକୃତି ସେମିତି । ସେ ଯାହାକୁ ଭଲ ପାଏ, ଏତେ ନିଜର ବୋଲି ଭାବେ ଯେ ତା'ର ହାବଭାବ ଦେଖିଲେ ଯେ କେହି ଲୋକ ସେଭଳି ସନ୍ଦେହ କରିବ । କିନ୍ତୁ ମନେରଖ ଶାନ୍ତି, ସେ ଦିନେ ମୋ ସ୍ତ୍ରୀ ହେବ ବୋଲି ମୋତେ ଏତେ ଭଲପାଉ ନ ଥିଲା । ସେ ମୋ ଅଧୀନରେ ଗବେଷଣା କରିବା ଯୋଗୁଁ ମୋ ସହିତ ଏତେ ନିଜର ଭାବରେ କଥାବାର୍ତ୍ତା କରେ ଯେ, ଯେ କେହି ଲୋକ ଦେଖିଲେ ସେମିତି ଭାବିବାରେ କିଛି ଅସ୍ୱାଭାବିକତା ନାହିଁ । ସେ ମୋର ଦୁଃଖ କଷ୍ଟ ଟିକିଏ ଦେଖିପାରେନି, ସହିବା ତ ଦୂରର କଥା । କିନ୍ତୁ ସେ ଭଲ ପାଇବା ଗୁରୁ ଶିଷ୍ୟାର ଭଲପାଇବା ଭଳି ପବିତ୍ର । ସେ ମୋର ଅତି ନିଜର, ଅତି ନିକଟର ବୋଲି

ଦେଖାଇ ସେ ମୋଠାରୁ କ'ଣ କମ୍ ଗାଳି ଖାଇଛୁ ? କିନ୍ତୁ ତଥାପି ସେ ତା'ର ପ୍ରକୃତି ବଦଳାଇ ପାରିନି । ଶୁଭ୍ରା ସୁନ୍ଦରୀ, ଶିକ୍ଷିତା, ଆଧୁନିକା । ତଥାପି ମୁଁ ତାକୁ କେବେ ସ୍ତ୍ରୀ ରୂପରେ ପାଇବା ପାଇଁ ମନରେ ଇଚ୍ଛାପୋଷଣ କରି ନ ଥିଲି । ସେ କିମିତି ଭଲଭାବରେ ଗବେଷଣା କରି ସୁନାମ କରୁ, ତାହା ହିଁ ଥିଲା ମୋର ଇଚ୍ଛା । ଜଣେ ଗୁରୁ ଜଣେ ଛାତ୍ରୀ ପ୍ରତି ଯେଉଁ ଆଶା ପୋଷଣ କରେ, ମୋର ସେମିତି ତା ପ୍ରତି ଇଚ୍ଛା ଥିଲା । ତୁମେ ମହାଭାରତରେ ପଢ଼ିଥିବ, ବିରାଟ ଦେଶର ରାଜକନ୍ୟା ଉତ୍ତରାଙ୍କ କଥା । ସେ ଅର୍ଜୁନଙ୍କଠାରୁ ନୃତ୍ୟବିଦ୍ୟା ଶିକ୍ଷା କରୁଥିଲେ । ଅର୍ଜୁନ ତାଙ୍କର ନୃତ୍ୟଗୁରୁ ଥିଲେ । ବିରାଟ ଦେଶର ରାଜା ଯେତେବେଳେ ଜାଣିଲେ ଧନୁର୍ଦ୍ଧର ଅର୍ଜୁନ ହିଁ ତାଙ୍କ ଝିଅର ନୃତ୍ୟଗୁରୁ, ସେ ଉତ୍ତରାଙ୍କୁ ଅର୍ଜୁନଙ୍କୁ ବିବାହ ଦେବାପାଇଁ ଚାହିଁଥିଲେ । କିନ୍ତୁ ଅର୍ଜୁନ କ'ଣ ରାଜି ହୋଇଥିଲେ ? ନା, କାରଣ ଉତ୍ତରା ତାଙ୍କର ଛାତ୍ରୀ ଥିଲେ । ପରିଶେଷରେ ଅର୍ଜୁନ ନିଜ ପୁତ୍ର ସହିତ ବିବାହ ଦେଇ ଉତ୍ତରାଙ୍କୁ ବୋହୂକରି ଘରକୁ ନେଲେ । ଶୁଭ୍ରା ଓ ମୋ ମଧ୍ୟରେ ସମ୍ପର୍କ ଅର୍ଜୁନ ଓ ଉତ୍ତରା ମଧ୍ୟରେ ଥିବା ସମ୍ପର୍କ ଭଳି । ଏହାଥିଲା ଅତି ପବିତ୍ର ।"

"ତୁମେ ଶୁଭ୍ରାଙ୍କୁ ବିବାହ କରିଥିଲେ ଅଧିକ ସୁଖୀ ହୋଇପାରିଥାନ୍ତ ।"

"ତା'ମାନେ କ'ଣ ତୁମେ କହିବାକୁ ଚାହଁ, ମୁଁ ତୁମକୁ ବିବାହ କରି ସୁଖୀ ହୋଇନି ?"

"ନା, ତା ମୁଁ କହୁନି । ତୁମ ଶିକ୍ଷାଗତ ଯୋଗ୍ୟତା ଓ ମୋ ଶିକ୍ଷାଗତ ଯୋଗ୍ୟତା ସହିତ ମୋଟେ ମେଳ ଖାଉନି । ଶୁଭ୍ରାଙ୍କୁ ବିଭା ହୋଇଥିଲେ ଅନ୍ତତଃ ସେହି ମେଳ ଯୋଗୁଁ ମାନସିକ ମେଳ ଘଟିଥାନ୍ତା । ତେଣୁ ତୁମେ ଅଧିକ ସୁଖୀ ହୋଇ ପାରିଥାନ୍ତ ।"

"ନା ଶାନ୍ତି । ସେମିତି ଧାରଣା କେବେ ମୋ ମନକୁ ଆସିନି । ଅବଶ୍ୟ ବୋଉ ମନରେ ସେମିତି ଧାରଣା ଥିଲା । ତା ବାପା ମା ମଧ୍ୟ ସେଇ ଆଶା କରିଥିଲେ । ତାକୁ ଯେ ଦିନେ ମୁଁ ସ୍ତ୍ରୀ ଭାବରେ ପାଇବି, ସେ ଧାରଣା କେବେ ମୋ ମୁଣ୍ଡକୁ ପଶି ନ ଥିଲା । ଛାତ୍ରୀ ନା ଛାତ୍ରୀ, ତା ଭଳି ବହୁ ଛାତ୍ରୀ ଆସୁଛନ୍ତି, ଯାଉଛନ୍ତି । ସେମିତି କଥା ମୁଣ୍ଡକୁ ପଶିବ ବା କାହିଁକି ?"

"ପାଠ ପଢ଼ାଇଲାବେଳେ ପଶିପାରି ନ ଥାଏ । ଗବେଷଣାବେଳେ ସେ ଯେତେବେଳେ ତୁମ ଖୁବ୍ ପାଖକୁ ଆସିଥିବେ, ସେଭଳି ଧାରଣା ପଶିଥିଲେ କ୍ଷତି କ'ଣ ?"

"ଶୁଭ୍ରା ମୋର ଖୁବ୍ ନିକଟସ୍ଥ ହୋଇଛୁ । କିନ୍ତୁ କେଜାଣି କାହିଁକି ସେଭଳି ଧାରଣା ମୋ ମୁଣ୍ଡକୁ ପଶିପାରିନି । ଅବଶ୍ୟ ବୋଉର ଏକାନ୍ତ ଜିଦ୍ ଯୋଗୁଁ ଶୁଭ୍ରାକୁ ବିବାହ କରିବି ବୋଲି ଶେଷରେ ରାଜି ହୋଇଥିଲି । ଗୋଟିଏ କଥା ମୁଁ ତୁମଠାରେ ଲକ୍ଷ୍ୟ କରୁଛି ଶାନ୍ତି, ତୁମେ ନିଜକୁ ଶୁଭ୍ରା ସହିତ ତୁଳନା କରି ହୀନମନ୍ୟତାର ଶିକାର ହୋଇଛ । କିନ୍ତୁ ତୁମେ ମନେରଖ ଶାନ୍ତି, ମୁଁ ଯେତେବେଳେ ତୁମକୁ ବିବାହ କରିଛି, ତୁମ ସ୍ଥାନ ବର୍ତ୍ତମାନ ଶୁଭ୍ରାଠାରୁ ଢେର୍ ଉଚ୍ଚରେ ।"

"କେଉଁ ପରିସ୍ଥିତିରେ ତୁମେ ମୋତେ ବିବାହ କରିଛ, ତା କ'ଣ ମୁଁ ଜାଣିନି ! ଶୁଭ୍ରାକୁ ବିବାହ କରିବା ପାଇଁ ତା ବାପା ମା'ଙ୍କୁ ଜବାବ ଦେଇ ମୋ ସମ୍ମାନ ରକ୍ଷା କରିବା ପାଇଁ ଯେଉଁ ଅବସ୍ଥାରେ ମୋତେ ବିବାହ କଲ, ତୁମ ବିଶିଷ୍ଟ ହୃଦୟବତ୍ତାର ଏହା କମ୍ ବଡ଼ ସାକ୍ଷ୍ୟ ନୁହେଁ । ତୁମ ବିଶିଷ୍ଟ ସ୍ୱାର୍ଥତ୍ୟାଗର ଏହା ଏକ ଜ୍ୱଳନ୍ତ ନିଦର୍ଶନ । ତୁମେ ମୋତେ ବିବାହ କରି ନ ଥିଲେ, ମୁଁ ଆଜି କ'ଣ ଜୀବନ ନେଇ—"

"ଆଉ, ଥାଉ, ଶାନ୍ତି । ଆଉ ସେ ପୂର୍ବ କଥାକୁ ଦୋହରାଅ ନାହିଁ । ଏହା କହି ଶାନ୍ତିର ପାଟିକୁ ଜାବୁଡ଼ି ଧରିଲେ ଦେବସ୍ମାନ । ସେହି ପୁରୁଣା କଥାକୁ ନ ଦୋହରାଇଲେ ତୁମର ଭାତ ହଜମ ହୁଏ ନାହିଁ ନା କଅଣ ? କହୁ କହୁ ଦେବସ୍ମାନର ହାତ କଠିନ ହୋଇ ଆସିଲା । ସେ ଶାନ୍ତିକୁ ନିଜ ଗୁଡ଼ିଆଡ଼କୁ ଟାଣିନେଇ ତା କପୋଳରେ ଆଙ୍କିଦେଲେ ଏକ ମଧୁର ଚୁମ୍ବନର ରକ୍ତିମ ଦାଗ ।

"ଏହି ଚୁମ୍ବନଟି ମୋ କପୋଳରେ ନ ଲାଗି ଶୁଭ୍ରାର ଆରକ୍ତ କପୋଳ ଉପରେ ଲାଗିଥିଲେ କେଡ଼େ ସୁନ୍ଦର ଦିଶିଥାନ୍ତା କହିଲ ?" ହସି ହସି କହିଲା ଶାନ୍ତି ।

"ଆଁ, ଶୁଭ୍ରାର କପୋଳରେ ! ଛି, ଛି, କି ପାପ କଥା କହୁଛ ତୁମେ ? ତୁମେ ଭାରି ଦୁଷ୍ଟ ଶାନ୍ତି । ଶୁଭ୍ରା ଶୁଭ୍ରା ହୋଇ ତୁମେ ଦିନେ ପାଗଳ ହୋଇଯିବ ଦେଖୁଛି । ଶୁଭ୍ରା ଓ ମୋ ଭିତରେ ଥିବା ପବିତ୍ର ସମ୍ପର୍କକୁ ସେଭଳି ଭାବନାରେ ଆବିଳ କରନି ଶାନ୍ତି ।"

"କିନ୍ତୁ ଶୁଭ୍ରା ପ୍ରତି ଯେଉଁ ଅନ୍ୟାୟ ହେଲା, ସେହି ଅନ୍ୟାୟର ଫଳ ଭୋଗିବ କିଏ ? ଶୁଭ୍ରାର ନିଃଶ୍ୱାସ କ'ଣ ଦିନେ ମୋ ଉପରେ ପଡ଼ିବନି ?"

"ଛି, ଛି, ସେମିତି ଭାବୁଛ କାହିଁକି ? ଶୁଭ୍ରା ସେମିତିକା ଝିଅ ନୁହେଁ ଶାନ୍ତି । ସେ ଏଥିରେ ଆଘାତ ପାଇବ ସତ, କିନ୍ତୁ ସେ ଆଘାତକୁ ସମ୍ଭାଳି ନେଇ ପାରିବାର ଶକ୍ତି ତା'ର ଅଛି । ମୁଁ କେମିତି ତୁମକୁ ବିବାହ କଲି, ଶୁଭ୍ରା ଶୁଣିଲେ କଦାପି ମନ କଷ୍ଟ କରିବନି । ସେ ବରଂ କହିବ, ମୁଁ ସେତେବେଳେ ଯେଉଁ ପଦକ୍ଷେପ ନେଲି, ତାହା ସମୟୋପଯୋଗୀ ହୋଇଛି । ମୋର ସେତେବେଳେ ତାହା ହିଁ କରିବା ଉଚିତ ଥିଲା । ଶୁଭ୍ରା ଏବେତ ଆସିବ । ଦେଖିବ, ମୁଁ ଯାହା କହିଲି ତାହା ଠିକ୍ କି ଭୁଲ ।"

"ସେ ଯଦି ସେପରି କହିବେ, ମୁଁ ଭାବିବି ତାଙ୍କ ହୃଦୟ ତୁମ ହୃଦୟଠାରୁ ଆହୁରି ବଡ଼, ଆହୁରି ପ୍ରଶସ୍ତ । ସେ ମାନବୀ ନୁହଁନ୍ତି, ମାନବୀ ରୂପରେ ଦେବୀ ।"

× × × ×

ଗାଁରେ ସାଧାରଣ ସଭା ବସିଥାଏ । ଗାଁର ଘରଦ୍ୱାରଗୁଡ଼ିକୁ କେମିତି ନୂତନ ଭାବରେ ଏକ ଯୋଜନାନୁଯାୟୀ ତିଆରି କରାଯିବ, ସେହି ଥାଏ ଆଲୋଚନାର ବିଷୟବସ୍ତୁ । ଆଠଗୋଟି ଗାଁକୁ ନୂଆ ଢଙ୍ଗରେ ଗଢ଼ିବାକୁ ହେଲେ ଅନ୍ତତଃ ପାଞ୍ଚବର୍ଷରୁ କମ୍ ସମୟ ଲାଗିବ ନାହିଁ ।

ଗାଁଟି କେଉଁ ଭାବରେ ନୂଆ ହୋଇ ତିଆରି ହେବ, ତାହାର ଏକ ନକ୍ସା ତିଆରି କରିଥାଏ ଜନେ ଦେବସ୍ନାନ । ଏ ପର୍ଯ୍ୟନ୍ତ ଗାଁର ଲୋକମାନେ ରହି ଆସିଥିଲେ ନିଜ ନିଜ ଘରେ । ଘରଗୁଡ଼ାକ ଖୁଲଘର । ନିଆଁ ପାଣିର ଡର ଖୁବ୍ ବେଶି । ଘରଗୁଡ଼ିକ ଯୋଜନା ଅନୁଯାୟୀ ତିଆରି ହୋଇ ନ ଥିବାରୁ ପବନ ଚଳାଚଳ ଭଲ ନୁହେଁ । ଗୋଟିଏ ଗୋଟିଏ ଗାଁରେ ଖୁବେଟି ପାଞ୍ଚୋଟି ଘରକୁ ଛାଡ଼ିଦେଲେ ଅନ୍ୟ ଘରଗୁଡ଼ାକ ଘର ପଦବାଚ୍ୟ ନୁହେଁ, ମାତ୍ର କୁଡ଼ିଆ ଖଣ୍ଡେ ଖଣ୍ଡେ । କେଉଁ କୁଡ଼ିଆର କବାଟ ନାହିଁ ତ କାହାର ଝରକା ନାହିଁ ତ କାହା ଖୁଲରେ ଛଣ ନାହିଁ ।

ଘରଗୁଡ଼ିକ ପୁଣି ଏଠି ସେଠି ହୋଇ ପୁରୁଣାକାଳିଆ ଭାବରେ ତିଆରି ହୋଇଛି । ଗାଁ ଗୁଡ଼ିକୁ ଏକ ଯୋଜନା ଅନୁଯାୟୀ ତିଆରି କରିବା ପାଇଁ ଏକ ପ୍ରସ୍ତାବ ଆଣିଲା ଦେବସ୍ନାନ । ପାଞ୍ଚବର୍ଷ ଭିତରେ ଆଠଗୋଟି ଗାଁର ଘରଗୁଡ଼ିକ ତିଆରି ହେବାର ଯୋଜନା ଓ ନକ୍ସା ସେହି ସଭାରେ ଉପସ୍ଥାପିତ କଲା । ଗାଁ ଭିତରେ ଯେଉଁ ସୁବିସ୍ତୃତ ପଡ଼ିଆ ଓ ଉଚ୍ଚ ଜମି ରହିଛି, ସେହିଠାରେ ଘରଗୁଡ଼ିକ ତିଆରି ହେବା ଉଚିତ ବୋଲି ଯୁକ୍ତି ବାଢ଼ିଲା ।

ଦେବସ୍ନାନର ପ୍ରସ୍ତାବ ଉପରେ ଆଲୋଚନା ଖୁଲିଲା । ଗାଁର ମୁଖିଆ ମୁଖିଆ ଲୋକେ ଜଣେ କେତେ ପ୍ରକାର ପ୍ରସ୍ତାବ ଦେଲେ । ପ୍ରତିବର୍ଷ ହାରାହାରି କେତୋଟି ଘର ତିଆରି କରିବାକୁ ପଡ଼ିବ, ତାହା ଠିକ୍ ହେଲା । ତା ନ ହେଲେ ପାଞ୍ଚବର୍ଷ ଭିତରେ ଏହି ଆଠଗୋଟି ଗାଁର ସମସ୍ତଙ୍କ ପାଇଁ ନୂଆ ଘର ତିଆରି ହୋଇ ପାରିବନି ।

ଗାଁ ମଝିରେ ନୂଆ ରାସ୍ତା ତିଆରି ହେବ । ରାସ୍ତା ଦୁଇ ପାଖରେ ଘରଗୁଡ଼ିକ ରହିବ । ପ୍ରତ୍ୟେକ ଘର ସାମନାରେ ଛୋଟ ଫୁଲଉଦ୍ୟାନଟିଏ ରହିବ । ଘର ପଛ ପାଖରେ ପନିପରିବା ଲଗିବା ଭଳି ବଗିଚାଟିଏ ରହିବ । ପ୍ରତି ଚାରିଗୋଟି ଘର ପାଇଁ ଗୋଟିଏ ଲେଖାଏଁ କୂଅ ରହିବ ।

ବହୁ ଆଲୋଚନା ପରେ ଯେତେବେଳେ ଏହି ଯୋଜନା ସମସ୍ତଙ୍କର ସ୍ୱୀକୃତି ପାଇଲା, ଶୁଭଦିନ ଦେଖି କାମ ଆରମ୍ଭ ହେବା ଠିକ୍ ହେଲା । ଘରଗୁଡ଼ିକ ମାଟିରେ ତିଆରି ନ ହୋଇ ଇଟାରେ ତିଆରି ହେବ । ଘରର ଛଣରେ ନ ହୋଇ ଟାଇଲରେ ହେବ । ଏଭଳି ଘର କଲେ ଆଉ ନିଆଁ ପାଣିର ଭୟ ନ ଥିବ ।

ଦେବସ୍ନାନ ଦେଖିଲା, ଏଥିପାଇଁ ଛୋଟ ଟାଇଲ କାରଖାନାଟିଏ ଗାଁ ମୁଣ୍ଡରେ ବସାଇଦେଲେ ଆଉ ବାହାରୁ ଟାଇଲ୍ କିଣିବା ଦରକାର ପଡ଼ିବନି । ପାଞ୍ଚବର୍ଷ ଭିତରେ ଯେତିକି ଟାଇଲ ଆଠଗୋଟି ଗାଁ ପାଇଁ ଦରକାର ହେବ, ସବୁ ଟାଇଲ ଏହି କାରଖାନାରେ ତିଆରି ହୋଇପାରିବ ।

ଲୋକମାନଙ୍କୁ ବାହାରକୁ ପଠାଇ ଏହି ଟାଇଲ ତିଆରି ପାଇଁ ତାଲିମ ଦେଇ ନେଇ ଆସିଲା । ଏହି ଘର ତିଆରିର ଦାୟିତ୍ୱ ଅନ୍ୟମାନେ କାଳେ ଠିକ୍ ଭାବରେ ତୁଲାଇ

ପାରବେନ ଭାବ ଦେବସ୍ଥାନ ନଜେ ନେଲ । ଗୋଟିଏ ଗୋଟିଏ ଗାଁ ମାପଚୁପ ହୋଇ ଗାଁର ସବୁଠାରୁ ଉଚା ଜାଗାରେ ଘର ଓ ରାସ୍ତା ତିଆରର ନକ୍ସମାନ ତିଆରିଲା ।

ଏହି ଘରଗୁଡ଼ାକ ତିଆରି ହୋଇଗଲେ ଲୋକମାନେ ପୁରୁଣା ଘର ଭାଙ୍ଗିଦେଇ ନୂଆ ଘରେ ରହିବେ । ଏଇ ଘର ତିଆରି ପାଇଁ ଯେଉଁ ଇଟା ଦରକାର, ତାହାମଧ୍ୟ ଗାଁର ଗୋଟିଏ ମୁଣ୍ଡରେ ତିଆରି ହେଲା । ନଜର ସମ୍ବଳ ଓ ଲୋକମାନଙ୍କ ଚଳିବା ସୁବିଧା ଦେଖି ଘରଗୁଡ଼ିକର ଆକାର ଠିକ୍ ହେବା ସ୍ଥିର ହୋଇଥାଏ ।

ଗାଁର କୃଷି ପାଇଁ ସର୍ବନମ୍ନ ଶ୍ରମିକଙ୍କୁ ବାଦ୍ ଦେଇ ଅନ୍ୟ ସବୁ ଶ୍ରମିକ ଲାଗିଗଲେ ଘର ତିଆରିରେ । ନଜେ ନଜ ଘର ତିଆରି କରୁଛନ୍ତି ବୋଲି ଜାଣି ଶ୍ରମିକମାନେ ଉତ୍ସାହିତ ହୋଇ ଆଠଘଣ୍ଟା ଜାଗାରେ ଖଟିଲେ ଦଶ ବାରଘଣ୍ଟା, ଏମିତକ କେଉଁ କେଉଁ ଦନ ଚଉଦଘଣ୍ଟା ।

ପାଞ୍ଚବର୍ଷ ଭିତରେ ଏହି ଆଠଖଣ୍ଡି ଗାଁର ରୂପ ପୁରାପୁରି ବଦଳିଗଲା । ସମସ୍ତଙ୍କର ବର୍ତ୍ତମାନ ଟାଇଲ ଘର । ରାସ୍ତା ଦୁଇ ପାଖରେ ଧାଡ଼ିକୁ ଧାଡ଼ି ଘର । ପ୍ରତ୍ୟେକଙ୍କ ଘର ସାମନାରେ ଫୁଲ ବଗିଚା, ପଛଆଡ଼େ ପନପରିବା ଗଛ ଲାଗିଛି । ପ୍ରତ୍ୟେକଙ୍କ ଘରେ ବାରପାଲି ପାଇଖାନା । ଲୋକେ ଆଉ ଗାଁ ବାଡ଼ିକୁ ଝାଡ଼ା ଫେରିବା ପାଇଁ ଯାଉ ନାହାନ୍ତି । ଏହାଫଳରେ ଗାଁର ବାୟୁମଣ୍ଡଳ ଯେଉଁ ଦୂଷିତ ହେଉଥିଲା, ତାହା ବନ୍ଦ ହେଲା । ଏହି ଗାଁଗୁଡ଼ିକୁ ଯେ ଦେଖିଲା, ଘରଗୁଡ଼ିକର ସୌନ୍ଦର୍ଯ୍ୟରେ ମୁଗ୍ଧ ନ ହୋଇ ରହି ପାରିଲାନ ।

ଦେବସ୍ଥାନ ଓ କାର୍ଯ୍ୟକାରୀ ସମିତିର ସଭ୍ୟମାନେ ଜାଣି ନ ଥିଲେ ଘରଗୁଡ଼ିକ ତିଆରି ପାଇଁ ଅଟକଳଠାରୁ ଏତେ ଅଧିକ ଟଙ୍କା ଖରଚରେ ଲାଗିଯିବ । ସେମାନେ ମୂଳରୁ ଯାହା ଅଟକଳ କରିଥିଲେ, ତା'ଠାରୁ ଢେର୍ ଅଧିକ ଖରଚ ହୋଇଗଲା ଏହି ଘର ତିଆରିରେ ।

ନଜର ଦୁଧ, କୁକୁଡ଼ା, ଛେଳି, ମାଛ, ପନପରିବା, ତେଲବୀଜ, ଝୋଟ, ଆଖୁ, ମହୁ ଆଦିରୁ ପାଞ୍ଚବର୍ଷ ଭିତରେ ଯେତେ ଯାହା ଆୟ ହେଲା, ସବୁ ପାଣିଭଳି ଖରଚ ହୋଇଗଲା ଗାଁଗୁଡ଼ିକର ରାସ୍ତା ଓ ଘର ତିଆରିରେ । ଶେଷଆଡ଼କୁ ହାତରେ ଯଥେଷ୍ଟ ମୂଳଧନ ନ ରହିବାରୁ ଦେବସ୍ଥାନ କାର୍ଯ୍ୟକାରୀ କମିଟିର ମତ ନେଇ ଶ୍ରମିକମାନଙ୍କର ମଜୁରିହାର କମାଇବାକୁ ବାଧ୍ୟ ହେଲା । ଶ୍ରମିକମାନେ ଏଥିରେ ଆପତ୍ତି କରି ନ ଥିଲେ । କାରଣ ସେମାନେ ଜାଣିଥିଲେ ସେମାନେ ଯାହା କରୁଛନ୍ତି ନଜ ପାଇଁ, ସମ୍ବଳ ଅଭାବରୁ ଯଦି ମଜୁରି କମିଲା, ତେବେ ଦୁଃଖ କରିବାର କିଛି ନାହିଁ । ଆସନ୍ତାବର୍ଷକୁ ହୁଏତ ତାହା ଦୂର ହୋଇଯିବ ।

ଆଠଗୋଟି ଗାଁର ସବୁ ଘର ଯେଉଁଦନ ତିଆରି ସରିଲା, ସେହିଦନ ଦେବସ୍ଥାନର ପୁଅଟିଏ ହେଲା । ବିବାହ ପୂର୍ବରୁ ସେ ନଜ ଚଳିବା ପାଇଁ ଗ୍ରାମଦାନ ସଂସ୍ଥାଠାରୁ ଏକ ଷ୍ଟେଟକାଟିଆ ଭତ୍ତା ପାଉଥିଲା । ବିବାହ ପରେ ଶାନ୍ତି ସ୍କୁଲର ଶିକ୍ଷୟିତ୍ରୀ ହୋଇଯିବାରୁ

ସେ ସରକାରଙ୍କଠାରୁ ଦରମା ପାଇଲା । ସେ ଯାହା ଦରମା ପାଇଲା, ଦେବସ୍ନାନର ଭତ୍ତାଠାରୁ ଢେର୍ ଅଧିକ । ସେଥିରେ ସେମାନଙ୍କ ପରିବାର ବେଶ୍ ଭଲରେ ଚାଲିଗଲା ।

ଶାନ୍ତିର ରୋଜଗାର ଦେଖି ଦେବସ୍ନାନବାବୁ ଭତ୍ତା ନେବା ବନ୍ଦ କରିଦେଲେ । ତାଙ୍କ ମତ—ଶାନ୍ତିର ଦରମାରେ ସେ ତ ଚାଲିଯାଇ ପାରିବେ, ଆଉ ଗୋଟାଏ ଭତ୍ତା କ'ଣ ହେବ ତାଙ୍କର ? ସେହି ଭତ୍ତା ଗାଁ ଲୋକଙ୍କ ଉନ୍ନୟନ କାମରେ ଲାଗିଲେ କିଛି ଲାଭ ଅଛି । ପୁରାପୁରି ଅବୈତନିକ କର୍ମୀ ଭାବରେ ସେ ଗାଁ ପାଇଁ ନ ଖଟିବ କାହିଁକି ? ପୁଅଟିର ଏକୋଇଶିଆ ବେଶ୍ ଆଡ଼ମ୍ବର ସହକାରେ କରିବା ପାଇଁ ଗାଁ ଲୋକଙ୍କର ଇଚ୍ଛା ଥିଲେହେଁ ଦେବସ୍ନାନବାବୁ ସେମାନଙ୍କୁ ସେଥିରୁ ନିବର୍ତ୍ତାଇବା ଛଡ଼ା ଅନ୍ୟ ଉପାୟ ନ ଥିଲା ତାଙ୍କର ।

ଶାନ୍ତି ପୁଅ ଏକୋଶିଆ ପାଇଁ ନିଜ ଦରମାରୁ କାଟିକୁଟି ଯାହା ରଖିଥିଲା, ତାକୁ ମଧ୍ୟ ଖରଚ କରିବାକୁ ବାରଣ କଲା ଦେବସ୍ନାନ ।

ଆସନ୍ତା ବର୍ଷକୁ ଗାଁର ଆର୍ଥିକ ପରିସ୍ଥିତି ଭଲ ହେଲେ ପୁଅର ଜନ୍ମଦିନ ଭଲ ଭାବରେ କରିବ ବୋଲି ଶାନ୍ତିକୁ ବୁଝାଇ ଦେଲା । ସ୍ୱାମୀଙ୍କ କଥାରେ ଶାନ୍ତି କେତେବେଳେ ଯୁକ୍ତି କରେନି । ସେ ଜାଣେ ସ୍ୱାମୀ ତା'ର ଯାହା କରୁଛନ୍ତି, ତାହା ନିଜର ଭଲ ପାଇଁ ଓ ଗ୍ରାମବାସୀଙ୍କ ଭଲ ପାଇଁ ।

ଘର ଉଆର ପରେ ପରେ ଦେବସ୍ନାନ ଭାବିଥିଲେ ଗାଁର ଫସଲ ଭଲ ହେଲେ ଗାଁର ଅଭାବ ସେତେ ରହିବ ନାହିଁ । କିନ୍ତୁ ଦୁର୍ଯୋଗକୁ ଦେଖାଦେଲା ନାହିଁ ନ ଥିବା ମରୁଡ଼ି । ବର୍ଷା ଅଭାବରୁ ଧାନକ୍ଷେତ ଶୁଖିଗଲା । କେନାଲ ବ୍ୟବସ୍ଥା ନ ଥିବାରୁ ପାଣି ମଡ଼ାଇ ଗଛକୁ ରକ୍ଷା କରିବା ସମ୍ଭବ ହେଲାନି । ପୋଖରୀ ଆଦିରୁ ଟେଣ୍ଡା ଲଗାଇ ପାଣି ଉଠାଇ କେତେକ ଜମିକୁ ଆବାଦ କରାଗଲା ସତ, କିନ୍ତୁ ତାହା ସମୁଦ୍ରକୁ ଶଙ୍ଖେ ପଣା ପରି । ଗ୍ରାମର ବହୁତ ଜମି ଉଜୁଡ଼ିଗଲା ।

ଦେବସ୍ନାନ ଭାବିଲେ, ହାତରେ ଯଦି ସମ୍ବଳ ଥାଆନ୍ତା, ତେବେ ସେ ପମ୍ପ ଆଣି ପାଣି ଉଠାଇ ଆହୁରି କିଛି ଜମିକୁ ଆବାଦ କରିପାରିଥାନ୍ତେ । ହାତରେ ସମ୍ବଳ ନ ଥିବାରୁ କିଛି କରିପାରିଲେନି ସେ । ପାଖରେ ବ୍ୟାଙ୍କ୍ ଥିଲେ ସେମାନଙ୍କଠାରୁ କରଜ ଆଣି ପମ୍ପସେଟ୍ କିଣି ପାରିଥାନ୍ତେ । ବ୍ୟାଙ୍କ୍‌ଗୁଡ଼ାକ ତ ସବୁ ସହରରେ, ଏ ମୋଫସଲ ଅଞ୍ଚଳକୁ ଋଣ ଦେବ ବା କିଏ ?

ସେହିବର୍ଷ ଧାନ ଅମଳ ହେଲା ପୂର୍ବବର୍ଷର ଅଧା । ଯାହା ଅମଳ ହେଲା, ସବୁ ଗ୍ରାମବାସୀଙ୍କୁ ବାଣ୍ଟି ଦିଆଗଲା ସେମାନଙ୍କ ବାର୍ଷିକ ଚଳିବା ନିମିତ୍ତ । ଫଳରେ ହାତରେ ଆଉ କିଛି ଧାନ ରହିଲା ନାହିଁ ଗାଁର ଉନ୍ନୟନ କାମ ପାଇଁ । ତେବେ ଏହି ମରୁଡ଼ି ଅର୍ଥକାରୀ ଫସଲର ବିଶେଷ କିଛି କ୍ଷତି କରି ପାରିଲାନି । ସେହିସବୁ ଫସଲରୁ ଯାହା ଲାଭ ହେଲା, ଗାଁର ଉନ୍ନୟନ ପାଇଁ ପାଣ୍ଠି ଯୋଗାଇଲା ସେତିକି ।

ଗାଁ ଘର ପାଖରେ ଯେଉଁ ହଜାର ହଜାର ଏକର ଜମି ରହିଛି, ତାକୁ ସବୁଦିନ ପାଇଁ ମରୁଡ଼ିଦାଉରୁ ରକ୍ଷା କରିବା ପାଇଁ ଉଠା ଜଳସେଚନ ବ୍ୟବସ୍ଥା କରିବା ନିହାତି ଦରକାର ବୋଲି ଅନୁଭବ କଲେ ଦେବସ୍ମାନ । ଉଠା ଜଳସେଚନ ପାଇଁ ଠାଏ ଠାଏ ପମ୍ପଘର ଓ ନାଳମାନ କରିବା ଦରକାର । ଏଥିପାଇଁ ପ୍ରଚୁର ଅର୍ଥ ଆବଶ୍ୟକ । ଗାଁ ଭିତରେ ଯଦି ବ୍ୟାଙ୍କ୍ ଟିଏ ଥାଆନ୍ତା, ତେବେ ସେମାନଙ୍କଠାରୁ ଋଣସୂତ୍ରରେ କିଛି ଟଙ୍କା ନେଇ ଏଥିରେ ଖଟାଇଥାନ୍ତେ ଓ ଫସଲ ଆମଦାନୀରୁ ଯାହା ଲାଭ ହୁଅନ୍ତା, ସେଥିରେ ଶୁଝି ଦିଅନ୍ତେ କରଜକୁ ।

ସେଥିପାଇଁ ପ୍ରଥମତଃ ସେ ଗାଁ ଭିତରେ ଗ୍ରାମ୍ୟବ୍ୟାଙ୍କ୍ ପ୍ରତିଷ୍ଠା କରିବା ପାଇଁ ଲାଗି ପଡ଼ିଲେ । ସହରରେ ଯେଉଁ ବଡ଼ ବଡ଼ ବ୍ୟବସାୟୀ ବ୍ୟାଙ୍କ୍ ଥିଲେ, ସେମାନଙ୍କୁ ଡାକିଆଣି ଗାଁର ଉନ୍ନତି କଥା ବୁଝାଇଲେ । ସେମାନଙ୍କ ଭିତରୁ ଗୋଟିଏ ବ୍ୟାଙ୍କ ସ୍ୱତଃ ପ୍ରବୃତ୍ତ ହୋଇ ଏଠାରେ ଏକ ଶାଖା ଖୋଲିବା ପାଇଁ ଇଚ୍ଛା ପ୍ରକାଶ କଲେ, କିନ୍ତୁ ଗୋଟିଏ ସର୍ତ୍ତରେ । ଗ୍ରାମଦାନ ସଂସ୍ଥା ଯଦି ସେମାନଙ୍କୁ ଗୋଟିଏ ଘର ଯୋଗାଇଦିଏ, ତେବେ ସେମାନେ ଏଠାରେ ଗୋଟିଏ ବ୍ୟାଙ୍କ୍ ଖୋଲି ପାରନ୍ତି । ଦେବସ୍ମାନ ବ୍ୟାଙ୍କ୍ର ଏହି ସର୍ତ୍ତରେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ ।

ଯେଉଁଦିନ ଗୋବିନ୍ଦପୁର ଗାଁରେ ବ୍ୟାଙ୍କ୍ ଟିଏ ଖୋଲିଲା, ସେଦିନ ଗାଁ ଲୋକଙ୍କ ଖୁସି କହିଲେ ନ ସରେ । ଗାଁ ଲୋକେ ନିଜ ଅର୍ଜ୍ଜନରୁ ଯାହାକିଛି ବଳାଇ ପାରିଲେ, ତାକୁ ଏହି ବ୍ୟାଙ୍କ୍ରେ ରଖିବା ସୁବିଧା ପାଇଲେ । ଗ୍ରାମଦାନ ସଂସ୍ଥାର ଯାହା ବାର୍ଷିକ ଆୟ, ସେଥିରୁ କିୟଦଂଶ ଏହି ବ୍ୟାଙ୍କ୍ରେ ରଖିବା ଠିକ୍ ହେଲା । ବାକିତକ ଯେଉଁ ପୋଷ୍ଟ ଅଫିସରେ ରହୁଥିଲା, ସେଥିରେ ରହିଲା ।

ଇତିମଧ୍ୟରେ ପୋଷ୍ଟ ଅଫିସକୁ ଗୋଟିଏ ନୂଆ ଘର ଯୋଗାଇ ଦିଆଯିବାରୁ ପୋଷ୍ଟ ଅଫିସ ଗୋବିନ୍ଦପୁରକୁ ଉଠିଆସିଲାଣି । ବ୍ୟାଙ୍କ୍ଠାରୁ ସାହାଯ୍ୟ ନେଇ ଦେବବାବୁ ପ୍ରଥମେ ଗୋଟିଏ ଗାଁରେ ଉଠା ଜଳସେଚନର ବ୍ୟବସ୍ଥା କଲେ । ଧାନବିଲକୁ ଉଠା ଜଳସେଚନ ଯିବା ଫଳରେ ଧାନଜମିରେ ଦୁଇଟି ଧାନଫସଲ କରିବା ସୁବିଧା ହେଲା ।

ବ୍ୟାଙ୍କ୍ ଯାହା ଋଣ ଦେବ, ବର୍ଷେ କେଇଟାରେ ଅଧିକା ଫସଲରୁ ଯେଉଁ ଆୟ ହେବ, ସେଥିରେ ଶୁଝିଦେଇ ହେବ । ସେ ଯଦି ଏହିଭଳି ଭାବରେ ପ୍ରତିବର୍ଷ ଗୋଟିଏ ଦୁଇଟି ଗାଁକୁ ଉଠା ଜଳସେଚନ ଯୋଗାଇଦିଏ, ତେବେ ଗୃହ ପାଞ୍ଚବର୍ଷ ଭିତରେ ସବୁ ଗାଁର ଜଳାଭାବ ଦୂର ହେବାଯୋଗୁଁ ମରୁଡ଼ି ଭୟ ସବୁଦିନ ପାଇଁ ଗାଁମାନଙ୍କରୁ ଦୂର ହୋଇପାରିବ ।

ଗାଁର ଆର୍ଥିକ ସ୍ୱଚ୍ଛଳତା ଦେଖି ଏ ଦିଗରେ ସାହାଯ୍ୟ ଦେବାକୁ ପଛାଇଲା ନାହିଁ ବ୍ୟାଙ୍କ୍ । ସବୁ ଜମିକୁ ଜଳସେଚନ ବ୍ୟବସ୍ଥା ହୋଇଗଲେ ସବୁ ଜମିରେ ଦୁଇଟି ଧାନ ଫସଲ ବ୍ୟତୀତ ରବି ଫସଲ ମଧ୍ୟ କରି ହେବ ।

ଏହିଭଳି ଭାବରେ ବନକୁଦନ ଗ୍ରାମଗୁଡ଼ିକର ଆର୍ଥିକ ସ୍ୱଚ୍ଛଳତା ବଢ଼ିବାରେ ଲାଗିଲା । ଏହି ସମୟରେ ଗାଁମାନଙ୍କରେ ଫଳଗଛ ଲଗାଇବା ଯୋଜନା ସରକାରଙ୍କ ତରଫରୁ ଆସିଲା । ବି.ଡି.ଓ. ଜଣେ ଆସି ଏହି ସଂସ୍ଥା ଅଧୀନରେ ଥିବା ସ୍ଥାନଗୁଡ଼ିକ ତନଖି କରିଗଲେ । କେଉଁଠି କି କି ଗଛ ଲଗାଇଲେ ଭଲ ହେବ, ଦେବସ୍ମାନ ସହି କଥାବାର୍ତ୍ତା କରିବାକୁ ବି.ଡି.ଓ. ଭୁଲିଲେନି ।

ଏହାର କିଛିଦିନ ପରେ ଗୋଟିଏ ବଡ଼ ଟ୍ରକରେ ବିଭିନ୍ନ ଜାତିର ଆମ୍ବ, ପଣସ, ପିଜୁଳି, ନଡ଼ିଆ ଆଦି ଚାରାଗଛ ଗାଁରେ ପହଞ୍ଚିଗଲା । ଏହିସବୁ ଗଛ କେଉଁଠି ଲଗାହେବ, ତହିଁର ଏକ ଯୋଜନା ଆଗରୁ ତିଆରି ସରିଥିଲା । ଗାଁରେ ନୂଆ କରି ତିଆରି ହୋଇଥିବା ରାସ୍ତା ଦୁଇ କଡ଼ରେ ଆମ୍ବଗଛ ପଣସଗଛ ଭିତରୁ କେତେକ ଲଗାଇ ବାକିଗୁଡ଼ିକୁ ଖୋଲା ପଡ଼ିଆରେ ଲଗାଇ ନୂଆ ନୂଆ ଫଳ ବଗିଚା ଉତାରିବା ପାଇଁ ଚେଷ୍ଟା ଚାଲିଲା ।

ଏଥିପୂର୍ବରୁ ଗାଁରେ ଗୋଟିଏ ଫଳ ଆଶା କରିବା ସ୍ୱପ୍ନ ଥିଲା । ବର୍ତ୍ତମାନ ବହୁତ ଫଳଗଛ ଲଗା ହୋଇଯିବାରୁ ଗ୍ରାମବାସୀମାନଙ୍କର ଆନନ୍ଦର ସୀମା ରହିଲାନି । ଆଉ କିଛିବର୍ଷ ପରେ ସେମାନଙ୍କ ଗାଁରେ ସବୁ ପ୍ରକାର ଫଳ ମିଳି ପାରିବ । ଫଳଟିଏ ପାଇଁ ସେମାନଙ୍କୁ ଆଉ ହାଟ ବଜାରକୁ ଦୌଡ଼ିବାକୁ ପଡ଼ିବନି ।

## ତେତିଶି

କୁଆଡ଼ୁ କିଛି ନାହିଁ, ହଠାତ୍ ଦିନେ ଗୋବିନ୍ଦପୁରରେ ଦେଖାଦେଲା ବସନ୍ତ ମହାମାରୀ । ଫଗୁଣ ମାସ । ନୂଆ ଧାନ ଫସଲ ଅମଦାନୀ ସରି ଡାଲିଅଧାନ ଜମିରେ ଲଗା ହେଉଥାଏ । ଉଠା ଜଳସେଚନ ଯୋଗୁଁ ଜମିରେ ପାଣି ମଡ଼ାଇବା ସମସ୍ୟା ଆଉ ନ ଥାଏ ।

ଗାଁରେ ବସନ୍ତ ରୋଗ ପଶିବା ଦେଖି ଲୋକେ ଗ୍ରାନିଆ ହୋଇଗଲେ । ଦେବବାବୁଙ୍କ ଅଜ୍ଞାତରେ ଗାଁ ମୁଣ୍ଡ ବାସେଲୀ ଠାକୁରାଣୀଙ୍କ ପାଖରେ ପୂଜା ଅର୍ଚ୍ଚନା ଚାଲିଲା । ଯା' ଘରେ ବାଧିକ ପଡ଼ିଛି, ସେମାନେ ଘରେ ପଇସା ଥାଉ ନ ଥାଉ ଧାର କରଜ କରି ଗାଁ ମୁଣ୍ଡ ବାସେଲୀଙ୍କ ପାଖରେ ପୂଜା ଅର୍ଚ୍ଚନା ସହ କୁକୁଡ଼ାବଳି ପକାଇଲେ । ଏଥି ସଙ୍ଗେ ସଙ୍ଗେ କାଳେସୀ ଲାଗିଲା । କାଳେସୀ ଠାକୁରାଣୀଙ୍କ ସାମନାରେ ବେତ ପିଟି ପିଟି ଗାଁରୁ କେତେ ମୁଣ୍ଡ ନେବ, ତା'ର ଏକ ଧମକ ଦେଲା । କୁକୁଡ଼ା ବଳି, ଛେନାପଣା ନ ଦେଲେ ଅଧିକ ମୁଣ୍ଡ ନେବ ବୋଲି ଭୟ ଦେଖାଇଲା । ଯା' ଯା' ଘରେ ରୋଗରେ ପଡ଼ିଥିଲେ, ସେମାନେ ଅଲଗା ଅଲଗା ଦିନରେ କାଳେସୀ ପକାଇଲେ । ଉଦ୍ଦେଶ୍ୟ— ବାସେଲୀ ମା ଖୁସୀ ହେଲେ ବସନ୍ତ ଠାକୁରାଣୀ ସେମାନଙ୍କର କ୍ଷତି ନ କରି ଗାଁରୁ ବିଦା

ହୋଇଯିବ । ଗୋଟା ପରେ ଗୋଟା କେତେ କୁକୁଡ଼ା ଯେ ବଳୀ ପଡ଼ିଲେ ତା'ର ଇୟତ୍ତା ନାହିଁ । କେତେ ହାଣ୍ଡି ଯେ ଛେନାପଣା ଦିଆ ହେଲା ତା'ର ହିସାବ ନାହିଁ । ବିଚରା କାଳେସୀର ଆନନ୍ଦ, ଗାଁରୁ ବସନ୍ତ ଠାକୁରାଣୀ ଯାଆନ୍ତୁ ବା ନ ଯାଆନ୍ତୁ, ତାକୁ ଏସବୁ ଦ୍ରବ୍ୟ ଭୋଜନ ମିଳିଗଲା । ରାତି ହେଲେ ଲୋକେ ଶୋଇପଡ଼ିଲେ ବଳୀ ପଡ଼ିଥିବା କୁକୁଡ଼ାତକ ରନ୍ଧାଯାଇ କାଳେସୀ ଘରେ ଭୋଜି ହୁଏ ।

ଏହି ରୋଗରେ ଆକ୍ରାନ୍ତ ହୋଇ ଗୁହୁଁ ଗୁହୁଁ ଦିନ କେଇଟାରେ ଭେଣ୍ଡି ଆମାନେ ଟଳି ପଡ଼ିଲେ । ଗାଁ ଠାକୁରାଣି କାହାକୁ ରକ୍ଷା କରି ପାରିଲେନି । ରୋଗ ପାଇଁ ଦରକାର ଔଷଧ ଓ ଚିକିତ୍ସା । ଠାକୁର ଠାକୁରାଣୀଙ୍କୁ ଭୋଗ ଦେଲେ ରୋଗ ଚାଲିଯିବ ବୋଲି ଭାବିବା ଏକ ଅନ୍ଧ ବିଶ୍ୱାସ, ଭ୍ରମ ଧାରଣା । ଦେବବାବୁ ଏସବୁ ପ୍ରତି ଗୁରୁତ୍ୱ ନ ଦେଇ ଦୌଡ଼ିଲେ ସହରର ପବ୍ଲିକ୍ ହେଲ୍ଥ ଦପ୍ତରକୁ । ସେମାନଙ୍କ ଦପ୍ତରରୁ ଡାକ୍ତରମାନେ ଆସି ଗାଁ ସାରା ଗୋଟାଜ ଟୀକା ଦେଇଦେଲେ । ଦେବସ୍ନାନବାବୁ ଆଇନ କରି ଦେଇଥାନ୍ତି, ସମସ୍ତେ ଗୋଟାଜ ଟୀକା ନେବାକୁ ବାଧ୍ୟ । କେହି ଏଥିରୁ ଛାଡ଼ ପାଇ ପାରିବେନି ।

ଭାରତରେ ଅନ୍ୟ ଅଞ୍ଚଳରୁ ବସନ୍ତ ରୋଗ ପୁରାପୁରି ନିର୍ମୂଳ ହୋଇ ଯାଇଥିବାର ଖବର ବାହାରିଥିଲେହେଁ ଏହା ସମ୍ଭବତଃ ଥିଲା ଏ ଦେଶର ଶେଷ ବସନ୍ତ ମହାମାରୀ ।

ଏହି ଖବର ଶୁଣି ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନର କର୍ମକର୍ତ୍ତାମାନେ ଆସି ଏଠି ହାଜର ହୋଇଗଲେ । ନାନା ପରୀକ୍ଷା ନିରୀକ୍ଷା କରି ସେମାନେ ଜାଣିଲେ ଏହା ପ୍ରକୃତରେ ବସନ୍ତ ରୋଗ । ଗାଁର ପ୍ରତ୍ୟେକ ଲୋକଙ୍କୁ ଟୀକା ଦେବାଫଳରେ ବସନ୍ତ ପୁରାପୁରି ନିୟନ୍ତ୍ରଣାଧୀନକୁ ଚାଲି ଆସିଲା । ଦିନ କେଇଟାରେ ଏହା ପୁରାପୁରି ଗାଁ ଛାଡ଼ି ଚାଲିଗଲା, ସମ୍ଭବତଃ ଏହାଥିଲା ପୃଥିବୀର ଶେଷ ବସନ୍ତ ମହାମାରୀ ।

ଭବିଷ୍ୟତରେ ଏହିଭଳି ଅନ୍ୟ ମହାମାରୀ କାଳେ ବ୍ୟାପିବ, ଦେବସ୍ନାନବାବୁଙ୍କର ଚିନ୍ତା ହେଲା, ଏହି ଗାଁରେ କେମିତି ଗୋଟିଏ ଡାକ୍ତରଖାନା ବସାଇବେ । ଅନ୍ତତଃପକ୍ଷେ ଗୋଟିଏ ପ୍ରାଇମେରୀ ହେଲ୍ଥ ସେଣ୍ଟର ନ ହେଲେ ନ ହୁଏ । ସଂସ୍ଥା ତରଫରୁ ଏକ ଦରଖାସ୍ତ ଦିଆଗଲା ସ୍ୱାସ୍ଥ୍ୟ ବିଭାଗକୁ । ଆଖପାଖ ୪୦।୫୦ ଖଣ୍ଡ ଗାଁରେ ଗୋଟିଏ ବୋଲି ଡାକ୍ତରଖାନା କେଉଁଠି ନାହିଁ । ରୋଗବ୍ୟାଧି ହେଲେ ସେମାନଙ୍କ ସାହା ଭରସା କେହି ନାହିଁ କି ସେମାନଙ୍କୁ କେହି ଦେଖିବାକୁ ଆସନ୍ତିନି ।

ଦେବବାବୁ ନିଜେ ଯାଇ ସ୍ୱାସ୍ଥ୍ୟ ବିଭାଗ କର୍ମକର୍ତ୍ତାମାନଙ୍କ ସହିତ ଏ ସମ୍ପର୍କରେ ଆଲୋଚନା କଲେ । ସେମାନେ ଦେବବାବୁଙ୍କ ଦାବୀକୁ ସ୍ୱୀକାର କଲେ ସତ, କିନ୍ତୁ ସ୍ୱାସ୍ଥ୍ୟ ବିଭାଗର ଖର୍ଚ୍ଚକାଟ ଯୋଗୁଁ ସେମାନେ ନୂଆ କରି ପ୍ରାଇମେରୀ ହେଲ୍ଥ ସେଣ୍ଟର ବସାଇ ପାରିବେନି ବୋଲି ଅକ୍ଷମତା ଜଣାଇଲେ । ତେବେ ଗ୍ରାମବାସୀମାନେ ଯଦି ଡାକ୍ତରଖାନା ପାଇଁ ଘର, ଡାକ୍ତର, ନର୍ସଙ୍କ ରହିବା ପାଇଁ କ୍ୱାର୍ଟର ଓ ଆବଶ୍ୟକୀୟ ଔଷଧମାନ କିଣିବା

ପାଇଁ ଅର୍ଥ ବ୍ୟବସ୍ଥା କରି ପାରନ୍ତି, ତେବେ ସେମାନେ ଡାକ୍ତର, ନର୍ସ ଯୋଗାଇ ଦେଇପାରିବେ ।

ଦେବବାବୁ ଦେଖିଲେ, ଏହି ପ୍ରସ୍ତାବରେ ସେ ଯଦି ରାଜି ନ ହେଉଛନ୍ତି, ତେବେ ଗାଁରେ ଡାକ୍ତରଖାନାଟିଏ ଖୋଲି ହେବନି । ତେଣୁ ବାଧ୍ୟ ହୋଇ ସେ ପ୍ରସ୍ତାବରେ ହଁ ଭରିଲେ ।

ସେଠାରୁ ଫେରି କାର୍ଯ୍ୟକାରୀ ସମିତି ସହିତ ଆଲୋଚନା କରି ଏଥିପାଇଁ ଘର ତିଆରି ଆରମ୍ଭ କରିଦେଲେ । ଘର ତିଆରି ସରିବା ସଙ୍ଗେ ସଙ୍ଗେ ଡାକ୍ତର, ନର୍ସ, ସହରରୁ ଆସି ଗାଁରେ ପହଞ୍ଚିଗଲେ । ସେମାନଙ୍କ ସହିତ ଆଲୋଚନା କରି ଔଷଧାଦି କିଣିବା ପାଇଁ ପ୍ରଥମରୁ କୋଡ଼ିଏ ହଜାର ଟଙ୍କା ବ୍ୟୟ ବରାଦ କଲେ କାର୍ଯ୍ୟକାରୀ ସମିତିର ସମ୍ମତି ନେଇ ।

ଦେବବାବୁଙ୍କର ଆନନ୍ଦ ବହୁଦିନର ସ୍ୱପ୍ନ ତାଙ୍କର ସାର୍ଥକ ହେଲା । ଏବେ ଏଣିକି ପ୍ରତିବର୍ଷ କଲେରା, ଟାଇଫଏଡ୍ ଆଦି ରୋଗର ପ୍ରତିଷେଧକ ଗାଁର ପ୍ରତ୍ୟେକ ଲୋକଙ୍କୁ ଦିଆଯିବ, ଯେମିତି କି ଏହି ରୋଗ ଭୁଲିରେ ବି ଏହି ଗ୍ରାମ ଭିତରକୁ ପଶିବନି ।

ଦେବବାବୁଙ୍କର ଧାରଣା ହେଲା ନିଜେ କରୁଥିବା ବିଭିନ୍ନ ଉନ୍ନୟନମୂଳକ କାମ ଠିକ୍ ଭାବରେ ଆଗେଇ ପାରିବନି, ଯଦି ଗାଁ ଗୁଡ଼ିକରେ ବିଦ୍ୟୁତ୍ଶକ୍ତିର ସରବରାହ ନ ହୁଏ । ବିଦ୍ୟୁତ୍ଶକ୍ତି ହେଲେ ଗାଁରେ ଲୋକମାନଙ୍କ ଶ୍ରମ ଲାଘବ ହେବ, ଗାଁ ଲୋକେ ଘର ଭିତରେ ଆଲୁଅ ଓ ପବନ ପାଇପାରିବେ । ବିଦ୍ୟୁତ୍ଚାଳିତ ଗୁଉଲକଳ, ଅଟାକଳ, ଚୂଡ଼ାକଳ, ତେଲକଳ ଆଦି ବସିଲେ ଲୋକଙ୍କୁ ପୂର୍ବଭଳି ଅଧିକ ପରିଶ୍ରମ କରି ହାତରେ ସେଗୁଡ଼ିକୁ କରିବାକୁ ପଡ଼ିବ ନାହିଁ ।

ସରକାରଙ୍କ ସେହିବର୍ଷ ନିୟମ ହୋଇଥାଏ, ଯେଉଁ ଗାଁ ବଣ୍ଟାଖୁଣ୍ଟ ଓ ବିଦ୍ୟୁତ୍ ତାରର ଅଧା ଖର୍ଚ୍ଚ ବହନ କରିବ, ସେହି ଗାଁକୁ ସଙ୍ଗେ ସଙ୍ଗେ ବିଦ୍ୟୁତ୍ଶକ୍ତି ଯୋଗାଇ ଦିଆଯିବ । ଦେବବାବୁ ହିସାବ କରି ଦେଖିଲେ, ଦୁଇଲକ୍ଷ ନବେହଜାର ଟଙ୍କା ଖରଚ କଲେ, ଆଠଗୋଟି ଗାଁରେ ନୂଆ ହୋଇ ତିଆରି ହୋଇଥିବା ସବୁ ଘରକୁ ବିଦ୍ୟୁତ୍ଶକ୍ତି ଯୋଗାଯାଇପାରିବ । ତେଣୁ ସେଥିରେ ଅରାଜି ହେବାର କିଛି କାରଣ ସେ ଦେଖିଲେ ନାହିଁ । କାର୍ଯ୍ୟକାରୀ ସମିତି ଏତେଗୁଡ଼ିଏ ଟଙ୍କା ବିଜୁଳି ଲାଇନ ପାଇଁ ଖରଚ କରିବାକୁ ମୂଳରୁ ପ୍ରସ୍ତୁତ ନ ଥିଲେ, କିନ୍ତୁ ଦେବବାବୁଙ୍କ ଚାପରେ ସେମାନେ ପରିଶେଷରେ ରାଜି ହେଲେ ।

ଦେବବାବୁ ସେମାନଙ୍କୁ ବୁଝାଇଦେଲେ ଦୁନିଆରେ ସାଧାରଣ ନାଗରିକ ଭାବରେ ଚଳିବାକୁ ହେଲେ ବିଜୁଳିଶକ୍ତି ନ ହେଲେ ନ ଚଳେ । ଗାଁର ରାସ୍ତାରେ ବିଜୁଳି ଆଲୋକ ଦିଆଗଲେ ଚଳାଚଳରେ ବହୁତ ସୁବିଧା ହେବ, ନୂଆ ନୂଆ ଛୋଟ ଛୋଟ ଶିଳ୍ପ ଗଢି ଉଠିବ । ଏହିଭଳି ଭାବରେ ବୁଝାଇଦେଲାରୁ ସଭ୍ୟମାନେ ରାଜି ହୋଇଗଲେ ।

ଝୁହୁଁ ଝୁହୁଁ ଦିନ କେଇଟାରେ ଆଠଗୋଟିଯାକ ଗ୍ରାମ ବିଜୁଳି ଆଲୋକରେ ହସି ଉଠିଲା । ଏହି ଗାଁଗୁଡ଼ିକ ରାତିରେ ବିଜୁଳି ଆଲୋକରେ ଉଦ୍‌ଭାସିତ ହୋଇ ଉଠୁଥିଲା-ବେଳେ ପାଖ ଗାଁର ଲୋକେ ସେହି ଡିବିରି, ଲଣ୍ଠନ ଆଲୁଅରେ ଦରଣ୍ଡି ହେଉଥିଲେ ।

ଗାଁର ବଡ଼ ବଡ଼ ସମସ୍ୟା ଓ ଅଭାବ ଏହିଭଳି ତୁଟିଗଲା ପରେ ଲୋକଙ୍କର ଇଚ୍ଛା ହେଲା କେତେଗୋଟି ଧର୍ମ କାମ କରିବାକୁ । ଗାଁରେ କେଉଁଠି ମନ୍ଦିର ନ ହେଲେ ନ ହୁଏ । ଲୋକେ ପୂଜା ପର୍ବାଦିନମାନଙ୍କରେ କେତେ ଆଉ ଅନ୍ୟ ଗାଁର ମନ୍ଦିରମାନଙ୍କୁ ଯିବେ ? ଏଥିପାଇଁ ଗୋଟିଏ ଶିବ ମନ୍ଦିର, ଗୋଟିଏ ଜଗନ୍ନାଥ ମନ୍ଦିର, ଗୋଟିଏ ରାଧାକୃଷ୍ଣ ମନ୍ଦିର ଏହି ସଂସ୍ଥା ଅଧୀନରେ ଥିବା ତିନୋଟି ଅଲଗା ଅଲଗା ଗାଁରେ ପ୍ରତିଷ୍ଠିତ ହେଲା । ଗାଁ ଗୁଡ଼ିକ ଏମିତି ଭାବରେ ବଣ୍ଟାଗଲା ଯେମିତି କି ପୂଜା ପର୍ବାଦିନମାନଙ୍କରେ ଏହି ସଂସ୍ଥାର ଗ୍ରାମବାସୀଙ୍କୁ ଅଧିକ ଦୂର ଚାଲିକରି ଯିବାକୁ ପଡ଼ିବ ନାହିଁ ।

ଏଥିପୂର୍ବରୁ ଗାଁରେ ଗୋଟିଏ ମହିଳା ସମିତି, ଗୋଟିଏ କ୍ଲବ୍ ଘର ତିଆରି ସରିଥାଏ । ଗାଁମାନଙ୍କରେ ପିଲାମାନଙ୍କ ଅଧିକ ପାଠ ପଢ଼ିବା ପାଇଁ ବାରମ୍ବାର ଚାପ ଫଳରେ ଗୋବିନ୍ଦପୁର ମାଇନର ସ୍କୁଲଟିକୁ ହାଇସ୍କୁଲ୍‌ରେ ପରିଣତ କରି ଦିଆଗଲାଣି । ସବୁ ଗାଁରେ ଗୋଟିଏ ଗୋଟିଏ ପ୍ରାଇମେରି ସ୍କୁଲବ୍ୟତୀତ ମାଇନର ସ୍କୁଲ ବସିଗଲାଣି । ଦେବବାବୁଙ୍କର ସବୁବେଳେ ଆଖି ଏହି ଶିକ୍ଷା ଉପରେ । ପିଲାମାନଙ୍କୁ ଯଦି ଉପଯୁକ୍ତ ଶିକ୍ଷା ଦିଆଯାଇଥାଏ, ତେବେ ଭବିଷ୍ୟତରେ ଗ୍ରାମର ଉନ୍ନୟନ ଅପେକ୍ଷାକୃତ ସହଜ ହେବ ।

ଶାନ୍ତ ଏହି ହାଇସ୍କୁଲ ଅଧୀନରେ ଥିବା ମାଇନର ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ଭାବରେ ଦାୟିତ୍ୱ ନେଲାଣି । ଆଠଗୋଟି ଗାଁରେ ଶିକ୍ଷାର ପ୍ରସାର ପାଇଁ ଦେବବାବୁ ଯେତେ ଦାୟୀ ନୁହଁନ୍ତି, ବେଶି ଦାୟୀ ଶାନ୍ତର ବାପା ହରିବାବୁ । ଆଜି ତାଙ୍କରି ପ୍ରଚେଷ୍ଟାରୁ ଗୋଟିଏ ପ୍ରାଇମେରି ସ୍କୁଲରୁ ଆଠଟି ପ୍ରାଇମେରି ସ୍କୁଲ, ଦୁଇଟି ମାଇନର ସ୍କୁଲ ଓ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠିତ ହେଲାଣି । ଏହି ସ୍କୁଲଗୁଡ଼ିକରେ ଯେ ଖାଲି ଏହି ଗାଁଗୁଡ଼ିକର ପିଲାଏ ପଢ଼ନ୍ତି, ତା ନୁହେଁ, ଆଖପାଖ ଗାଁର ପିଲାମାନେ ମଧ୍ୟ ଏହି ସ୍କୁଲ-ମାନଙ୍କରେ ପଢ଼ିବାର ସୁବିଧା ପାଆନ୍ତି । ତେବେ ତଫାତ୍ ହେଉଛି ଏହି ଗାଁର ପିଲାମାନଙ୍କୁ ବହିପତ୍ର, ଖାତା ପେନ୍‌ସିଲ ଆଦି ଗ୍ରାମଦାନ ସଂସ୍ଥା ନିଜ ଖର୍ଚ୍ଚରେ ଯୋଗାଇଦିଏ । ବାହାର ଗାଁର ପିଲାମାନେ ସେମାନଙ୍କ ହାତରୁ ସେସବୁ କିଣି ପଢ଼ନ୍ତି ।

ଗାର ଉନ୍ନୟନ କାମ ଯେଉଁ ଗତିରେ ବଢ଼ି ବଢ଼ି ଚାଲିଲା, ଦେବବାବୁଙ୍କର ଦାୟିତ୍ୱ ଓ କାମ ସେହି ଅନୁପାତରେ ବଢ଼ିଗଲା । ତାହାଛଡ଼ା ଅଫିସ୍ କାମ ତଦାରଖ ସବୁବେଳେ ନ କଲେ ନ ହୁଏ । ଦିନେ ସେ ଶାନ୍ତକୁ ପ୍ରସ୍ତାବ ଦେଲା ଯେ ସେ ଚାକିରି ଛାଡ଼ିଦେଇ ତାଙ୍କୁ ଏ ଦିଗରେ ସେ ସାହାଯ୍ୟ କରୁ ।

ଶାନ୍ତକୁ ଶିକ୍ଷୟିତ୍ରୀ କାମ ଭଲ ଲାଗେ, ଅଫିସର କାଗଜପତ୍ର ତନଖି ତାକୁ ମୋଟେ ଆସେ ନାହିଁ । ତେଣୁ ତା'ର ଅନୁରୋଧରେ ତା'ର ସାନଭାଇକୁ ସେହି କାମ ଦିଆଗଲା ।

ଶାନ୍ତିର ସାନଭାଇ ମାଧବ ପୂର୍ବବର୍ଷ ରେଭେନ୍‌ସା କଲେଜରୁ ବି.କମ୍. ପାସ୍ କରି ଘରେ ଆସି ଅଛି । ଦେବବାବୁ ତାକୁ ଆଣି ଅଫିସ୍ କାର୍ଯ୍ୟରେ ତାଙ୍କର ଏକ ସହକାରୀ ଭାବରେ ନିଯୁକ୍ତ ଦେଇଦେଲେ । ଗାଁର ସେ ହେଉଛି ସର୍ବପ୍ରଥମ ବି.କମ୍. ପାସ୍ କରିବାଲା ଯୁବକ । ତାକୁ ସେଭଳି କାମ ନ ଦେଇ ଆଉ ବା କି କାମ ଦିଆଯାଇ ପାରିଥାନ୍ତା ?

ହରିବାବୁଙ୍କ ଇଚ୍ଛା ଥିଲା, ମାଧବ ବାହାରକୁ ଯାଇ କିଛି ଗୋଟିଏ ଚାକିରୀ କରିଥାନ୍ତା । କିନ୍ତୁ ଝିଅର ଚାପରେ ହରିବାବୁଙ୍କ ମତ ବଦଳିଲା । ଗାଁ ପିଲା ଗାଁ ଉନ୍ନତିରେ ଲାଗିବ ନାହିଁ ତ ଆଉ କେଉଁଥିରେ ଲାଗିବ ? ପିଲାଟି ଭାରି ପରିଶ୍ରମୀ, ସଚ୍ଚୋଟ ଓ ସାଧୁ ପ୍ରକୃତିର । ସେମିତି ପିଲାକୁ ଟ୍ରେନିଂ ଦେଇ ଅଫିସ୍ ତଦାରଖ କାମରେ ରଖିଲେ ଭବିଷ୍ୟତକୁ ଖୁବ୍ ସାହାଯ୍ୟକାରୀ ହେବ । କାର୍ଯ୍ୟକାରୀ ସମିତିର ସମ୍ମତି ନେଇ ତା ପାଇଁ ଏକ ଦରମା ବ୍ୟବସ୍ଥା କରିବାକୁ ପଡ଼ିଲା ଦେବବାବୁଙ୍କୁ । ବିନା ଦରମାରେ ତ ସେ କାହାରିକୁ ଖଟାଇ ପାରିବେନି ଗାଁ ପାଇଁ । ନିଜେ ସିନା ବିନା ଦରମାରେ କାମ କରୁଛନ୍ତି, ନିଜେ ଏହି ସଂସ୍ଥାର ସ୍ରଷ୍ଟା ବୋଲି । ଅନ୍ୟମାନଙ୍କୁ ବିନା ଦରମାରେ ଖଟାଇଲେ ଅନ୍ୟାୟ ହେବ ।

## ଚଉତିରିଶି

"ଦେବସ୍ନାନବାବୁ ଘରେ ଅଛନ୍ତି ?" ଦେବସ୍ନାନବାବୁଙ୍କ ଘରର ଦୁଆର ପାଖରେ ଠିଆ ହୋଇ ଦଳେ କଲେଜ ପିଲା ପଚାରୁଥାନ୍ତି ।

ଘରେ ଦେବସ୍ନାନବାବୁ ନ ଥିଲେ । ସ୍ତ୍ରୀ ଶାନ୍ତିଦେବୀ କିଏ ଡାକୁଛି ବୋଲି ଜାଣିବା ପାଇଁ ଦୁଆର ପାଖକୁ ଚାଲି ଆସିଲେ । ଦୁଆରେ ଦଳେ ପିଲାଙ୍କୁ ଦେଖି ପଚାରିଲେ, "ଆପଣମାନେ କାହାକୁ ଖୋଜୁଛନ୍ତି ?"

"ଦେବସ୍ନାନବାବୁଙ୍କୁ ।"

"କେଉଁ ଦେବସ୍ନାନବାବୁ ?"

"ଏଠା ଗ୍ରାମଦାନ ସଂସ୍ଥାର ପୁରୋଧା ଡକ୍ଟର ଦେବସ୍ନାନ ଦାସ ।"

"ଆପଣମାନଙ୍କ କାମ କ'ଣ ତାଙ୍କଠାରେ ?" ଆପଣମାନେ କେଉଁଠୁ ଆସିଛନ୍ତି ?"

"ଆମେ ଆଜ୍ଞା ଏହି ପାଖ ବାଙ୍କି କଲେଜରୁ ଆସିଛୁ । ଆମ କଲେଜର ବିଜ୍ଞାନ ସଂସଦର ବାର୍ଷିକ ଉତ୍ସବ ଆସନ୍ତା ଶୁକ୍ରବାର ଦିନ । ଆମେ ତାଙ୍କୁ ଏହି ଉତ୍ସବରେ ସମ୍ମାନିତ ପ୍ରଧାନ ଅତିଥି ଭାବରେ ଡାକିବା ପାଇଁ ଆସିଛୁ ।"

"ସିଏତ ଆଉ ଅଧ୍ୟାପକ ନାହାନ୍ତି । ସେ ତ ବର୍ତ୍ତମାନ ପୁରୁପୁର ଜଣେ ଗାନ୍ଧିଙ୍କ କର୍ମୀ ଭଳି । ସିଏତ ଆଜକାଲି ଏଭଳି ଉତ୍ସବରେ ଯୋଗ ଦେବାପାଇଁ କେଉଁଆଡ଼େ ଯାଉ ନାହାନ୍ତି । ବିଜ୍ଞାନ ବିଭାଗ ଛାଡ଼ିଲାଦିନୁଁ ସେ କ'ଣ ବିଜ୍ଞାନ କଥା କିଛି ଜାଣିଛନ୍ତି ଯେ ଆପଣମାନଙ୍କୁ କିଛି କହିବେ । ଆପଣମାନେ ଭୁଲ କରିଛନ୍ତି, ତାଙ୍କୁ ଡାକିବା ପାଇଁ ଆସି ।"

"ଆପଣ ଏ କ'ଣ କହୁଛନ୍ତି ମେଡେମ୍ ? ସେ ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ବିଜ୍ଞାନ ଅଧ୍ୟାପକ ତଥା ବିଜ୍ଞାନ ଲେଖକ । ତାଙ୍କ ବିଜ୍ଞାନ ଲେଖା ଏତେ ଲୋକପ୍ରିୟ ଯେ, ସେ ସାରା ରାଜ୍ୟରେ ଚହଳ ଖେଳାଇ ଦେଇଛନ୍ତି । ବିଜ୍ଞାନରେ ଜଣେ ସୁବକ୍ତା ଭାବରେ ତାଙ୍କ ଖ୍ୟାତି ଅସୀମ । ବିଜ୍ଞାନ ଗବେଷଣା ଓ ଅଧ୍ୟାପନାରେ ସେ ଅଦ୍ୱିତୀୟ ।"

"ହଁ, ସେ ଏକ ସମୟରେ ଥିଲେ । ବର୍ତ୍ତମାନ କିନ୍ତୁ ନାହାନ୍ତି । ସେ ଆଜକୁ ଢେର୍ ଦିନ ହେଲା କଲେଜ ଛାଡ଼ିଲେଣି । ବର୍ତ୍ତମାନତ ସେ ଜଣେ ଭୂଦାନ କର୍ମୀ । ବିଜ୍ଞାନ ବିଷୟ ସେ ଢେର୍ ଦିନ ହେଲା ପାଶୋରି ଦେଲେଣି । ଆପଣମାନେ ଅନ୍ୟ କାହାକୁ ଡାକନ୍ତୁ, ସେ ସମ୍ଭବତଃ ଯାଇ ପାରିବେନି । ତାଙ୍କର ସମୟ ମଧ୍ୟ ଖୁବ୍ ଅଭାବ । ସେ ଏଠାରେ ଏତେ କାର୍ଯ୍ୟବ୍ୟସ୍ତ ଯେ ଆପଣଙ୍କ ଉତ୍ସବ ପାଇଁ ସେ ସମୟ ଦେଇପାରିବେ କି ନାହିଁ ସନ୍ଦେହ । ଆପଣମାନେ ଆଉ କାହାକୁ ନେଇ ଯାଉନାହାନ୍ତି ?"

"ନାଇଁ ମେଡେମ୍, ଆମର ତାଙ୍କୁ ହିଁ ଡାକିବା ସିଦ୍ଧାନ୍ତ ହୋଇଛି । ତା'ଛଡ଼ା ରେଭେନସା କଲେଜର ପଦାର୍ଥବିଜ୍ଞାନ ଅଧ୍ୟାପିକା ଡକ୍ଟର ରେଖା ମହାନ୍ତି ଏଥିରେ ମୁଖ୍ୟବକ୍ତା ଭାବରେ ଯୋଗଦେବା ପାଇଁ ସମ୍ମତି ଦେଇଛନ୍ତି । ସେ ଆମକୁ ପ୍ରସ୍ତାବ ଦେଇଛନ୍ତି ଯେ, ଦେବସ୍ମାନବାବୁ ଯଦି ସମ୍ମାନିତ ପ୍ରଧାନ ଅତିଥି ଭାବରେ ଯୋଗଦଆନ୍ତି, ତେବେ ସେ ମୁଖ୍ୟବକ୍ତା ଭାବରେ ଯୋଗଦେବେ । ନଚେତ୍ ସେ ଆମ ଫଙ୍କ୍‌ସନ୍‌କୁ ଆସିବେନି । ମୁଖ୍ୟ ଅତିଥି ଓ ମୁଖ୍ୟ ବକ୍ତା ନ ଆସିଲେ ଆମ ଫଙ୍କ୍‌ସନ୍ କେମିତି ହେବ କହିଲେ ଆଜ୍ଞା ?"

"ତାହାହେଲେ ଆପଣମାନେ ଅପେକ୍ଷା କରନ୍ତୁ । ସେ ବର୍ତ୍ତମାନ ବିଲରୁ ଆସିଯିବେ । ତାଙ୍କୁ ଦେଖାକରି କହିଲେ ସେ ଯାହା କରିବେ ।"

"ଆପଣ ଟିକିଏ ସାର୍‌ଙ୍କୁ ଆମଆଡ଼ୁ ଅନୁରୋଧ କ'ଣ କରିବେନି ମେଡେମ୍ ? ଆପଣ କହିଲେ ସେ ଆମ ନିମନ୍ତ୍ରଣ ଗ୍ରହଣ କରିପାରନ୍ତି ।"

"ସେ ଯଦି ସମୟ କରିପାରିବେ ଯିବେ, ନଚେତ୍ ଯିବେନି । ତାଙ୍କୁ କେହି କହି ବୋଲି ମଙ୍ଗାଇ ପାରିବେନି । ତାଙ୍କୁ ମଙ୍ଗାଇବା ମୋ ଶକ୍ତି ବାହାରେ । ଆପଣମାନେ ଅପେକ୍ଷା କରନ୍ତୁ, ସେ ଆସିଲେ ତାଙ୍କୁ କହିବେ ।"

କିଛି ସମୟ ପରେ ଦେବସ୍ଥାନବାବୁ ବାଲରୁ ଫେରିଲେ । ଦୁଆରମୁହଁରେ ଏତେ-ଗୁଡ଼ିଏ କଲେଜ ପିଲାଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ ? ଶାନ୍ତଠାରୁ ବୁଝିଲେ, ସେମାନେ ସବୁ ନିକଟସ୍ଥ ବାଙ୍କି କଲେଜରୁ ତାଙ୍କୁ ସେମାନଙ୍କ ଉତ୍ସବକୁ ଡାକିବା ପାଇଁ ଆସିଛନ୍ତି ।

ମନେ ମନେ ଭାବିଲେ, ବିଜ୍ଞାନ ସହିତ ତାଙ୍କର କ'ଣ ସମ୍ପର୍କ ଅଛି ଯେ ସେ କିଛି କହିବେ । ତେବେ ଯେତେବେଳେ ଆସିଛନ୍ତି, କିଛି କହି ବିଦାୟ ଦେବାକୁ ପଡ଼ିବ । ଦାଣ୍ଡପିଣ୍ଡାକୁ ବାହାରି ଆସି କହିଲେ, "ଦେଖ ପିଲାଏ, ତୁମେମାନେ ମୋତେ ତୁମମାନଙ୍କ ବିଜ୍ଞାନ ସଂସଦକୁ ଡାକିବା ପାଇଁ ଆସିଛ ଦେଖି ଖୁସି ହେଲି । ହେଲେ ବିଜ୍ଞାନ ଅଧ୍ୟାପନା, ମୁଁ ଢେର୍ ଦିନ ହେଲା ଛାଡ଼ିଲିଣି । ଅଧ୍ୟାପକ ଥିଲାବେଳେ ଯାହାବା ଜାଣିଥିଲି, ସେସବୁ ବିସ୍ମୃତି ପଥରେ କେଉଁଦିନରୁ ମୋ ମନରୁ ଗଲଣି । ବର୍ତ୍ତମାନ ମୁଁ ଯାଇ କ'ଣ କହିବି ତୁମମାନଙ୍କୁ ? ମୋ ମୁଣ୍ଡରେ ବର୍ତ୍ତମାନ ଶ୍ରମଦାନ, ଗ୍ରାମଦାନ ଭୂଦାନ ବ୍ୟତୀତ ଆଉ କିଛି ନାହିଁ । ମୁଁ ଯାଇ ତୁମମାନଙ୍କ ବାର୍ଷିକ ଉତ୍ସବରେ ଭୂଦାନ କଥା କି ଗ୍ରାମଦାନ କଥା କହିଲେ ତୁମ ପିଲାମାନେ କ'ଣ ଖୁସି ହେବେ ? ଓଲଟି ସେମାନେ ତୁମମାନଙ୍କୁ ଗାଳି ଦେବେ । ଏହି ଉତ୍ସବକୁ ରେଖାଦେବୀ ଆସୁଛନ୍ତି ଶୁଣି ଖୁସି ହେଲି । ସେ ଜଣେ ବଡ଼ ବକ୍ତା । ମୁଖ୍ୟବକ୍ତାଙ୍କଠାରୁ ଯାହାକିଛି ଶୁଣାଯାଏ, ପ୍ରଧାନ ଅତିଥି ଖାଲି ଆଳଙ୍କାରିକ । ରେଖାଦେବୀ ଖୁବ୍ ଭଲ କହନ୍ତି । ସେ କହିବେ, ପିଲାମାନେ ଶୁଣିବ । ଆଳଙ୍କାରିକ ଅତିଥିରର କ'ଣ ଦରକାର ? ଅତିଥି ନହେଲେ ତୁମ କାମ ଚଳିଯିବ । ରେଖାଦେବୀଙ୍କୁ କହିବ ତାଙ୍କ ପ୍ରତି ମୋର ଶୁଭେଚ୍ଛା ଅଛି । ତୁମମାନଙ୍କ ଫଙ୍କ୍‌ସନ୍‌କୁ ସେ ଆସିଲେ ମୁଁ ଖୁବ୍ ଖୁସି ହେବି । ତାଙ୍କୁ କହିବ, ସେ ତୁମ ଅନୁଷ୍ଠାନରୁ ଫେରିଲାବେଳେ ଯଦି ମୋର ଏହି କୁଡ଼ିଆ ଦେଇ ଫେରନ୍ତି, ତେବେ ମୁଁ ଖୁବ୍ ଖୁସି ହେବି । ତାଙ୍କୁ ତୁମ କଲେଜକୁ ଆସିବା ପାଇଁ ମୋ ଅନୁରୋଧ ଜଣାଇଲେ, ସେ ନିଶ୍ଚୟ ଆସିବେ । ସେ ଫେରିଲାବେଳେ ଏହି ବାଟ ଦେଇ ଫେରିବାକୁ ତାଙ୍କୁ କହିବ । ତାଙ୍କ ସହିତ ମୋର ଅନେକ ଦିନ ହେଲା ସାକ୍ଷାତ ହୋଇନି ।"

 × × ×

ମାଧବ ଗ୍ରାମଦାନ ସଂସ୍ଥାରେ ଯୋଗଦେବା ଦିନଠାରୁ ଦେବସ୍ଥାନଙ୍କୁ ଅଫିସ୍ ଦାୟିତ୍ୱ ଟିକିଏ ହାଲୁକା ହେଲାଭଳି ଜଣାପଡ଼ିଲା । ବଡ଼ ବଡ଼ ଦାୟିତ୍ୱର ଅନେକ ଅଂଶ ମାଧବ ତା ଉପରକୁ ନେଇଗଲାଣି । ମାଧବ ବି.କମ୍. ପାସ୍ କରିଥିବାରୁ ତାକୁ ଅଫିସର କାମଦାମ, ହିସାବକିତାବ ବେଶ୍ ଭଲ ଭାବରେ ଜଣା । ଏଭଳି ଏକ ସୁଯୋଗ୍ୟ ସହକର୍ମୀ ପାଇଥିବାରୁ ଦେବସ୍ଥାନ ଭାରି ଖୁସି । ମାଧବର ଅଫିସ୍ କାମ ତା'ର ଭାରି ପସନ୍ଦ ।

ଏହି ସମୟରେ ଏହି ସଂସ୍ଥା ପରିଚାଳନାରେ ଦେବସ୍ଥାନର ଏକ ଭୁଲ ନିଷ୍ପତ୍ତି ତାକୁ ଏକ ଅଖାଡ଼ୁଆ ପରିସ୍ଥିତିରେ ପକାଇ ଦେଇଥାଏ । ଗ୍ରାମଦାନ ସଂସ୍ଥା ଆରମ୍ଭ ହେଲାଦିନରୁ ଦେବସ୍ଥାନ ନିୟମ କରିଦେଇଥାଏ ଯେ ଗ୍ରାମବାସୀମାନଙ୍କୁ ସେମାନଙ୍କ ବର୍ଷକର ଧାନ ଖର୍ଚ୍ଚ

ଅମଳ ସମୟରେ ସେମାନଙ୍କୁ ସାହାଯ୍ୟ ସ୍ୱାବରେ ଦିଆଯିବ । ତେଣୁ କୌଣସି କାମ ପାଇଁ ଯେତେବେଳେ ମଜୁରି ଦିଆଯାଏ ତାହା ଆଖପାଖ ଅଞ୍ଚଳର ମଜୁରି ସହିତ ସମାନ ନ ହୋଇ ତା'ଠାରୁ କିଛି କମ୍ ରଖାଯାଇଥାଏ । ବର୍ଷସାରା ଚଳିବା ପାଇଁ ଧାନ ପାଉ-ଥିବାରୁ ଗ୍ରାମର ଲୋକେ ଗ୍ରାମ ପାଇଁ ଖଟିଲେ, ଅନ୍ୟମାନଙ୍କ ଭଳି ସମାନ ମଜୁରି ନେବେ ବା କାହିଁକି ? ମଜୁରି କମ୍ ଦିଆଯାଉଥିବାରୁ ଦେବସ୍ମାନ ଆଉ ଏକ ନିୟମ କରି ଦେଇଥାଏ, ଗାଁରେ ଉତ୍ପାଦିତ ହେଉଥିବା ଦୁଧ, ଅଣ୍ଡା, ମାଛ, ମାଂସ, ପନିପରିବା ଆଦି ରିହାତି ଦରରେ ସେମାନଙ୍କୁ ଯୋଗାଇ ଦିଆଯିବ । ଦେବସ୍ମାନର ଯୁକ୍ତି ହେଲା, ଯେହେତୁ ସେମାନଙ୍କୁ କମ୍ ମଜୁରି ଦିଆଯାଉଛି, ରିହାତି ଦରରେ ଏସବୁ ଖାଦ୍ୟପଦାର୍ଥ ନ ଯୋଗାଇ-ଦେଲେ ଅନ୍ୟାୟ ହେବ ।

ଏହା କରିବା ଫଳରେ କ'ଣ ହେଲା ନା ଅନ୍ୟ ଗାଁର କେତୋଟି ଯୁବକ ଏଠା ଲୋକଙ୍କୁ ହାତ କରି ଗାଁରୁ ଶସ୍ତା ଦରରେ ଦୁଧ, ଅଣ୍ଡା, ମାଛ, ମାଂସ କିଣିନେଇ ପାଖ ଗାଁରେ ଅଧିକ ଦରରେ ବିକ୍ରୀ କରିବା ଆରମ୍ଭ କରିଦେଲେ । ଏହାଫଳରେ ଗାଁରୁ ବହୁ ଜିନିଷ ଗ୍ରାମବାସୀଙ୍କ ବ୍ୟବହାରରେ ନ ଲାଗି ସେମାନଙ୍କ ଅଜାଣତରେ ଗାଁ ବାହାରକୁ ଚାଲିଗଲା । ଗାଁରେ ଦେଖାଦେଲା ଦୁଧ, ଅଣ୍ଡା, ମାଂସର ଅଭାବ । ଦେବସ୍ମାନଙ୍କୁ ଜଣାନାହିଁ ଏହା ଭିତରେ କେତେଜଣ ଅନ୍ୟ ଗାଁର ଯୁବକ ଏଭଳି ଚୋରା ବ୍ୟବସାୟ ଆରମ୍ଭ କରିଦେଇ ଅଧିକ ଦୁଇ ପଇସା ଉପାର୍ଜନରେ ଲାଗି ପଡ଼ିଛନ୍ତି ବୋଲି । ସେମାନେ ବୁଝିପାରୁ ନ ଥାନ୍ତି, ଏହା କରିବା ଦ୍ୱାରା ସେମାନେ ଏହିସବୁ ଗାଁର କେତେ କ୍ଷତି କରୁଛନ୍ତି ।

ଦେବସ୍ମାନ କିଛିଦିନ ପରେ ଶୁଣିବାକୁ ପାଇଲା, ଗାଁରେ ଯେଉଁ ଦୁଧ, ଅଣ୍ଡା ଆଦି ରିହାତି ଦରରେ ବିକ୍ରି ପାଇଁ ଦିଆଯାଉଛି ତାହା ମୋଟେ ଅଣ୍ଟୁନି । ଦେବସ୍ମାନ ଦିନେ ବସିଥିଲା ଗାଁରେ ସେଗୁଡ଼ିକର ବିକ୍ରୟ ପରିମାଣ ବଢ଼ାଇ ଦେବାପାଇଁ । କିନ୍ତୁ ବଢ଼ାଇବା ପୂର୍ବରୁ ନିଜେ ହିସାବ କରି ବସିଲା । ଦେଖିଲା ଯାହା ଗାଁ ପାଇଁ ଦିଆଯାଉଛି, ତା ତ ଯଥେଷ୍ଟ, ଅଭାବ ପଡ଼ିବା କଥା ନୁହେଁ ?

ମାଧବକୁ ଏ ବିଷୟରେ ଅନୁସନ୍ଧାନ କରିବା ପାଇଁ ଦାୟିତ୍ୱ ଦିଆଗଲା । ସେ ଗାଁର ବିଭିନ୍ନ ମାଂସ, ଅଣ୍ଡା, ଦୁଧ ଦୋକାନ ବୁଲି ନାନା ତଥ୍ୟ ସଂଗ୍ରହ କରି ପ୍ରମାଣ କରିଦେଲା ଯେ, ଗାଁ ପାଇଁ ଉଦ୍ଦିଷ୍ଟ ଜିନିଷ ଅନ୍ୟାୟ ଭାବରେ ଗାଁ ବାହାରକୁ ଚାଲି ଯାଉଛି, ଯା' ଫଳରେ ଏହି କୃତ୍ରିମ ଅଭାବ ସୃଷ୍ଟି ହୋଇଛି । ନାନା ପ୍ରକାର ପଚରାଉଚରା ପରେ ମାଧବର ସନ୍ଦେହ ସତ୍ୟ ବୋଲି ଜଣାପଡ଼ିଲା ।

ଦେବସ୍ମାନ ଦେଖିଲା ଏହାକୁ ବନ୍ଦ କରିବା ପାଇଁ ଏକମାତ୍ର ଉପାୟ ହେଉଛି, ଏଗୁଡ଼ିକୁ ଆଉ ରିହାତି ଦରରେ ନ ଦେଇ ଉଚିତ ଦରରେ ବିକ୍ରୟ କରିବା । ଗାଁ ଲୋକଙ୍କୁ ଏଥିପାଇଁ ପୂର୍ବଭଳି ଅଳ୍ପ ମଜୁରି ନ ଦେଇ କିଛି ଅଧିକ ମଜୁରି ଦେବା ।

ଦରକାର । ମଜୁରିରେ ଯାହା ଅଧିକ ଖର୍ଚ୍ଚ ହେବ, ଜନପ୍ରଣ ବର୍ଦ୍ଧିର ଲାଭରୁ ତାହା ମେଣ୍ଟିଯିବ । ଗାଁ ଜନପ୍ରଣ ଆଉ ଅନ୍ୟାୟ ଭାବରେ ଗାଁ ବାହାରକୁ ଚାଲିଯିବେନି ।

ଦେବସ୍ମାନ ଗାଁରେ ଯେଉଁ ଗ୍ରେଟିଆ କରି ଡାଏରୀ ଫାର୍ମଟି ଆରମ୍ଭ କରିଥିଲେ ତାହା ବର୍ତ୍ତମାନ ବଢ଼ି ବଢ଼ି ଏକ ବିରାଟ ଫାର୍ମରେ ପରିଣତ ହେଲାଣି । ଜର୍ସି, ହରିଆନା, ସିନ୍ଧି ଗାଈଠାରୁ ଆରମ୍ଭ କରି କେତେ ଭିନ୍ନ ଭିନ୍ନ ଜାତିର ଦେଶୀ ବିଦେଶୀ ଗାଈ କଣା ହୋଇ ଏହି ଫାର୍ମରେ ରହିଲେଣି । ଫାର୍ମରେ ଦୁଧ ଉତ୍ପାଦିତ ହେଉଛି ଦିନକୁ ଦେଢ଼ହଜାର ଲିଟର । ଗାଁମାନଙ୍କରେ ହଜାରେ ଲିଟର ବିକ୍ରୀ ପାଇଁ ରଖାଯାଇ ବାକିତକ ସହରକୁ ବିକ୍ରୟ ନିମିତ୍ତ ପଠାଇ ଦିଆଯାଏ ।

ଗୋବିନ୍ଦପୁର ଡାଏରୀ ଦୁଧ ବିଶୁଦ୍ଧତା ପାଇ ସେ ଅଞ୍ଚଳରେ ଅତି ପ୍ରସିଦ୍ଧ । ବଜାରକୁ ଗଲାକ୍ଷଣି ସଙ୍ଗେ ସଙ୍ଗେ ବିକ୍ରୟ ହୋଇଯାଏ । କୁକୁଡ଼ା ଓ ଛେଳି ଫାର୍ମ ମଧ୍ୟ ସେମିତି ବଢ଼ିଗଲାଣି ।

ଏହି ପ୍ରାଣୀମାନଙ୍କର ତତ୍ତ୍ୱ ନେବାପାଇଁ ନିଜ ଖର୍ଚ୍ଚରେ ଗୋଟିଏ ପଶୁ ଡାକ୍ତରଖାନା ଖୋଲିଛନ୍ତି ଦେବସ୍ମାନ । ଦରମା ଦେଇ ବାହାରୁ ପଶୁ ଡାକ୍ତର ଆଣି ରଖାଇଛନ୍ତି ଏହି ଗାଁରେ । ଫାର୍ମଗୁଡ଼ିକର ପ୍ରାଣୀମାନଙ୍କ ତତ୍ତ୍ୱ ନେବା ଦାୟିତ୍ୱ ଏହାଙ୍କ ଉପରେ । କେଉଁ ଗାଈର ଦେହ ଖରାପ ହେଲା, କିଏ ଦୁଧ ଦେଉନି, ଏସବୁ ବୁଝିବା ପଶୁ ଡାକ୍ତରଙ୍କ ଦାୟିତ୍ୱ । କୁକୁଡ଼ାମାନଙ୍କ ତତ୍ତ୍ୱନେବା ବ୍ୟତୀତ ମଡ଼କ ଆସିଲେ, ସେମାନଙ୍କୁ ପ୍ରତିଷେଧକ ଦେବା କାମ ଏହାଙ୍କର ।

× × × ×

ଖରାଦିନିଆ ସନ୍ଧ୍ୟାବେଳ । ସେଦିନ ରବିବାର । ସେ ଅଞ୍ଚଳକୁ ଖୁବ୍ ଗରମ ପଡ଼ିଥାଏ । ଦେବସ୍ମାନ ଶୀଘ୍ର ଫେରି ଆସିଥାଏ ଗାଁ ଡନଷିରୁ । ବାହାରେ ଆରାମଚୌକି ପକାଇ ବସିଥାଏ ଦେବସ୍ମାନ । ଆଉ ଗୋଟିଏ ଚେୟାରରେ ବସିଥାଏ ଶାନ୍ତି, ବୁଣୁଥାଏ ନିଜ ପୁଅ ପାଇଁ ଏକ ସ୍ୱେଟର । ପିଲା ଦୁଇଟି ସାମନା ପଡ଼ିଆରେ ଖେଳୁଥାନ୍ତି । ଶାନ୍ତି ପଚାରିଲା, "ଆମ ହାଇସ୍କୁଲଟି କଲେଜ ହେବାକଥା କ'ଣ ହେଲା ?"

ଦେବସ୍ମାନ କ'ଣ ଗୋଟାଏ ଭାବୁଥିଲା, କିଛି ସମୟପରେ ସ୍ତ୍ରୀ ଶାନ୍ତିର ପ୍ରଶ୍ନରେ ହଠାତ୍ ପ୍ରକୃତିସ୍ଥ ହୋଇ ପଚାରିଲା, "ତୁମେ ବର୍ତ୍ତମାନ ମୋତେ କ'ଣ ପଚାରିଲ ଶାନ୍ତି ?"

"ତୁମେ କ'ଣ ଅନ୍ୟମନସ୍କ ଥିଲ ?"

"ହଁ, ହଁ, ମୁଁ ଆଉ ଗୋଟିଏ କଥା ଭାବୁଥିଲି ।"

"କ'ଣ ଏହି ଗାଁ କଥା, ନା ଗାଁ ବାହାର କଥା ? ନା ତୁମର ସେଇ ପ୍ରେୟସୀ ଶୁଭ୍ରା କଥା ?"

ହସିଲା ଦେବସ୍ମାନ, "ତୁମେ ଶୁଭ୍ରାକୁ ଦେଖିଛ ଶାନ୍ତି ?"

"ହଁ, ଦେଖିଛୁ । ତୁମ ଟାଇଫଏଡ୍ ବେଳେ ସେ ଆସିଥିଲେ ଗୋବିନ୍ଦପୁରକୁ ତୁମକୁ କଟକ ନେଇଯିବା ପାଇଁ । ଭାରିବଢ଼ିଆ ଝିଅଟେ ସତେ ।"

"ହଁ, ସେ ଏକ ଅଦ୍ଭୁତ ଝିଅ ଶାନ୍ତି । ବାପା ତା'ର ଏକ ବିରାଟ ଧନୀ ଲୋକ । ଏ ଦେଶ ଛାଡ଼ି ବିଜ୍ଞାନରେ ଗବେଷଣା କରୁଛି ଆମେରିକାରେ । ମୋଠାରେ ପିଏଇଚ୍.ଡି. କରି ରେଭେନ୍‌ସା କଲେଜରୁ ଯାଇଛି । ମୋତେ ବଡ଼ ଖୁସି ଲାଗେ ଶାନ୍ତି, ଝିଅଟି ମୋତେ ମନେ ରଖିଛି । ବହୁ ଛାତ୍ର-ଛାତ୍ରୀ ମୋଠାରୁ ପାଠ ପଢ଼ି ପାସ୍ କରି ଦେଶ ବିଦେଶରେ ଚାକିରି କରୁଛନ୍ତି । କେହି କେବେ ମୋତେ ଭୁଲରେ ବି ମନେପକାନ୍ତି ନାହିଁ । କିନ୍ତୁ ଏହି ଝିଅଟି ତା'ର ଏକ ବ୍ୟତିକ୍ରମ । ସେ ବେଳେବେଳେ ଚିଠି ଦେଇ ମୋ ଭଲ ମନ୍ଦ କଥା ପଚାରେ । ଶୁଭ୍ରା ମୋ କେମ୍ବ୍ରିଜ ସାଙ୍ଗ ବିଖ୍ୟାତ ଅଧ୍ୟାପିକା କାରୁସୋଙ୍କ ପାଖରେ ଗବେଷଣା କରିବାର ସୁଯୋଗ ପାଇଛି । ପିଲାଟି ମେଧାବୀ । ସେ ଯେ ଜୀବନରେ ଖୁବ୍ ନାଁ କରିବ ଏଥିରେ ମୋର ତିଳେମାତ୍ର ସନ୍ଦେହ ନାହିଁ ।"

ସେ ଯେଉଁ ଅଧ୍ୟାପିକା କାରୁସୋଙ୍କ ପାଖରେ କାମ କରୁଛି, ସେ କେମ୍ବ୍ରିଜରେ ଥିଲେ ମୋର ସହକର୍ମୀ । ସେ ଅଧ୍ୟାପକ ମେକ୍‌ଡୋନାଲ୍‌ଡଙ୍କ ଅଧୀନରେ ମୋ ସହିତ ଗବେଷଣା କରୁଥିଲେ । ମୁଁ କେମ୍ବ୍ରିଜ ଛାଡ଼ିବାପରେ ମଧ୍ୟ ସେ ସେଠାରେ କାମ କରୁଥିଲେ । ମୁଁ ଯେଉଁ ପ୍ରୋବ୍ଲେମ୍‌କୁ ଅଧାକରି ଛାଡ଼ି ଆସିଥିଲି, ସେ ସେଇଆକୁ ନେଇ କାମ କଲେ । ମୋ ଆସିବା ବର୍ଷେ ପରେ ସେ କେମ୍ବ୍ରିଜ ଛାଡ଼ି କାଲିଫର୍ନିଆ ଚାଲି ଆସିବା କଥା ଶୁଭ୍ରା ଲେଖିଥିଲା । ସେ ଅନେକ ସମୟରେ ମୋ କଥା ଶୁଭ୍ରାକୁ ପଚାରନ୍ତି । ମୋର ରେକ-ମେଣ୍ଡେସନ ଦେଖି ସେ ଶୁଭ୍ରାକୁ ନେଇଥିଲେ । କାରୁସୋ ଯେ ଜଣେ ଖୁବ୍ ଦକ୍ଷ ବୈଜ୍ଞାନିକ, ଏଥିରେ ମୋର ସନ୍ଦେହ ନାହିଁ । ମୁଁ ଯେଉଁ ଗବେଷଣା ଯୋଜନାକୁ ଅସମାପ୍ତ କରି ଛାଡ଼ି ଆସିଥିଲି, କାରୁସୋ ସେହି କାମକୁ ଆମେରିକା ନେଇଯାଇ ସେଠି ପୂର୍ଣ୍ଣ କରିବାକୁ ଚେଷ୍ଟା କରିଛି । ମୁଁ ଖୁବ୍ ଖୁସି ମୋର ପ୍ରୋବ୍ଲେମ୍ ଉପରେ ମୋର ଛାତ୍ରୀ ଶୁଭ୍ରା ଆମେରିକାରେ ଗବେଷଣାରତ ।

"ତା ପାଖକୁ ତ ଉତ୍ତର ଦେଇନ ?"

"ନା, ଦେଇନି । ଭୁଲି ଯାଇଥିଲି । ତୁମେ ମୋତେ କହିଲାରୁ ତା କଥା ମନେ ପଡ଼ିଲା । ଏଠା ପୋଷ୍ଟ ଅଫିସରେ ଆମେରିକା ଲଫାଫା ମିଳେନି । ମାଧବକୁ ପଇସା ଦେବ, କହିବ ସେ ଯେତେବେଳେ ସହରକୁ ଯାଉଛି, ଗୋଟିଏ ଆମେରିକା ଲଫାଫା କିଣି ଆଣିବ ।"

"କେଉଁ କଥା କହୁଁ କହୁଁ କେଉଁ କଥା ପଡ଼ିଲା ? ତୁମେ ମୋତେ କ'ଣ ପଚାରୁଥିଲଟି ଶାନ୍ତି ?"

"ମୁଁ ପଚାରୁଥିଲି ଆମ ହାଇସ୍କୁଲଟି କେବେ କଲେଜରେ ପରିଣତ ହେବ ?" ଶାନ୍ତି କହିଲା ।

"ହାଇସ୍କୁଲଟିକୁ କଲେଜ କରିବା ମତଲବରେ ମୁଁ ବର୍ତ୍ତମାନ ନାହିଁ ଶାନ୍ତ । କଲେଜ ନ କରି ଆମ ହାଇସ୍କୁଲରେ ଧନ୍ଦାମୂଳକ ପାଠ୍ୟକ୍ରମ ଭରିବା କରିବାକୁ ମୋର ଇଚ୍ଛା । ଆମ ହାଇସ୍କୁଲରେ କେମିତି ନାନା ପ୍ରକାରର ଧନ୍ଦାମୂଳକ ଶିକ୍ଷା ଦିଆଯିବ ସେଥିପାଇଁ ମୁଁ ଲାଗିଛି । ଧନ୍ଦାମୂଳକ ପାଠ ଭିତରେ କାଗଜ ତିଆରି କାଠ କାମ, ରାଜମିସ୍ତ୍ରୀ କାମ, ଟେକ୍ନିସିଆନ୍ କାମଠାରୁ ଆରମ୍ଭ କରି ମାଛଚାଷ, ଡାଏରି, କୁକୁଡ଼ା ଚାଷ ଆଦି ସମ୍ବନ୍ଧରେ ଶିକ୍ଷା ଦିଆଯିବା ପାଇଁ ସମସ୍ତ ବ୍ୟବସ୍ଥା ରହିବ । ଆମ ଗାଁରେ ତ ଏହିସବୁ ଲୋକଙ୍କୁ ଯୋଗାଇବା ପାଇଁ ବହୁତ କାମ ଅଛି । ତେଣୁ ସେସବୁ ଶିକ୍ଷା ନ କରିବେ କାହିଁକି ? ସଙ୍ଗେ ସଙ୍ଗେ ଆମ ଗାଁରେ କାମ ମିଳିଯିବ ।"

"ତା'ହେଲେ ଆମ ପିଲାଏ ଆଉ କଲେଜ ମୁହଁ ଦେଖିବେ ନାହିଁ କି ଆମ ଏଠି ଆଉ ଆଇ.ଏ., ବି.ଏ. ପାସ୍ କଲା ପିଲା ବାହାରିବେନି ? ଫଳରେ ଆମ ଏ ଅଞ୍ଚଳରେ ବେଶି ପାଠପଢ଼ୁଆ ଲୋକେ ସ୍ୱଳ୍ପ ହୋଇଯିବେ । ତୁମର ଏହି ସିଦ୍ଧାନ୍ତ ସହିତ କାର୍ଯ୍ୟକାରୀ କମିଟିର ସଭ୍ୟମାନେ କ'ଣ ଏକମତ ? କିନ୍ତୁ ମୋ ମନକୁ ମୋଟେ ପାଉନି ।"

"ତେବେ କଲେଜ ଓ ଧନ୍ଦାମୂଳକ ଶିକ୍ଷା ଭିତରୁ କେଉଁଟିକୁ ତୁମେ ଅଧିକ ପସନ୍ଦ କରୁଛ ଶୁଣେ ?"

"ଉଭୟଙ୍କର ଉପାଦେୟତା ଆମ ଗାଁ ପାଇଁ ଅଛି ।"

"ଦୁଇଟା ଯଦି ବର୍ତ୍ତମାନ କରାଯାଇ ନ ପାରେ, ତେବେ— ।"

"ତେବେ ଆଉ କ'ଣ ?"

"ଶୁଣ ଶାନ୍ତ, ମୋ ମୁଣ୍ଡକୁ ଗୋଟିଏ ବୁଦ୍ଧି ପଶିଛି । ବର୍ତ୍ତମାନ ଆମେ ଏଠି ଧନ୍ଦାମୂଳକ ପାଠ୍ୟକ୍ରମ ଆରମ୍ଭ କରିବା । କେତେ ପ୍ରକାର କୁଟୀରଶିଳ୍ପ, ଛୋଟ ଛୋଟ ଶିଳ୍ପ ଆମ ଏଠି ହୋଇପାରିବ, ସେ ସମ୍ବନ୍ଧରେ ପିଲାମାନଙ୍କୁ ଶିକ୍ଷା ଦେବା । ଯେଉଁମାନେ ଏହି ଧନ୍ଦାମୂଳକ ଶିକ୍ଷାକୁ ଆଦରିବେ ନାହିଁ, ଅଥଚ ମେଧାବୀ ଛାତ୍ର ଭାବରେ କୃତିତ୍ୱ ଅର୍ଜନ କରିଥିବେ ଆମେ ସେମାନଙ୍କୁ ବୃତ୍ତି ଦେଇ ପାଖ ଟାଉନର କଲେଜରେ ପଢ଼ାଇବା । ଅରକେ ପାଞ୍ଚ ଦଶଜଣରୁ ଅଧିକ ପିଲାଙ୍କୁ ସୁବିଧା ଦେଇହେବନି । କାହିଁକି ନା ଆମ ଆର୍ଥିକ ସମ୍ବଳ ଉପରେ ଆଞ୍ଚ ଆସିବ । ଆମେ ଆମ ଖର୍ଚ୍ଚରେ ଏହି ଧନ୍ଦାମୂଳକ ପାଠ୍ୟକ୍ରମ ପ୍ରବର୍ତ୍ତନ କଲେ, ଆମ ଆର୍ଥିକ ଅବସ୍ଥା ଉପରେ କମ୍ ବଡ଼ ଚାପ ପଡ଼ିବନି । ହେଲେ ମୁଁ ଭାବୁଛି ଆମେ ଏହାକୁ ସମ୍ଭାଳି ନେଇ ପାରିବା ।"

"ଶିଳ୍ପ ବିଭାଗକୁ ଲେଖିଲେ ସେମାନେ ଏଥିପାଇଁ କ'ଣ କିଛି ସାହାଯ୍ୟ ଦିଅନ୍ତେନି ?"

"ଶିକ୍ଷା ବିଭାଗ ଯେମିତି ଦେଉଛି ସେମିତି ଦେବେ । ଘର, ଯନ୍ତ୍ରପାତି ଖରଚ ଆମର, ଶିକ୍ଷକ ଦେବା ଓ ସେମାନଙ୍କ ଦରମା ଦାୟିତ୍ୱ ଶିଳ୍ପ ବିଭାଗର । ସେ ପୁଣି ନିର୍ଭର କରୁଛି ସେତେବେଳର ସରକାରଙ୍କ ଆର୍ଥିକ ସମ୍ବଳ ଉପରେ ।"

"ତା ଯଦି ହୁଏ, ମନ୍ଦ ହେବନି । ଭଲ ହେବ । କଲେଜ ଶିକ୍ଷା ପାଇଁ ତୁମେ ଯାହା କହୁଛ, ବର୍ତ୍ତମାନ ପାଇଁ ତାହା ହିଁ ଉଚିତ ହେବ । ଭବିଷ୍ୟତରେ ଯଦି ଆମର ଆର୍ଥିକ ସ୍ୱଚ୍ଛଳତା ଆହୁରି ଭଲ ହୁଏ, ତେବେ କଲେଜଟିଏ ବସାଇବାକୁ ଚେଷ୍ଟା କରିବି ନିଶ୍ଚୟ ।"

"ହଁ, ଆଉ ଗୋଟିଏ କଥା ଶାନ୍ତି, ମୁଁ କେତେଦିନ ହେଲା ତୁମକୁ କହିଲିଣି ତୁମ ସ୍କୁଲ ଓ ଅନ୍ୟାନ୍ୟ ସ୍କୁଲଗୁଡ଼ିକର ଆଉ ଅଭାବ, ଅସୁବିଧା କ'ଣ ରହିଗଲା କହିବା ପାଇଁ । କାହିଁ କିଛି କହିଲନି ତ ମୋତେ ? ମୁଁ ସବୁ ଅସୁବିଧାକୁ କିଛିଦିନ ପାଇଁ ଗଡ଼ାଇ ଦେଇପାରେ, କିନ୍ତୁ ସ୍କୁଲମାନଙ୍କର ଅଭାବ ଅସୁବିଧାକୁ ମୁହୂର୍ତ୍ତେ ପାଇଁ ଗଡ଼ାଇଦେବାକୁ ଚାହେଁନି । ଏହି ବିଭାଗ ପରା ଆମର ଭବିଷ୍ୟତ ବଂଶଧରଙ୍କୁ ଗଢ଼ୁଛି ।"

"ମୋ ଜାଣିବାରେ ଆମର କୌଣସି ସ୍କୁଲରେ ସେମିତି କିଛି ଅଭାବ ଅସୁବିଧା ଥିଲା ଭଳି ମୋର ମନେ ହେଉନି । ସବୁ ପ୍ରାୟ ଦୂର ହୋଇଯାଇଛି । ପିଲାମାନଙ୍କୁ ଯଥାରୀତି ବହି, ସ୍ଲେଟ୍, ଖାତା, ପେନ୍‌ସିଲ ଆଦି ଯୋଗାଇ ଦିଆଯାଉଛି, ପିଲାମାନଙ୍କୁ ପ୍ରତିଦିନ ଦୁଧ ପିଇବାକୁ ଦିଆଯାଉଛି । ପିଲାମାନଙ୍କ ସ୍ୱାସ୍ଥ୍ୟ ଡାକ୍ତରଙ୍କ ଦ୍ୱାରା ରୀତିମତ ପରୀକ୍ଷିତ ହେଉଛି । ପିଲାମାନଙ୍କ ଖେଳ ପାଇଁ ଫୁଟବଲଠାରୁ ଆରମ୍ଭ କରି ସବୁ ପ୍ରକାର ଖେଳ ଯୋଗାଇ ଦିଆଯାଇଛି । ପିଲାମାନଙ୍କ ସ୍କୁଲ ଲାଇବ୍ରେରୀରେ ଯଥେଷ୍ଟସଂଖ୍ୟକ ଭଲ ଭଲ ବହି ପଢ଼ିବା ପାଇଁ ଅଛି । ପିଲାମାନଙ୍କୁ ଉତ୍ସାହିତ କରିବା ପାଇ ପ୍ରତିବର୍ଷ ପ୍ରାଇଜ୍ ଉତ୍ସବ ଅନୁଷ୍ଠିତ ହେଉଛି ଓ ଭଲ ଭଲ ମେଧାବୀ ପିଲାଙ୍କୁ ନାନା ପ୍ରକାର ପୁରସ୍କାର, ବୃତ୍ତି ଆଦି ଦିଆଯାଉଛି । ତେବେ ଗୋଟିଏ ମାତ୍ର ଅଭାବ ଅଛି, ତାହା ହେଉଛି ପିଲାମାନଙ୍କୁ ଏକ୍‌ସକର୍‌ସନ୍ ପାଇଁ ସୁଯୋଗ ଦେବା ।"

"ଠିକ୍ ବେଳେ ମନେ ପକାଇ ଦେଇଛ ଶାନ୍ତି । ସେଇ କଥାଟା ମୁଁ ପୁରାପୁରି ଭୁଲି ଯାଇଥିଲି । ଏଥର ମୁଁ ସେଥିପାଇ ଅର୍ଥ ବ୍ୟବସ୍ଥା କରୁଛି । ମାଇନର ସ୍କୁଲ, ହାଇସ୍କୁଲ ଓ ପ୍ରାଇମେରୀ ସ୍କୁଲ ପିଲାମାନେ ଆସନ୍ତା ଶୀତଦିନ ଛୁଟିରେ ଆଖପାଖ ଅଞ୍ଚଳର କଳ-କାରଖାନା, ଦର୍ଶନୀୟ ସ୍ଥାନମାନ ବୁଲି ଦେଖିବାକୁ ଯିବେ । ସେମାନଙ୍କ ପାଇ ଖର୍ଚ୍ଚ ଅଟକଳ କରି ଗୋଟିଏ ଗ୍ରାଣ୍ଟ କରାଇ ଦେଇଛି । ତେବେ କେଉଁ ସ୍କୁଲ ପିଲା କେଉଁ ସ୍ଥାନକୁ ଗଲେ ଭଲ ହେବ, ମୋତେ ଗୋଟିଏ ଯୋଜନା କରିଦେଲ ।"

"ତା'ଛଡ଼ା ପିଲାମାନଙ୍କୁ ମଝିରେ ମଝିରେ ଶିକ୍ଷଣୀୟ ଚଳଚ୍ଚିତ୍ର ଆଣି ଦେଖାଇଲେ ହୁଅନ୍ତାନି ? ସବୁ ସ୍କୁଲର ପିଲାଙ୍କୁ କହନ୍ତେ ଗୋଟିଏ ଜାଗାରେ ଏକାଠି ହୁଅନ୍ତେ, ଚଳଚ୍ଚିତ୍ର ଦେଖାଯାଆନ୍ତା ।" ଶାନ୍ତି କହିଲା ।

"ଖାଲି ପିଲାଏ କାହିଁକି, ଆମ ଗାଁର ସବୁ ଲୋକେ ଦେଖି ପାରନ୍ତେ । ମୁଁ ସେ ସମ୍ପର୍କରେ ଶିକ୍ଷା ବିଭାଗ ସହିତ ଆଲୋଚନା ଚଳାଇଛି । ସେମାନେ କହୁଛନ୍ତି, ଆମେ ଯଦି ଗୋଟିଏ ପ୍ରୋଜେକ୍ଟର କିଣି ଦିଅନ୍ତେ, ତେବେ ସେମାନେ ପ୍ରତି ଶନିବାର ଦିନ ଆମ ପାଖକୁ ନାନା ଶିକ୍ଷଣୀୟ ଫିଲ୍ମ ପଠାନ୍ତେ । ଆମ ଲୋକ ଆମ ଯନ୍ତ୍ରରେ ଦେଖାଇପାର

ପୁଣି ଶିକ୍ଷା ବିଭାଗକୁ ଫେରାଇ ଦିଅନ୍ତେ । ଶିକ୍ଷାବିଭାଗ ଛଡ଼ା ସ୍ୱାସ୍ଥ୍ୟ ବିଭାଗ, ବନ୍ୟ ବିଭାଗ, ମୃତ୍ତିକା ସଂରକ୍ଷଣ ବିଭାଗ, ଶିଳ୍ପ ବିଭାଗ ଆଦିଙ୍କର ବିଭିନ୍ନ ଶିକ୍ଷଣୀୟ ଫିଲ୍ମ ଲୋକମାନଙ୍କୁ ଦେଖାହେବା ପାଇଁ ଅଛି । ମୁଁ ଭାବୁଛି ଆଉ ଡେରି ନ କରି ପ୍ରୋଜେକ୍ଟରଟିଏ ଓ ପରଦାଟିଏ କିଣିଦେଲେ ହୋଇଯିବ । ଏହା ସେମିତି କିଛି ଖର୍ଚ୍ଚାନ୍ତକାରକ ଯନ୍ତ୍ର ନୁହେଁ । ଆମେ ସ୍ୱଚ୍ଛନ୍ଦରେ କିଣି ପାରିବା । ତା'ଛଡ଼ା ଗାଁ ଲୋକଙ୍କ ମନୋରଞ୍ଜନ ପାଇଁ ମଜା ମଜା ଚଳଚ୍ଚିତ୍ର ଆମ ପ୍ରୋଜେକ୍ଟରରେ ଦେଖାଇ ହୁଅନ୍ତା । ସେଥିପାଇଁ ଚଳଚ୍ଚିତ୍ର ଭଡ଼ାରେ ମିଳୁଛି ।

"ତା ସହିତ ଆମ ଗାଁରୁ ଜଣେ ଦୁଇଜଣ ଲୋକଙ୍କୁ ଏହାକୁ ଚଳାଇବା ପାଇଁ ଟ୍ରେନିଂ ଦେଇ ନେଇ ଆସିଲେ ଆଉକିଛି ଅସୁବିଧା ହେବନି ଦେଖାଇବାରେ ।" ଶାନ୍ତ କହିଲା ।

## ପରି ତରଣି

ଉପରଓଳି ପ୍ରାୟ ଦିନ ତିନିଟା ହେବ । ସନ୍ଧ୍ୟାବେଳେ କାର୍ଯ୍ୟକାରୀ କମିଟିର ମିଟିଂ ଥିବାରୁ ଦେବସ୍ନାନ ଗାଁ । କାମ ଦେଖି ଯାଇ ନ ଥାଏ । ମିଟିଂ ପାଇଁ କାଗଜପତ୍ର ସବୁ ସଜାଡ଼ୁଥାଏ ସେ ।

ହଠାତ୍ ଏକ ମଟରଗାଡ଼ି ତା ଘରର ଗେଟ୍ ପାଖ ରାସ୍ତାରେ ଆସି ରହିଲା । ଗାଡ଼ିରେ କିଏ ଆସିଲା ଖିଡ଼ି ସ୍କ୍ରିନ୍ ଫାଙ୍କ ଦେଇ ଲକ୍ଷ୍ୟକଲା ଦେବସ୍ନାନ । ମଟରଗାଡ଼ିରୁ ଓହ୍ଲାଇଲେ ଜଣେ ଭଦ୍ର ମହିଳା, ଆଖିରେ କଳା ଚଷମା, ହାତରେ ଏକ ଭେନିଟି ବ୍ୟାଗ । ମୂଲ୍ୟବାନ୍ ଶାଢ଼ୀଟିଏ ପିନ୍ଧିଛନ୍ତି । କିଏ ତାଙ୍କ ଘରକୁ ଆସିଲା ଜାଣିବା ପାଇଁ ଦେବସ୍ନାନ ଦୁଆର ପାଖକୁ ଚାଲିଗଲା । ଗାଡ଼ିରୁ ଓହ୍ଲାଇ ତା ଆଡ଼କୁ ଆସୁଥିବା ଭଦ୍ର ମହିଳାଙ୍କୁ ଅନାଇ ତା ପାଟିରୁ ବାହାରି ପଡ଼ିଲା "କିଏ ଶୁଭ୍ରା ? ତୁମେ ହଠାତ୍ କୁଆଡ଼େ ଚାଲି ଆସିଲ ? ଆମେରିକାରୁ କେବେ ଆସିଲ ଶୁଣେ ?"

ଶୁଭ୍ରା ସଙ୍ଗେ ସଙ୍ଗେ ଦେବସ୍ନାନବାବୁଙ୍କ ପାଦତଳେ ପ୍ରଣାମ କରି ଗୋଡ଼ଧୂଳି ନେଇଁ ନେଇଁ କହିଲା, "ସାର୍, ଆପଣ ସିନା ମୋତେ ପୁରାପୁରି ଭୁଲି ଯାଇଛନ୍ତି, ମୁଁ କିନ୍ତୁ ଆପଣଙ୍କୁ ଭୁଲିପାରିନି । ଗତକାଲି ଆମେରିକାରୁ ଆସି କଟକରେ ପହଞ୍ଚିଲି । ଆଜି ସକାଳୁ ଏଠାକୁ ଆସିବାକୁ ଠିକ୍ କଲି । ଆପଣ ରେଭେନ୍ସା କଲେଜର ଅଧ୍ୟାପକ ଚାକିରୀ ଛାଡ଼ି-ଦେଇ ଏହି ଗଠନମୂଳକ କାମକୁ ଆଦରି ନେଇଥିବାରୁ ପ୍ରୋଫେସର କାରୁସୋ ଭାରି ଦୁଃଖ କରୁଥିଲେ । ସେ ଆପଣଙ୍କ ବୈଜ୍ଞାନିକ ପ୍ରତିଭାକୁ ଖୁବ୍ ପ୍ରଶଂସା କରନ୍ତି ।"

"ହଁ ଶୁଭ୍ରା, ଯିଏ ମୋର ଏହି କାର୍ଯ୍ୟକୁ ଶୁଣୁଛି ସେ ଦୁଃଖ କରୁଛି । ମୋ ବାପା ତ ମୋ ସହିତ ସମ୍ପର୍କ ଛଡ଼ାଇ ଦେଇଛନ୍ତି ଏଥିପାଇ । ଏଥିରେ ମୋ ସଙ୍ଗିନୀ ଦୁଃଖ କଲେ ବୋଲି ଶୁଣିଲେ କାହିଁକି ମନ କଷ୍ଟ କରିବ କହିଲ ?"

"ଆରେ, ତୁମେ ଦାଣ୍ଡଦ୍ୱାରେ ଠିଆ ହୋଇ ରହିଲ ଯେ ? ଆସ, ଭିତରକୁ ଆସ ।" ଏତିକି କହି ଶୁଭ୍ରାକୁ ଘର ଭିତରକୁ ଡାକି ନେଲେ ଦେବସ୍ମାନ । ଶୁଭ୍ରାକୁ ଦାଣ୍ଡଘରେ ବସାଇଦେଇ ଭିତରକୁ ଚାଲିଯାଇ ଡାକି ଆଣିଲେ ଶାନ୍ତିକୁ ।

ଶାନ୍ତିକୁ ଶୁଭ୍ରା ସହିତ ପରିଚୟ କରିଦେବା ପାଇଁ କହିଲେ, "ଦେଖ ଶାନ୍ତି, ଇଏ ହେଉଛନ୍ତି ମାର୍କିନ୍ ଦେଶବାସୀ ସେହି ଭାରତୀୟ ଲଳନା ଶୁଭ୍ରା, ଯାହାଙ୍କ କଥା ତୁମେ ମୋଙ୍କ ଚିଠିରୁ ସେଦିନ ମୋତେ ପଚାରୁଥିଲ ।"

ଶୁଭ୍ରା ଆଡ଼କୁ ଅନାଇ, "ଇଏ ହେଉଛନ୍ତି ମୋର ସହଧର୍ମିଣୀ ଶାନ୍ତି ।" ଶାନ୍ତିକୁ ଦେଖି ଶୁଭ୍ରା ଚେୟାରରୁ ଉଠିପଡ଼ି ନମସ୍କାର ଜଣାଇ କହିଲେ, "ଆପଣଙ୍କୁ ଦେଖି ଅତ୍ୟନ୍ତ ଖୁସି ହେଲି ଭଉଣୀ । ସାର୍‌ଙ୍କ ତତ୍ତ୍ୱ ନେବାପାଇଁ ଆପଣ ଆସି ଯାଇଛନ୍ତି ଦେଖି ଖୁସି ହେଉଛି । ଆମେରିକାରେ ରହିଲେ ବି ସାର୍‌ଙ୍କ ତତ୍ତ୍ୱ କିଏ ନେଉଥିବ, ସେଇଥିଏ ମୋର ପ୍ରଧାନ ଚିନ୍ତା । ଯାହାହେଉ, ଆପଣ ଆସି ଯାଇଛନ୍ତି, ଏଥର ମୋର ସବୁଠାରୁ ବଡ଼ ଚିନ୍ତା ଗଲା ।"

ଶାନ୍ତି ହସି ହସି କହିଲେ, "ଆପଣ ତାହାହେଲେ ସେହି ଶୁଭ୍ରା ଯେଉଁ ଯେ…"

"ନା, ନା, ଶାନ୍ତି, ସେ ଦେଖାଦେବ କିଛି ନୁହଁନ୍ତି, ସେ ହେଉଛନ୍ତି ମିସ୍ ଶୁଭ୍ରା ସାମନ୍ତରାୟ ।" ଦେବବାବୁ ହସି ହସି କହିଲେ ।

"ସାର୍, ଆପଣଙ୍କର ସବୁବେଳେ ସେହି କଥା । ମୋତେ ଚିଡ଼ାଇବାକୁ ଭାରି ଭଲ ଲାଗେ ଆପଣଙ୍କୁ ? କେଉଁଦିନକା କଥା ଆପଣ ମନେ ରଖିଛନ୍ତି ?" ମୁଖରେ କୃତ୍ରିମ ରାଗ ଫୁଟାଇ କହିଲେ ଶୁଭ୍ରା ।

"ମୁଁ ଆପଣଙ୍କ ଚିଠିରୁ ଆପଣଙ୍କୁ ଯାହା ଅନୁମାନ କରିଥିଲି, ଆପଣ ନିଶ୍ଚୟ ଚମତ୍କାର ହୋଇଥିବେ, ବାସ୍ତବରେ ମୁଁ ଆଜି ଆପଣଙ୍କୁ ତାହା ହିଁ ଦେଖୁଛି ।" ଶାନ୍ତି କହିଲେ ।

"ତୁମେ କେତେଦିନ ପାଇଁ ଭାରତ ଆସିଛ ଶୁଭ୍ରା ?" ଦେବସ୍ମାନ ପଚାରିଲେ ।

"ସାର୍, ମୋଟେ ମାସଟିଏ ପାଇଁ ଆସିଛି । ବାପା ଏବେ ଆମେରିକା ଯାଇଥିଲେ, ତାଙ୍କର ସାଙ୍ଗରେ ଚାଲି ଆସିଲି ଆପଣମାନଙ୍କୁ ଦେଖିବା ପାଇ । ଆସନ୍ତା ସେପ୍‌ଟେମ୍ବର ମାସ ଏଗାର ତାରିଖ ଦିନ ଭାରତରୁ ବିଦାୟ ନେଇ ଚାଲିଯିବ ।"

ଆପଣଙ୍କର ବିଭାଘର ହୋଇଯାଇଛି ଶୁଣି ଖୁସି ହେଲି । ଭାରତ ଆସିବା ପୂର୍ବରୁ ବୋଉ ମୋତେ ଜଣାଇ ଦେଇଥିଲେ ଆପଣଙ୍କ ବିଭାଘର କଥା । ଆପଣ କେଉଁ ପରିସ୍ଥିତିରେ ପଡ଼ି ବିବାହ କଲେ ମୁଁ ଜାଣିଛି । ଜଣେ ସ୍ତ୍ରୀର ସମ୍ମାନରକ୍ଷା କରିବା ପାଇ ଆପଣ ଯାହା

କଲେ, ତାହାଠାରୁ ବଡ଼ କାମ ଆଉ କ'ଣ ହୋଇପାରେ ? ମୁଁ ସେଥିରେ ଭାରି ଖୁସି । ଶାନ୍ତିଦେବୀଙ୍କ ଆପଣଙ୍କ ପ୍ରତି ନିଷ୍ଠା ଓ ସ୍ନେହ ସେଦିନ ଗୋବିନ୍ଦପୁରରେ ଦେଖିଥିଲି । ଆପଣଙ୍କୁ କଟକ ନେଇ ଆସିଲାବେଳେ ତାଙ୍କ ମୁହଁ ଶୁଖାରୁ ମୁଁ ଜାଣି ନେଇଥିଲି ସେ ଆପଣଙ୍କ ପ୍ରତି କିପରି ଅନୁରକ୍ତ । ଶାନ୍ତିଦେବୀ ଆପଣଙ୍କ ଘରକୁ ଆସିଗଲା ପରେ ଆପଣଙ୍କୁ ନେଇ ମୋର ଯେଉଁ ବିରାଟ ଚିନ୍ତା ଥିଲା, ଆପଣଙ୍କ ତତ୍ତ୍ୱ ନେଉଥିବି କିଏ, ସେ ଚିନ୍ତା ମୋର ସେହିଦିନଠାରୁ ଗଲା । ମୁଁ ଏଥିରେ ଭାରି ଖୁସି ।

"ସେସବୁ କଥା ଛାଡ଼ ଶୁଭ୍ରା, ଯାହା ହେବାର ଥିଲା ହୋଇଗଲା । ବର୍ତ୍ତମାନ ତୁମେ କୁହ, ଆମେରିକାରେ ତୁମ ଗବେଷଣା କେମିତି ଚାଲିଛି ? ତୁମେ ପରା ଅତି ପରିବାହିତା ଉପରେ ଗବେଷଣା କରି ଖୁବ୍ କୃତିତ୍ୱ ଅର୍ଜନ କରିଛ ?"

"ହଁ ସାର୍, ଆପଣ ଯେଉଁ କାମ କେମ୍ବ୍ରିଜରେ ଅଧା କରି ଛାଡ଼ି ଆସିଥିଲେ, ମୁଁ କଲମ୍ବିଆରେ ସେହି କାମକୁ ଶେଷ କରିବାକୁ ଚେଷ୍ଟା କରୁଛି । ଆପଣଙ୍କ କେମ୍ବ୍ରିଜ ଗବେଷଣା ସଙ୍ଗିନୀ ମିସ୍ କାରୁସୋ ମୋତେ ଖୁବ୍ ସାହାଯ୍ୟ କରୁଛନ୍ତି ଏ କାମରେ । ସେ କେମ୍ବ୍ରିଜରୁ ଆସି ବର୍ତ୍ତମାନ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ପ୍ରଧାନ ଅଧ୍ୟାପିକା ଅଛନ୍ତି । ମୋତେ ଗ୍ରହଣ କରିବା ପାଇଁ ଆପଣଙ୍କ ସୁପାରିଶ ଯୋଗୁଁ ମୁଁ ସେଠି ସ୍ଥାନ ପାଇଲି । ଆପଣଙ୍କ ଛାତ୍ରୀ ବୋଲି ଜାଣି ମୋତେ ସଙ୍ଗେ ସଙ୍ଗେ ଗ୍ରହଣ କରିନେଲେ । ସେ ବେଳେବେଳେ ଆପଣଙ୍କ କଥା କହନ୍ତି । ଆପଣଙ୍କର ଗବେଷଣାରେ ଯେଉଁ ଅପୂର୍ବ ନିଷ୍ଠା ସେ ଭାରି ପ୍ରଶଂସା କରନ୍ତି । ଏହି ଜୈବ ପଲିମର୍ ଅତିପରିବାହୀ ଭାବରେ କେମିତି ଦକ୍ଷତା ଦେଖାଇବ, ଅନ୍ୟମାନେ ବିଶ୍ୱାସ କରୁ ନ ଥିଲେ ମଧ୍ୟ ଆପଣ ସେ ଦିଗରେ କେମିତି ଆଗେଇ ଯାଇଥିଲେ ସେ କହୁଥିଲେ । ଏଭଳି ଏକ କାର୍ଯ୍ୟରୁ ଆପଣଙ୍କୁ ନିବର୍ତ୍ତାଇବା ପାଇଁ ଅଧ୍ୟାପକ ମେକ୍‌ଡୋନାଲ୍‌ଡ କମ୍ ଚେଷ୍ଟା କରି ନାହାନ୍ତି । ସେମାନଙ୍କ ବାରଣସତ୍ତ୍ୱେ ଆପଣ ଏ ଦିଗରେ ଆଗେଇଯାଇ ଯେଉଁ କୃତକାର୍ଯ୍ୟତା ଦେଖାଇଥିଲେ ତାହା ବର୍ଣ୍ଣନା କରି ମିସ୍ କାରୁସୋ ଆପଣଙ୍କ ଦିବ୍ୟଦୃଷ୍ଟିର ଅଶେଷ ପ୍ରଶଂସା କରନ୍ତି । ସେ କହନ୍ତି, ଆମେ ଯଦି ଏହି ଗବେଷଣାରେ କୃତକାର୍ଯ୍ୟ ହେଉ, ତେବେ କୃତକାର୍ଯ୍ୟତାର ବାହାଦୁରି ଆମର ନୁହେଁ, ଆପଣଙ୍କର ।"

"ହଁ ଶୁଭ୍ରା, ମୁଁ ଭାରି ଖୁସି ମୋର ପ୍ରୋବ୍ଲେମ୍ ଉପରେ ତୁମେମାନେ କାମ କରୁଛ । ମୋର ସହକର୍ମୀ ମିସ୍ କାରୁସୋର ମୋ ସହିତ କାମ କରିବାର ଧୈର୍ଯ୍ୟ ଖୁବ୍ ପ୍ରଶଂସନୀୟ । ମୁଁ ଯେତେବେଳେ ଗବେଷଣାରେ ବିଶେଷ ଅଗ୍ରଗତି କରି ନ ପାରେ, ସେ ମୋତେ ସାନ୍ତ୍ୱନା ଦେବାରେ ଯେଉଁ ଭୂମିକା ଗ୍ରହଣ କରନ୍ତି ତାହା ଅବର୍ଣ୍ଣନୀୟ । ତାଙ୍କ ସାନ୍ତ୍ୱନା ପାଇ ନ ଥିଲେ ମୁଁ କଦାପି ସେଥିରେ ଆଗେଇପାରି ନ ଥାନ୍ତି । ଜୈବ ପଲିମର୍ ଯେ ଏକ ଅତି ପରିବାହୀ ହୋଇପାରିବ, ଏ ଧାରଣା ବିରୁଦ୍ଧରେ କେମ୍ବ୍ରିଜର ସାରା ରସାୟନ ଡିପାର୍ଟମେଣ୍ଟ ଥିଲାବେଳେ, ସେ ଥିଲେ ମୋର ଏକମାତ୍ର ସପକ୍ଷବାଦୀ । ତାଙ୍କ ଉତ୍ସାହ ଓ

ଉଦ୍ଦୀପନା ପାଇ ନ ଥିଲେ ମୁଁ ଯେ ସେହି ଗବେଷଣାରେ ସଫଳ କାମ ହୋଇଥାନ୍ତି ଏଥିରେ ମୋର ଥିଲା ଯଥେଷ୍ଟ ସନ୍ଦେହ । କେମ୍ବ୍ରିଜର ସେଣ୍ଟ୍ ଜେମ୍‌ସ ପାର୍କରେ ମୋର ଥରକୁ ଥର ଅସଫଳତା ପାଇଁ ସେ କେତେ ଯେ ପ୍ରବୋଧନା ଦେଇଛନ୍ତି ମୁଁ ତାକୁ ଭୁଲି ପାରିବନି ଶୁଭ୍ରା । ଜୈବ ପଲିମର୍ ଏକ ଅତି ପରିବାହୀ ହୋଇପାରିବ, ଏ ଧାରଣା ସେତେବେଳେ କୌଣସି ବୈଜ୍ଞାନିକଙ୍କ ମୁଣ୍ଡକୁ ପଶି ନ ଥିଲା । ସେମାନେ ସମସ୍ତେ ଧରି ନେଇଥିଲେ ମୁଁ ଏକ ବ୍ୟର୍ଥ ଗବେଷଣା ପଛରେ ଧାଇଁଛି ବୋଲି । ଆଜି ମୋର ସେହି ବ୍ୟର୍ଥ ଗବେଷଣାକୁ ତୁମେମାନେ ଯେ ସଫଳତାରେ ପରିଣତ କରିବାକୁ ଯାଉଛ, ଏହାଠାରୁ ଅଧିକ ଆନନ୍ଦର ବିଷୟ ଆଉ କ'ଣ ହୋଇପାରେ ଶୁଭ୍ରା ? ମିସ୍ କାରୁସୋଙ୍କୁ ମୋର ସେଥିପାଇଁ ଶତ ଧନ୍ୟବାଦ । ଗବେଷଣାରେ ପ୍ରଥମେ ପ୍ରଥମେ ଅସଫଳ ହେଲେ ମୁଁ ଗବେଷଣାଗାରରୁ ପଳାଇ ଆସି ମୋ ବସାରେ ମନ ଦୁଃଖରେ ବିଛଣାରେ ପଡ଼ିଯାଏ । କାରୋଲିନ୍ ମୋ ପଛେ ପଛେ ଆସି ମୋତେ କେତେ ଯେ ସାନ୍ତ୍ୱନା ଦିଏ, ମୁଁ ଭୁଲି ପାରିବନି ଶୁଭ୍ରା । ଏମିତିକି ସେ ଘଡି ଘଡି ମୋତେ ବୁଝାଏ ମୋ ଗବେଷଣାର ସଫଳତା ନେଇ ।"

"ହଁ ସାର୍, ଆପଣଙ୍କର ସେହି ବ୍ୟର୍ଥ ଗବେଷଣା ପୃଥିବୀରେ ବର୍ତ୍ତମାନ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଗବେଷଣାର ଆଖ୍ୟା ପାଇଛି । ଆମେ ବର୍ତ୍ତମାନ ଅତି ପରିବାହୀ ଭାବରେ ଏକ ପଲିମର୍ ତିଆରି କରିପାରିଛୁ, ଯାହା ସାଧାରଣ ତାପମାତ୍ରାରେ ଅତି ପରିବାହୀତା ଦେଖାଇପାରୁଛି । ଏହି ପଦାର୍ଥର ଯଦି ବ୍ୟାପକ ବ୍ୟବହାର ଆରମ୍ଭ ହୁଏ, ତେବେ ସାରା ପୃଥିବୀରେ ଏକ ନୂତନ ଯୁଗର ସୂତ୍ରପାତ ହେବ । ବିଦ୍ୟୁତ୍ ସରବରାହରେ ଏକ ଯୁଗାନ୍ତର ଆସିବ । ଯାନବାହାନର ରୂପ ବଦଳିଯିବ । ବିନା ଚକରେ ରେଳଗାଡ଼ି ରେଳ ଲାଇନ ଉପରେ ଉଡ଼ି ଉଡ଼ି ଘଣ୍ଟାକୁ ଅର୍ଦ୍ଧସହସ୍ର କିଲୋମିଟର ବେଗରେ ଯାଇପାରିବ । ପୃଥିବୀର ଗୋଟିଏ କୋଣରୁ ବିଦ୍ୟୁତ୍‌ସ୍ରୋତ ଏହି ପଲିମରର ତାର ଦେଇ ଅନ୍ୟ ଏକ କୋଣକୁ ସ୍ୱଚ୍ଛନ୍ଦରେ ଯାଇପାରିବ । ବିଦ୍ୟୁତ୍‌ଶକ୍ତିର ଟିକିଏ ମାତ୍ର ଅପଚୟ ହେବନି । କଂପ୍ୟୁଟର ଓ ସୁପର କଂପ୍ୟୁଟରର କାର୍ଯ୍ୟଦକ୍ଷତା ଶହ ଶହ ଗୁଣ ବଢ଼ିଯିବ । ସେସବୁର ଆକାର ଓ ମୂଲ୍ୟ ମଧ୍ୟ ଢେର୍ କମି ଆସିବ । ପରମାଣୁ ଚୂର୍ଣ୍ଣକର ଶକ୍ତିଶାଳୀତା ଆଶାତୀତ ଭାବରେ ବଢ଼ିଯିବ । ପରମାଣୁ ଗବେଷଣା ଆଜିକାଲିକା ଭଳି ମହାର୍ଘ ହେବନି ।"

ମୁଁ କ'ଣ ମୋ ଗବେଷଣା ବିଷୟରେ ଏତେ କହିଗଲିଣି ସାର୍ । ମୁଁ ଯେଉଁଥିପାଇଁ ଏଠାକୁ ଆସିଥିଲି, ସେ ବିଷୟ ତ କିଛି ଜାଣି ପାରିଲିନି । ଆପଣ ଏଠି କ'ଣ କ'ଣ ନୂଆ କଥା କଲେଣି ଦେଖିବା ମୋର ଇଚ୍ଛା । ଅଥଚ ମୁଁ ସେକଥା ଦେଖିବା ପରିବର୍ତ୍ତିରେ ମୋ ନିଜ କଥାହିଁ କହି ଚାଲିଛି । ଆପଣ ଜୀବନରେ ଆଇ.ଏ.ଏସ୍. ଚାକିରି ଛାଡ଼ିଲେ, ବୈଜ୍ଞାନିକ ଗବେଷଣା ଛାଡ଼ିଲେ, ଅଧ୍ୟାପକ ଚାକିରି ଛାଡ଼ିଲେ, ବର୍ତ୍ତମାନ ଆପଣ ଯାହାକୁ ଆଦର

ନେଇଛନ୍ତି, ତାହା କପରି ଆପଣଙ୍କୁ ଆନନ୍ଦ ଦେଉଛି, ତାହାକୁ ଦେଖିବା ପାଇ ମୁଁ ଏତେ ବାଟ ଧାଇଁ ଆସିଛି ସାର୍ ।

"ତୁମ କୃତତ୍ୱ ତୁଳନାରେ ମୋ କୃତତ୍ୱ କିଛି ନୁହେଁ ଶୁଭ୍ରା ? ତୁମେ ଯେତେବେଳେ ସାରା ବିଜ୍ଞାନ ଜଗତ ତଥା ଜନସମାଜର କଲ୍ୟାଣ ଦିଗରେ ନିଜକୁ ନିୟୋଜିତ କରିଛ, ମୁଁ ମାତ୍ର କେତୋଟି ପରିବାରର କଲ୍ୟାଣ ପାଇଁ ଲାଗି ପଡ଼ିଛି । ଗାଁମାନଙ୍କର ଉନ୍ନତି, ଗାଉଁଲି ଲୋକଙ୍କ ସେବା ହୋଇଛି ମୋ ଜୀବନର ପ୍ରଧାନ ବ୍ରତ । ସେଥିରେ ମୁଁ ଯାହା ଆନନ୍ଦ ପାଉଛି । ତେବେ ଏହା ନିଶ୍ଚିତ ଯେ, ଆଇ.ଏ.ଏସ୍. ଜୀବନ, ଅଧ୍ୟାପକ ଜୀବନ କି ଗବେଷକ ଜୀବନଠାରୁ ଅଧିକ ଶାନ୍ତି ମିଳୁଛି ଏଠି । ତେବେ ତୁମ ଶାନ୍ତି ଓ ମୋ ଶାନ୍ତି ଭିତରେ ଆକାଶପାତାଳ ପ୍ରଭେଦ । ତୁମେ କାହିଁ ନିଉୟର୍କର ନଭୋଶ୍ଚୁମ୍ବୀ ସ୍କାଏସ୍କ୍ରେପର ଏମ୍ପାୟାର ଷ୍ଟେଟ୍ ବିଲ୍ଡିଂ, ମୁଁ କାହିଁ ନଗ୍ନ ପଲ୍ଲୀର ଚୂଳିଆ ଝୁପୁଡ଼ି ଘର । ଦୁଇଟି ଭିତରେ ତୁଳନା କରାଯାଇ ପାରେନା ଶୁଭ୍ରା ।"

"ଆପଣ ଏତେ ଦୂରରୁ ଆସିଲେଣି ଶୁଭ୍ରାଦେବୀ, କିଛି ଖାଇ ନ ଥିବେ ନିଶ୍ଚୟ । ଆପଣମାନେ କଥା ହେଉଥାନ୍ତୁ, ମୁଁ କିଛି ଜଳଖିଆ ତିଆରି କରି ଆଣେ । କିନ୍ତୁ ଶୁଭ୍ରାଦେବୀ, ଆପଣ ଆମ ଦେଶର ଭାରତୀୟ ଜଳଖିଆ ଖାଆନ୍ତି ତ ?"

"ତୁମେ କ'ଣ ଯେ କହୁଛ ଶାନ୍ତି" ଦେବସ୍ମାନ କହିଲା, "ମୁଁ କିଛି ବୁଝି ପାରୁନି । ଶୁଭ୍ରା ବର୍ତ୍ତମାନ ମାର୍କିନ୍ ବାସିନୀ, ସେ କ'ଣ ଆଉ ଆମ ଦେଶର ଜଳଖିଆ ଖାଉଥିବ ? ସେ ବର୍ତ୍ତମାନ ଆମେରିକାର ହଟ୍ ଡଗ୍ ହେମବର୍ଗର, ଫ୍ରାଙ୍କଫର୍ଟର ଆଦରେ ନିଜକୁ ବୁଡ଼ାଇ ଦେଇଥିବ । କିଶୋରୀ ବୟସରେ ଯିଏ ଆମେରିକା ନ ଯାଇ ଆମେରିକା ପୋଷାକ ଛଡ଼ା ଅନ୍ୟ କିଛି ପିନ୍ଧୁ ନ ଥିଲା, ସେ ବର୍ତ୍ତମାନ ଖୋଦ୍ ଆମେରିକାରେ ଥାଇ ସେଇ ଭାରତୀୟ ଖାଦ୍ୟ କେମିତି ଖାଉଥିବ କହିଲ ?

"ଇସ୍ , ଆପଣ କ'ଣ ଯେ କହୁଛନ୍ତି ? ଆପଣଙ୍କ ଛାତ୍ରୀ ଆପଣଙ୍କଠାରୁ ଯେଉଁ ଦୀକ୍ଷା ନେଇଛି, ସେ କେବେ ନିଜ ଦେଶର ଖାଦ୍ୟ, ସଂସ୍କୃତିକୁ ଛାଡ଼ି ଅନ୍ୟ ଦେଶର ଖାଦ୍ୟ ସଂସ୍କୃତିକୁ ଆଦରି ନେଇପାରେ ? ଆପଣଙ୍କ ସହ ମୋର ପ୍ରଥମ ସାକ୍ଷାତରେ ସେହି ଯେଉଁ ଦୀକ୍ଷା ପ୍ରବଚନ, ମୁଁ କ'ଣ କେବେ ତାକୁ ଭୁଲି ପାରିବି ସାର୍ ?" ଆଖିକୁ ନଚେଇ କହିଲା ଶୁଭ୍ରା ।

"ହେଲେବି, ଆପଣତ ଭାରତୀୟ ଖାଦ୍ୟ ଭୁଲି ସାରିବେଣି ଶୁଭ୍ରାଦେବୀ ।" ଶାନ୍ତି ହସି ହସି ପଚାରିଲା ।

ହସିଲା ଶୁଭ୍ରା, "ଆପଣ ଜାଣିନାହାନ୍ତି ଶାନ୍ତିଦେବୀ, ମୁଁ ଆମେରିକାରେ ରହିଲେହେଁ ଭାରତୀୟ । ଆମେରିକାରେ ଥାଇ ମଧ୍ୟ ମୋର ସବୁବେଳେ ଭାରତୀୟ ଖାଦ୍ୟ, ଭାରତୀୟ ରନ୍ଧା ଓ ଭାରତୀୟ ପୋଷାକ ।"

"ତୁମେ କ'ଣ ରାନ୍ଧି ଜାଣିଛ ଶୁଭ୍ରା ?" ଦେବସ୍ମାନ ପଚାରିଲା ।

"ସାର୍, ଆପଣ କ'ଣ ଯେ କହୁଛନ୍ତି ମୁଁ ବୁଝିପାରୁନି ? ଯେତେହେଲେ ବି ଆମେ ନାରୀ ଜାତି, ରନ୍ଧାବଢ଼ା ଆମର ବାର୍ଥରାଇଟ୍ । ରାନ୍ଧି ନ ଜାଣିବି କେମିତି ?"

"ହେଲେ ତୁମେ ଧନୀର ଦୁଲାଲୀ, ତୁମମାନଙ୍କ ପାଇଁ ବାର୍ଥରାଇଟ୍‌ର କିଛି ଅର୍ଥ ଅଛି ନା କଅଣ ? ରନ୍ଧାଘର ଦୁଆର ଦେଖିବା ଦୁର୍ଭାଗ୍ୟ ତୁମର କେବେ ଆସିବା କ'ଣ ସମ୍ଭବ ?"

"ଇସ୍ ?" ଆଖିକୁ ନଚାଇ ଉତ୍ତର ଦେଲା ଶୁଭ୍ରା ।

"ଆପଣଙ୍କର ଦେଶପ୍ରୀତି ଦେଖି ମୁଁ ଅତ୍ୟନ୍ତ ଖୁସି ହେଉଛି ଶୁଭ୍ରାଦେବୀ । ଧନୀର ଦୁଲାଲୀ ହୋଇ ଧନୀ ଦେଶରେ ରହି ମଧ୍ୟ ଆପଣ ଆମ ଗରିବ ଦେଶକୁ ଯେ ଭୁଲିପାରି ନାହାନ୍ତି, ଏହା ଆମ ଦେଶ ପକ୍ଷରେ କମ୍ ବଡ଼ ଗୌରବର ବିଷୟ ନୁହେଁ ।"

ଦେବସ୍ମାନ ଏହି ଗାଁଗୁଡ଼ିକରେ କ'ଣ କ'ଣ ସବୁ କରିଛି, ଦିନେ ଶୁଭ୍ରାକୁ ନେଇ ସେସବୁ ବୁଲାଇ ଦେଖାଇ ଆଣିଲା । ଗାଁର ଲୋକଙ୍କ ଅବସ୍ଥା କ'ଣ ଥିଲା, ବର୍ତ୍ତମାନ କ'ଣ ହୋଇଛି, ନିଜ ଆଖିରେ ଦେଖି ଶୁଭ୍ରା ସ୍ତମ୍ଭୀଭୂତ ହୋଇପଡ଼ିଲା । ବାହାରୁ ସେମିତି କିଛି ସରକାରୀ ସାହାଯ୍ୟ ନ ନେଇ ଗାଁର ଲୋକଙ୍କୁ ସଂଗଠିତ କରାଇ ଗାଁ ଲୋକଙ୍କ ଦୈହିକ ପରିଶ୍ରମ ଫଳରେ ସେ ଯେ ଏସବୁ କରିପାରିଛି ଦେଖି ନିଜ ଆଖିକୁ ବିଶ୍ୱାସ କରି ପାରିଲାନି ଶୁଭ୍ରା । ଲୋକେ କହନ୍ତି ଭାରତୀୟମାନେ ଅଳସୁଆ, ଦିନରେ ଶୁଅନ୍ତି, କାମ କରିବା ଜାଣିନାହାନ୍ତି, ଦାୟିତ୍ୱ କ'ଣ ବୁଝନ୍ତି ନାହିଁ, ସେହିମାନଙ୍କୁ ନେଇ କ'ଣ ଯେ କରାଯାଇ-ପାରେ, ପୃଥିବୀର ଲୋକମାନେ ଏଠାକୁ ଆସି ଥରେ ନିଜ ଆଖିରେ ଦେଖିଯିବା ଉଚିତ ।

ଦେବସ୍ମାନବାବୁଙ୍କର ଏହିସବୁ କୃତିତ୍ୱ ଦେଖୁ ଦେଖୁ ଶୁଭ୍ରା କହି ପକାଇଲା, "ସାର୍, ଆପଣ ଜୀବନର ପ୍ରକୃତ ଉଦ୍ଦେଶ୍ୟକୁ ଠିକ୍ ଭାବରେ ଉପଲବ୍‌ଧି କରିପାରିଛନ୍ତି । ଆପଣ ଏହି ଯେଉଁ ଜନମଙ୍ଗଳ କାମରେ ଲାଗିଛନ୍ତି, ଏହାହିଁ ଆପଣଙ୍କୁ ପ୍ରକୃତ ଶାନ୍ତି ଆଣିଦେଇ ପାରିବ । ଆପଣଙ୍କର ଏହି କାର୍ଯ୍ୟଦ୍ୱାରା ମାନବ ସମାଜର ଯେଉଁ ଉପକାର ହେଉଛି, ଶତ ଶତ ବ୍ୟଥିତ ଆତ୍ମାର କେତେ ଅସୁମାରି ସ୍ନେହାଶୀଷ ଯେ ଆପଣଙ୍କ ଉପରେ ବର୍ଷିଣ ହେଉଥିବ, ଆପଣ ଜାଣିପାରୁ ନାହାନ୍ତି ସାର୍ । ଆପଣ ଆଜି ଯାହା କରି ଦେଖାଇ ଦେଇଛନ୍ତି, ସାରା ପୃଥିବୀ ଏହାକୁ ସ୍ୱାଗତ କରିବା କଥା । ପୃଥିବୀରେ ଅନ୍ୟ କେଉଁଠି କେହି ଏମିତି ଏକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛନ୍ତି କି ନାହିଁ ସନ୍ଦେହ । ମହାତ୍ମାଗାନ୍ଧିଙ୍କ ଅହିଂସା ପରୀକ୍ଷା ପରେ ଏହା ହେଉଛି ଆପଣଙ୍କର ଦ୍ୱିତୀୟ ପରୀକ୍ଷା । ମହାତ୍ମାଗାନ୍ଧିଙ୍କ ଅହିଂସା ଭଳି ଆପଣଙ୍କ କାମ ସବୁଦିନ ପାଇଁ ଲୋକଙ୍କ ଆଖିରେ ଆଦର୍ଶ ହୋଇ ରହିଥିବ । ଆପଣ ଯଥାର୍ଥରେ ମହାତ୍ମାଗାନ୍ଧିଙ୍କ ପରେ ଦ୍ୱିତୀୟ ମହାତ୍ମା ।"

ହସିଲା ଦେବସ୍ମାନ, "ଛି, ଶୁଭ୍ରା, ତୁମେ ଯୁଗମାନବ ମହାତ୍ମାଗାନ୍ଧିଙ୍କ ସହିତ ମୋତେ କ'ଣ ତୁଳନା କରୁଛ ? କାହିଁ ମହାତ୍ମାଗାନ୍ଧି, କାହିଁ ମୁଁ ?"

"ଆପଣ ସେଭଳି କହିବା ଆପଣଙ୍କ ମହାନୁଭବତାର ପରିଚାୟକ ସାର୍ । ତେବେ ମୋତେ ଦୁଃଖ ଲାଗେ ଯେଉଁ ଦେଶ ମହାତ୍ମାଗାନ୍ଧିଙ୍କର ଏତେବଡ଼ ଆଦର୍ଶକୁ ରଖି ପାରିଲାନି, ମହାତ୍ମା ଗାନ୍ଧିଙ୍କୁ ହତ୍ୟା କରିସାରି ତାଙ୍କ ଆଦର୍ଶକୁ ତିଳେ ତିଳେ କରି ହତ୍ୟା କରି ଚାଲିଛି, ସେଇ ଦେଶରେ ଆପଣଙ୍କ ଆଦର୍ଶ କି ପ୍ରତିକ୍ରିୟା ସୃଷ୍ଟି କରିବ, ମୁଁ ଭାବିପାରୁନି ସାର୍ । ମହାତ୍ମା ଗାନ୍ଧିଙ୍କ ବିରାଟ ଆଦର୍ଶକୁ ଯଦି ଏ ଦେଶ ରଖି ପାରିଲାନି, ଆପଣଙ୍କ ଏ ଆଦର୍ଶ ଯେ ରହିବ, ସେ ବିଶ୍ୱାସ ମୋର ନାହିଁ ସାର୍ । ଆପଣଙ୍କ ଏ ବିରାଟ ସ୍ୱାର୍ଥତ୍ୟାଗ ଆପଣଙ୍କ ନିଜ ଝିଅ ଚମ୍ପୁକୁଣ୍ଟାରେ ଯେମିତି ପର୍ଯ୍ୟବସିତ ନ ହୁଏ, ଆମ ଦେଶର ଅଜ୍ଞ ଜନତା କ'ଣ ଏହାକୁ ଉପଲବ୍ଧି କରିପାରିବେ ?"

"ଗୁଡ଼୍ ସେକଥା ଶୁଭ୍ରା । ସେଥିପ୍ରତି ମୋର ଦୃଷ୍ଟି ନାହିଁ । ମୁଁ ଯେ କେତୋଟି ଗାଁ ଲୋକଙ୍କ ଉପକାର କରି ଯାଉଛି, ସେତିକି ମୋର ଯଥେଷ୍ଟ । ମୁଁ ଯେମିତି କିଛି ଆଦର୍ଶ ସୃଷ୍ଟି କରି ଯାଉନି ଯାହା ଧ୍ୱଂସ ପାଇଗଲେ ମୋର ମନ କଷ୍ଟ ହେବ ।

× × × ×

ଦେବସ୍ମାନର ପଦଧୂଳି ନେଉଁ ନେଉଁ ବାଷ୍ପ ଗଦ୍‌ଗଦ୍ କଣ୍ଠରେ କହିଲା ଶୁଭ୍ରା, "ସାର୍, ମୁଁ ଆଜି ଚାଲି ଯାଉଛି । କିନ୍ତୁ ଆପଣଙ୍କର ଏହି ଆଦର୍ଶ ମୋ ଜୀବନରେ ଚିରଦିନ ଉଜ୍ଜୀବିତ ହୋଇ ରହିଥିବ । ଆପଣଙ୍କୁ ଅନ୍ୟମାନେ ମହାତ୍ମା କହନ୍ତୁ ବା ନ କହନ୍ତୁ ଆପଣ ମୋ ହୃଦୟରେ ଚିରଦିନ ପାଇଁ ମହାତ୍ମା ଭାବରେ ରହିଯିବେ । ଆପଣ ମୋର ଖାଲି ନମସ୍ୟ ନୁହଁନ୍ତି, ସାରା ବିଶ୍ୱର ନମସ୍ୟ ।"

ହସିଲା ଦେବସ୍ମାନ, "କ'ଣ ଏଣ୍ଡତେଣ୍ଡୁ ଗୁଡ଼ାଏ କହିଯାଉଛ ଶୁଭ୍ରା । ତୁମକୁ ଯେତେବେଳେ ଦେଖିଲେହେଁ ମୋର ତୁମ ସହିତ ପ୍ରଥମ ସାକ୍ଷାତର ସେହି ଦୃଶ୍ୟ ଆଖି ଆଗରେ ନାଚିଯାଏ । ଆଜି ସେହି ଚପଳମତି ବାଳିକାସୁଲଭ ମନୋଭାବସମ୍ପନ୍ନା ଶୁଭ୍ରାର ସମାଧି ଉପରେ ଠିଆ ହୋଇଛି ଅତି ଦାୟିତ୍ୱସମ୍ପନ୍ନା ପୃଥିବୀର ଜଣେ ଅଦ୍ୱିତୀୟା ପ୍ରଖ୍ୟାତନାମା ବୈଜ୍ଞାନିକ ଶୁଭ୍ରା । ମୋତେ ବଡ଼ ଖୁସିଲାଗେ ଶୁଭ୍ରା, ତୁମେ ମୋତେ ଭୁଲି ନ ପାରି ମନେ ରଖିଛ । ବେଳେବେଳେ ମନେପକାଇ ଚାଲି ବି ଆସୁଛ । ତୁମଭଳି ବହୁ ଝିଅ ମୋଠାରୁ ପାଠ ପଢି ଯାଇଛନ୍ତି, କେହି ମୋତେ ଦ୍ୱିତୀୟଥର ପାଇଁ ସ୍ମରଣ କରନ୍ତି ନାହିଁ । ତୁମେ କିନ୍ତୁ ଏହାର ଏକ ବିରାଟ ବ୍ୟତିକ୍ରମ । ତୁମ ଭଳି ଛାତ୍ରୀଟିଏ ପାଇ ମୁଁ ଆଜି ନିଜକୁ ଗୌରବାନ୍ୱିତ ମନେକରୁଛି ଶୁଭ୍ରା ।"

କାର୍‌ରେ ବସିବା ପୂର୍ବରୁ ଶାନ୍ତିଦେବୀଙ୍କୁ ନମସ୍କାର ଜଣାଇ ବିଦାୟ ନେଲା ଶୁଭ୍ରା । କାର୍‌ଟି ଗାଁ ଭିତରୁ ଛୁଟି ଚାଲିଲା ବଡ଼ ରାସ୍ତାରେ । କାର୍‌ଟି ଦୃଷ୍ଟିପଥରୁ ଅନ୍ତର୍ହିତ ହେଲା ପର୍ଯ୍ୟନ୍ତ ଅନାଇ ରହିଥିଲେ ସ୍ୱାମୀ-ସ୍ତ୍ରୀ ଦେବସ୍ମାନ ଓ ଶାନ୍ତିଦେବୀ ।

# ଛବିଶ

"ଶୁଣିଲଣି, ବୋଉ ଆଜି ଚିଠି ଦେଇଛନ୍ତି । ବାପାଙ୍କର ବଦଳି ହୋଇଛି କଟକ । ବି.ଜେ.ବି. କଲେଜ ଛାଡ଼ି ସେ ବର୍ତ୍ତମାନ ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ ଭାବରେ ଯୋଗ ଦେଇଛନ୍ତି । କଟକରେ ତିଆରି ହେଉଥିବା ଘରଟି ଭଡ଼ା ଲଗାଇ ଦିଆଯାଇଛି । ବାପା ବୋଉ ରହୁଛନ୍ତି ରେଭେନ୍‌ସା କଲେଜ ପ୍ରିନ୍‌ସିପାଲ କ୍ୱାର୍ଟରରେ ।"

"ଆଉ କ'ଣ ଲେଖିଛି ବୋଉ ? ବାପାଙ୍କ ଦେହପା ଭଲ ଅଛି ତ ? ବାପା ଆମ କଥା ପଚାରନ୍ତି କି ନାହିଁ ସେ କଥା କିଛି ଲେଖିନି ବୋଉ ?"

"ବୋଉ ଆଗ ଚିଠିରେ ଲେଖିଥିଲେ, ବାପା ଭୁଲରେ ବି ଆମ କଥା କେବେ ପଚାରନ୍ତି ନାହିଁ । ବାପାଙ୍କ ରାଗ କ'ଣ ଏତେଶୀଘ୍ର ଥଣ୍ଡା ହେବ, ଯେ ସେ ପୁଣି ଆମ କଥା ପଚାରିବେ ?"

"ମୁଁ ଆଉ ସେ ବିଷୟରେ କିଛି ଭାବୁନି ଶାନ୍ତି । ଯାହା ହେବାର ଥିଲା ହୋଇଗଲା, ପୁଣି ଯାହା ହେବାର ଥିବ, ହେବ । ଆମକୁ ତ ଏହି ଗାଁ କଥା ଚିନ୍ତା କରିବାକୁ ବେଳ ମିଳୁନି, ଆମ ନିଜ କଥା ଚିନ୍ତା କରିବାକୁ ବେଳ କେତେବେଳେ ?"

"ମୁଁ କ'ଣ କହୁଥିଲି କି, ତୁମେ ଏମିତି ମାନ ମାରି ବସିଲେ କିଛି ଲାଭ ନାହିଁ । ଯେତେହେଲେ ସେ ତୁମ ବାପା, ତୁମେ ତାଙ୍କର ଗୋଟିଏ ବୋଲି ପୁଅ । ଆଗକୁ ପଛକୁ ଆଉ କେହି ନାହାନ୍ତି । ତୁମେ ଯଦି ବାପାଙ୍କଠାରୁ ଏମିତି ଦୂରେଇ ହୋଇ ରହ, ତେବେ ସେ ମନେ ମନେ କେତେ କଷ୍ଟ ପାଉଥିବେ ଭୁଲିତ ? ବୋଉ ସିନା ମଝିରେ ମଝିରେ ଆମ-ଠାକୁ ଆସୁଛନ୍ତି, ତାଙ୍କର କିଛି ନାହିଁ । ବାପାତ ପୁରାପୁରି ଆମକୁ ଛାଡ଼ି ରହୁଛନ୍ତି, କେତେ ଦୁଃଖ ହେଉ ନ ଥିବ ତାଙ୍କ ମନରେ ?"

"ତୁମେ ତା'ହେଲେ କ'ଣ କହିବାକୁ ଚାହୁଁଛ ?"

"ଆମେ ଚାଲ ଦିନେ କଟକ ଯିବା । ବାପାଙ୍କୁ ଦେଖାକରି ତାଙ୍କ ଆଶୀର୍ବାଦ ନେଇ ଆସିବା ।"

"ତୁମେ କଟକ ଯିବ ? ତୁମ ମୁଣ୍ଡ କ'ଣ ଖରାପ ହୋଇଗଲାଣି ଶାନ୍ତି ?"

"ନା, ନା, ମୋ ମୁଣ୍ଡ ଖରାପ ହୋଇନି । ତୁମେ ମୋ ମୁଣ୍ଡ କଥା ନ ଭାବି ବାପାଙ୍କୁ ଦେଖା କରିବା କଥା ଭାବ ।"

"ମୁଁ ମୋ ବାପାଙ୍କୁ ଖୁବ୍ ଭଲ ଭାବରେ ଜାଣିଛି ଶାନ୍ତି । ତୁମେ ତାଙ୍କ ପାଖକୁ ଗଲେ ସେ ମୋଟେ ତୁମକୁ ଗ୍ରହଣ କରିବେନି ।"

"ଗ୍ରହଣ ନ କରନ୍ତୁ । ଆମେ ଯାଇ ତାଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିବା କଥା । ତାଙ୍କ ଆଶୀର୍ବାଦ ଆମର ଭବିଷ୍ୟତର ଉନ୍ନତିରେ ଖୁବ୍ ସହାୟକ ହେବ ।"

"ତୁମେ ଭାବୁଛ, ତୁମେ ବାପାଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିଲେ, ସେ ତୁମକୁ ଆଶୀର୍ବାଦ କରିବେ ?"

"ହଁ, କରିବେନି କାହିଁକି ?"

"ଆମକୁ ଦେଖିଲେ ସେ ଗେଟ୍ ବନ୍ଦ କରିଦେବେ । ତୁମକୁ ଭିତରକୁ ପଶିବାକୁ ଦେବେନି, ତୁମକୁ କେତେବଡ଼ ଅପମାନ ହେବ କହିଲ ?"

"ସେ ମୋତେ ଚହ୍ନିବେ କିପରି ? କେତେ ଲୋକତ ତାଙ୍କୁ ସାକ୍ଷାତ କରିବାକୁ ଆସୁଛନ୍ତି, ମୁଁ ସେମିତି ଜଣେ । ତୁମ ସହିତ ଗଲେ ସେ ଚହ୍ନିବେ । ତୁମେ ମୋ ସହିତ ଯିବନି । ପରେ ଯିବ । ମୁଁ ସିଧାସଳଖ ବାପାଙ୍କ ପାଖକୁ ନ ଯାଇ ବୋଉଙ୍କ ପାଖକୁ ଚାଲିଯିବି । ବୋଉ ମୋତେ ବାପାଙ୍କ ପାଖକୁ ନେଇ ସମାଧାନ କରିଦେବେ । ସମାଧାନ ସରିଲେ ତୁମେ ଯିବ । ମୁଁ ତାଙ୍କ ଗୋଡ଼ଧୂଳି ନେଲେ ତାଙ୍କ ରାଗ ଶାନ୍ତ ହୋଇଯିବ ।"

"ଦେଖ ଶାନ୍ତ, ଏସବୁ ବାଜେ କଥାରେ ମୁଣ୍ଡ ନ ଖେଳାଇ ଆମ ଗାଁ-ମାନଙ୍କରେ କେମିତି ଉନ୍ନତି ହେବ, ସେକଥା ଚିନ୍ତା କଲେ ଲାଭ । ଆମେ ଯେଉଁ ଦାୟିତ୍ୱଟି ବହନ କରିଛନ୍ତି, ତାହା କେମିତି ସଫଳ ହେବ ଆମର ଆଗ ଚିନ୍ତା କରିବା କଥା । ବର୍ତ୍ତମାନ ଆମ ନିଜ କଥା କି ଆମ ଘର କଥା ଚିନ୍ତା କରିବାର ବେଳ ନାହିଁ ଶାନ୍ତ । ବାପାଙ୍କ ନିକଟକୁ ଯିବା ବେଳ ବର୍ତ୍ତମାନ ଆସିନି । ବର୍ତ୍ତମାନ ପାଇଁ ଧରିନିଅ, ଆମର ସେ ଘରେ ସ୍ଥାନ ନାହିଁ । ମୁଁ ପରିତ୍ୟକ୍ତ ପୁଅ, ତୁମେ ପରିତ୍ୟକ୍ତ ବୋହୂ ।"

"ହେଉ ହେଲା, ତୁମର କଥା ରହୁ । ହେଉ କହିଲ, ଆମ ଗାଁରେ ଛୋଟ ଛୋଟ କାରଖାନା ବସିବା କଥା କେତେଦୂର ଗଲା ? ଭୁବନେଶ୍ୱର ପଲିଟେକ୍‌ନିକ୍ ସ୍କୁଲରେ ଆମର ଯେଉଁ ପିଲମାନେ ପଢୁଥିଲେ, ସେମାନେ ତ ଏବର୍ଷ ପାସ୍ କରି ଆସିବେ । ସେମାନଙ୍କୁ ତ କାମ ଯୋଗାଇବାକୁ ପଡ଼ିବ ? ସେ ଦିଗରେ ଆମର କ'ଣ କ'ଣ ବ୍ୟବସ୍ଥା ହୋଇଛି ଟିକିଏ କହିଲ ।" ଶାନ୍ତି ପଚାରିଲା ।

"ତୁମେତ ଜାଣିଛ ଶାନ୍ତ, ଆମ କାର୍ଯ୍ୟକାରୀ ସମିତିରେ ବର୍ତ୍ତମାନ କେତୋଟି କାରଖାନା ବସିବା ସ୍ଥିର ହୋଇଛି । ସେହିସବୁ କାରଖାନା ଭିତରେ ଛୋଟ ଛୋଟ କାଗଜକଳ, ଚିନିକଳ, ତେଲକଳ, ସୋପ କାରଖାନା, ଅଟାକଳ, ଧାନକଳ ଆଦି ଗୋଟିଏ ଗୋଟିଏ । ଏହି କାରଖାନାଗୁଡ଼ିକର କଞ୍ଚାମାଲ ଆମର ଏଠି ଉତ୍ପାଦିତ ହୁଏ । ତେଣୁ କାରଖାନାଗୁଡ଼ିକୁ ଚଳାଇବାରେ କିଛି ଅସୁବିଧା ହେବନି । କଞ୍ଚାମାଲର ପରିମାଣ ବେଶି ନ ଥିବାରୁ କାରଖାନାଗୁଡ଼ିକୁ ମୂଳରୁ ଛୋଟ ଆକାରରେ ଆରମ୍ଭ କଲେ ଆମର କିଛି ଅସୁବିଧା ହେବନି ।"

"ଆମର ଯେଉଁସବୁ କଞ୍ଚାମାଲ ଏଠି ଉତ୍ପାଦିତ ହେଉଛି ସେଥିରେ କାଗଜକଳ ପାଇଁ କଞ୍ଚାମାଲ ଥିଲାଭଳି ମୋର ତ କାହିଁ ମନେ ହେଉନି ?" ଶାନ୍ତି ପଚାରିଲା ।

"କାହିଁକି, ଏ ଯେଉଁ କାଗଜକଳ ବସିବ ଏହା କ'ଣ ଆକାରରେ ବଡ଼ ହେବକି ? ଏହାର ଆକାର ଛୋଟ । ଏଥିରେ ନଡ଼ା, ବାଲିଗଛ ଦଳ, ଅମଣ୍ଡା ଆଦିକୁ ବ୍ୟବହାର କରି କାଗଜ ତିଆରି କରି ହେବ । ଆମର ଏ ଅଞ୍ଚଳରେ କେତେ ବାଲିଗଛଦଳ ହେବାର ଦେଖୁଛନ୍ତି ? ସେଗୁଡ଼ିକ ବଢ଼ିଆ କାଗଜରେ ପରିଣତ ହୋଇପାରିବ । ତା'ଛଡ଼ା ନଡ଼ାର ତ କିଛି ବ୍ୟବହାର ଆମର ଏଠି ନାହିଁ । ସେସବୁରେ କାଗଜ ତିଆରି କଲେ ଲାଭ ଅଛି । ଆଖୁ ଛିଠା ମଧ୍ୟ କାଗଜକଳରେ ବ୍ୟବହୃତ ହୋଇପାରିବ ।"

"କିନ୍ତୁ ଏତେଗୁଡ଼ିଏ କାରଖାନା ପାଇଁ ଆମର ଆର୍ଥିକ ସମ୍ବଳ ଅଛି ତ ?" ଶାନ୍ତ ପଚାରିଲା ।

"ଆମ ବେଙ୍କ୍ ସହିତ ମୁଁ କଥାବାର୍ତ୍ତା କରିସାରିଛି । ସେମାନେ ଆମକୁ ଏ ବାଗରେ ଅର୍ଥ ସାହାଯ୍ୟ ଦେବାକୁ ରାଜି ହୋଇଛନ୍ତି । ସେମାନଙ୍କ ଭରସା ପାଇ ମୁଁ ସେସବୁ କାରଖାନା ପାଇଁ ଯନ୍ତ୍ରପାତି ବରାଦ କରି ଦେଇଛି । ସବୁ କାରଖାନାକୁ ଗୋଟିଏ ସ୍ଥାନରେ ନ ବସାଇ ଆଠଗୋଟି ଗାଁ ଭିତରେ ଗୋଟିଏ ଦୁଇଟି କରି ବାଣ୍ଟି ଦେଇଛି ଓ ପ୍ରତ୍ୟେକ ଦାୟିତ୍ୱରେ କିଏ କିଏ ରହିବେ ତାହାମଧ୍ୟ ଠିକ୍ ହୋଇଯାଇଛି ।

ମୋର ଯାହା ବିଶ୍ୱାସ ଶାନ୍ତ, ଆମେ ଏଥିପୂର୍ବରୁ ଯେଉଁ କଞ୍ଚାମାଲ ଯୋଟ, ଗୁଡ଼, ତୈଳବୀଜ ଆଦି ବିକି ଦେଉଥିଲେ, ବର୍ତ୍ତମାନ ସେପରି ନକରି ସେଥିରୁ ଜାତ ବିଭିନ୍ନ ଶିଳ୍ପ ପଦାର୍ଥ ବିକିଲେ ଆମର ଅଧିକ ଲାଭ ହେବ ଓ ଆମର ଲୋକମାନେ ଅଧିକ କାମ ପାଇ-ପାରିବେ । ତେଣୁ ଆମର ଦୁଇଆଡ଼ୁ ଲାଭ ହେବ । ଏହି କାରଖାନା ସବୁ ଠିକ୍ ଭାବରେ ଚାଲିଲେ ମୋର ବିଶ୍ୱାସ ଆସନ୍ତା ପାଞ୍ଚବର୍ଷ ଭିତରେ ଆମ ଗାଁର ସବୁ ଘର କୋଠାଘରରେ ପରିଣତ ହୋଇପାରିବ, ରାସ୍ତା ସବୁ ଉଚା ହୋଇ ପିଚ୍ ଦିଆହୋଇ ପାରିବ । ପ୍ରତ୍ୟେକଙ୍କ ଘରେ ସେପ୍‌ଟିଟାଙ୍କ୍ ପାଇଖାନା, କଳପାଣି ଯୋଗାଇଦେଇ ହେବ । ସହରରେ ଯେଉଁସବୁ ସୁଖସୁବିଧା ମିଳୁଛି, ସେହିସବୁ ସୁବିଧା ମୁଁ ଏହି ଗାଁ ଭିତରକୁ ଧୀରେ ଧୀରେ ନେଇ ଆସିବାକୁ ଆଗ୍ରହୀ ।

ବେଙ୍କ୍‌ରୁ ଯେଉଁ ଅଧିକା ଅଧିକା ଋଣ ହେଉଛି, ସେଗୁଡ଼ିକ ଠିକ୍ ସମୟରେ ଶୁଝା ଯାଉଛି ତ ? ନଚେତ୍ ଏହି ଋଣ ଆମ ଗାଁ ଉପରେ ଗୋଟିଏ ବିରାଟ ବୋଝ ହୋଇ ଠିଆ ହେବନି ତ ? ଶାନ୍ତ ପଚାରିଲା ।

ପ୍ରତିବର୍ଷ ଆମର ଯାହା ଆୟ ହୁଏ ଶାନ୍ତ, ସେଥିରୁ ଆଗ ବେଙ୍କ୍‌ର ସୁଧ ସହି କରଜର ମୂଳ ବାବଦକୁ କିଛି ଟଙ୍କା ଦିଆ ହୋଇଯାଏ । ଆମ ଯୋଜନାନୁଯାୟୀ ଆସନ୍ତା ପାଞ୍ଚବର୍ଷ ଭିତରେ ଆମର ସମସ୍ତ କରଜ ଶୁଝିଯିବ । ସେତେବେଳକୁ ପୁଣି ଅନ୍ୟ ଉନ୍ନୟନ ପାଇଁ ଆହୁରି ଅଧିକ କରଜ ମିଳିବାରେ ସୁବିଧା ହେବ ।

"ଗୁଡ଼ାଏ ଟଙ୍କା ବେଙ୍କ୍ ଆମଠାରୁ ସୁଧବାବଦକୁ ତ ନେଇ ଯାଉଛି ? ସେତକ ଥିଲେ ଆମେ ଅଧିକ ଉନ୍ନୟନ କାମରେ ସେ ଟଙ୍କାକୁ ତ ଲଗାଇ ପାରନ୍ତେ ?"

ହସିଲ ଦେବସ୍ମାନ, "ଦେଖ ଶାନ୍ତ, ଆମେ ସିନା କରଜ ଆଣିଥିଲେ ବୋଲି ଆମର ଅଧିକ ଲାଭ ହେଲା । ଯଦି କରଜ ନ ଆଣିଥାନ୍ତେ, ଆମର ତ କମ୍ ଲାଭ ହୋଇଥାଆନ୍ତା । ତେଣୁ ଯାହା ଆମର ଅଧିକ ଲାଭ ହେଲା ସେତକ ଟଙ୍କା ବେଙ୍କ୍‌କୁ ଦେଇଦେଲେ ଆମର କ୍ଷତି ହେଉଛି କେଉଁଠି ? ପାଞ୍ଚବର୍ଷ ପରେ କରଜ ଶୁଝିଗଲେ ଆମକୁ ଆଉ କିଛି ଦେବାକୁ ପଡ଼ିବନି । ଏହି ଟଙ୍କା ପୁରାପୂରି ଆମର ହେବ । ସେତେବେଳେ ଏହା ଆମର ଗ୍ରାମ ଉନ୍ନୟନରେ ଅଧିକ ସାହାଯ୍ୟ କରିବ ।"

"ଆମର ଗାଁମାନଙ୍କରେ ଢେର୍ ଗୁଡ଼ିଏ କୁଟୀରଶିଳ୍ପ ଥିଲା, ସେଗୁଡ଼ିକର ଉନ୍ନୟନ ନିମିତ୍ତ ଆମର କିଛି ଅର୍ଥ ବ୍ୟବସ୍ଥା ହୋଇଛି କି କଅଣ ଜାଣିନି ।" ଶାନ୍ତ କହିଲା ।

"କେଉଁ କେଉଁ କୁଟୀରଶିଳ୍ପ କଥା କହୁଛ ଶୁଣେ ?"

"ତାନ୍ତିକ, କୁମ୍ଭାର, ବଢ଼େଇ, କମାର, ଚମକାର, ଏମାନଙ୍କ ବେଉସା ଆମ ଗାଁରେ ମୂଳରୁ ରହି ଆସିଛି । ସେମାନଙ୍କ ଉନ୍ନୟନ ପାଇଁ—

"ନିଶ୍ଚୟ, ନିଶ୍ଚୟ, ବର୍ତ୍ତମାନ ସେସବୁ ଯାଗାକୁ ବିଦ୍ୟୁତ୍‌ଶକ୍ତି ଯୋଗାଇ ଦିଆଯାଉଛି, ଫଳରେ ସେମାନଙ୍କୁ ଦୈହିକ ପରିଶ୍ରମ ସେତେ କରିବାକୁ ପଡ଼ିବ ନାହିଁ । ଆମେ ସେସବୁ ସ୍ଥାନକୁ ବିଦ୍ୟୁତ୍‌ଶକ୍ତି ଯୋଗାଇଦେବା ଫଳରେ କୁମ୍ଭାରକୁ ଆଉ ଚକ ବୁଲାଇବାକୁ ପଡ଼ୁନି । ବିଜୁଳିଶକ୍ତି ଚକ ବୁଲାଉଛି । କେତେ ସୁବିଧା ହେଲା କୁହତ ? ସେମିତି ବଢ଼େଇ ଓ କମାରର । ଏହାଫଳରେ ସେମାନଙ୍କ ଉତ୍ପାଦନ ଅଧିକ ଭଲ ହେଉଛି । ତୁମେ ଜାଣିଛ ଶାନ୍ତ, ଏଥିଯୋଗୁ ଆମ ହାଟ ଓ ଅନ୍ୟ ହାଟମାନଙ୍କରେ ଆମ ଗାଁ ଉତ୍ପାଦିତ ଜିନିଷର କାଟତି ବେଶି ହେଉଛି । ତେଣୁ ଆମର ଲାଭର ପରିମାଣ ଦିନକୁଦିନ ବଢ଼ି ବଢ଼ି ଚାଲିଛି ।"

"ତୁମେ ଯେଉଁ ମିଲ କାରଖାନା ସବୁ ବସାଇବାକୁ କହୁଛ ମୁଁ କେଉଁଠି ଗୋଟିଏ ଜାଗାରେ ପଢ଼ିଥିଲି, ସେଥିରେ ଉତ୍ପାଦିତ ପଦାର୍ଥର ମୂଲ୍ୟ କାଳେ ଅଧିକ ହୁଏ ବୋଲି ? ତା ଯଦି ସତ ହୁଏ, ଆମ ଜିନିଷ ବଜାରରେ ପ୍ରତିଯୋଗିତା କରିବ କିପରି ? ବଡ଼ ବଡ଼ କାରଖାନାରେ ଉତ୍ପାଦିତ ଜିନିଷ ସହିତ ଆମ ଜିନିଷ କ'ଣ ପ୍ରତିଯୋଗିତା କରି ଠିଆ ହୋଇପାରିବ ? ଯଦି ନ ପାରେ, ଆମର ତ କ୍ଷତି ହେବ ଅପର୍ଯ୍ୟାପ୍ତ ?"

"ତୁମେ ଯାହା ଆଶଙ୍କା କରୁଛ ତାହା ଠିକ୍ ଶାନ୍ତ । ଅବଶ୍ୟ ଆମ ଜିନିଷର ଦାମ୍ କିଛି ଅଧିକ ହେବ । ବର୍ତ୍ତମାନ ବଜାରରେ ତ ସବୁ ଜିନିଷର ଏକାନ୍ତ ଅଭାବ । ତେଣୁ ସାମାନ୍ୟ କିଛି ଅଧିକ ଦର ହେଲେବି ଏହା ଯେ ନ କଟି ରହିଯିବ ତାହା ମୁଁ ଭାବୁନି । ବଜାରରେ ଯଦି ବଡ଼ ବଡ଼ କାରଖାନାର ପଦାର୍ଥ ଅଧିକ ପରିମାଣରେ ମିଳୁଥାନ୍ତା, ଆମକୁ ଚିନ୍ତା କରିବାକୁ ପଡ଼ନ୍ତା । କିନ୍ତୁ ଆମ ଲୋକସଂଖ୍ୟା ବୃଦ୍ଧିହେତୁ ସବୁଦିନ ପାଇଁ ଆମ ବଜାର କଅଣ୍ଟିଆ ହୋଇ ରହିଥିବ, ତେଣୁ ଆମର ଜିନିଷ କାଟତିରେ କିଛି ଅସୁବିଧା ହେବନି ବୋଲି ମୁଁ ଭାବୁଛି ।"

# ସଇଁତିରିଶ

"ଆମ ଗାଁମାନଙ୍କରେ କ'ଣ ଦିନକୁଦିନ କ୍ୟାନ୍ସର ରୋଗ ବ୍ୟାପିବାରେ ଲାଗିଲାଣି ? ଦିନ ଚାରିଦିନ ତଳେ ଗୋବର୍ଦ୍ଧନର ବାପା ଆମ ହସ୍ପିଟାଲକୁ ଯାଇଥିଲେ । ଆମ ଡାକ୍ତରବାବୁ ପରୀକ୍ଷା କରି କହିଲେ, ତାଙ୍କ ପାଟିରେ କର୍କଟରୋଗ ହୋଇଛି । କର୍କଟ ରୋଗର ଚିକିତ୍ସା ପାଇଁ ଆମ ଡାକ୍ତରଖାନାରେ କିଛି ବ୍ୟବସ୍ଥା ନାହିଁ । ତାଙ୍କୁ ଡାକ୍ତରବାବୁ ଚିଠି ଲେଖି ପଠାଇଲେ କଟକ ବଡ଼ ଡାକ୍ତରଖାନାକୁ । ପୁଣି କାଲି ଧଡ଼ି ଦାସ ଡାକ୍ତରଖାନାକୁ ଯାଇଥିଲା, ଡାକ୍ତର କ'ଣ କହୁଛନ୍ତି, ତା'ର ବି ସେହି ପାଟି କେନ୍ସର । ହଠାତ୍ ଏତେଗୁଡ଼ିଏ କେନ୍ସର ରୋଗ ଗୋଟିକ ପରେ ଗୋଟିଏ ଆମ ଗାଁକୁ ଆସିଲା କୁଆଡ଼ୁ ?" ଶାନ୍ତି ପଚାରିଲା ।

"ଆଁ, ପାଟି କେନ୍ସର ?" ଚମକିପଡ଼ିଲା ଦେବସ୍ନାନ । ତୁମକୁ କିଏ କହିଲା ?"

"ବାପା ମୋତେ କହୁଥିଲେ । ଗୋବର୍ଦ୍ଧନର ବାପାକୁ ନେଇ ସେ କଟକର ବଡ଼ ଡାକ୍ତରଖାନାକୁ ଯାଇଥିଲେ । ଗୋବର୍ଦ୍ଧନର ବାପା ବର୍ତ୍ତମାନ ସେହି ଡାକ୍ତରଖାନାରେ ଅଛି । ବାପା କହୁଛନ୍ତି, କାଲେ ତା'ର ପାଟିର ଅଧେ ଅଂଶ କାଟି ଦିଆଯିବ । ପାଟିରୁ ଅଧେ କାଟିଦେଲେ ମୁହଁଟା ଫାଙ୍କିଆ ଦିଶିବନି ?"

"ଏହା ଭିତରେ ଏତେ କଥା ହୋଇଗଲାଣି, ମୁଁ କେମିତି ଜାଣି ପାରିଲିନି ଶାନ୍ତି ?"

"ବାପା କଟକରୁ ଫେରି ତୁମକୁ ସେଇକଥା କହିବା ପାଇଁ ଆସିଥିଲେ । ତୁମେ ତ ନଥିଲ । ତୁମେ ଯାଇଥିଲ ଇନ୍ସପେକ୍ଟରଙ୍କ ଅଫିସ୍‌କୁ । ମୋତେ ସବୁ କହିଦେଇଗଲେ ।"

"ଦୁଇଟା କେସ୍ ଯେତେବେଳେ ଧରା ପଡ଼ିଲାଣି ନିଶ୍ଚୟ ଆହୁରି ଅନେକଗୁଡ଼ିଏ କେସ୍ ଆମ ଲୋକଙ୍କ ଭିତରେ ଲୁଚି ରହିଥିବ । ସେଗୁଡ଼ିକ ସଅଳ ସଅଳ ଡିଟେକ୍ସନ ହେବା କଥା । ମୁଁ ଯାଏ ଡାକ୍ତରଙ୍କ ସହ ପରାମର୍ଶ କରି ଆସେ ।"

ଦେବସ୍ନାନ ସଙ୍ଗେ ସଙ୍ଗେ ଡାକ୍ତରବାବୁଙ୍କ ଘରେ ଯାଇ ପହଞ୍ଚିଗଲା । ଡାକ୍ତରବାବୁ ଡାକ୍ତରଖାନାକୁ ବାହାରୁଥିଲେ । ଦେବସ୍ନାନବାବୁଙ୍କୁ ତାଙ୍କ ଘରଠାରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କୁ ନେଇ ଘରେ ବସାଇ ଆସିବାର କାରଣ ପଚାରିଲେ ।"

ତାଙ୍କ ଗାଁରେ ଧରା ପଡ଼ିଥିବା ଦୁଇଗୋଟି କେନ୍ସର ରୋଗୀ କଥା ଦେବସ୍ନାନ ଡାକ୍ତରବାବୁଙ୍କୁ ପଚାରିଲା । ଡାକ୍ତରବାବୁ ରୋଗୀ ଦୁଇଟି ସମ୍ବନ୍ଧରେ ତାଙ୍କ ଅଭିଜ୍ଞତା ବର୍ଣ୍ଣନା କରିଗଲେ । ଏହି ପାଟି କେନ୍ସର ସମ୍ଭବତଃ ଏହି ଗାଁର ଲୋକେ କଲନର ଦୁକ୍ତା ଜାକୁଥିବାରୁ ହୋଇଥାଇପାରେ ବୋଲି ସେ ତାଙ୍କ ଆଶଙ୍କା ପ୍ରକାଶ କଲେ । ଏହି ଦୁଇଟି କେଶ୍ ଧରା ପଡ଼ିବା ପରେ ଆଉ ଯେ ସେମିତି ରୋଗ ଗାଁରେ ଅନ୍ୟମାନଙ୍କଠାରେ ନଥିବ,

ତା ବ ନୁହେଁ । ତେଣୁ ଶୀଘ୍ର ଏହି ଗାଁଗୁଡ଼ିକର ସମସ୍ତ ଲୋକଙ୍କୁ ପରୀକ୍ଷା କରି ଏହି ରୋଗ ଆଉ କାହାଠାରେ ଅଛି କି ନାହିଁ ଜାଣିନେବା ସର୍ବାଦୌ ବାଞ୍ଛନୀୟ ।"

"ତା'ହେଲେ ଆପଣ କ'ଣ କହୁଛନ୍ତି ଡାକ୍ତରବାବୁ ? ପାଟି କେନ୍‌ସର ପାଇଁ ଗାଁର ପ୍ରତ୍ୟେକ ସ୍ତ୍ରୀ ଓ ପୁରୁଷଙ୍କ ପାଟିକୁ ପରୀକ୍ଷା କରିବାକୁ ପଡ଼ିବ ?"

"ହଁ, ସେପରି କଲେତ ସବୁଠାରୁ ଭଲ ହୁଅନ୍ତା । ଏହି ରୋଗ ଆଉ କାହାଠାରେ ଯଦି ଆରମ୍ଭ ହେଉଥିବାର ପ୍ରମାଣ ପାଆନ୍ତେ, ତେବେ ସେମାନଙ୍କୁ ରୋଗମୁକ୍ତ କରିବା ସହଜସାଧ୍ୟ ହୁଅନ୍ତା ।"

"ତା'ହେଲେ ଡାକ୍ତରବାବୁ, କାଲିଠାରୁ ଆପଣ ପ୍ରତ୍ୟେକଙ୍କ ଘରକୁ ଯାଇ ସେମାନଙ୍କୁ ପରୀକ୍ଷା କରିବା ଆରମ୍ଭ କରି ଦିଅନ୍ତୁ । ଆପଣଙ୍କୁ ସାହାଯ୍ୟ କରିବା ପାଇଁ ମୁଁ ଆଉ ଦୁଇଜଣ ଲୋକ ଦେଉଛି । ଦେଖିବେ, ଯେମିତି ଗାଁର କୌଣସି ଲୋକ ଏହି ପରୀକ୍ଷାରୁ ଛାଡ଼ ନ ପାଏ ।"

ଆଠଗୋଟି ଗାଁର ପ୍ରତ୍ୟେକ ଲୋକଙ୍କୁ ପରୀକ୍ଷା କରି ସେମାନଙ୍କଠାରେ କର୍କଟରୋଗ ଅଛି କି ନାହିଁ ଜାଣିବା ପାଇଁ ଡାକ୍ତରବାବୁଙ୍କୁ ପ୍ରାୟ ମାସଟିଏ ସମୟ ଲାଗିଗଲା । ଡାକ୍ତରଖାନାର ଗତାନୁଗତିକ କାମ ସାରି ଗାଁ ଭିତରକୁ ଯାଇ ପରୀକ୍ଷା କରିବାକୁ ପଡ଼ିଲା । ଡାକ୍ତରବାବୁ ଯେଉଁଦିନ ତାଙ୍କ ରିପୋର୍ଟ ଆଣି ଦେବସ୍ଥାନବାବୁଙ୍କୁ ଦେଲେ, ସେତେବେଳେ କାର୍ଯ୍ୟକାରୀ କମିଟିର ମିଟିଂ ଚାଲିଥାଏ । ଦେବସ୍ଥାନ ରିପୋର୍ଟଟି ଦେଖି ଚମକିପଡ଼ିଲା । "ଆଁ, ଅଠରଜଣଙ୍କଠାରେ ଏହି କେନ୍‌ସର ରୋଗ ଆରମ୍ଭ ହୋଇଛି ?" ସେମାନଙ୍କ ଚିକିତ୍ସା ପାଇଁ ଯାହା ଖରଚ ହେବ ସେଥିପାଇଁ ଚିନ୍ତା ନକରି ସେମାନଙ୍କ ଚିକିତ୍ସା ଯେମିତି ଖୁବ୍ ଶୀଘ୍ର ଆରମ୍ଭ ହୁଏ, ତଦ୍‌ବିର କରିବାକୁ ଅନୁରୋଧ ଜଣାଇଲା ଦେବସ୍ଥାନ ।

ଡାକ୍ତରବାବୁ ଚାଲିଗଲା ପରେ ଦେବସ୍ଥାନ ଏହି ରୋଗ ସମ୍ପର୍କରେ ଆଲୋଚନା ପକାଇଲା କାର୍ଯ୍ୟକାରୀ କମିଟିରେ । ଏହି ଆଠଗୋଟି ଗାଁରୁ ଯଦି କୋଡ଼ିଏଜଣ ଲୋକ ପାଟି କେନ୍‌ସରରେ ଆକ୍ରାନ୍ତ ହେଲେ, ତେବେ ଏହା କମ୍ ବଡ଼ ଦୁଃଖର ବିଷୟ ନୁହେଁ ? ଡାକ୍ତରଙ୍କ ମତ ଅନୁସାରେ ଲୋକମାନଙ୍କର ପାଟିରେ ଦୁକୁତା ଜାକିବା ହିଁ ଏହି ରୋଗର କାରଣ ହୋଇଥିବାରୁ କାର୍ଯ୍ୟକାରୀ କମିଟି ଏ ସମ୍ପର୍କରେ ଚିନ୍ତା କରିବା ଉଚିତ ।

କାର୍ଯ୍ୟକାରୀ ସମିତିର ସବୁଠାରୁ ପୁରୁଣା ସଭ୍ୟ ଗୋଲକବାବୁ ଉଠି କହିଲେ, ଆମେ ଆମ ଗାଁରେ ଯେଉଁ ଦୁକୁତା ଚାଷ କରୁଚୁ, ସେହି ଚାଷ ହିଁ ଏହି ରୋଗର କାରଣ । ଦୁକୁତା ଅମଳ ବେଳେ ଏହି ଗାଁର ବହୁ ଲୋକ ଲୁଚିଛପାରେ ଦୁକୁତା ସଂଗ୍ରହ କରି ବର୍ଷକ ପାଇଁ ରଖି ଦିଅନ୍ତି । ସେଥିରୁ ପ୍ରତିଦିନ କଛି କଛି କାଢ଼ି କଲରେ ଜାକି ଏ ରୋଗର ଶୀକାର ହୁଅନ୍ତି ।"

ଗୋଲକବାବୁଙ୍କ ମତକୁ ଅନ୍ୟମାନେ ସତ୍ୟ ବୋଲି କହିଲେ । ଏହି କାରଣ ଶୁଣି ବହୁ ବିବ୍ରତ ହୋଇପଡ଼ିଲି ଦେବସ୍ମାନ । ତାଙ୍କ ପାଟିରୁ ବାହାରିପଡ଼ିଲି, "ତେବେ ଆମ ଗାଁମାନଙ୍କରେ ତମାଖୁ ଚାଷ ବନ୍ଦ କରିଦେଲେ ଆଉ ସେ ଭୟ ରହିବନି ।"

"ସେମାନେ କ'ଣ ଦୋକାନରୁ, ହାଟରୁ କି ବଜାରରୁ ତମାଖୁ କିଣି ପାରିବେନି ?" ମେମ୍ବରଙ୍କ ଭିତରୁ କେତେଜଣ ପଚାରିଲେ ।

"ତା ସତ, କିନ୍ତୁ ଦୋକାନ, ହାଟରୁ ବା ବଜାରରୁ ସେମାନେ ସେତେ ସୁବିଧାରେ କିଣି ପାରିବେନି । ଏଥିରେ ହାତରୁ ପଇସା ଖର୍ଚ୍ଚ କରିବାକୁ ପଡ଼ିବ ।"

"କିନ୍ତୁ ତା ଯଦି ହୁଏ, ତେବେ ଆମର ଏକ ବଡ଼ ଆୟ ବନ୍ଦ ହୋଇଯିବ । ଆମ ଉପରେ ନିର୍ଭର କରୁଥିବା କୋମ୍ପାନୀମାନଙ୍କ ବ୍ୟବସାୟ ମାଡ଼ ଖାଇଯିବ ।"

"ତା'ହେଲେ ଆମକୁ ବର୍ତ୍ତମାନ ବିଚାର କରିବାକୁ ପଡ଼ିବ, ଆମେ କ'ଣ ଚାହୁଁ ? ଆମ ଲୋକଙ୍କ ଜୀବନ ଚାହୁଁ ନା ଆମ ଗାଁର ଆୟ ଚାହୁଁ ? ଆୟଟା ଆମର ବିଶେଷ କମି ଯିବନି, କାରଣ ଆମେ ଯେଉଁଠି ତମାଖୁ ଚାଷ କରୁଥିଲେ ସେଠି ବର୍ତ୍ତମାନ ଝୋଟ କି ଆଖୁ ଚାଷ କରିବା ।" ଦେବସ୍ମାନ କହିଲି ।

"ତମାଖୁ ଚାଷ ବନ୍ଦ କରିଦେଲେ ଆମ ଲୋକଙ୍କୁ କେନ୍‌ସର ରୋଗ ନ ହେବ ବୋଲି କ'ଣ କେହି ଗ୍ୟାରେଣ୍ଟି ଦେଇପାରିବେ ?" କେତେଜଣ ପଚାରିଲେ ।

"ଆପଣମାନେ ଯାହା କହିବାକୁ ଚାହୁଁଛନ୍ତି, ମୁଁ ବୁଝୁଛି । ତମାଖୁ ଚାଷ ବନ୍ଦ କରିଦେଲେ କେନ୍‌ସର ରୋଗ ହେବନି, ଏହା କେହି ଗ୍ୟାରେଣ୍ଟି ଦେଇ ପାରିବେନି । ଏମିତିକି ଯେଉଁ ଲୋକମାନେ ଗୁଣ୍ଡି ଖାଆନ୍ତି ସେମାନଙ୍କୁ ସମସ୍ତଙ୍କୁ ଯେ କେନ୍‌ସର ରୋଗ ହେଉଛି, ତା ବି ନୁହେଁ । ତମାଖୁ ନ ଖାଉଥିବା ଲୋକଙ୍କୁ ଯେ କେନ୍‌ସର ନ ହେଉଛି ତା ବି ନୁହେଁ । ଆମେ ଯଦି ଏହି ପ୍ରଶ୍ନକୁ ଧରି ବସିବା, ତେବେ ତମାଖୁ ଚାଷ ବନ୍ଦ କରିବା ସପକ୍ଷରେ କୌଣସି ଯୁକ୍ତି ମିଳିବନି । ତେବେ ଯେତେବେଳେ ଆମର ହୃଦ୍‌ବୋଧ ହେଉଛି ଯେ ତମାଖୁ ଚାଷ ଏଥିପାଇଁ ପ୍ରକାରାନ୍ତରେ ଦାୟୀ, ସେତେବେଳେ ଆମେ ଏହି ଚାଷ ବିରୋଧରେ ସିଦ୍ଧାନ୍ତ ଗ୍ରହଣ କରିବା ଛଡ଼ା ଅନ୍ୟ ଉପାୟ ନାହିଁ ।"

ଦେବସ୍ମାନ ଯେତେବେଳେ କିଛି କହେ, କାର୍ଯ୍ୟକାରୀ ସମିତିର ସଭ୍ୟମାନେ ବିଶେଷ କିଛି ଯୁକ୍ତି କରନ୍ତି ନାହିଁ । କାରଣ ସେମାନଙ୍କର ଧାରଣା, ଦେବସ୍ମାନବାବୁ ସେମାନଙ୍କଠାରୁ ଅଧିକ ଜ୍ଞାନୀ । ଏହି ଗାଁର ମଙ୍ଗଳ ସେ ଯେତେ ଚାହାନ୍ତି, ଅନ୍ୟମାନେ ସେତେ ଚାହିଁ ପାରିବେନି ।

ତେଣୁ ତାଙ୍କର କଥା ହିଁ ରହିଲା । ଗୋବିନ୍ଦପୁର ଗ୍ରାମପଞ୍ଚାୟତର ଗ୍ରାମଗୁଡ଼ିକରୁ ସବୁଦିନ ପାଇଁ ତମାଖୁ ଚାଷ ଉଠାଇ ଦିଆଗଲା । ମୂଳୁ ମାଇଲେ ଯିବ ସର, ଦେବଙ୍କ ସଙ୍ଗେ କମ୍ପା କଲା । ତମାଖୁ ବଦଳରେ ଝୋଟ ଚାଷ ଓ ଆଖୁଚାଷ ଚାଲିଲା ।

ଜନକୁଜନ ଗୋବିନ୍ଦପୁର ସମେତ ଆଠଖଣ୍ଡି ଗାଁରେ ଯେଉଁ ଅଭୂତପୂର୍ବ ଓ ଅଶ୍ରୁତପୂର୍ବ ଉନ୍ନତିମାନ ହେଲା, ତାକୁ ଦେଖି ଆଖପାଖ ଗାଁର ଲୋକେ ଦେବସ୍ଥାନବାବୁଙ୍କ ନିଷ୍ଠାପରତାକୁ ଧନ୍ୟ ଧନ୍ୟ କଲେ । ସରକାର ସେମାନଙ୍କ ଗାଁର ଉନ୍ନତି କରାଇବେ, ସେମାନଙ୍କ ଲୋକ ପ୍ରତିନିଧିମାନେ ସେମାନଙ୍କ ଗାଁରେ ଦୁଧ ମହୁର ନଈ ବୁହାଇବେ, ସେମାନେ ଏହିଭଳି ଫାଙ୍କା ଆଓ୍ୱାଜ ଶୁଣି ଶୁଣି ସେମାନଙ୍କ କାନ ବଧିର ପଡ଼ିଗଲାଣି । ସ୍ୱାଧୀନତା ବେଳେ ସେମାନେ ଯେଉଁ ଅବସ୍ଥାରେ ଥିଲେ, ସ୍ୱାଧୀନତାର ଏତେବର୍ଷ ପରେ ବି ସେମାନଙ୍କ ଅବସ୍ଥାର କିଛି ମାତ୍ର ଉନ୍ନତି ହେବାକୁ ନାହିଁ ବରଂ ଅବନତିଆଡ଼କୁ ଆଗେଇ ଚାଲିଛି ।

ଗାଁର ଉନ୍ନୟନ ପାଇଁ ଯେଉଁ ଟଙ୍କା ସରକାରରୁ ଆସୁଛି, ତାହା କେତେଲୋକଙ୍କ ହାତ ଚିକ୍‌କଣ କରିବା ଛଡ଼ା ସାଧାରଣଙ୍କ ଉପକାରରେ ଲାଗି ପାରୁନି ।

ସେମାନେ ବେଳେବେଳେ ଆଶ୍ଚର୍ଯ୍ୟ ହୁଅନ୍ତି, ସେମାନଙ୍କ ଅପେକ୍ଷା ଅନେକ କମ୍ ସରକାରୀ ସାହାଯ୍ୟ ପାଇ ଗୋବିନ୍ଦପୁରର ଲୋକେ କେମିତି ଏତେ ଜୋରରେ ଆଗେଇ ଚାଲିଛନ୍ତି ? ଅଥଚ ସେମାନଙ୍କ ଗାଁରେ କିଛି ହେବାକୁ ନାହିଁ ?

ଗୋବିନ୍ଦପୁର ଗାଁରେ ଫସଲ ଭଲ ହେଉଛି, ସମସ୍ତଙ୍କର ନୂଆ ନୂଆ ଘର, ଗାଁମାନଙ୍କରେ ନୂଆ ନୂଆ ରାସ୍ତା, ସ୍କୁଲ, ଡାକ୍ତରଖାନା, ଡାଏରୀଫାର୍ମ, ପଶୁ ଡାକ୍ତରଖାନା, କ୍ଲବ, ମହିଳା ସମିତି, ଛୋଟ ଛୋଟ କଳକାରଖାନା, ଗୋଦାମଘର, ଟ୍ରକ୍, ଟ୍ରାକ୍ଟର, ପାଓ୍ୱାରଲୁମ୍ ଆଦି ଯାବତୀୟ ଜିନିଷ ହୋଇପାରିଛି ଅଥଚ ସେମାନଙ୍କର କିଛି ହେବାକୁ ନାହିଁ ।

ଦେବସ୍ଥାନବାବୁଙ୍କ ଯୋଗୁଁ ଏସବୁ ହୋଇପାରିଛି ନିଶ୍ଚୟ । ଦେବସ୍ଥାନବାବୁ ପ୍ରକୃତରେ ମଣିଷ ନୁହଁନ୍ତି, ମଣିଷ ରୂପରେ ସେ ଦେବତା । ଦଶ ବାରବର୍ଷ ଭିତର ଏକ ଅତି ଦୁଃସ୍ଥ ଗାଁ ଯଦି ଏକ ସ୍ୱୟଂସମ୍ପୂର୍ଣ୍ଣ ସମୃଦ୍ଧିଶାଳୀ ଗାଁରେ ପରିଣତ ହୋଇପାରିଲା, ତେବେ ଏହା ପଛରେ ଯାହାର ହାତ ଅଛି ତାକୁ ମଣିଷରୂପୀ ଭଗବାନ କୁହାଯିବ ନାହିଁ ତ ଆଉ କ'ଣ କୁହାଯିବ ?

ଗୋବିନ୍ଦପୁର ଗାଁର ପ୍ରସିଦ୍ଧି ହୁ ହୁ ହୋଇ ଚାରିଆଡ଼େ ବ୍ୟାପିଗଲା । ଆଖପାଖ ଗାଁର ଲୋକମାନେ ଦଳ ଦଳ ହୋଇ ଏହି ଗାଁର ସୁସ୍ଥ ବାତାବରଣ ଓ ସମୃଦ୍ଧି ଦେଖିବା ପାଇଁ ଧାଡ଼ି ଲଗାଇଲେ । ଦଶ ବାରବର୍ଷ ଭିତରେ ଗାଁରେ ଯାହାସବୁ ଉନ୍ନତି ହୋଇଛି, ଲୋକେ ଆଖିରେ ଦେଖି ମଧ୍ୟ ନିଜ ନିଜ ଆଖିକୁ ବିଶ୍ୱାସ କରି ପାରିଲେନି । ଏ ଗାଁରେ ଆଜି କ'ଣ ନ ହୋଇଛି ସତେ ? ଏହି ଗାଁଗୁଡ଼ିକର କେମିତି ଏଭଳି ଉନ୍ନତି ହେଲା, ଲୋକେ ଭାବି ଭାବି କିଛି ଅଳକୂଳ ପାଆନ୍ତିନି ।

ଦଳ ଦଳ ହୋଇ ଦେବସ୍ଥାନବାବୁଙ୍କୁ ଆସି ଦେଖା କରନ୍ତି । ଦେବସ୍ଥାନ ହସି ହସି କହନ୍ତେ ସେ କିଛି କରି ନାହିଁ । ଏହା ହେଉଛି ଗାଁ ଲୋକଙ୍କ କଠିନ ପରିଶ୍ରମର ଫଳ । ଗାଁ

ଲୋକମାନେ ନିଜେ କଠିନ ପରିଶ୍ରମ କରି ଗାଁର ଏଭଳି ଉନ୍ନତି କରି ପାରିଛନ୍ତି । ଗାଁର ଉନ୍ନତି ପାଇଁ ସେ କିଛି କରି ନାହାନ୍ତି । ଖାଲି ବାଟ ଦେଖାଇଛନ୍ତି ମାତ୍ର ।

ଗାଁ ଲୋକଙ୍କୁ ପଚାରିଲେ ସେମାନେ ହସି ହସି କହନ୍ତି, "ଏ ଗାଁରେ କେମିତି ଏଭଳି ଉନ୍ନତି ହେଲା ଆମେ କିଛି କହି ପାରିବୁନି । ଦେବସ୍ନାନବାବୁ ଏହିସବୁ ଉନ୍ନତି ମୂଳରେ । ସେ ହିଁ ଜାଣନ୍ତି ଗାଁର ଏସବୁ ଉନ୍ନତି କେମିତି ସମ୍ଭବ ହେଲା । ଗାଁର ଉନ୍ନତି ପାଇଁ ଆମ୍ଭେମାନେ ଖଟିଛୁ ସତ, କିନ୍ତୁ ବାଟ ଦେଖାଇଛନ୍ତି ଦେବସ୍ନାନବାବୁ । ତାଙ୍କର ପ୍ରେରଣା ପାଇ ନ ଥିଲେ ଏହି ଗାଁ ଗୁଡ଼ିକ ବର୍ତ୍ତମାନର ଉନ୍ନତ ଅବସ୍ଥାକୁ ଆସିପାରି ନ ଥାନ୍ତା ।"

ଗାଁ ଗୁଡ଼ିକର ଉନ୍ନତି ଦେଖି ରାଜ୍ୟ ବାହାରର ସମ୍ବାଦପତ୍ର ପ୍ରତିନିଧିମାନେ ଆସି ଏ ଅଞ୍ଚଳ ସବୁ ବୁଲିଗଲେଣି । ଫେରିଗଲାବେଳେ ସେମାନଙ୍କର ଦେବସ୍ନାନବାବୁଙ୍କ ଉଚ୍ଛ୍ୱସିତ ପ୍ରଶଂସା । ବିନୋବାଜୀ ଯାହାକୁ ସ୍ୱପ୍ନ ଦେଖିଥିଲେ, ତାକୁ କାର୍ଯ୍ୟରେ ପରିଣତ କରି ଦେଖାଇଦେଲେ ଦେବସ୍ନାନବାବୁ । ଲୋକଶକ୍ତିର କାର୍ଯ୍ୟକାରିତାର ସାମର୍ଥ୍ୟ କେତେ ତାକୁ କାର୍ଯ୍ୟକାରୀ କରାଇ ଦେଖାଇଦେଲେ ସେ । ଦେବସ୍ନାନବାବୁ ସାଧାରଣ ମାନବ ନୁହଁନ୍ତି, ସେ ଅତି ମାନବ ।

ଏହି ଗାଁର ପ୍ରତ୍ୟେକ ଉନ୍ନୟନ ଲୋକମାନଙ୍କ ଦୈହିକ ପରିଶ୍ରମ ଫଳରେ ହୋଇଛି । ଏ ଗାଁର ଲୋକେ ହାତପାତି କାହାକୁ ସାହାଯ୍ୟ ମାଗି ନାହାନ୍ତି । ସେମାନେ କହନ୍ତି ଆମ ହାତ ଗୋଡ଼ ହେଉଛି ଆମର ପାଣ୍ଠି । ସରକାରଙ୍କ ପାଣ୍ଠିକୁ ଆଶା କରି ରହିଲେ କିଛି ହୋଇ ପାରିବନି । ସମସ୍ତେ ମିଳିମିଶି ଯଦି କୌଣସି କାମ କରନ୍ତି ତେବେ ଏହା ଯେତେ ବ୍ୟାପକ ହୋଇପାରିବ, ସରକାରଙ୍କ ସାହାଯ୍ୟ ତା ଆଗରେ କିଛି ନୁହେଁ । ସରକାରୀ ସାହାଯ୍ୟ ଆସେ କେତେ ଲୋକଙ୍କ ପକେଟକୁ ଯିବା ପାଇଁ, ଯାହା ବା କିଛି କାମ ହୁଏ, ତାହା ସମୁଦ୍ରକୁ ଶଙ୍ଖେ ପଣା ପରି କିଛି ନୁହେଁ ।

## ଅଠତିରିଶ

ଭୁଦାନୀମାନେ ମଧ୍ୟ ଦେବସ୍ନାନବାବୁଙ୍କ କୃତିତ୍ୱରେ ପାଗଳ । ସେମାନେ କେବେ ଆଶା କରି ନ ଥିଲେ, ଦେବସ୍ନାନବାବୁ ଅସଂଖ୍ୟ ସମସ୍ୟାପୂର୍ଣ୍ଣ ଓ ଅଭାବ ଅନାଟନ ଭିତରେ ସଢୁଥିବା ଗ୍ରାମଗୁଡ଼ିକୁ ନେଇ ଲୋକଶକ୍ତିକୁ ଖଟାଇ ଏଭଳି ଅଦୃଷ୍ଟପୂର୍ବ ଓ ଅଶ୍ରୁତପୂର୍ବ କାର୍ଯ୍ୟସାଧନ କରିପାରିବେ । ବିନୋବାଜୀଙ୍କ ଦଳର ଭିନ୍ନ ଭିନ୍ନ ଲୋକେ ଥରକୁଥର ଏ ଗାଁକୁ ଆସି ଏହି ଗାଁର ଆଶାତୀତ ଉନ୍ନତି ଦେଖି ଯାଇ ବିନୋବାଜୀଙ୍କ କ୍ୟେମ୍ପରେ ପ୍ରଚାର କରିଦେଲେଣି ।

ସେମାନଙ୍କ ମୁହଁରେ ଗୋଟିଏ କଥା, ବିନୋବାଜୀଙ୍କ ସ୍ୱପ୍ନ ଦେବସ୍ନାନବାବୁଙ୍କର ବାସ୍ତବତା । ଗ୍ରାମଦାନ ନେଇ ବିନୋବାଜୀ ଯେଉଁ ସ୍ୱପ୍ନ ଦେଖିଥିଲେ, ସେହି ସ୍ୱପ୍ନକୁ କାର୍ଯ୍ୟରେ ରୂପାୟିତ କଲେ ଦେବସ୍ନାନବାବୁ । ବିନୋବାଜୀ କେବେ କଳ୍ପନା କରି ନଥିଲେ ଲୋକମାନେ ଯେତେବେଳେ ଏକାଠି ହୋଇ ନିଜ ସ୍ୱାର୍ଥ ପାଇଁ କିଛି ନକରି ଗାଁର ସମୂହ ସ୍ୱାର୍ଥ ପାଇଁ କିଛି କରନ୍ତି, ତାହା ଏତେ ସୁଦୂରପ୍ରସାରୀ ହୋଇପାରେ ବୋଲି । ବିନୋବାଜୀଙ୍କ ବହୁ ପାର୍ଶ୍ୱଚର ଏହି ଅଞ୍ଚଳକୁ ଆସି ଦେବବାବୁଙ୍କ କାର୍ଯ୍ୟ ଦେଖି ବିନୋବାଜୀଙ୍କ ପାଖରେ ଦେବସ୍ନାନବାବୁଙ୍କର ନାହିଁ ନ ଥିବା ପ୍ରଶଂସା କରନ୍ତି ।

ନିଜ ସ୍ୱପ୍ନ ସାର୍ଥକ ହୋଇଥିବାରୁ ବିନୋବାଜୀ ଖୁବ୍ ପ୍ରୀତ ହୋଇ ଦେବସ୍ନାନଙ୍କୁ ଆଶୀର୍ବାଦ କରନ୍ତି । ବିନୋବାଜୀଙ୍କ କେମ୍ପରେ ଦେବସ୍ନାନବାବୁଙ୍କର ଯେତିକି ପ୍ରଶଂସା, ତା'ଠାରୁ ବେଶି ଶୁଣାଯାଏ ଭାରତର ବଡ଼ ବଡ଼ ଖବର କାଗଜରେ । କେତେ ଖବର କାଗଜ ଦେବସ୍ନାନଙ୍କୁ କେତେ ଉଠାଇ ଯେ ପ୍ରଶଂସା କରନ୍ତି, ତା'ର କଳନା ନାହିଁ । ଦେବସ୍ନାନବାବୁ ଗ୍ରାମଦାନରେ ପାଇଥିବା ଗ୍ରାମଗୁଡ଼ିକୁ ଏତେ ଉପରକୁ ଉଠାଇ ପାରିବେ ବୋଲି କେହି କେବେ ଧାରଣା କରି ନ ଥିଲେ, ଆଶା କରିବା ତ ଦୂରର କଥା ।

ପାଖଆଖ ଗାଁର ଲୋକମାନେ ଏଠା ଗ୍ରାମବାସୀମାନଙ୍କ ନିସ୍ୱାର୍ଥପର କାର୍ଯ୍ୟ ଦେଖି ସେମାନଙ୍କୁ ଖାଲି ପ୍ରଶଂସା କରନ୍ତିନି, ଭାବନ୍ତି ସେମାନେ ଯଦି ନିଜେ ଏଭଳି କରିପାରନ୍ତେ, ତେବେ ସେମାନଙ୍କ ଗାଁର ଉନ୍ନତି ଏହି ଗାଁ ଭଳି ହୋଇପାରନ୍ତା ନିଶ୍ଚୟ ।

ବେଳେବେଳେ ପାଖଆଖ ଗାଁରୁ ମୁଖିଆ ମୁଖିଆ ଲୋକମାନେ ଆସି ଦେବସ୍ନାନ-ବାବୁଙ୍କ ସହିତ ପରାମର୍ଶ କରନ୍ତି । ସେ କେଉଁ ରୀତିରେ ଏହି ଗାଁର ଦୁରବସ୍ଥାକୁ ବଦଳାଇ ଉନ୍ନତ ଅବସ୍ଥାକୁ ଆଣିପାରିଲେ ସେକଥା ଟିକିନିଖି କରି ପଚାରି ବୁଝନ୍ତି । ଦେବସ୍ନାନ ନିଜେ ଅନୁସରଣ କରିଥିବା ବାଟ ସେମାନଙ୍କୁ ବତାଇଦିଏ । ସେଥିସହି ଉତ୍କଳମଣି ଗୋପବନ୍ଧୁଙ୍କ ଗୋଟିଏ ଗୀତ ବୋଲି ଶୁଣାଇଦିଏ, "ଜାତି ନନ୍ଦିଘୋଷ ଚାଲିବ କି ଭାଇ ସ୍ୱାର୍ଥକୁ ସାରଥୀ କଲେ ? ସ୍ୱାର୍ଥତ୍ୟାଗ ନ କଲେ, ଗାଁର ସମୂହ ଉନ୍ନତି କଥା ଚିନ୍ତା ନ କଲେ, ଗାଁର ଏଭଳି ଉନ୍ନତି ହୋଇ ପାରିବନି ।"

ପାଖଆଖ ଗାଁର ଲୋକମାନେ ଦେବସ୍ନାନବାବୁଙ୍କୁ ଡାକନେଇ ସେମାନଙ୍କ ଗାଁର କେମିତି ଉନ୍ନତି ହୋଇପାରିବ ତହିଁର ଟିକିନିଖି ପଦ୍ଧତି ବୁଝି ନିଅନ୍ତି । ବିଭିନ୍ନ ଗାଁର ଲୋକମାନେ ଏହି ରୀତିରେ ଗାଁ ଜମିଗୁଡ଼ିକୁ ଗ୍ରାମଦାନ ସଂସ୍ଥାକୁ ଟେକଦେଇ ଗାଁ ଗୁଡ଼ିକର ସମୂହ ଉନ୍ନତି କଥା ଚିନ୍ତା କରି ବସନ୍ତି । ଦେବସ୍ନାନବାବୁ ସେମାନଙ୍କୁ ଠିକ୍ ବାଟ ବତାଇଦିଅନ୍ତି ।

ଦେବସ୍ନାନବାବୁ ଯେଉଁ ପଦ୍ଧତିରେ ଗୋବିନ୍ଦପୁର ଗାଁ ଗୁଡ଼ିକର ଉନ୍ନତି କରି ପାରିଲେ, ଠିକ୍ ସେହି ପଦ୍ଧତିରେ ଅନ୍ୟ ଗାଁ ଗୁଡ଼ିକର ଉନ୍ନତି କରିବାକୁ ଦେବବାବୁଙ୍କ

ପାଖକୁ ଅସଂଖ୍ୟ ଅନୁରୋଧ ଆସେ । ଲୋକେ ଆସି ବାଧ୍ୟ କରନ୍ତି ସେମାନଙ୍କ ପାଇଁ କିଛି କରିବାକୁ । ଦେବବାବୁ ବାଧ୍ୟହୋଇ ଅନ୍ୟ ଗାଁ ଗୁଡ଼ିକର ବିକାଶ କଥା ହାତକୁ ନିଅନ୍ତି ।

ସ୍ବଳ୍ପ ସ୍ବଳ୍ପ ଅଳ୍ପ କେଇଦିନ ଭିତରେ ପୁରାପୁରି ବନମାଳିପୁର ବ୍ଲକଟି ବିଭିନ୍ନ ଗ୍ରାମଦାନ ସଂସ୍ଥା ମାଧ୍ୟମରେ ଦେବବାବୁ ପଦାଙ୍କ ଅନୁସରଣ କରି ଚାଲିଲା । କିଛିବର୍ଷ ତଳେ ବିନୋବାଜୀଙ୍କ ପଦଯାତ୍ରାବେଳେ ଏହି ଅଞ୍ଚଳର ଲୋକମାନଙ୍କୁ ଯେତେବେଳେ ଭୂଦାନ ଓ ଗ୍ରାମଦାନ କଥା ବୁଝାଗଲା, ଲୋକେ ହସି ଉଡ଼ାଇ ଦେଉଥିଲେ । କହୁଥିଲେ, ଏହା ଏକ ଉଦ୍ଭଟ କଳ୍ପନା, କିନ୍ତୁ ଆଜି ସେହି ଲୋକମାନେ ଆଦରି ନେଇଛନ୍ତି ସେହି ଉଦ୍ଭଟ କଳ୍ପନାକୁ ଏକ ବାସ୍ତବ ସତ୍ୟ ବୋଲି କହି । ଏହା ଧୀରେ ଧୀରେ ବନମାଳିପୁର ବ୍ଲକକୁ ଛାଡ଼ି କଟକ ଜିଲ୍ଲାର ଅନ୍ୟ ବହୁ ଅଞ୍ଚଳକୁ ବ୍ୟାପିଲାଣି । ଗୋବିନ୍ଦପୁର ଗ୍ରାମଦାନ ସଂସ୍ଥାର କୃତକାର୍ଯ୍ୟତା ଦେଖି ଲୋକେ ନିଶ୍ଚିତ ହେଲେଣି ଯେ ସେମାନଙ୍କ ଗ୍ରାମର ଉନ୍ନତି କେବଳ ସେହିମାନଙ୍କ ଚେଷ୍ଟାଦ୍ୱାରା ହିଁ ସମ୍ଭବ । ଏହି ଗ୍ରାମଗୁଡ଼ିକର ଉନ୍ନତି ସରକାର ଯେ ଆସି କରିଦେବେ ସେଭଳି ଧାରଣା କରିବା ବିରାଟ ଭୁଲ । ଲୋକମାନେ ଯଦି ନିଜ ଉପରେ ଏତିକି ଆତ୍ମବିଶ୍ୱାସ ନ ରଖନ୍ତି, ନିଜ କର୍ତ୍ତବ୍ୟ ନିଜେ ନ କରନ୍ତି, ତେବେ ଗାଁମାନଙ୍କର ଅବସ୍ଥା କଦାପି ସୁଧୁରିବ ନାହିଁ ।

ଲୋକମାନଙ୍କର ଯେଉଁ ଆଶା, ଆମ ଗାଁର ଉନ୍ନତି ସରକାର କରିଦେବେ, ଆମ ଲୋକ ପ୍ରତିନିଧିମାନେ କରିଦେବେ, ଆମେ କିଛି କରିବୁ ନାହିଁ, ଏହାହିଁ ହେଉଛି ଗାଁମାନଙ୍କର ଅବନତିର ମୂଳ କାରଣ । ଆମେ ଆମ ଗାଁର ଉନ୍ନତି କରିବୁ, ଆମେ କାହାର ସାହାଯ୍ୟ ଉପରେ ଭରସା ରଖିବୁନି, ଆମର ସମବେତ ଚେଷ୍ଟା ଓ ପରିଶ୍ରମ ହିଁ ଆମ ଉନ୍ନତିର ବାଟ ଫିଟାଇବ, ଏହି ମନୋବୃତ୍ତି ସହ ଆନ୍ତରିକତା ଓ ଆତ୍ମବିଶ୍ୱାସ ହିଁ ଗାଁ ଉନ୍ନତିର ପ୍ରଧାନ ସମ୍ବଳ ବୋଲି ଦେବବାବୁ ସବୁବେଳେ ଲୋକଙ୍କୁ ବୁଝାଇବାକୁ ଚେଷ୍ଟା କରନ୍ତି । ଲୋକେ ଯେତେଦିନ ପର୍ଯ୍ୟନ୍ତ ଏତିକି ନିଜ ମନରେ ନ ଆଣିଛନ୍ତି, ସେତେଦିନ ପର୍ଯ୍ୟନ୍ତ ଗାଁର ଉନ୍ନତି ଆଶା କରିବା ଅଳୀକ ମାତ୍ର ।

ସରକାରଙ୍କଠାରୁ ଯାହା କାଁ ଚାଁ ସାହାଯ୍ୟ ଆସୁଥିବ, ସିଏ କୁଆଡ଼େ ଚାଲି ଯାଉଥିବ, ତା'ର ପତ୍ତା କେହି ପାଇ ନ ଥିବେ । ଲୋକମାନେ ଯେଉଁ ହାଁ ହାଁକୁ ସେଇ ହାଁ ହାଁ । ଅନ୍ୟ ଗାଁର ଯେଉଁ ଲୋକମାନେ ଦେବବାବୁଙ୍କ ପାଖକୁ ସାହାଯ୍ୟ ପାଇବା ଆଶାରେ ଆସନ୍ତି, ଦେବବାବୁ ସେମାନଙ୍କୁ ଏହି କଥା ବୁଝାଇଦେଇ ଯାହା ସାହାଯ୍ୟ ଚାହୁଁଥାନ୍ତି ସାହାଯ୍ୟ ଦେବାରେ ତିଳେହେଲେ ପଛାନ୍ତି ନାହିଁ ।

ଗୋବିନ୍ଦପୁର ଗାଁ ଠାରୁ ସାତ ଆଠ ମାଇଲ ଦୂରରେ ଥିବା ତାଙ୍କର ଜନ୍ମିତ ଗାଁର ଲୋକମାନେ ଯେଉଁଦିନ ଆସି ଦେବବାବୁଙ୍କ ପାଖରେ ସେମାନଙ୍କ ଗାଁର ଦୁଃଖ ଦୁର୍ଦ୍ଦଶା କଥା କହି ଉନ୍ନତି କରିବାର ଗୁହାରି ଜଣାଇଲେ, ଦେବବାବୁ ସେହି ଗାଁ ଗୁଡ଼ିକୁ ନିଜ ଆଦର୍ଶ ମୁତାବକ ଉନ୍ନତି ପଥରେ ଆଗେଇ ନେବାପାଇଁ ପଛାଇଲେ ନାହିଁ । ଯେଉଁ

ପନ୍ଥାରେ ଗୋବିନ୍ଦପୁର ଅଞ୍ଚଳର ଉନ୍ନତି କରାଗଲା, ଠିକ୍ ସେହି ପଦ୍ଧତିରେ ସେଠାରେ କରିବେ ବୋଲି ଠିକ୍ କଲେ । ଯେତେହେଲେ ନିଜ ଜନ୍ମିତ ଗାଁ ତ ? ଏହି ଗାଁ କ'ଣ ସେମିତି ଅନୁନ୍ନତ ହୋଇ ପଡ଼ି ରହିଥିବ ?

ଶାନ୍ତି ଇତିମଧ୍ୟରେ ସ୍କୁଲ କାର୍ଯ୍ୟ ବ୍ୟତୀତ ଦେବସ୍ମାନର ଏହି କାର୍ଯ୍ୟରେ ବେଳେ-ବେଳେ ସାହାଯ୍ୟକାରିଣୀ ଭାବରେ କାମ କଲାଣି । ସ୍ୱାମୀଙ୍କ ଅନୁରୋଧରେ ନିଜ ଶ୍ୱଶୁରଘର ଗାଁକୁ ନିଜ ଅକ୍ତିଆରରେ ରଖି ଶାନ୍ତି ସେହି ଗାଁକୁ ଯାଇ ସେଠାକାର ଉନ୍ନୟନ କାର୍ଯ୍ୟ ତଦାରଖ କରେ ଓ ସେମାନଙ୍କୁ ଠିକ୍ ବାଟରେ ଆଗେଇବା ପାଇଁ ଉପଦେଶ ଦିଏ । ଦେବବାବୁ ମଧ୍ୟ ବେଳେବେଳେ ଯାଇ ସେଠାକାର କାମ ଦେଖି ଆସନ୍ତି ।

ଇତିମଧ୍ୟରେ ଦେବବାବୁଙ୍କଠାକୁ କଟକ ଓ ପୁରୀ ଜିଲ୍ଲାରୁ ଏତେ ନିମନ୍ତ୍ରଣ ଆସୁଛି ଯେ ସେ ନିଜ ଗୋବିନ୍ଦପୁର କାମ ଦେଖିବାକୁ ବେଳ ପାଉ ନାହାନ୍ତି । ଆଗରୁ ଯେଉଁସବୁ କାମ ନିଜ ତତ୍ତ୍ୱାବଧାନରେ କରୁଥିଲେ, ଆଜିକାଲି ବେଳ ଅଭାବରୁ ଅନ୍ୟମାନଙ୍କ ଦାୟିତ୍ୱରେ ଛାଡ଼ିଦେଇ ସେ ଏ ଗାଁ ସେ ଗାଁ ହୋଇ ଘୂରି ବୁଲୁଛନ୍ତି । କୌଣସି ଗାଁକୁ ନ ଗଲେ ଗାଁ ସାରା ଲୋକେ ଆସି ତାଙ୍କ ଦୁଆରେ ହାଜର ।

ସମସ୍ତଙ୍କର ବିଶ୍ୱାସ, ଦେବବାବୁ ହିଁ କେବଳ ସେମାନଙ୍କ ଗାଁର ଦୁଃଖ ଦୁର୍ଦ୍ଦଶା ଦୂର କରିପାରିବେ, ଅନ୍ୟମାନେ ଖାଲି ନିଜ ପାଇଁ ଫାଇଦା ଉଠାଇଲାବାଲା । ଦିନକୁଦିନ ଲୋକମାନଙ୍କ ମନରେ ଏହି ଧାରଣା ଯେତେ ଦୃଢ଼ୀଭୂତ ହେଉଥାଏ, ଦେବବାବୁଙ୍କ ଦୁଆରେ ଲୋକଭିଡ଼ ସେତେ ବଢ଼ୁଥାଏ । ବିଭିନ୍ନ ଗ୍ରାମଦାନ ସଂସ୍ଥା ଗଢ଼ି ଦେବବାବୁ ବିଭିନ୍ନ ଗ୍ରାମଗୁଡ଼ିକୁ ସେହି ସଂସ୍ଥା ଅଧୀନରେ ରଖିଦେଇ ସେମାନଙ୍କ ସୁପରିଚାଳନା ପାଇଁ କାର୍ଯ୍ୟକାରୀ ସମିତିମାନ ଗଢ଼ି ଦେଲେ । ନିଜ ଯୋଜନା ଅନୁଯାୟୀ କାହାପରେ କେଉଁ କାମ କରାଯିବା କଥା ତହିଁର ଏକ ଯୋଜନା ତିଆରି କରି ବତାଇଦେଲେ । କାମ ଠିକ୍ ଭାବରେ ଚାଲିଛି କି ନାହିଁ ବେଳେବେଳେ ଦେବବାବୁ ତଦାରଖ କରି ଆସନ୍ତି । ସ୍ତ୍ରୀ ଶାନ୍ତି ନିଜ ସ୍ୱାମୀଙ୍କ ଗାଁର ଗ୍ରାମଦାନ ସଂସ୍ଥା ତଦାରଖରେ ବେଳେବେଳେ ଯାଏ, ଅନ୍ୟଆଡ଼େ ଯିବାକୁ ବେଳ ପାଏ ନାହିଁ ।

## ଅଣଚାଳିଶ

"ଆପଣ ମୋତେ ହସାଇଲେ ମୁରଲୀବାବୁ । ମୁଁ ବାଙ୍କି ନିର୍ବାଚନ ମଣ୍ଡଳୀରୁ ବିଧାନସଭା ସଭ୍ୟ ପାଇଁ ଭୋଟରେ ଠିଆ ହେବି ? ଆପଣ କ'ଣ ପାଗଳ ହେଲେ ମୁରଲୀ-ବାବୁ ? ରାଜନୀତିକୁ ମୁଁ ପିଲାଟି ଦିନୁ ଘୃଣା କରି ଆସିଛି । ଏଠି ଯେଉଁ ଧରଣର ଲୋକେ ରାଜନୀତି କରନ୍ତି, ମୁଁ ସେମାନଙ୍କ ସହିତ ସମାନ ହୋଇ ସେମାନଙ୍କ ଭଳି ଜଣେ ହେବି ? ମୁଁ ସେମାନଙ୍କ ଭଳି ରାଜନୀତିରେ ପଶି ବିଧାନସଭା ପାଇଁ ଭୋଟ ଲଢ଼ିବି ? ଅସମ୍ଭବ, ଏହା

କଦାପି ହୋଇ ନପାରେ । ଦେଖନ୍ତୁ, ରଚନାତ୍ମକ କାମ କରିବା ମୋର ଆଦର୍ଶ, ମୁଁ ତାକୁ ଛାଡ଼ି ରାଜନୀତିରେ ପଶିବି ବୋଲି ଆପଣ କେମିତି ଭାବି ପାରୁଛନ୍ତି କହିଲେ ? ଏହା ଆପଣଙ୍କର ଏକ ନିହାତି ଅବାସ୍ତବ କଳ୍ପନା ମୁରଲୀବାବୁ ।"

ବାଙ୍କି ନିର୍ବାଚନ ମଣ୍ଡଳୀରେ ଦେବବାବୁଙ୍କ ନିଜ ଘର । ଗୋବିନ୍ଦପୁର ଗ୍ରାମଦାନ ସଂସ୍ଥା ଓ ଅନ୍ୟ ଗ୍ରାମଦାନ ସଂସ୍ଥା ଏହି ନିର୍ବାଚନ ମଣ୍ଡଳୀରେ । ସବୁ ଗ୍ରାମଦାନ ସଂସ୍ଥାର ଲୋକମାନେ ନିଜ ନିଜ ଗ୍ରାମ ଗଠନ ଓ ଗ୍ରାମର ଉନ୍ନୟନମୂଳକ କାର୍ଯ୍ୟରେ ପାଗଳଙ୍କ ଭଳି ଲାଗି ପଡ଼ିଛନ୍ତି । ସେଥିପାଇଁ ସେମାନେ ପ୍ରେରଣା ପାଉଛନ୍ତି ଦେବବାବୁ ଓ ସ୍ତ୍ରୀ ଶାନ୍ତିଦେବୀଙ୍କ ଠାରୁ ।

ପୂର୍ବ ନିର୍ବାଚନ ମଣ୍ଡଳୀରେ ଏହିସବୁ ଉନ୍ନୟନମୂଳକ କାମ ପାଇଁ ଦେବବାବୁଙ୍କ ସୁଖ୍ୟାତି ଅତ୍ୟଧିକ । ଏହି ନିର୍ବାଚନ ମଣ୍ଡଳୀର ଗାଁ ଗୁଡ଼ିକର ଉନ୍ନୟନ କାର୍ଯ୍ୟ ଦେଖିଲେ ଦେବବାବୁଙ୍କ ପ୍ରତି ଭକ୍ତିରେ ମୁଣ୍ଡ ନଇଁ ଆସେ । ନ ଆସିବ କେମିତି ? ସେ ଅନ୍ୟ ନେତାଙ୍କ ଭଳି କଳ୍ପନାବାଦୀ ନୁହଁନ୍ତି ବାସ୍ତବବାଦୀ । ସେ ଯାହା କହିବେ, ତାକୁ କାର୍ଯ୍ୟରେ କରି ଦେଖାଇଦେଇ ପାରିବେ । ଅନ୍ୟ ନେତାଙ୍କ ଭଳି ବଡ଼ ବଡ଼ କଥା କହିଦେଇ ।ଲୁଆଡ଼େ ଅନ୍ତର୍ଦ୍ଧାନ ହୋଇଯିବା ଲୋକ ସେ ନୁହଁନ୍ତି । ସେହି ଅଞ୍ଚଳରେ ସମସ୍ତଙ୍କ ମୁହଁରେ ସେଇ ଗୋଟିଏ ନା ଦେବସ୍ନାନବାବୁ । ସେ ହିଁ ପ୍ରକୃତରେ ସମସ୍ତଙ୍କ ନେତା ।

ରାଜ୍ୟର ବିଭିନ୍ନ ରାଜନୈତିକ ଦଳ ଆସି ଦେବବାବୁଙ୍କୁ ବୁଝାଇବାରେ ଲାଗି ଯାଆନ୍ତି । ଦେବବାବୁଙ୍କର ଏ ଅଞ୍ଚଳରେ ଯେଉଁ ପ୍ରସିଦ୍ଧି, ସେ ଯଦି ବିଧାନସଭା ପାଇଁ ଠିଆ ହୁଅନ୍ତି, ତେବେ ତାଙ୍କ ସହିତ ଅନ୍ୟ କୌଣସି ଦଳ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ସାହସ କରିବନି । ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କଲେ ଯେକୌଣସି ଦଳର ଅମାନତ ଉଡ଼ିଯିବ ? ତାଙ୍କ ପ୍ରାର୍ଥୀତ୍ୱକୁ ସମର୍ଥନ କରିବାକୁ ସବୁ ଦଳ ତିଆର । କାରଣ ସମସ୍ତଙ୍କ ଇଚ୍ଛା, ଏଭଳି ଜଣେ ଯୋଗ୍ୟ ଓ ସ୍ୱାର୍ଥତ୍ୟାଗୀ ଲୋକ ବିଧାନସଭାକୁ ଯିବେ ନାହିଁ ତ ଆଉ କିଏ ଯିବେ ?

ଯେଉଁମାନଙ୍କର ଦେଶ ପାଇଁ କିଛି ତ୍ୟାଗ ନାହିଁ, ଯେଉଁମାନେ ଦେଶ ପାଇଁ କିଛି କରି ନାହାନ୍ତି, ଜନସେବା କଥା ଯେଉଁମାନେ ସ୍ୱପ୍ନରେ ସୁଦ୍ଧା ଭାବି ନାହାନ୍ତି, ସେମାନେ ଯଦି ବିଧାନସଭାକୁ ଯିବେ, ତେବେ ସେଭଳି ବିଧାନସଭା ଦ୍ୱାରା ଦେଶର ଉନ୍ନତି କେବେ ହୋଇ ପାରିବନି ? ଜନସେବା ନାଁରେ ଯାଇ ସେମାନଙ୍କର ଆତ୍ମସେବା ହିଁ ସାର ହେବ । ସମସ୍ତଙ୍କ ଇଚ୍ଛା ଦେବବାବୁ ଯଦି ବିଧାନସଭାକୁ ଯାଆନ୍ତି, ତେବେ ନିଜର ସ୍ୱାର୍ଥତ୍ୟାଗ, ବଳିଷ୍ଠ ବ୍ୟକ୍ତିତ୍ୱ ଓ ଆଦର୍ଶ ଦ୍ୱାରା ଅନ୍ୟ ବିଧାନସଭା ସଦସ୍ୟଙ୍କ ଆଖି ଖୋଲିଦେଇ ପାରିବେ । ଦେଶସେବା ନାଁରେ ସେମାନେ ଯେଉଁ ଆତ୍ମସେବା କରି ଚାଲିଛନ୍ତି, ତାହାର ଅବସାନ ହୁଏତ ହୋଇପାରେ ।

ଲୋକେ ସିନା ଏତେକଥା ଭାବୁଛନ୍ତି, କିନ୍ତୁ ଦେବବାବୁଙ୍କର ଭାବନା ଅନ୍ୟ ପ୍ରକାର । ସେ କହନ୍ତି, ପୂତି ଗନ୍ଧମୟ ରାଜନୀତି ଭିତରେ ପଶିଲେ ପୂତି ଗନ୍ଧରେ ସେ

ଅଣନଶ୍ୱାସୀ ହେବେ ସିନା, ପୁଣି ଗନ୍ଧକୁ ସେ ବଦଳାଇ ଦେଇ ପାରିବେନି । ସେ ଏହି ରାଜନୀତିଠାରୁ ଯେତେ ଦୂରରେ ରହିବେ ସେତେ ଭଲ ।

ଦେବବାବୁଙ୍କର ନାସ୍ତିବାଣୀ ଅନ୍ୟମାନଙ୍କ ମନର ଉତ୍ସାହକୁ ଭାଙ୍ଗିଦିଏ । କେତେକେ କହିପକାନ୍ତି, ଦେବବାବୁ ଯଦି ଠିଆ ନ ହେଉଛନ୍ତି, ତେବେ ତାଙ୍କ ସ୍ତ୍ରୀଙ୍କୁ ଠିଆ କରାଯାଉ । ତାଙ୍କ ସ୍ତ୍ରୀଙ୍କ ଅବଦାନ ବି କିଛି କମ୍ ନୁହେ । ସ୍ୱାମୀଙ୍କ ଭଳି ତାଙ୍କର ଲୋକପ୍ରିୟତା ମଧ୍ୟ ଅସୀମ । ସେ ଯଦି ଠିଆ ହୁଅନ୍ତି, ତାଙ୍କୁ ପରାସ୍ତ କରିବା ମଧ୍ୟ ଅନ୍ୟ କାହାର ପକ୍ଷେ ସମ୍ଭବ ନୁହେଁ ।

ଯେଉଁମାନେ ଶାନ୍ତିଦେବୀଙ୍କୁ ଠିଆ କରାଇବା କଥା କଳ୍ପନା କରନ୍ତି, ପରମୁହୂର୍ତ୍ତରେ ଭାବନ୍ତି, ସ୍ୱାମୀ ଯେତେବେଳେ ଠିଆ ହେବାକୁ ରାଜି ନୁହନ୍ତି, ସ୍ତ୍ରୀ କ'ଣ କେବେ ରାଜି ହେବେ ? ତୁହେଁ ସେ ଏକା ରଚନାତ୍ମକ କର୍ମୀ । ସ୍ୱାମୀ-ସ୍ତ୍ରୀ ଉଭୟଙ୍କର ରାଜନୀତି ଆଡ଼କୁ ମୋଟେ ଆକର୍ଷଣ ନାହିଁ । ବର୍ତ୍ତମାନ ବିଧାନସଭାର ସଭ୍ୟ ଭାବରେ ଏତେ ଅବାଞ୍ଛିତ ଲୋକ ପଶିଗଲେଣି ଯେ ମାନସମ୍ମାନ ଥିବା ଲୋକ ତା ଭିତରକୁ ପଶିବାକୁ ନିଶ୍ଚୟ ଘୃଣାବୋଧ କରିବ ।

ଦିନକୁଦିନ ଦେବବାବୁଙ୍କ ଘରକୁ ଲୋକେ ଧାଡ଼ି ଲାଗିଲେ । କେଉଁଦିନ ରାଜନୈତିକ ଦଳର ନେତାମାନେ ଆସିଲେଣି ତ କେଉଁଦିନ ବିଭିନ୍ନ ଗ୍ରାମର ମୁଖିଆ ମୁଖିଆ ଲୋକେ ଆସିଲେଣି । ସମସ୍ତଙ୍କ ଜିଦ୍ ଦେବବାବୁ ବାଙ୍କି ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ଠିଆ ହୁଅନ୍ତୁ । ସମସ୍ତଙ୍କୁ ନାସ୍ତିବାଣୀ ଛଡ଼ା ଆଉକିଛି ଶୁଣାଉ ନଥାନ୍ତି ଦେବବାବୁ ।

କେତେ ଲୋକ ଆସିଲେ ବୁଝାଇ ରାଜି କରାଇବା ପାଇଁ । ଦେବବାବୁ କିନ୍ତୁ ନିଜ ମତରେ ଅଟଳ । ଦେବବାବୁ ଯେମିତି ଗାଉଁଲି ଲୋକଙ୍କ ସହିତ କାମକରି ଗାଁ ରୂପ ବଦଳାଇ ଦେଇ ପାରିଛନ୍ତି, ସେହିଭଳି ବିଧାନସଭାକୁ ଯାଇ ସେଠାକାର ଭ୍ରଷ୍ଟାଚାରୀ ସଭ୍ୟମାନଙ୍କ ସହିତ କାମ କରି ବିଧାନସଭାର ରୂପ ବଦଳାଇ ଦିଅନ୍ତୁ ଏହା ସମସ୍ତଙ୍କ ଇଚ୍ଛା । ବିଧାନସଭାର ଲୋକେ ବର୍ତ୍ତମାନ ନୈତିକତାଠାରୁ ଦୂରେଇଯାଇ ଯେମିତି ଅମଣିଷ ହୋଇ ପଡ଼ିଛନ୍ତି, ସେଥିରୁ ସେମାନଙ୍କୁ ରକ୍ଷା କରିବା ତାଙ୍କର ଏକ କର୍ତ୍ତବ୍ୟ ହେବା ଉଚିତ । ଯେଉଁମାନେ ବାଙ୍କି ନିର୍ବାଚନ ମଣ୍ଡଳୀର ହିତାକାଙ୍କ୍ଷୀ, ସେମାନେ ନାଛୋଡ଼ବନ୍ଧା । କଳେ ବଳେ କୌଶଳେ କେମିତି ଦେବବାବୁଙ୍କୁ ବିଧାନସଭାକୁ ପଠାଇବା ପାଇଁ ରାଜି କରାଇବେ ସେଇଆ ସେମାନଙ୍କର ଚିନ୍ତା ।

ସେମାନେ ଦେଖିଲେ ଦେବବାବୁଙ୍କୁ ରାଜି କରାଇବା ପାଇଁ ଆଉ କିଛି ବାଟ ନାହିଁ । ଏକାବାଟ ହେଉଛି ବିନୋବାଜୀଙ୍କ ଶରଣାପନ୍ନ । ବିନୋବାଜୀ ଯଦି ଦେବବାବୁଙ୍କୁ ବିଧାନସଭା ପାଇଁ କହନ୍ତି, ଦେବବାବୁ ସମ୍ଭବତଃ କାଟିଦେଇ ପାରିବେନି । କିନ୍ତୁ ବିନୋବାଜୀ ତ କେବେ କାହାକୁ କହିବେନି ବିଧାନସଭା ପାଇଁ ଠିଆ ହୁଅ । ତେବେ ଏ ପରିସ୍ଥିତିରେ କ'ଣ କରାଯିବ, ସେହି ହେଲା ସେମାନଙ୍କ ଚିନ୍ତା ।

ବିନୋବାଜୀଙ୍କ ଦକ୍ଷିଣହସ୍ତ ରାଧେଶ୍ୟାମଜୀଙ୍କର ଦେବବାବୁଙ୍କ ଉପରେ ଅଖଣ୍ଡ ପ୍ରଭାବ ଅଛି । ଦେବବାବୁ ବିନୋବାଜୀଙ୍କୁ ଯେମିତି ଭକ୍ତି କରନ୍ତି, ରାଧେଶ୍ୟାମଜୀଙ୍କୁ ମଧ୍ୟ ସେମିତି । ବିନୋବାଜୀ ସିନା କହିବେନି ଦେବବାବୁଙ୍କୁ, ସେମାନେ ଯଦି ରାଧେଶ୍ୟାମଜୀଙ୍କୁ ଦେବବାବୁଙ୍କୁ କହିବା ପାଇଁ ରାଜି କରାଇ ପାରନ୍ତି ତେବେ ଦେବବାବୁ ରାଧେଶ୍ୟାମଜୀଙ୍କ କଥାକୁ କାଟିଦେଇ ନ ପାରନ୍ତି । କିନ୍ତୁ ରାଧେଶ୍ୟାମଜୀଙ୍କୁ ଦେବବାବୁଙ୍କୁ କହିବା ପାଇଁ ରାଜି କରାଇବା କିଛି ସହଜ କଥା ନୁହେଁ । ସେହି ହେବ ସେମାନଙ୍କର ଶେଷ ଚେଷ୍ଟା । ବାର୍ଙ୍କି ନିର୍ବାଚନ ମଣ୍ଡଳୀର ଦଳେ ନେତା ବିନୋବାଜୀଙ୍କ ପାଖକୁ ଗଲେ । ବିନୋବାଜୀ ସେତେବେଳେ ସଦାକତ ଆଶ୍ରମରେ ରହୁଥାନ୍ତି । ସେହିଠାରେ ରାଧେଶ୍ୟାମଜୀଙ୍କ ସହିତ କଥାବାର୍ତ୍ତା କରି ଯାହା କରିବା କଥା କରିବେ । ସାରା କଟକ ଜିଲ୍ଲାରେ ଗ୍ରାମଦାନ ଯଜ୍ଞ କେମିତି ଦିନକୁଦିନ ଅତ୍ୟଧିକ ଲୋକପ୍ରିୟ ହେଉଛି ଶୁଣିଲେ ହୁଏତ ରାଧେଶ୍ୟାମଜୀ ସେମାନଙ୍କୁ ନିରାଶ କରିବେନି ।

× × × ×

ବାର୍ଙ୍କି ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭା ପାଇଁ ଏକ ସଭ୍ୟ ଭାବରେ ଠିଆ ହେବାପାଇଁ ଶେଷରେ ଦେବବାବୁଙ୍କୁ ରାଜି କରାଗଲା । ତେବେ ଗୋଟିଏ ସର୍ତ୍ତରେ । ସେ ଯେତେବେଳେ ଇଚ୍ଛା କରିବେ ବିଧାନସଭାରୁ ଇସ୍ତଫା ଦେଇ ପୂର୍ବ ସ୍ଥାନକୁ ଫେରି ଆସି-ପାରିବେ । ସେ ଯେତେବେଳେ ଦେଖିବେ ତାଙ୍କଦ୍ୱାରା ବିଧାନସଭା ଓ ଏହାର ସଦସ୍ୟଙ୍କର କିଛି ଉପକାର ବା ରାଜ୍ୟର କିଛି ଉନ୍ନତି ହୋଇପାରୁନି, ସେତେବେଳେ ସେ ଇସ୍ତଫାଦେଇ ବାହାରି ଆସିବେ । ସେତେବେଳେ ଆଉ ଯେପରି କେହି ବାଧ ନ କରନ୍ତି, ସେଇ ପଦରେ ରହିବା ପାଇଁ । ନିର୍ବାଚନ ମଣ୍ଡଳୀର ମୁଖିଆ ମୁଖିଆ ଲୋକମାନେ ଏଥିରେ ରାଜି ହୋଇଗଲେ । ଦେବବାବୁ ଯେ ଶେଷରେ ରାଜି ହୋଇଛନ୍ତି ସେହି ହେଉଛି ବଡ଼ କଥା, ତାଙ୍କ ସର୍ତ୍ତ ଯାହା ହେଉପଛକେ । ବାର୍ଙ୍କି ନିର୍ବାଚନ ମଣ୍ଡଳୀ ସାରା ରାଜ୍ୟକୁ ଦେଖାଇ-ଦେବାକୁ ଚାହେଁ ସେ କେମିତି ଏକ ଉଚ୍ଚକୋଟୀର ନିଃସ୍ୱାର୍ଥପର ରଚନାତ୍ମକ କର୍ମୀଙ୍କୁ ବିଧାନସଭାକୁ ପଠାଇ ପାରିଛି ।

ଦେବବାବୁ ରାଜି ହୋଇଯିବା କଥା ସାରା ନିର୍ବାଚନ ମଣ୍ଡଳୀରେ ପ୍ରଚାରିତ ହୋଇଗଲା । ସେ କୌଣସି ରାଜନୈତିକ ଦଳର ଲୋକ ହିସାବରେ ଠିଆ ହେଉ ନାହାନ୍ତି । ସେ ଏକ ନିର୍ଦ୍ଦଳୀୟ କର୍ମୀ ଭାବରେ ନିର୍ବାଚନ ମଣ୍ଡଳୀର ଅନୁରୋଧକୁ ରକ୍ଷା କରିବାକୁ ଯାଇ ଠିଆ ହେଉଛନ୍ତି । ବହୁ ରାଜନୈତିକ ଦଳର ନେତାମାନେ ଆସିଲେ ତାଙ୍କୁ ତାଙ୍କ ଦଳ ସମର୍ଥନ କରିବା ସିଦ୍ଧାନ୍ତ ଜଣାଇଦେବା ପାଇଁ । ସେ ସମସ୍ତଙ୍କୁ ହସି ହସି ଧନ୍ୟବାଦ ଜଣାଇ ବିଦାୟ ଦିଅନ୍ତି । ଦେବବାବୁଙ୍କ ଲୋକପ୍ରିୟତା ବାର୍ଙ୍କି ନିର୍ବାଚନ ମଣ୍ଡଳୀରେ ଏତେ ବଢ଼ି ଯାଇଥାଏ ଯେ ତାଙ୍କ ବିପକ୍ଷରେ କୌଣସି ରାଜନୈତିକ ଦଳ ପ୍ରାର୍ଥୀ ଠିଆ କରାଇବାକୁ ସାହସ କରୁ ନଥାନ୍ତି, ଭୟ ସେମାନଙ୍କ ଅମାନତ ଉଡ଼ିଯିବ । ଚାରୁ ଚାହୁଁ ନିର୍ବାଚନ

ହେବା ପୂର୍ବରୁ ସେ ବାର୍ଙ୍କି ନିର୍ବାଚନ ମଣ୍ଡଳୀରୁ ବିନା ପ୍ରତିଦ୍ୱନ୍ଦ୍ୱିତାରେ ବିଧାନସଭାକୁ ନିର୍ବାଚିତ ହୋଇଗଲେ । ବାର୍ଙ୍କି ନିର୍ବାଚନ ମଣ୍ଡଳୀରେ ସେଦିନ ଆନନ୍ଦର ଢେଉ ଖେଳିଗଲା । ଦେବବାବୁ ନିର୍ବାଚିତ ହୋଇଯିବା ଖବର ଯେ ଶୁଣିଲା ସେ ଆନନ୍ଦ ପ୍ରକାଶ ନକରି ରହି ପାରିଲାନି । ସ୍ୱରଆଡ଼େ 'ଦେବବାବୁଙ୍କ ଜୟ', 'ଦେବବାବୁଙ୍କ ଜୟ' ପ୍ରତିଧ୍ୱନିତ ହେଲା ।

ଓଡ଼ିଶା ବିଧାନସଭାକୁ ନିର୍ଦ୍ୱନ୍ଦରେ ନିର୍ବାଚିତ ହେବା ଖବର ଶୁଣି ସୀମନ୍ତିନୀ ଦେବୀଙ୍କ ଆନନ୍ଦ କହିଲେ ନସରେ । ମନ ତାଙ୍କର ଖୁଣ୍ଟେ ମୋଟ । ସ୍ୱାମୀ କେମିତି ଅଫିସରୁ ଆସିଲେ ପୁଅର ଏ କୃତିତ୍ୱ କଥା ତାଙ୍କ ଆଗେ ବଖାଣି ବସିବେ, ସେଇ ଚିନ୍ତାରେ ଥାଆନ୍ତି । ନାରଣବାବୁ ଅଫିସ୍‌ରୁ ଆସି ଘରେ ଗୋଡ଼ ଦେଇଛନ୍ତି କି ନାହିଁ ସୀମନ୍ତିନୀ ଦେବୀ ଯାଇ ହସି ହସି କହି ବସିଲେ, "ହଇହେ ଶୁଣିଲଣି, ପୁଅ ଆମ ବାର୍ଙ୍କି ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ଏକ ସଭ୍ୟ ଭାବରେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଛି ।"

"ଆଁ, ଦେବ ନିର୍ବାଚିତ ହୋଇଛି ? ରାଜନୀତିରେ ପଶିବା ପାଇଁ ପିଲାଟାକୁ କିଏ ଦୁର୍ବୁଦ୍ଧି ଦେଲା ? ରାଜନୀତିରେ ପଶିବା ଅର୍ଥ ନଷ୍ଟ ହୋଇଯିବା । ପିଲାଟା ଯାହା ଭଲ ଥିଲା, ଏଥିରେ ପଶିଲା ମାନେ ଜାଣ ସେ ସ୍ୱରପାଞ୍ଜିରୁ ଗଲା । ଆଜିକାଲି ରାଜନୀତି ଯାହା ହେଲଣି, ସେଥିରେ ଭଦ୍ରଲୋକ କ'ଣ ପଶିବା କଥା ? ପିଲାଟାକୁ ଲୋକମାନେ ଏଣୁତେଣୁ ଶିଖାଇ ନଷ୍ଟକରି ଦେବାପାଇଁ ଅବାଟକୁ ନେଇଗଲେ ।

"ବାଟ, ଅବାଟ, ଏମିତି କ'ଣ ହେଉଛ ମ ? ପୁଅ ଏମ.ଏଲ.ଏ. ହେଲା, କେତେବଡ଼ କଥା ହେଲା ଦେଖୁନ ?"

"ତୁମକୁ ସିଏ ବଡ଼ ସୀମନ୍ତିନୀ । ଆଉ କହନା । ଏମ.ଏଲ.ଏ. ବୋଲି କ'ଣ ଆକାଶକୁ ଉଠିଗଲା । ଏମ.ଏଲ.ଏ.ଙ୍କ ନାମରେ ଯେଉଁ ଗାଳିଗୁଲଜ, ସେସବୁ ଶୁଣିବାକୁ ପଡ଼ିବ ଆମକୁ । ଏମ.ଏଲ.ଏ.ଙ୍କ କାମ କ'ଣ ମୁଁ ଦେଖୁନି ଏହି ଡ଼.ପି.ଆଇ. ହେଲା ଦିନରୁ । ଯେତେ ପ୍ରକାର ଲୁଚୁଚୋରି କାମ ଏହି ଏମ.ଏଲ.ଏ.ମାନଙ୍କର । ସେମାନଙ୍କ ସରକାର ନୀତି କରିବେ ଗୋଟିଏ, ସେମାନେ ହାତଟେକି ସେହି ନୀତିକୁ ସମର୍ଥନ ଜଣାଇଥିବେ । ଏଣେ ଡ଼.ପି.ଆଇ.ଙ୍କ ପଛରେ ଗୋଡ଼ାଇବେ, କ'ଣ ନା ସେ ନୀତିକୁ ଛାଡ଼ ସେମାନଙ୍କ କଥା ଅନୁସାରେ ଅମକେଇ କାମ କରିଦିଅ, ସମକେଇ କାମ କରିଦିଅ । ଏମିତି ଦୋମୁହାଁ ନୀତି ଯୋଗୁଁ ସେମାନଙ୍କୁ ଦେଖିଲେ ମୋ ହାଡ଼ ଜଳେ । ଶେଷରେ ପିଲାଟା ଏତେ ତଳକୁ ଖସିଯିବ ବୋଲି ମୁଁ ଆଶା କରି ନଥିଲି ସୀମନ୍ତିନୀ । କାହାକୁ କହିବା, ଭାଗ୍ୟକୁ ଆଦରି ରହିବା, ଏହା ଆମ ଭାଗ୍ୟର ଫଳ ।"

"ପୁଅ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଛି, କେଡ଼େ ସୁଖର କଥା କହିଲ ? ଓଲଟି ତୁମେ ଏଣୁତେଣୁ ଗୁଡ଼ାଏ କ'ଣ କହି ହେଉଛ ମ ?"

"ଆଁ, ଅନ୍ଧାରରେ ଅବାଟରେ ହୋଇଛୁ ? ଯାହାବା ଭବିଷ୍ୟତ ଥିଲା, ତା ବି ଗଲା । ତୁମ ପଛଆଡ଼େ ଯଦି ବଡ଼ ଦଳ ନାହିଁ କି ମନ୍ତ୍ରୀ ନାହାନ୍ତି, କି ତୁମ ପଛଆଡ଼େ ପାଞ୍ଚ ସାତଟା ଏମ.ଏଲ.ଏ. ନାହାନ୍ତି, ତେବେ ତୁମକୁ ପଚାରିବ କିଏ ? ପୁଣି ଅନ୍ଧଲୀଙ୍କ ମା' ବାପ କେହି ନାହାନ୍ତି । ଭଗବାନ ସେମାନଙ୍କର ସାହା ଭରସା । ଖଡ଼ାଖିଆ ଏମ.ଏଲ.ଏ. ଭାବରେ ଗଣାଯାନ୍ତି ସେମାନେ । ଶେଷରେ ଚେସ ହତଭଗାଟା ଏଇ ଖଡ଼ାଖିଆଙ୍କ ଦଳରେ ନାଁ ଲେଖାଇଲା ?"

"ପୁଅ ଜଣେ ଏମ.ଏଲ୍.ଏ. ହେଲା ଶୁଣି ଖୁସି ହେବ କଅଣ, ଖଡ଼ାଖିଆ ହତଭଗା କହି ତା' ମାନଟାକୁ ତଳେ ପକାଇ ଦେଉଛ ।"

"ତୁମେ ଆଉ ପୁଅ ଗୁଣ ଏତେ ଗାଅନି ସୀମନ୍ତିନୀ । ମୁଁ ବେଶ୍ ଦେଖି ପାରୁଛି ସେ କ'ଣଟାଏ କରି ପକାଇବ ।"

"ତୁମେ ଗୋବିନ୍ଦପୁର ଯାଅ, ଦେଖିବ ପୁଅର କୀର୍ତ୍ତି । ସେ ଗାଁ ପୂର୍ବରୁ କ'ଣ ଥିଲା, ଏବେ କ'ଣ ହୋଇଛି ଦେଖି ଆସ, ତା'ପରେ କହିବ ପୁଅ କ'ଣ କଲା, କ'ଣ ନକଲା । ସେସବୁ ଗାଁ ବର୍ତ୍ତମାନ ସାକ୍ଷାତ ବୈକୁଣ୍ଠପୁର । ପୁଅ ବୋହୂ ଦି'ଜଣ ଯାକ କ'ଣ କମ୍ ଖଟୁଛନ୍ତି ସେଠି ? ଯିଏ ସେ ଗାଁକୁ ଦେଖୁଛି, ଘଡ଼ିଏ ଠିଆ ହୋଇ ଅନାଉଛି । ବୋହୂଟା ଏଡ଼େ ଗ୍ରେଟିଆ ପିଲାଟାଏ, କମ୍ ଖଟୁଛି ଲୋକଙ୍କ ପାଇଁ ? ଏଣେ ପୁଣି ମାଷ୍ଟ୍ରାଣୀ ଚାକିରି, ତେଣେ ଗାଁ ଗାଁ ବୁଲି କାମ ତଦାରଖ । ସେ ପୁଅ ବୋହୂଙ୍କୁ ଧନ୍ୟ କହିବା କଥା ।"

"ଗୋବିନ୍ଦପୁର ଗାଁକୁ ଯିବା ପାଇଁ ମୋତେ କେତେଥର ମନ୍ତ୍ରୀ କହିଲେଣି । ସେଠାକାର ସ୍କୁଲ ପରିଚାଳନା ଓ ପାଠପଢ଼ା କେମିତି ଚାଲିଛି ନିଜ ଆଖିରେ ଦେଖି ଆସି ରିପୋର୍ଟ ଦେବା ପାଇଁ । ତୁମ ବୋହୂ ସେଠି ଥିବାରୁ ମୁଁ ସେ ଗାଁକୁ ଯିବା ନାଁ ମୋଟେ ଧରୁନି । କେଉଁ ମୁହଁରେ ଯିବି ? ସେଠି ତୁମ ବୋହୂ ମାଷ୍ଟ୍ରାଣୀ, ସମୁଦୀ ମାଷ୍ଟ୍ରେ, ମୁଁ ସେମାନଙ୍କ କାମ ତଦାରଖ କରିବାକୁ ଯିବି ? ଲୋକେ ଯେତେବେଳେ ଜାଣିବେ ମୋ ବୋହୂ ଜଣେ ମାଷ୍ଟ୍ରାଣୀ, ସମୁଦୀ ସେହି ଗାଁ ସ୍କୁଲ ଶିକ୍ଷକ, ମୋ ସମ୍ମାନ ସେଠି ରହିବଟି ? ମୁଁ ଡ଼.ପି.ଆଇ. ଭାବରେ ସେଠି ସମ୍ମାନର ସହିତ ଠିଆହୋଇ ପାରିବି ତ ? ସେ ବାପ ଝିଅ ସେ ଅଞ୍ଚଳରେ ଥିଲା ପର୍ଯ୍ୟନ୍ତ ମୁଁ ସେ ଅଞ୍ଚଳ ମାଡ଼ୁନି ସୀମନ୍ତିନୀ ।"

"ଆଃ, ମୋ ସୁନାନାକୀ ବୋହୂଟି, କେଡ଼େ ସୁନ୍ଦର ତା'ର ଚାଲିଚଳନ, କଥାବାର୍ତ୍ତା ସ୍ୱଭାବ ଚରିତ୍ର କେତେ ଭଲ, ଦେଖିଲେ ସେ ତୁମକୁ କିଣିନେବ । ତା ବ୍ୟବହାର ମୋତେ ଭାରି ଖୁସିଲାଗେ । ସମୁଦୀ, ସମୁଦୁଣୀ ଆହୁରି ଭଲ ଲୋକ ।"

"ଆଉ, ଆଉ, ଏତେ ଆଉ ଟେକନି । ପୁଅ ବୋହୂଙ୍କୁ ଟେକି ଟେକି ଦିନ ଗଲା । ବର୍ତ୍ତମାନ ସମୁଦୀ, ସମୁଦୁଣୀକୁ ଟେକା ଆରମ୍ଭ ହୋଇଗଲା "

"ତୁମେ ଏମିତି କାହିଁକି କହୁଛ କିଏ ? ପୁଅ ବାହାଘର କେତେଦିନ ହୋଇ-ଗଲାଣି । ଦିନେତ ପୁଅକୁ କି ବୋହୂକୁ ଦେଖିବାକୁ ଗଲନି । ପୁଅର ପୁଅ-ଝିଅ ହେଲେ

ଦୁଇଟି । କେଡ଼େ ଗୁଲୁଗୁଲିଆ ହୋଇଛନ୍ତି ପିଲା ଦି'ଟା । ତୁମେ ସେମାନଙ୍କୁ ଏଯାଏଁ ଦେଖିନ । ତୁମ ହୃଦୟଟି ଯେ କେଉଁ ପଥରରେ ଗଢ଼ା ମୁଁ ଭାବିପାରୁନି । ନିଜ ରକ୍ତ ଦେଇ ପୁଅକୁ ପରା ଗଢିଛ ? ଟିକିଏ ବି ମନ ହେଉନି ଯାଇ ଦେଖି ଆସିବାକୁ ସେମାନେ କେମିତି ଅଛନ୍ତି । ସେ ମନ କି ମନ କେଜାଣି ?"

"ଥାଉ, ଥାଉ, ତୁମର ଯଦି ମନ ହେଉଛି ଯାଉନ, ପୁଅ-ବୋହୂଙ୍କ ପାଖରେ ରହିବ । ବୋହୂ ପରଶା ଖାଇବ, କିଏ ମନା କରୁଛି ତୁମକୁ ?"

"ଅନାଉଁ ଅନାଉଁ ବାର ବରଷ ହୋଇଗଲା ତଥାପି ବି ତୁମ ହୃଦୟ ଟିକିଏ ତରଳିଲା ନାହିଁ । ମା'ବାପ ଦି'ଜଣଯାକ ଦିନ ରାତି ଦେଶ କାମରେ ଲାଗିଛନ୍ତି । ଛୁଆ ଦି'ଟାଙ୍କର କିଏ ଯତ୍ନ ନେଉଥିବ କେଜାଣି ? ଭଗବାନ ସେମାନଙ୍କୁ ଘଣ୍ଟ ଘୋଡ଼ାଇ ରଖିଥାନ୍ତୁ । ଆମ ସମୁଦୁଣୀ ଭାରି ପାଗଳିବାଲି । ସେ ପିଲା ଦି'ଟାଙ୍କର ଯତ୍ନ କ'ଣ ନେଉ ନଥିବ ? ମୁଁ ଏଡ଼େ ହତଭାଗିନୀ ଯେ ପିଲା ଦୁଇଟାକୁ ଛାଡ଼ି କେତେ ଦୂରରେ ପଡ଼ିଛି ।" କହୁ କହୁ କାନ୍ଦି ପକାଇଲେ ସୀମନ୍ତିନୀ ଦେବୀ ।

"ଆଉ ଏତେ ସକ ସକ ହୁଅନି ସୀମନ୍ତିନୀ । ଏଥର ଯାଅ ପୁଅ ବୋହୂଙ୍କ ପାଖରେ ରହିବ । ନାତି ନାତୁଣୀକୁ ଖେଳାଉଥିବ । ସମୁଧି ସମୁଦୁଣୀଙ୍କ ସହିତ ହସଖୁସିରେ ଦିନ କାଟିବ । ଏଠି ଏ ଅପନ୍ତରାରେ ପଡ଼ିଛ କାହିଁକି ଶୁଣେ ?"

"ହଇହେ, ତୁମେ ଆସି ବୁଢ଼ାଟିଏ ହେଲଣି, ତୁମର ମନ କ'ଣ ଟିକିଏ ଡାକୁନି ନାତି ନାତୁଣୀ ଦି'ଟାଙ୍କୁ ଟିକିଏ ଦେଖି ଆସିବା ପାଇଁ । ବାପ ଯିନା ଦୋଷ କଲା, ତାକୁ ଦେଖିଯିବନି, ହେଲେ ଏଡ଼େ ଛୋଟ ଛୋଟ ପିଲା ତୁମର କି ଦୋଷ କଲେ ଯେ ତୁମେ ସେମାନଙ୍କ ନାଁ ବି ଭୁଲରେ ଧରୁନ ?"

"ଥାଉ, ଥାଉ, ଏତେ କହନି ଆଉ । ତୁମର ଯଦି ଏଠି ରହିବାକୁ ମନ ଲାଗୁନି, ମାଧିଆକୁ କହୁନ ତୁମକୁ ଟିକଟ କାଟି ବସ୍‌ରେ ବସାଇ ଦେଇ ଆସିବ । ତୁମର ଏଠି ଯଦି ଶାନ୍ତି ନାହିଁ, ଯାଉନ ସେଠି ରହିବ । ମୋର ସେଥିରେ ଆପତ୍ତି ନାହିଁ । ଆଉ ଏଠି ପୁଅ, ବୋହୂ, ନାତି, ନାତୁଣୀ ହୋଇ ସକସକ ହୁଅନି । ମଣିଷ ଏତେଦିନ ପରେ ଗପ୍ପରୁ ଫେରିଲା ଯେ, ଶାନ୍ତିରେ ଟିକିଏ ରହିପାରିଲାନି ଏଠି ।"

## ଗ୍ୟାଳିଶ

"ହଇହେ, ତୁମେ ଶୁଣୁଛନା ? ପୁଅ କାଲେ ମନ୍ତ୍ରୀ ହେଉଛି ?"

"ଆଁ, କେବ ମନ୍ତ୍ରୀ ହେବ ?" ଟାଏ ବାନ୍ଧୁ ବାନ୍ଧୁ ନାରଣବାବୁ ଚମକିଉଠି ପଗ୍ଗରିଲେ । ସେ ତ କେଉଁ ଦଳରେ ନାହିଁ, ତାକୁ ମନ୍ତ୍ରୀ କରିବ କିଏ ? ସେ ମନ୍ତ୍ରୀ ହେବ ବୋଲି ତୁମକୁ କିଏ କହିଲା ?"

“ହଁ, କେନ୍ଦ୍ରରୁ କାଲେ ଫୋନ ଆସିଛି ମୁଖ୍ୟମନ୍ତ୍ରୀଙ୍କଠାକୁ, ଦେବକୁ ଯେକୌଣସି ପ୍ରକାରେ ଗୋଟିଏ ଉଚ୍ଚ ପାହ୍ୟା ମନ୍ତ୍ରୀ କରିବାକୁ। ଉପରେ ତ ଯେଉଁ ଦଳର ଶାସନ, ଏଠିତ ସେହି ଦଳର ଶାସନ। ଅନ୍ୟ ଦଳ ସହିତ ମେଣ୍ଟ ଦଳ ମଧ୍ୟ ପୁଅର ପ୍ରାର୍ଥୀତ୍ୱକୁ ସମର୍ଥନ କରିଥିଲେ। ପୁଅକୁ ମନ୍ତ୍ରୀ ନ କରିବେ କାହିଁକି?”

କିନ୍ତୁ ନନ୍'ଲୀଗ୍ ଲୋକଙ୍କୁ ମନ୍ତ୍ରୀ କରିବ କିଏ? ଏମ.ଏଲ.ଏ.ଙ୍କ ଭିତରେ ଯେଉଁମାନେ ପ୍ରଭାବଶାଳୀ, ଯେଉଁମାନଙ୍କ ପକ୍ଷରେ ବହୁସଂଖ୍ୟକ ଏମ.ଏଲ.ଏ. ଅଛନ୍ତି ବା ଯେଉଁମାନେ ଦଳର କର୍ମକର୍ତ୍ତାଙ୍କ ସ୍ୱାର୍ଥବନ୍ଧୁ ବା ସେମାନଙ୍କ ସହିତ ଭଲ ଦୋସ୍ତି ସେମାନେ ସାଧାରଣତଃ ମନ୍ତ୍ରୀ ହୁଅନ୍ତି। ଦେବର ସେମିତି କିଛି ଗୁଣ ଥିଲାଭଳିଆ ତ ଜଣାପଡ଼ୁନି, ତାକୁ ମନ୍ତ୍ରୀ କରିବ କିଏ? ଏହା ନିହାତି ମଜା ଖବର।”

“ହଁ, ମୁଁ ଶୁଣିଛି ପୁଅ କୌଣସି ଦଳର ନହେଲେ ମଧ୍ୟ ପ୍ରଧାନମନ୍ତ୍ରୀଙ୍କ ଇଚ୍ଛା ସେ ଜଣେ ଉଚ୍ଚ ପାହ୍ୟା ମନ୍ତ୍ରୀ ହେବ। କେନ୍ଦ୍ରର ପ୍ରଧାନମନ୍ତ୍ରୀ ତା'ର ନିଃସ୍ୱାର୍ଥପର ଜନସେବା ପାଇଁ ତା ଉପରେ ଅତ୍ୟଧିକ ପ୍ରୀତ।”

କିଏ ଜାଣେ? ତୁମେ ଶୁଣିଥିବ। ମୋ କାନରେ ତ ସେକଥା ପଡ଼ୁନି। ବର୍ତ୍ତମାନ ତ ମନ୍ତ୍ରୀ ତାଲିକା ତିଆରି ଚାଲିଛି। କିଏ କିଏ ମନ୍ତ୍ରୀ ହେବେ, କେତେ ଲୋକଙ୍କ ନାଁ ଶୁଣାଯାଉଛି, କାହିଁ ଦେବ ନାଁ ତ କେଉଁଠି ଶୁଣାଯାଉନି।”

“ଗତକାଲି ସନ୍ଧ୍ୟାରେ କାଲେ ପ୍ରଧାନମନ୍ତ୍ରୀ ଏଠା ମୁଖ୍ୟମନ୍ତ୍ରୀଙ୍କଠାକୁ ଫୋନ୍ କରିଥିଲେ।”

“ହୋଇ ପାରିଥାଏ, ମୋ କାନରେ ପଡ଼ିନି।”

“ପୁଅ ତ ଏମ.ଏଲ.ଏ. କଲୋନୀରେ ରହୁଛି। ବୋହୂ ଆସିନି। ପିଲାମାନେ ଗୋବିନ୍ଦପୁରରେ ଅଛନ୍ତି। ପୁଅ ଟିକିଏ ବି ଏଠାକୁ ଆସୁନି।”

“ଦେଖୁଛ ସୀମନ୍ତିନୀ, ଦେଖୁଛତ ତୁମ ପୁଅକୁ? ତୁମେ ତାକୁ ପରା ରକ୍ତମାଂସ ଦେଇ ଜନ୍ମ କରିଛ। ଏଇ ଏକା ସହରରେ ରହୁଛି, ଅଥଚ ବାପ ମା'ଙ୍କ ପାଖକୁ ଟିକିଏ ବି ଆସୁନି। ସେ କେମିତିକା ପୁଅ ଏଥର ଅନୁମାନ କର। ସେମାନେ ତୁମ ବୁଢ଼ାକାଳକୁ କେମିତି ସହାୟକ ହେବେ, ଜାଣି ପାରୁଥିବ ଏଥିରୁ। ଦେବ ଭଲ ପୁଅ, ଶେଷରେ ଏମିତି ହେବ ବୋଲି କିଏ ଜାଣିଥିଲା?” କହୁଁ କହୁଁ ନାରଣବାବୁଙ୍କ କଣ୍ଠରୋଧ ହୋଇ ଆସିଲା।

“ସେ କ'ଣ ଆସନ୍ତା ନାହିଁ?” ପୁଅ ଆଜକୁ ବାରବର୍ଷ ହେଲା ଘରୁ ଗଲାଣି। କେବେ ଥରଟାଏ ପାଇଁ ତା ପାଖକୁ ଯାଇଛ? ସେ କେତେ ବେମାରୀ ପଡ଼ିଲା, ଥରେ ଯାଇଛ ପୁଅକୁ ଦେଖିବା ପାଇଁ। ତା'ର ବାହାଘର ହେଲା, ନାତି ନାତୁଣୀ ହେଲେଣି, କେବେ ଥରେ ଯାଇଛ ସେମାନଙ୍କୁ ଦେଖିବା ପାଇଁ। ତୁମ ବୋହୂ କିଏ, ନାତି ନାତୁଣୀ କିଏ ଦେଖାଇଦେଲେ ତୁମେ କ'ଣ ଚିହ୍ନି ପାରିବ ସେମାନଙ୍କୁ? ପୁଅକୁ ତ ତ୍ୟାଜ୍ୟପୁତ୍ର

କଲଭଳି ସୂତ୍ରପାଞ୍ଜିରୁ କାଟି ଦେଇଛ । ବର୍ତ୍ତମାନ କହୁଛ କ'ଣ ନା ପୁଅ ଏଇ ସହରରେ ରହୁଛି, ଏଠାକୁ ଟିକଏ ଆସୁନି । ବାରବର୍ଷ ହେଲା ପୁଅକୁ ତୁମେ ପୁଅଭଳି ଦେଖିଛ ? ତୁମର ପୁଅଟିଏ ଅଛି ବୋଲି ଏହି ବାରବର୍ଷ କାଳ କେବେ ହନେ ଭୁଲରେ ବି ମନେ ପକାଇଛ ? ପୁଅ ଯେତେବେଳେ ଗୋବିନ୍ଦପୁରରେ ହାଇସ୍କୁଲରେ ପଢ଼ୁଥିଲା, ମୁଁ ତୁମକୁ କେତେ ଲେଖିଲି, କେତେ ନେହୁରା ହେଲି, ତୁମେ ପୁଅକୁ ଦେଖିବାର ନାଁ ଧରିଲ ? ତୁମେ ସେହି ବାପଟି ?''

ସୀମନ୍ତିନୀ ଦେବୀଙ୍କ ଏହି କଥା କେଇପଦରେ ନାରଣବାବୁଙ୍କ ମନରେ ପରିବର୍ତ୍ତନ ଆସିଲା ଭଳି ମୁହଁରୁ ଜଣାପଡ଼ିଲା । ସୀମନ୍ତିନୀ ଦେବୀ କହି ଚାଲିଥାନ୍ତି, ''ପୁଅ ସିନା ତୁମକୁ ଦେଖା କରିବାକୁ ଆସୁନି, ସେ କ'ଣ ମୋତେ ଦେଖା କରିବାକୁ ଆସୁନି କି ? ତୁମେ ଗସ୍ତରେ ବାହାରିଗଲେ ସେ ଏହି ଘରକୁ ଆସେ । ତା'ର ଝୁଙ୍କ୍ ପଖାଳ ଖାଇବ । ସେ ଏଇ ଘରୁ ଏ ଭିତରେ କେତେଥର ପଖାଳଖାଇ ଗଲାଣି ତୁମେ ଜାଣିଛ ? ଏମ.ଏଲ.ଏ. କଲୋନି ମେସ୍‌ରେ ଖାଉଛି । ସେଠି ଭଲ ରନ୍ଧା ହେଉନି ବୋଲି ତୁମେ ନଥିଲା ବେଳେ ଏଠାକୁ ଖାଇବାକୁ ପଳାଇ ଆସେ ।''

''ତୁମେ କ'ଣ ଦେବ ମୁହଁରୁ ଶୁଣିଛ ସୀମନ୍ତିନୀ, ସେ ମନ୍ତ୍ରୀ ହେଉଛି ବୋଲି ?''

''ତୁମେ ତୁମ ପୁଅକୁ ଉ'ଣ ଏଯାଏଁ ଚହ୍ନିନି ? ପୁଅ କ'ଣ ତୁମଭଳି କ୍ଷମତା ଲୋଭୀ ? ସେ କ'ଣ କେବେ ଗୁହାରି କରିବ ମନ୍ତ୍ରୀ ହେବ ବୋଲି ? ଦେବ ମୋଟେ ମନ୍ତ୍ରୀ ହେବା ପାଖ ପଶୁନି । ପୁଅକୁ ଏଠାକୁ ଖୋଜି ଖୋଜି କେତେଜଣ ଟୋକା ଏମ.ଏଲ.ଏ. ଏବେ ଆସିଥିଲେ । ସେମାନଙ୍କ ମୁହଁରୁ ଶୁଣିଛି ପୁଅକୁ ମୁଖ୍ୟମନ୍ତ୍ରୀ କଥାବାର୍ତ୍ତା କରିବାପାଇଁ କେତେ ଖୋଜୁଛନ୍ତି । ପୁଅ କାଳେ ମୋଟେ ଧରାଛୁଆଁ ଦେଉନି ।''

ପୁଅ ମନ୍ତ୍ରୀ ହେବାକଥା ଶୁଣି ନାରଣବାବୁଙ୍କ ମନ କ୍ଷୁଣ୍ଣ ମୋଟ । ହେଲେ ଏତ ରାଜନୀତି ଖେଳ, କେତେବେଳେ କ'ଣ ହେବ କଏ କହିପାରିବ ?

''ଦେବବାବୁଙ୍କୁ ମୁଖ୍ୟମନ୍ତ୍ରୀ ଡେର୍ ବୁଝାଇଲେ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ହେବା ପାଇଁ । ସେ ମୋଟେ ରାଜି ହେବାକୁ ନାହିଁ । ସେ ଅରେ ନା କରିଛନ୍ତି ମାନେ ନା, ହଁ ହେବା ସମ୍ଭବପର ନୁହେଁ । ମୁଖ୍ୟମନ୍ତ୍ରୀ ଯେତେଆଡ଼ୁ ଚାପ ପକାଇବା କଥା ପକାଇଲେ କିନ୍ତୁ କିଛି ହେବାକୁ ନାହିଁ । ମୁଖ୍ୟମନ୍ତ୍ରୀ ଯେତେବେଳେ ଜାଣିଲେ ଦେବବାବୁ ହେଉଛନ୍ତି ବର୍ତ୍ତମାନର ଡ଼ି.ପି.ଆଇ. ନାରଣବାବୁଙ୍କ ପୁଅ, ଡ଼ି.ପି.ଆଇ. କହିଲେ କାଳେ ପୁଅ ରାଜି ହୋଇଯିବ, ସେହି ଆଶାରେ ଡ଼ି.ପି.ଆଇ.ଙ୍କୁ ଡକାଇ ପଠାଇଲେ । ମୁଖ୍ୟମନ୍ତ୍ରୀଙ୍କୁ ବାରଣ କରି କଟକ ସହରର ଏମ.ଏଲ.ଏ. କହିଲେ, ''ସେ ଭୁଲ କରନ୍ତୁନି ଆଜ୍ଞା, ବାପ ପୁଅଙ୍କର ମୋଟେ ପଡ଼େନି । ପୁଅ ଯଦି ହଁ କରିବାକୁ ଯାଉଥିବ, ବାପ ଯଦି ପୁଅକୁ ହଁ କରିବାକୁ କହିବ, ପୁଅ ଚଟ୍ କରି ନା କରିଦେବ । ପୁଅ ବାରବର୍ଷ ହେଲା ପରା ଘର ଛାଡ଼ିଲାଣି, ହନେ ବି ତାଙ୍କ ବାପା ପୁଅ କେଉଁଠି ଅଛି ଦେଖିବାକୁ ଯାଇ ନାହାନ୍ତି ।''

"ଆଁ, ଏମିତି ? ମୁଖ୍ୟମନ୍ତ୍ରୀ ଚମକି ପଡ଼ିଲେ ।" ଏଡ଼େ ଯୋଗ୍ୟପୁଅ ପ୍ରତି ଡି.ପି.ଆଇ.ଙ୍କର ଏମିତି ଅବସ୍ଥାର ?"

ଡି.ପି.ଆଇ. ତ ଜିଦ୍‌ଖୋର ଲୋକ । ପୁଅ ତାଙ୍କୁ କିଛି ନ ପଚାରି ମନକୁମନ ସବୁ କରି ଯାଉଛି ବୋଲି ବାପାଙ୍କର ବଡ଼ କ୍ଷୋଭ । ବାପାଙ୍କୁ ନ ପଚାରି ଆଇ.ଏ.ଏସ୍. ଚାକିରି ଛାଡ଼ିଲା, ପାଟନା କଲେଜର ଶଡ଼ର ପଦ ଛାଡ଼ି ଭୁଦାନରେ ମିଶିଲା, ଶେଷରେ ସେ ବିବାହ କଲା, ବାପାଙ୍କୁ କିଛି ବୋଲି କିଛି ପଚାରି ନାହିଁ । ସେସବୁ ରାଗ ଅଭିମାନ ବୁଢ଼ାଙ୍କ ମନରୁ କ'ଣ ଗଲାଣି ? ବୁଢ଼ା ପୁଅକୁ କହିବେନି କି ବୁଢ଼ାଙ୍କ କଥାକୁ ପୁଅ ମଧ୍ୟ ରଖିବନି ।"

"ତାଙ୍କ ମା ଯଦି କହନ୍ତି, ରଖିବେ କି କୁହ, ମୁଁ ତାଙ୍କ ମା'କୁ କହିବି ।"

"ସମ୍ଭବ ନୁହେଁ ?"

"ସ୍ତ୍ରୀଙ୍କ କଥା ରଖିବେ ?"

"ସ୍ତ୍ରୀ ତ ତାଙ୍କଭଳି ରଚନାତ୍ମକ କର୍ମୀ । ସେ ବି ତ ନିଜେ ମନ୍ତ୍ରୀ ହେବା ବିରୁଦ୍ଧରେ ।"

"ତେବେ ?"

"ବିନୋବାଜୀ କି ତାଙ୍କ ସହକର୍ମୀ ରାଧେଶ୍ୟାମଜୀ କହିଲେ ସେ ରଖି ପାରନ୍ତି । କିନ୍ତୁ ବିନୋବାଜୀ ତ କେବେ ତାଙ୍କୁ ମନ୍ତ୍ରୀ ହେବାପାଇଁ କହିବେନି । ଦେବବାବୁ କ'ଣ ଏମ.ଏଲ.ଏ. ହେବାପାଇଁ ସହଜରେ ରାଜି ହେଉଥିଲେ ? ରାଧେଶ୍ୟାମଜୀ କହିଲାରୁ ସେ ବହୁ କଷ୍ଟରେ ରାଜି ହେଲେ । ଦେବ ପରା ମୋ ପିଲାଦିନ ସାଙ୍ଗ । ହେଲେ, ମୋ କଥା କ'ଣ ରଖିବ ? ମୁଁ ତାକୁ କେତେଥର କହିଲିଣି, ସେ ମୋତେ କ'ଣ ଉତ୍ତର ଦିଏ ଜାଣନ୍ତି ? ସେ କହେ, ଦେଖ, ମୁଁ ତ ଗୋଠଖଣ୍ଡିଆ ଏମ.ଏଲ.ଏ. । ମୁଁ କାହିଁକି ମନ୍ତ୍ରୀ ହେବି କହିଲ ? ମନ୍ତ୍ରୀ କେଉଁମାନେ ହୁଅନ୍ତି ? ଯେଉଁମାନଙ୍କ ପଛରେ ଯଥେଷ୍ଟସଂଖ୍ୟକ ଏମ.ଏଲ୍.ଏ. ଅଛନ୍ତି, ସେହିମାନେ ହିଁ ମନ୍ତ୍ରୀ ହେବେ । ଯେଉଁମାନଙ୍କ ପଛରେ ଯେତେ ଏମ.ଏଲ.ଏ. ସେ ସେତେ ଉଚ୍ଚପାହ୍ୟା ମନ୍ତ୍ରିତ୍ୱ ପାଇବ । ମୋ ପଛଆଡ଼େ ତ ଗୋଟିଏ ସୁଦ୍ଧା ଏମ.ଏଲ.ଏ. ନାହାନ୍ତି, ମୁଁ ତ ନିର୍ଦ୍ଦଳୀୟ, ଗୋଠଖଣ୍ଡିଆ, ମୋତେ ଉଚ୍ଚପାହ୍ୟା ମନ୍ତ୍ରୀପଦ ଦେଇ ଲାଭ କଅଣ ? ମୁଁ ବା ସେହି ମନ୍ତ୍ରୀପଦରେ କେତେଦିନ ରହିପାରିବି ?"

"ତେବେ କ'ଣ କରାଯିବ ବର୍ତ୍ତମାନ ? ଦିଲ୍ଲୀରୁ ତ ନିର୍ଦ୍ଦେଶ, ଦେବବାବୁଙ୍କୁ ଯେକୌଣସି ପ୍ରକାରେ କ୍ୟାବିନେଟ ଭିତରକୁ ଆଣ ।"

"ଆମେ ଦଳେ ଏମ.ଏଲ.ଏ. କ'ଣ ତା ପିଛା ଛାଡ଼ିଛୁ ? ଆମେ ତାକୁ ଯେତେ କହିଲେହେଁ ଯେ ଆମେ ତା ପଛରେ ଅଛୁଁ ଓ ସବୁବେଳେ ରହିବୁ, ତା'ର ଭରସା କରିବାର କିଛି ନାହିଁ, ସେ କ'ଣ ତାକୁ ଶୁଣୁଛି ? ସେ ଓଲଟି କହେ, "ଭାଇ, ଏ ହେଉଛି ରାଜନୀତି, ତୁମ କଥାର ମହତ୍ତ୍ୱ କେତେ ମାତର । ମୁଁ ଯିନା ତୁମ୍ଭମାନଙ୍କୁ ଖୁସି କରି ରଖିପାରିଲେ, ତୁମେମାନେ ମୋ ପଛରେ ସବୁଦିନେ ରହିବ । ଯେଉଁଦିନ ଦେଖିବ, ମୋ ପାଖରୁ କିଛି

ଫାଇଦା ପାଉନାହଁ, ତୁମେ ସେଦିନ ମନକୁମନ ଖସିବ । ତୁମ୍ଭମାନଙ୍କ ମାର୍ଗ ଗୋଟିଏ ପ୍ରକାରର, ମୋ ମାର୍ଗ ଆଉ ଏକ ପ୍ରକାରର । କାହାର ତ କାହା ସହିତ ମେଳ ନାହିଁ । ଆମ ସମ୍ପର୍କ ଯେ କେତେଦିନ ଭଲ ରହିବ ଭଗବାନଙ୍କୁ ଜଣା । ମନ୍ତ୍ରିତ୍ୱ ପାଇଁ ମୋର ଇଚ୍ଛା ନାହିଁ । ମୋତେ ଟଣାଓଟରା କରି ଲାଭ କଅଣ ?’’

ମୁଖ୍ୟମନ୍ତ୍ରୀଙ୍କ ଚିନ୍ତା, ଏମ.ଏଲ୍.ଏ.ମାନଙ୍କ ଚିନ୍ତା, ଦେବବାବୁ ରାଜି ହେଉ ନାହାନ୍ତି । ତେଣେ ଦିଲ୍ଲୀରୁ ସବୁବେଳେ ତାଗିଦ୍ ଦେବବାବୁଙ୍କୁ ଯେକୌଣସି ପ୍ରକାରେ ମନ୍ତ୍ରୀ କର । କ’ଣ କରାଯିବ ଏ ପରିସ୍ଥିତିରେ ? ମନ୍ତ୍ରୀ ତାଲିକାରୁ ଦେବବାବୁଙ୍କ ନାଁ କାଟିଦେବା ଛଡ଼ା ଅନ୍ୟ ଉପାୟ ନାହିଁ । ଆଜି ପ୍ରଧାନମନ୍ତ୍ରୀଙ୍କ ସହିତ କଥାବାର୍ତ୍ତା କରି ମନ୍ତ୍ରୀ ତାଲିକାକୁ ଚୂଡ଼ାନ୍ତ କରିବାକୁ ପଡ଼ିବ । ଆସନ୍ତାକାଲି ମନ୍ତ୍ରୀମାନଙ୍କୁ ଶପଥ ନେବାକୁ ହେବ । ଦେବବାବୁଙ୍କ ପାଇଁ ସେମାନେ ଆଉ କେତେଦିନ ଗଡ଼ାଇ ଗଡ଼ାଇ ନେବେ ? ତେଣେ ମନ୍ତ୍ରୀ ତାଲିକା ଜାଣିବା ପାଇଁ ଏମ.ଏଲ୍.ଏ. ଓ ସାଧାରଣ ଲୋକେ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେଣି ।

ଏହାପରେ ରାତି ରାତି ମୁଖ୍ୟମନ୍ତ୍ରୀ ଦିଲ୍ଲୀକୁ ଫୋନ୍ ଉଠାଇଲେ, ପ୍ରଧାନମନ୍ତ୍ରୀଙ୍କୁ ତାଙ୍କ ମନ୍ତ୍ରୀ ତାଲିକା ଜଣାଇଦେବା ପାଇଁ । ମୁଖ୍ୟମନ୍ତ୍ରୀ ତାଲିକା ପଢ଼ି ଶେଷ କରିଛନ୍ତି କି ନାହିଁ, ପ୍ରଧାନମନ୍ତ୍ରୀ ପଚାରିଲେ, ‘‘ଦେବବାବୁଙ୍କ ନା କ’ଣ ମନ୍ତ୍ରିମଣ୍ଡଳରେ ନାହିଁ ?’’

ମୁଖ୍ୟମନ୍ତ୍ରୀ କହିଲେ, ‘‘ଦେବବାବୁଙ୍କୁ ଯେତେ କହିବା ସତ୍ତ୍ୱେ ସେ ମନ୍ତ୍ରୀ ହେବାକୁ ମନା କରିଦେଲେ ।’’

‘‘କାହିଁକି ? କାରଣ କ’ଣ ?’’

‘‘ସେ କହୁଛନ୍ତି, ସେ କୌଣସି ଦଳର ନୁହନ୍ତି, ତେଣୁ ସେ ମନ୍ତ୍ରୀ ହେବାକୁ ଅନିଚ୍ଛୁକ ।’’

‘‘ହେଉ, ଦେବବାବୁଙ୍କୁ ଫୋନ୍‌ଠାକୁ ଡାକନ୍ତୁ । ମୁଁ ତାଙ୍କ ସହିତ କଥାବାର୍ତ୍ତା ହେବାକୁ ଚାହେଁ ।’’ ପ୍ରଧାନମନ୍ତ୍ରୀ କହିଲେ ।

ଦେବବାବୁଙ୍କୁ ଡାକିବା ପାଇଁ ଲୋକେ ଦୌଡ଼ିଲେ ଏମ.ଏଲ୍.ଏ. କଲୋନୀକୁ । ସେଠି ତାଙ୍କୁ ନ ଦେଖି କେତେଜଣ ଏମ.ଏଲ୍.ଏ. ଦୌଡ଼ିଲେ କଟକରେ ତା’ର କେତେଜଣ ସାଙ୍ଗସାଥୀଙ୍କ ଘରକୁ । ସେଠି ତାଙ୍କୁ ନ ଦେଖି ଦୌଡ଼ିଲେ ଡ଼.ପି.ଆଇ.ଙ୍କ ଘରକୁ । କାଳେ ସେ ସେଠି ଥିବେ ।

ଟୋକା ଏମ.ଏଲ୍.ଏ. ଦଳେ ଡ଼.ପି.ଆଇ.ଙ୍କ ଘରେ ପହଞ୍ଚି ଶୁଣିଲେ ଦେବବାବୁ ସେଠି ଅଛନ୍ତି । ସଙ୍ଗେ ସଙ୍ଗେ ଭିତରକୁ ଖବର ପଠାଗଲା ଦିଲ୍ଲୀରୁ ପ୍ରଧାନମନ୍ତ୍ରୀ ତାଙ୍କୁ ଡକାଇଛନ୍ତି ଫୋନ୍‌ରେ କଥାବାର୍ତ୍ତା କରିବା ପାଇଁ । ଦେବବାବୁ ତରତର ହୋଇ ଖାଇଦେଇ ବାହାରି ଆସିଲେ । ତା ପଛରେ ଶ୍ରୀମତୀ ଦେଖା । ଦେବବାବୁଙ୍କୁ ଘେରିଯାଇ

ସେମାନେ କହିଲେ, "ତୋତେ ଖୋଜି ଖୋଜି ଆମେ ନସ୍ତାନାବୁଦ ହୋଇଗଲୁଣି । ତୁ ଆସି ଏଠି ? ଖିଆପିଆ ସରିଗଲାଣି ତ ? ଚାଲ ଏଥର, ଆଉ ଡେରି କାହିଁକି ?"

ଗଲାବେଳେ ମା'ଙ୍କୁ ଦେବ କହିଦେଇଗଲା, "ହେଇ ବୋଉ ! ମୁଁ ଯାଉଛି । ବାପା ଆସିଲେ କହିବୁନି ମୁଁ ଆସିଥିଲି ବୋଲି ।"

ସାଙ୍ଗମାନେ କହୁଥାନ୍ତି "ହେଇ ଥା', ବାପାଙ୍କୁ ଲୁଚି ଲୁଚି କେତେଦିନ ରହିବୁ ଦେଖିବାନି ? ବାପା ତ ଡି.ପି.ଆଇ., ତୁ ତ ମନ୍ତ୍ରୀ ହେବୁ, କେମିତି ବାପ-ପୁଅ ଲୁଚକାଳି ଖେଳିବ ଆମେ ଦେଖିବୁନି !

"ଫେରେ ସେଇ ମନ୍ତ୍ରୀକଥା ଉଠୁଛ କାହିଁକି ? ମୁଁ ପରା ବାରମ୍ବାର ମନାକଲି । ମୁଁ ମନ୍ତ୍ରୀ ହେଲେ ତୁମର ସବୁ କ'ଣ ଲାଭ ହେବ କହିଲ ? ମୁଁ ମନ୍ତ୍ରୀ ହୁଏ ବା ନ ହୁଏ ତୁମମାନଙ୍କୁ ଛାଡ଼ ନାହିଁ । କଥାରେ ଅଛି ପରା 'ଯାହା ବାହା ତା'ର ମନ ନାହିଁ, ସାହି-ପଡ଼ିଶାଙ୍କୁ ଛାଡ଼ ନାହିଁ ।"

ସନ୍ଧ୍ୟାବେଳେ କଟକ ରେଡ଼ିଓରୁ ମନ୍ତ୍ରୀ ତାଲିକା ପ୍ରଚାରିତ ହୋଇଗଲା । ମଂନ୍ତ୍ରୀ ତାଲିକାରେ ଦେବବାବୁଙ୍କ ନାମ ମୁଖ୍ୟମନ୍ତ୍ରୀଙ୍କ ନାମ ପରେ । ତାଙ୍କ ପରେ ଅନ୍ୟ ମଂନ୍ତ୍ରୀମାନଙ୍କ ନାମ । ମନ୍ତ୍ରୀ, ରାଷ୍ଟ୍ରମନ୍ତ୍ରୀ, ଉପମନ୍ତ୍ରୀ ମିଶି ହେଲେ ଅଠେଇଶ, କେବିନେଟ୍ ମନ୍ତ୍ରୀ ଏଗାରଜଣ ମୁଖ୍ୟମନ୍ତ୍ରୀଙ୍କୁ ମିଶାଇ । କେବିନେଟ୍ ମନ୍ତ୍ରୀ ତାଲିକାରେ ଦେବବାବୁଙ୍କ ନାଁ ମୁଖ୍ୟମନ୍ତ୍ରୀଙ୍କ ଠିକ୍ ତଳକୁ । ଦେବବାବୁଙ୍କୁ ଦାୟିତ୍ୱ ଦିଆଗଲା ଶିକ୍ଷା ଓ ରାଜସ୍ୱ ବିଭାଗ ।

କଟକ ରେଡ଼ିଓରୁ ମନ୍ତ୍ରୀଙ୍କ ତାଲିକା ଶୁଣୁଥିଲେ ନାରାୟଣବାବୁ । ସେଦିନ ସେ ମନ୍ତ୍ରୀ ତାଲିକା ଶୁଣିବା ପାଇଁ ସଅଳ ସଅଳ ଅଫିସ୍‌ରୁ କ୍ୱାର୍ଟରକୁ ଫେରି ଆସିଥିଲେ । ଯେତେବେଳେ ଶୁଣିଲେ ପୁଅ ଉଚ୍ଚପାହ୍ୟା କେବିନେଟ୍ ମନ୍ତ୍ରୀପଦରେ ବସ୍ଯି ଯାଇଛି, ତାଙ୍କ ମନ ଆନନ୍ଦରେ କୁଣ୍ଢେ ମୋଟ । ସେ ରେଡ଼ିଓ ଶୁଣୁ ଶୁଣୁ ଘର ଭିତରକୁ ଦୌଡ଼ିଯାଇ ସୀମନ୍ତିନୀ ଦେବୀଙ୍କୁ ଡାକ କହିଲେ, "ଶୁଣୁଛ, ଶୁଣୁଛ ସୀମନ୍ତିନୀ, ଆମ ଦେବ କେମିତି କେବିନେଟ୍ ପାହ୍ୟାରେ ଜଣେ ମନ୍ତ୍ରୀପଦ ପାଇଲା । କେବିନେଟ୍‌ରେ ତା ସ୍ଥାନ ଖୁବ୍ ଉପରେ, ମୁଖ୍ୟମନ୍ତ୍ରୀଙ୍କ ତଳକୁ । ଯାହା କହ ସୀମନ୍ତିନୀ, ଦେବ ପୁଅଭଳି ପୁଅ ଖଣ୍ଡେ । ଏତେଦିନେ ସେ ମୋ ସମ୍ମାନ ରଖିଲା ଜାଣ । ମୁଁ ଜାଣିଥିଲି ସୀମନ୍ତିନୀ, ସେ ଦିନେ ମୋ ସମ୍ମାନକୁ ଏମିତି ଉଚ୍ଚରେ ଟେକି ରଖିପାରିବ ।"

"ଆଃ, ହାଃ, ତୁମେ ଏତେଦିନଯାଏ କୁଆଡ଼େ ଥିଲ ଯେ ! ଆଜି ପୁଅ ମନ୍ତ୍ରୀ ହେଲା ବୋଲି ମୋ ପୁଅ, ମୋ ପୁଅ ବୋଲି ଧାଇଁ ଆସୁଛ ? ବାରବର୍ଷ ହେଲା ପୁଅକୁ ତ ପୁରାପୁରି ଭୁଲି ଯାଇଥିଲ । ତୁମର ଗୋଟିଏ ବୋଲି ପୁଅ, ସେ ବଞ୍ଚିଛି କି ନାହିଁ ସେ ଖିଆଲ କେବେ ଦିନକ ପାଇଁ ମନକୁ ଆଣିଥିଲ ? ଆଜି ପୁଅ ମନ୍ତ୍ରୀ ହେଲା ବୋଲି ଦୌଡ଼ି ଆସୁଛ ?"

ଶ୍ରୀମନ୍ତ୍ରୀଦେବୀଙ୍କ ଏଇ କଥା କେଇପଦ ତୀରଭଳି ଭେଦକଲା ନାରଣବାବୁଙ୍କ କଲିଜାରେ । ଉଜ୍ଜ୍ୱଳ ହୋଇ ଆସୁଥିବା ମୁହଁ ତାଙ୍କର ଏହି କଥା କେଇପଦରେ ବିମର୍ଷ ହୋଇଗଲା । ସତେତ, ଗତ ବାରବର୍ଷ ଧରି ସେ ନିଜ ପୁଅକୁ ପୁଅ ମର୍ଯ୍ୟାଦା ତ ଦେଇ ନାହାନ୍ତି । ପ୍ରକୃତରେ କେଡ଼େ ଅବିବେକୀ ସେ । ଦେବ ଭଳି ଗୁଣବନ୍ତ ପୁଅ ପ୍ରତି ସେ କମ୍ ଅବିଚାର କରି ନାହାନ୍ତି । ନାରାୟଣବାବୁଙ୍କ ଆଖି ଦୁଃଖରେ ଜକେଇ ହୋଇ ଆସିଲା ।

ରାଜଭବନରେ ମନ୍ତ୍ରୀମାନଙ୍କ ଶପଥ ନେବା ଉତ୍ସବରେ ନାରାୟଣବାବୁ ଓ ଶ୍ରୀମନ୍ତ୍ରୀ ଦେବୀ ନିମନ୍ତ୍ରିତ ହୋଇ ଯାଇଥାନ୍ତି । ପୁଅ ଯେତେବେଳେ ଶପଥ ନେବାପାଇଁ ଠିଆ ହେଲା, ନାରାୟଣବାବୁଙ୍କ ଆଖି ଛଳ ଛଳ ହୋଇ ଆସିଲା ! ଏହାକୁ ଲକ୍ଷ୍ୟ କରୁଥିଲେ ଶ୍ରୀମନ୍ତ୍ରୀ ଦେବୀ । ଗୋଟିଏ ବୋଲି ପୁଅ, ପୁଅ ପୁଣି ଏତେ ଗୁଣବନ୍ତ, ତା ପ୍ରତି ତା ବାପା କ'ଣ ଅନ୍ୟାୟ କରି ନାହାନ୍ତି ସତେ ! କୌଣସି ବାପ ଯେତେ ନିଷ୍ଠୁର ହୃଦୟ ହେଲେବି ପୁଅ ପ୍ରତି କ'ଣ କେବେ ଏତେ ଅବିଚାର କରିପାରେ ? ଶ୍ରୀମନ୍ତ୍ରୀଦେବୀଙ୍କ ଆଖି ମଧ୍ୟ ଛଲେଇ ଆସିଲା ।

ଶପଥ ଉତ୍ସବ ପରେ ସରକାରୀ ଗାଡ଼ିରେ ଦେବବାବୁ ଚାଲିଗଲେ ସେକ୍ରେଟେରିଏଟ୍ । ତେଣେ ତା ବିଭାଗର ଅଫିସରମାନେ ତାଙ୍କୁ ଅପେକ୍ଷା କରିଥିବେ ଆଲୋଚନା ପାଇଁ । ମୁଖ୍ୟମନ୍ତ୍ରୀଙ୍କ ଗାଡ଼ିରେ କେତେଜଣ ପୁରୁଖା ଏମ.ଏଲ.ଏ. ଚାଲିଲେ ସେକ୍ରେଟେରିଏଟ୍ । ବାଟରେ ଯାଉଁ ଯାଉଁ କଥାପଡ଼ିଲା ଦେବବାବୁଙ୍କର ବିଭାଗ ନେଇ । ଜଣେ ପୁରୁଖା ଏମ.ଏଲ.ଏ. କହିଲେ, "ଦେବବାବୁଙ୍କୁ ଶିକ୍ଷାବିଭାଗ ଦେଇ ଭଲ ହେଲନି । ତାଙ୍କ ବାପା ଯେତେବେଳେ ସେହି ବିଭାଗରେ ଡି.ପି.ଆଇ., ପୁଅ ସେହି ବିଭାଗରେ ମନ୍ତ୍ରୀ ହେଲେ ଶାସନ କାର୍ଯ୍ୟରେ ନିଶ୍ଚୟ କିଛି ନା କିଛି ବାଧା ଉପୁଜିବ ।"

"ଆପଣ ଜାଣିନାହାନ୍ତି ଗୋବିନ୍ଦବାବୁ, ଦେବବାବୁଙ୍କୁ ଶିକ୍ଷାବିଭାଗ ଦିଆଯିବା କଥା ମୁଁ କହିନି । ଦିଲ୍ଲୀରୁ ଖୋଦ୍ ପ୍ରଧାନମନ୍ତ୍ରୀ ନିଜେ କହିଛନ୍ତି, ଦେବବାବୁଙ୍କୁ ଶିକ୍ଷାବିଭାଗ ଦେବାପାଇଁ । ଦେବବାବୁ ଶିକ୍ଷା ବିଭାଗରେ ଥିଲେ । ଆମ ରାଜ୍ୟର ଶିକ୍ଷା ସମ୍ପର୍କରେ ତାଙ୍କର ନିଶ୍ଚୟ କିଛି ଗୋଟେ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ଥିବ । ସେଥିପାଇଁ ସେହି ବିଭାଗ ତାଙ୍କୁ ଦିଆଗଲା ।" ମୁଖ୍ୟମନ୍ତ୍ରୀ କହିଲେ ।

"ତା ଯଦି ହୁଏ ତେବେ ତାଙ୍କ ବାପାଙ୍କୁ ଡି.ପି.ଆଇ. ପଦରୁ ଅନ୍ୟତ୍ର ବଦଳି କରିଦେବା ଉଚିତ ଥିଲା ।"

"ସେକଥା ଅବଶ୍ୟ ମୁଁ ଚିନ୍ତା କରୁଛି । ତେବେ ନାରଣବାବୁ ମୋଟେ ଛଅ ମାସ ହେଲା ଡି:ପି:ଆଇ: ପଦକୁ ଆସିଛନ୍ତି । ହଠାତ୍ ତାଙ୍କୁ ସେଠୁ ବଦଳି କରିଦେଲେ ସେ ମନ କଷ୍ଟ କରିବେ । ତାଙ୍କର ଚାକିରିକାଳ ଆଉ ମାତ୍ର ବର୍ଷଟାଏ ଅଛି । ତା ଭିତରେ ପୁଣି ତାଙ୍କୁ ବଦଳି କଲେ ତାଙ୍କ ପ୍ରତି ଏକ ଅନ୍ୟାୟ ହେବ । ମୁଁ ଭାବୁଛି ଦେବବାବୁ ଭାରି ଖାଡ଼ା ଲୋକ । ତାଙ୍କ ବାପା ବି ସେହିଭଳି ଖାଡ଼ା ଲୋକ । ଶାସନ କାର୍ଯ୍ୟରେ କିଛି

ଅସୁବିଧା ହେବନି ବୋଲି ଭାବୁଛି । ଅନାଉଁ ଅନାଉଁ ବର୍ଷଟାଏ ଚାଲିଯିବ । ଯଦି କିଛି ଅସୁବିଧା ହୁଏ ତେବେ ଦେଖିବା ।"

ଶପଥ ନେବାପରେ ଦେବବାବୁ ଶିକ୍ଷାମନ୍ତ୍ରୀଙ୍କ କ୍ୱାଟରରେ ରହିବାପାଇଁ ଚାଲିଗଲେ । ତା ପୂର୍ବରୁ ତାଙ୍କ ସ୍ତ୍ରୀ ଓ ପିଲାମାନେ ଭୁବନେଶ୍ୱରକୁ ଚାଲି ଆସିଥିଲେ । ଦେବବାବୁ ଗୋବିନ୍ଦପୁରରୁ ଆସିଲାବେଳେ ଗୋବିନ୍ଦପୁର ଗ୍ରାମଦାନ ସଂସ୍ଥାର ଦାୟିତ୍ୱ ବିଭିନ୍ନ ଲୋକଙ୍କ ଉପରେ ଦେଇ ଏହି ସଂସ୍ଥାକୁ ସେ ଯେମିତି ଚଳାଉଥିଲେ, ସେମିତି ଚଳାଇବା ପାଇଁ ଉପଦେଶ ଦେଇ ଚାଲି ଆସିଥିଲେ । କେତେବେଳେ ଯଦି କିଛି ଅସୁବିଧା ହୁଏ, ତେବେ ସଙ୍ଗେ ସଙ୍ଗେ ତାଙ୍କ ପରାମର୍ଶ ନେବାକୁ ଯେମିତି ନ ଭୁଲନ୍ତି, ତାଗିଦ୍ କରିଦେଇ ଆସିଥିଲେ ।

## ଏକଚାଳିଶ

କେନ୍ଦ୍ରରୁ ଯେତେ ପ୍ରକାର ସାହାଯ୍ୟ ରାଜ୍ୟ ପାଇଁ ଆସୁଛି, ସେହି ସାହାଯ୍ୟର ମୋଟା ଭାଗ ଯାଉଛି ମନ୍ତ୍ରୀ ଓ ମୁଖିଆ ମୁଖିଆ ଏମ:ଏଲ:ଏ:ଙ୍କ ନିର୍ବାଚନ ମଣ୍ଡଳୀକୁ । ନିଜ ନିଜ ନିର୍ବାଚନ ମଣ୍ଡଳୀରେ କେମିତି ଅଧିକ ସ୍କୁଲ ବସିବ, ରାସ୍ତା ହେବ, କୂଅ ଖୋଳାଯିବ, ମାଛଚାଷ ହେବ, କଳକାରଖାନା ବସିବ ସେଥିପାଇଁ ସମସ୍ତଙ୍କ ଭିଡ଼ା ଓଟରା । ଯେଉଁ ନିର୍ବାଚନ ମଣ୍ଡଳୀର ଏମ:ଏଲ:ଏ:ମାନେ ନୂଆ, ପ୍ରଭାବଶାଳୀ ନୁହଁନ୍ତି, ସେମାନଙ୍କୁ କେହି ପଚାରୁ ନଥାନ୍ତି । ସେମାନଙ୍କ ନିର୍ବାଚନ ମଣ୍ଡଳୀର ଯେଉଁ ଦୁରବସ୍ଥା, ସେହି ଦୁରବସ୍ଥା । ତେଲିଆ ମୁଣ୍ଡରେ ତେଲ ଭଳି, ଯେଉଁ ନିର୍ବାଚନ ମଣ୍ଡଳୀରେ ଆଗରୁ ଅଧିକ ଖର୍ଚ୍ଚ ହୋଇ ଆସିଛି ଏଥର ବି ସେହିଠାରେ ଖର୍ଚ୍ଚ ଚାଲିଛି । ଯେଉଁଠି କିଛି ହେଉନାହିଁ, କେହି ଦେଖିବାକୁ ନାହାନ୍ତି ସେଠି ।

ଏହି ଯେଉଁ ଟଙ୍କା ବିଭିନ୍ନ ନିର୍ବାଚନ ମଣ୍ଡଳୀକୁ ଯାଉଛି ସେଥିରୁ କେତେ ଯେ ବାଟମାରଣା ହୋଇଯାଉଛି ତା'ର କଳନା ନାହିଁ । ନିର୍ବାଚନ ମଣ୍ଡଳୀର ଥୋଡ଼େ ଲୋକ ଅନାଇ ବସିଛନ୍ତି କେମିତି ଟଙ୍କା ଆସିବ । ସେମାନେ ସେଥିରୁ କେମିତି କିଛି କିଛି ପାଇବେ । ସେମାନଙ୍କୁ ଖୁସିକରି ନ ରଖିଲେ ପୁଣି ଆସନ୍ତା ନିର୍ବାଚନ ତ ଅଛି । ତେଣୁ ଏହି ଭୟରେ ଯିଏ ପାରିଲେ ଯିଏ ଯେତେ ଅଧିକ ନିଜ ନିର୍ବାଚନ ମଣ୍ଡଳୀକୁ ବୋହିଲେ ।

ଯେଉଁମାନଙ୍କର ପାଣିଲାବାଲା ଏମ.ଏଲ.ଏ. ନାହାନ୍ତି, ସେମାନେ ଶୁଖିଲାରେ ପଡ଼ି ରହିଲେ । ସେମାନଙ୍କ କଥା କେହି ପଚାରିବାକୁ ନାହିଁ । ଟଙ୍କା କେଉଁବାଟେ ଆସୁଛି, କେଉଁବାଟେ ଯାଉଛି ସେସବୁ ଅଞ୍ଚଳର ଏମ.ଏଲ୍.ଏ.ମାନେ ଜାଣିପାରୁ ନାହାନ୍ତି । ମନ୍ତ୍ରୀ-

ମାନଙ୍କର ଯଦ ଦସ୍ତା ହେଲ ଲୁକ୍ରରକୁ ଗ୍ରେଟି ଖଣ୍ଡେ ଫୋପାଡ଼ିଦେଲ ଭଲ କରୁ କରୁ ସାହାଯ୍ୟ ସେସବୁ ନିର୍ବାଚନ ମଣ୍ଡଳୀକୁ ଫୋପାଡ଼ିଦେଲେ, ନଚେତ୍ ନାହିଁ ।

ଦେବବାବୁ ମନ୍ତ୍ରୀ ହେବା କେତେଦିନ ହୋଇଗଲଣି । ଏହା ଭିତରେ କେନ୍ଦ୍ରରୁ ଆସିଥିବା ସାହାଯ୍ୟ କେତେ ନିର୍ବାଚନ ମଣ୍ଡଳୀକୁ ବଣ୍ଟାଗଲଣି । ଏହି ବଣ୍ଟାବଣ୍ଟି ପାଇଁ ମନ୍ତ୍ରୀ, ଏମ୍.ଏଲ୍.ଏ.ମାନଙ୍କ ଭିତରେ କେତେ କଳକଳିଆ, କେତେ ଟଣାଓଟରା, କେତେ ମାନ ମନାନ୍ତର । ମୁଖ୍ୟମନ୍ତ୍ରୀ କେତେକଙ୍କୁ ପାର୍ଟି ମିଟିଂରେ ବୁଝାଇ ବୁଝାଇ ନସ୍ତାନାବୁଦ ହୋଇଗଲେଣି । ବିଭିନ୍ନ ନିର୍ବାଚନ ମଣ୍ଡଳୀରେ ଉନ୍ନୟନ କାମ ପାଇଁ ଭିନ୍ନ ଭିନ୍ନ ବରାଦ ।

ବଡ଼ ବିଚିତ୍ର, ଦେବବାବୁଙ୍କ ନିର୍ବାଚନ ମଣ୍ଡଳୀ ପାଇଁ କିଛି ବରାଦ ନାହିଁ । କେନ୍ଦ୍ରରୁ ଆସିଥିବା ସାହାଯ୍ୟ କେମିତି ତାଙ୍କ ନିର୍ବାଚନ ମଣ୍ଡଳୀକୁ ଯିବ, ସେଥିପାଇଁ ତାଙ୍କର କିଛି ଉଦ୍‌ବେଗ ନାହିଁ କି ଅନୁରୋଧ ନାହିଁ । ଯେମିତିକି ସେ ତାଙ୍କ ନିର୍ବାଚନ ମଣ୍ଡଳୀ କଥା ମୋଟେ ଭାବୁ ନାହାନ୍ତି ।

ଦେବବାବୁଙ୍କ ଏଭଳି ମନୋବୃତ୍ତି ଦେଖି ମୁଖ୍ୟମନ୍ତ୍ରୀ ତାଟଙ୍କା । ସବୁ ମନ୍ତ୍ରୀ ନିଜ ନିଜ ନିର୍ବାଚନ ମଣ୍ଡଳୀକୁ ବିଭିନ୍ନ କାର୍ଯ୍ୟ ପାଇଁ ଭିନ୍ନ ଭିନ୍ନ ବରାଦରେ ଟଙ୍କା ବୁହା ଚାଲିଥିଲବେଳେ ଦେବବାବୁଙ୍କ ନିର୍ବାଚନ ମଣ୍ଡଳୀ ପାଇଁ କିଛି ବି ଯାଇନି । ମୁଖ୍ୟମନ୍ତ୍ରୀଙ୍କୁ ବଡ଼ ଅଡୁଆ ଲାଗୁଥାଏ । ଦେବବାବୁ କିଛି ସାଧାରଣ ମନ୍ତ୍ରୀ ନୁହନ୍ତି, ତାଙ୍କ ତଳକୁ, ସବୁ ମନ୍ତ୍ରୀଙ୍କ ଉପରେ ସିଏ । ନିଜ ନିର୍ବାଚନ ମଣ୍ଡଳୀକୁ ସେ ନିଜେ କେତେ ବୋହି ନେଲେଣି, ଅଥଚ ସ୍ତ୍ରୀଙ୍କ ନିର୍ବାଚନ ମଣ୍ଡଳୀ ପାଇଁ କିଛି ଯିବାକୁ ନାହିଁ । ସେଆଡ଼କୁ ମଧ୍ୟ ଦେବବାବୁଙ୍କ ଖିଆଲ ନାହିଁ ।

ଦିନେ ବଡ଼ ବ୍ୟସ୍ତ ହୋଇ ମୁଖ୍ୟମନ୍ତ୍ରୀ ଦେବବାବୁଙ୍କୁ ପଚାରିଲେ, "ଦେଖନ୍ତୁ ଦେବବାବୁ, କେନ୍ଦ୍ରରୁ ଯେଉଁସବୁ ସାହାଯ୍ୟ ଆସୁଛି ସେହି ସାହାଯ୍ୟ କେମିତି ଭିନ୍ନ ଭିନ୍ନ ନିର୍ବାଚନ ମଣ୍ଡଳୀକୁ ଯିବ ସେଥିପାଇଁ ଲୋକପ୍ରତିନିଧିମାନଙ୍କ ଭିତରେ ଟଣାଓଟରା ଲାଗିଥିଲବେଳେ ଆପଣ ଯେ ଚୁପ୍ ହୋଇ ବସିଛନ୍ତି, ସେଇଆ ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଛି । ଆପଣଙ୍କ ନିର୍ବାଚନ ମଣ୍ଡଳୀ ପାଇଁ କିଛି ବ୍ୟୟବରାଦ ଯୋଜନା କ'ଣ ନାହିଁ ଆପଣଙ୍କର ?

ହସିଲେ ଦେବବାବୁ, "ଆଜ୍ଞା, ସେଇଠି ଆପଣଙ୍କ ମତ ଓ ମୋ ମତ ଭିତରେ ପାର୍ଥକ୍ୟ । ଆପଣ ଯେମିତି ଭାବରେ ଉପରୁ ଟଙ୍କା ନେଇ ଗ୍ରାମବାସୀଙ୍କ ଉପରେ ଅଜାଡ଼ି ଦେଉଛନ୍ତି, ସେମାନେ ତା'ର ସଦ୍ ବ୍ୟବହାର କରୁଛନ୍ତି କି କ'ଣ ଦେଖିଛନ୍ତି ? ଓଲଟି ସେ ଟଙ୍କାରୁ କିଛି ଏଆଡ଼େ ସେଆଡ଼େ ବାଟମାରଣା ହୋଇ ଚାଲିଯାଉଛି । ଆପଣମାନେ ଜାଣି ମଧ୍ୟ କିଛି କରିପାରୁ ନାହାନ୍ତି ।"

"ଲୋକଙ୍କ ଦୃଷ୍ଟି ସବୁବେଳେ ସରକାରୀ ସାହାଯ୍ୟ ଉପରେ । ଏବର୍ଷ କେତେ ଆସୁଛି, କେଉଁ କେଉଁ ବାବଦରେ, ଆମ ଭାଗ ସେଥିରୁ କେତେ ପଡ଼ିବ, ତା'ର ଉପରେ ଭିଡ଼ା ଓଟରା । ଏଇକଥା ଆରମ୍ଭରୁ ଲାଗି ଆସିଛି । ଅନ୍ୟ ଦଳ ସରକାର ଏଇଆ

କରୁଥିଲେ, ଆପଣଙ୍କ ଦଳ ସରକାର ଠିକ୍ ସେଇଆ କରୁଛନ୍ତି । ଟଙ୍କା ଆସୁଛି, ଯାଉଛି, କିନ୍ତୁ ଗାଁମାନଙ୍କର ଉନ୍ନତି ହେବାକୁ ନାହିଁ ।''

ସ୍ୱାଧୀନତା ଦିନଠାରୁ ଗାଁମାନଙ୍କର ଯେଉଁ ଅବସ୍ଥା ଥିଲା, ବର୍ତ୍ତମାନ ବି ସେହି ଅବସ୍ଥାହିଁ ତ ଅଛି । କାଁ ଭାଁ କେତେ ଗାଁରେ ଯାହାକିଛି ଉନ୍ନତି ହୋଇଛି ସେ ପୁଣି କି ଉନ୍ନତି ? ଯେତେବେଳ ପର୍ଯ୍ୟନ୍ତ ଲୋକଙ୍କଆଡ଼ୁ ସ୍ୱତଃପ୍ରବୃତ୍ତି ହୋଇ ବଗ୍ରହ ନ ଆସିଛି, ଆମ ଗାଁରେ ଅମକେଇ ହେବ, ଆମର ସମକେଇ କରିବା କଥା ସେ ପର୍ଯ୍ୟନ୍ତ କିଛି ହୋଇପାରିବ ନାହିଁ । ଆପଣମାନେ ଉପରୁ ଯେତେ ଅର୍ଥ ବଣ୍ଟାଉଥିଲେ ମଧ୍ୟ ତାହା ଠିକ୍ ଠିକ୍ ବାଟରେ ନ ଯାଇ ଏଆଡ଼େ ସେଆଡ଼େ ଗୁଳି ଯାଉଥିବ ।

''ମୋ ଅଞ୍ଚଳର କୌଣସି ଲୋକ ମୋତେ କୌଣସି ଉନ୍ନୟନ ପାଇଁ କିଛି କହିବେନି ? ସେମାନଙ୍କର ବିଶ୍ୱାସ ଜନ୍ମିଛି, ସେମାନଙ୍କ ନିଜ ହାତ, ସେମାନଙ୍କ ନିଜ ପରିଶ୍ରମ, ସେମାନଙ୍କ ବଡ଼ ସାହାଯ୍ୟ, ସରକାରୀ ସାହାଯ୍ୟ ତା ତୁଳନାରେ କିଛି ନୁହେଁ । ମୋ ଅଞ୍ଚଳର ଲୋକେ ଏହା ଜାଣନ୍ତି । ସେମାନେ ମୋତେ କେବେ କହିବେନି ସରକାରୀ ସାହାଯ୍ୟ କଥା । ସେମାନେ ସେମାନଙ୍କର ସବୁ ଉନ୍ନୟନ କାର୍ଯ୍ୟ ନିଜ ପରିଶ୍ରମରେ କରୁଛନ୍ତି । ମୁଁ ମନ୍ତ୍ରୀ ହେଲପରେ ଯଦି ସରକାରୀ ସାହାଯ୍ୟ ନେଇ ସେମାନଙ୍କ ଉପରେ ଅଜାଡ଼ିଦିଏ, ତେବେ ସେମାନେ ମୋତେ ଓଲଟି ଘୃଣା କରିବେ । ମୁଁ ସେମାନଙ୍କ ମନରେ ଯେଉଁ ଆତ୍ମବିଶ୍ୱାସ ଟିକକ ଆଣିପାରିଛି, ଯେ ସେମାନେ ନିଜ ପରିଶ୍ରମ ବଳରେ ସବୁକିଛି କରିପାରିବେ—ସେଇ ବିଶ୍ୱାସଟିକକ ନଷ୍ଟ ହୋଇଯିବ । ମୋ ଅଞ୍ଚଳ ପାଇଁ ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁନି । ଅନ୍ୟ ବହୁ ଅଞ୍ଚଳ ଅଛି ଯେଉଁମାନଙ୍କର କିଛି ହୋଇନି । ଆପଣ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଯାଆନ୍ତୁ ।

× × × ×

''ବୁଝିଲ ସୀମନ୍ତିନୀ ! ଆଜି ମନ୍ତ୍ରୀ ଡକାଇଛନ୍ତି ମୋତେ ତାଙ୍କ କୋଠିକୁ । ମୋ ସହିତ କେତେକ ବିଷୟ ଆଲୋଚନା ହେବ । ସେକ୍ରେଟେରୀ ମଧ୍ୟ ସେହି ଆଲୋଚନାକୁ ଆସିବେ । ଦେଶର ଶିକ୍ଷାନୀତି ନେଇ ଏକ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ହେବ ତାଙ୍କ କୋଠିରେ । ମୁଁ କେମିତି ସେହି ଆଲୋଚନାକୁ ଯିବି, ସେହି ମୋର ଚିନ୍ତା ।''

''ଅସୁବିଧା ତ କିଛି ନାହିଁ । ନିଜ ପୁଅ ତ ମନ୍ତ୍ରୀ । ଆଉ ଚିନ୍ତା କ'ଣ ପାଇଁ ?'' ସୀମନ୍ତିନୀ ଦେବୀ କହିଲେ ।

ସାରା ରାଜ୍ୟର ଶିକ୍ଷା ଦାୟିତ୍ୱ ବର୍ତ୍ତମାନ ପୁଅ ମୁଣ୍ଡରେ । ପିଲାଟା ତାକୁ କେମିତି ତୁଲାଇବ, ସେହି ମୋର ଚିନ୍ତା । ହେଇ, ସୀମନ୍ତିନୀ ! କାଲିପରି ଲାଗୁଛି, ତାକୁ କାଖେଇ କୋଳେଇ ମଣିଷ କରିଥିଲି । ଏତେବଡ଼ ରାଜ୍ୟର ଶିକ୍ଷାକଥା ମୁଁ ଚିନ୍ତା କରିପାରୁନି, ସେଇ ଭଲ ପିଲାଟା କ'ଣ ଚିନ୍ତା କରି ଏ ରାଜ୍ୟର ଶିକ୍ଷାନୀତିକୁ ଠିକ୍ ବାଟରେ ଚଳାଇ ପାରିବ ?

"ତୁମେ ଦେବକୁ ଏତେ ସାଧାରଣ ବୋଲି କାହିଁକି ଭାବୁଛ ଯେ ? ତାହାର ଯେଉଁଳି ଆତ୍ମବିଶ୍ୱାସ, ସେଉଁଳି ଆତ୍ମବିଶ୍ୱାସ ଏ ଖଣ୍ଡମଣ୍ଡଳରେ ଆଉ କାହାର ନାହିଁ । ସେ ଗୋବିନ୍ଦପୁର ଗାଁରେ ଯାହା କରିଆସିଛି, ଦେଖିଆସ । ଦେଖିଲେ ତୁମର ଆତ୍ମବିଶ୍ୱାସ ବି ବଢ଼ିଯିବ । ସେ ପରା ଶିକ୍ଷାବିଜ୍ଞାନରେ ଥିଲା ମୂଳରୁ । ବିଲାତ, ଆମେରିକା ସବୁଆଡ଼ୁ ବୁଲି ଆସିଛି । ଦେଶର ଶିକ୍ଷାନୀତି ସମ୍ପର୍କରେ ତାକୁ କ'ଣ କିଛି ଅଜଣା ଅଛି । ଗଲା ବାରବର୍ଷ ଭିତରେ ବାପ ପୁଅ ତ ଦିନେ କଥାବାର୍ତ୍ତା ହୋଇନ, ଜାଣିବ କେମିତି ପୁଅର ରାଜ୍ୟ ଶିକ୍ଷା ସମ୍ପର୍କରେ ଧାରଣା କ'ଣ ?"

"ଆମ ଶିକ୍ଷାନୀତିରେ କେଉଁଠି ଦୋଷ ଦୁର୍ବଳତା ଅଛି, ସେସବୁ ଭଲ ଭାବରେ ଜାଣିଛି । ତୁମେ ଯାଅ ତା ସହିତ କଥାବାର୍ତ୍ତା କର, ଜାଣିବ ତା'ର ଏଥିରେ ଦକ୍ଷତା କେତେ ? ମୁଁ ଯେତେବେଳେ ଗୋବିନ୍ଦପୁରରେ ତା ପାଖରେ ଥିଲି, ଆଖପାଖ ଗାଁର କେତେଲୋକ ତା ସହିତ କେତେ ପରାମର୍ଶ କରିବାକୁ ଆସନ୍ତି ମୁଁ କ'ଣ ଦେଖିନି ? ତୁମେ ଡ଼ି.ପି.ଆଇ. ହୋଇ ଦେଶର ଶିକ୍ଷାନୀତିକୁ ଯେତେ ଅନୁଧ୍ୟାନ କରିନ, ସେ ତୁମଠାରୁ ଢେର୍ ଅଧିକ ଅନୁଧ୍ୟାନ କରିଛି । ତୁମେ ଯାଅ, ପ୍ରଥମଦିନ କଥାବାର୍ତ୍ତାରେ ଜାଣିପାରିବ, ପୁଅର ଦେଶର ଶିକ୍ଷା ସମସ୍ୟା ଉପରେ କେମିତି ସ୍ପଷ୍ଟ ଧାରଣା ଅଛି । ସମସ୍ୟାକୁ ଯେ ଭଲଭାବରେ ଜାଣିପାରିଛି, ସମସ୍ୟାର ସମାଧାନ ତା ପକ୍ଷରେ ଅଧିକ କଷ୍ଟକର ହେବନି ।"

ଗାଡ଼ିରେ ଗଲାବେଳେ ନାରଣବାବୁ ଭାବୁଥାନ୍ତି, "ବାରବର୍ଷ ପରେ ଆଜି ପୁଅ ସହିତ ମୁହାଁମୁହିଁ ହେବ । ପୁଅ ତ ପିଲାଟିଦିନରୁ ମୋ ମୁହଁ ଉପରେ କେବେ କଥା କହୁନି । ଯାହା ତା'ର କହିବାକୁ ଥାଏ ମା' ଜରିଆରେ କହେ । ଆଜି ସେହି ପୁଅ ତାଙ୍କ ସହିତ କେମିତି କଥାବାର୍ତ୍ତା କରିବ ? ସେ ତ ବର୍ତ୍ତମାନ ମନ୍ତ୍ରୀ, ମୁଁ ତା ଅଧୀନରେ ଜଣେ କର୍ମଚାରୀ । ସେଠାରେ ସେକ୍ରେଟେରୀ ବି ଥିବେ, ସେ ତାଙ୍କ ସହିତ କେମିତି ବ୍ୟବହାର ଦେଖାଇବ ସେଇଆଭାବି ନାରଣବାବୁ ଚିନ୍ତିତ ହୋଇ ପଡୁଥାନ୍ତି । ଶିକ୍ଷାନୀତି ସମ୍ପର୍କରେ ଆଲୋଚନାବେଳେ ସେ ତାଙ୍କ ମତ ଠିକ୍ ରୂପେ ଉପସ୍ଥାପିତ କରିପାରିବେ ତ ପୁଅ ସାମନାରେ ? କାଳେ ଯଦି କିଛି ଭୁଲଭଟକା ହୋଇଯାଏ, ବାପର କାର୍ଯ୍ୟଦକ୍ଷତା ସମ୍ବନ୍ଧରେ ପୁଅର କି ଖରାପ ଧାରଣା ନ ହେବ ସତେ ?"

ଗାଡ଼ିଯାଇ ମନ୍ତ୍ରୀଙ୍କ କ୍ୱାର୍ଟରର ପୋର୍ଟିକୋରେ ରହିଲା । ଡ଼ି.ପି.ଆଇ. ଫାଇଲ ଧରି ଗାଡ଼ିରୁ ଓହ୍ଲାଇଲେ । ଅଭ୍ୟର୍ଥନା କକ୍ଷରେ ଅପେକ୍ଷାକରି ଭିତରକୁ ଖବର ପଠାଇଦେଲେ ଡ଼ି.ପି.ଆଇ. ଆସିଲେ ବୋଲି ।

ସେକ୍ରେଟେରୀଙ୍କ ଗାଡ଼ିକୁ ସେହି ହତାରେ ଥିବା ଦେଖି ନାରଣବାବୁ ଜାଣିପାରିଲେ ସେକ୍ରେଟେରୀ ବି ଆସି ଯାଇଛନ୍ତି ଓ ବର୍ତ୍ତମାନ ମନ୍ତ୍ରୀଙ୍କଠାରେ କିଛି ଗୋଟିଏ ଆଲୋଚନାରେ ଲାଗି ଯାଇଛନ୍ତି । କିଛି ସମୟ ଅପେକ୍ଷା କରିବାପରେ ମନ୍ତ୍ରୀଙ୍କଠାରୁ ପିଅନ ଆସି ଡାକିଲା ଭିତରକୁ ଯିବାପାଇଁ ।

ନାରଣବାବୁଙ୍କୁ ରୁମ୍ ଭିତରକୁ ପଶିବା ଦେଖି ଦେବବାବୁ ତାଙ୍କ ଚେୟାର ଛାଡ଼ି ହଠାତ୍ ଉଠିପଡ଼ିଲେ । ମନ୍ତ୍ରୀଙ୍କୁ ଚେୟାର ଛାଡ଼ି ଉଠିପଡ଼ିବା ଦେଖି ସେକ୍ରେଟେରୀ ମଧ୍ୟ ଚେୟାର ଛାଡ଼ି ଉଠିପଡ଼ିଲେ । ଡି:ପି:ଆଇ: ସାମନା ଚେୟାରରେ ବସିଲାପରେ ଦେବବାବୁ ତାଙ୍କ ଚେୟାରରେ ବସିଲେ ଓ ସେକ୍ରେଟେରୀ ତାଙ୍କ ଚେୟାରରେ ବସିଲେ ।

ବାପାଙ୍କୁ ସାମନାରେ ବସିବା ଦେଖି ଦେବବାବୁ ଟିକେ ଗମ୍ଭୀର ହୋଇଗଲେ । ସେ ମନେ ମନେ ଭାବୁଥାନ୍ତି, ଯେଉଁ ବାପା ତାଙ୍କୁ ଛୋଟଟିବେଳୁ ଏତେବଡ଼ ଯାଏ ନାନା ଶିକ୍ଷା ଦେଇ ବଢ଼ାଇ ଆସିଛନ୍ତି, ଆଜି ରାଜ୍ୟର ଶିକ୍ଷାନୀତି ନେଇ ସେ ତାଙ୍କୁ କ'ଣ ଯେ ନିର୍ଦ୍ଦେଶ ଦେବେ, ଭାବି ଠିକ୍ କରି ପାରିଲେନି । ତାଙ୍କ ମୁଣ୍ଡ ଗୋଳମାଳ ହୋଇଗଲା । ବାପାଙ୍କର ତାଙ୍କଠାରୁ ଅଭିଜ୍ଞତା କେତେ ଅଧିକ, ତାଙ୍କ ଆଗରେ ଠିଆହୋଇ ସେ କେବେ କଥାବାର୍ତ୍ତା କରି ନାହାନ୍ତି, ଆଜି ତାଙ୍କର ଶାସନରେ ଭୁଲଭଟକା ଦେଖାଇ ତାଙ୍କ କାର୍ଯ୍ୟର ସମାଲୋଚନା କରିବାକୁ ତାଙ୍କର ଜିଭ ଲେଉଟିବ କେମିତି ?

ଦେବସ୍ନାନବାବୁଙ୍କୁ ଠିଆହୋଇ ପଡ଼ିବାର ଦେଖି ନାରଣବାବୁ ହଡ଼ବଡ଼େଇ ଗଲେ । ସେ ବା ଯାହା ହଡ଼ବଡ଼େଇ ନଥାନ୍ତେ, ଏଣେ ସେକ୍ରେଟେରୀ ଉଠି ଠିଆ ହୋଇପଡ଼ିବା ଦେଖି ସେ ବ୍ୟସ୍ତ ହୋଇପଡ଼ିଲେ । ସରକାରଙ୍କ ନିୟମ ଅନୁସାରେ ଡି:ପି:ଆଇ:ଙ୍କ ଉପରେ ହେଉଛନ୍ତି ସେକ୍ରେଟେରୀ । ଡି:ପି:ଆଇ:ଙ୍କୁ ଦେଖି ସେକ୍ରେଟେରୀ ଠିଆହେବା କଥା ନୁହେଁ ।

ଦେବସ୍ନାନଙ୍କୁ ସାମନାରେ ଦେଖି ନାରଣବାବୁ ଭାବୁଥାନ୍ତି, କାଲିକା ପିଲାଟା, ସେ କେବେ ନିଜେ ତାଙ୍କ ପାଖରେ ଠିଆହୋଇ କଥା ହୋଇନି, ଆଜି ସେ ତାଙ୍କୁ କ'ଣ ନିର୍ଦ୍ଦେଶ ଦେବ ଶାସନ ନେଇ ? ପୁଣି ଆଜି ତାଙ୍କ ବିଭାଗର ହର୍ତ୍ତାକର୍ତ୍ତା, ସେ ତା'ର ଅଧୀନରେ ଜଣେ କର୍ମଚାରୀ, ଭାବିଲାବେଳକୁ ନାରଣବାବୁଙ୍କ ମନରେ ସବୁକିଛି ଗୋଳମାଳ ହୋଇ ଯାଉଥାଏ । ସେ କ୍ଷଣକ ପାଇଁ ଭୁଲି ଯାଉଥାନ୍ତି ସେ କେଉଁଠି ଓ କ'ଣ ପାଇଁ ଏଠାକୁ ଆସିଛନ୍ତି ।

ଦେବବାବୁ ଓ ନାରଣବାବୁଙ୍କୁ ଚୁପ୍ ଦେଖି ସେକ୍ରେଟେରୀ ଆରମ୍ଭ କଲେ, "ଦେଖନ୍ତୁ, ନାରଣବାବୁ । ଆମର ଶିକ୍ଷା ବଜେଟ୍‌କୁ ଆପଣ ଯେପରି ଭାବରେ ପ୍ରାଇମେରୀ, ସେକେଣ୍ଡାରୀ ଓ କଲେଜ ଶିକ୍ଷା ଭିତରେ ଭାଗ ଭାଗ କରିଛନ୍ତି, ସେଥିରେ ମୁଁ ରାଜି ନୁହେଁ । ବର୍ତ୍ତମାନ ଆମ ରାଜ୍ୟର ଅବସ୍ଥା ଯାହା, ପ୍ରାଇମେରୀ ଶିକ୍ଷାପାଇଁ ଅଧିକ ଖରଚ ହେବା କଥା । ଆପଣ ତାହା ନକରି ସେକେଣ୍ଡାରୀ ବାବଦରେ ଅଧିକ ଖର୍ଚ୍ଚ ପାଇଁ ସୁପାରିଶ କରିଛନ୍ତି । କିନ୍ତୁ ଆପଣ ଭୁଲି ଯାଉଛନ୍ତି, ଗତବର୍ଷର ବଜେଟ୍‌ରେ ଆମେ ସେକେଣ୍ଡାରୀ ପାଇଁ ଅଧିକ ଅର୍ଥ ବ୍ୟବସ୍ଥା କରିଥିଲେ । ସେହି ଅର୍ଥ ଖରଚ ହୋଇ ନପାରି ବର୍ଷ ଶେଷକୁ ବଳିପଡ଼ିଲା, ଫଳରେ ସେ ଟଙ୍କାତକ ରାଜକୋଷକୁ ଫେରିଯିବା ଯୋଗୁଁ ଆମ ବିଭାଗରେ

ହିନ୍ଦୁସ୍ଥାନର ପରିମାଣ କମିଗଲା । ଏବର୍ଷ ସେମିତି ଭୁଲ ଯେମିତି ନହୁଏ, ସେଥିପାଇଁ ଆପଣଙ୍କ ପ୍ରସ୍ତାବକୁ ମୁଁ ବଦଳାଇବାକୁ ଚାହୁଁଛି ।"

"ସେକେଣ୍ଡାରୀ ଶିକ୍ଷାର ଟଙ୍କା ଖରଚ ନ ହୋଇ ବଳିପଡ଼ିଲା, ଏଟା ଡିରେକ୍ଟରେଟର ଦୋଷ ନୁହେଁ ମିଷ୍ଟର ଶ୍ରୀବାସ୍ତବ । ଆପଣଙ୍କ ବିଭାଗ ବର୍ଷର ଶେଷ ମାସରେ ଏତେଗୁଡ଼ିଏ ଟଙ୍କା ଦେଲେ ତାହା କେମିତି ଖରଚ ହୋଇପାରିବ, ସେଆଡ଼କୁ ଟିକିଏ ଦୃଷ୍ଟି ଦେଇଛନ୍ତି ତ ?" ସେକ୍ରେଟେରୀଙ୍କୁ ଓଲଟି ପଚାରିଲେ ନାରଣବାବୁ ।

"ଏମିତି କାହିଁକି ହେଉଛି ମିଷ୍ଟର ଶ୍ରୀବାସ୍ତବ ? ବର୍ଷସାରା ଟଙ୍କା ଯଦି ଶେଷ ମାସରେ ଖରଚ କରିବାକୁ ନିର୍ଦ୍ଦେଶ ଯାଏ, ତେବେ ତାହା ଖରଚ ହେବ କେମିତି ? ଆପଣମାନଙ୍କ ଏହି ନୀତି ମୋତେ ଭଲ ଲାଗେନି । ବଜେଟରେ ଯେଉଁ ଟଙ୍କା ଅଛି, ତାହା ଭାଗ ଭାଗ ହୋଇ ପ୍ରତି ତିନି ମାସରେ ଥରେ ଲେଖାଏଁ ଡିରେକ୍ଟରେଟକୁ ପଠା ନ ଯିବ କାହିଁକି" ? ଦେବସ୍ଥାନ ପଚାରିଲା ।

ସେକ୍ରେଟେରୀ କହିଲେ, "ଡିରେକ୍ଟର ତ ଜାଣିଛନ୍ତି, କେଉଁ ବିଭାଗ ପାଇଁ କେତେ ଟଙ୍କା ବଜେଟରେ ବରାଦ ହୋଇଛି । ସେ ସେକ୍ରେଟେରୀଏଟ୍ ଚିଠିକୁ ଅପେକ୍ଷା ନକରି ସେହି ଅନୁସାରେ ଖର୍ଚ୍ଚ ପାଇଁ ପ୍ରସ୍ତୁତ ହେବାପାଇଁ ତଳ ଅଫିସ୍‌କୁ ନିର୍ଦ୍ଦେଶ ଦେଇପାରି-ଥାନ୍ତେ । ଆମ ଚିଠି ପହଞ୍ଚିଲାକ୍ଷଣି ସଙ୍ଗେ ସଙ୍ଗେ ଟଙ୍କା ଖରଚ ହୋଇପାରିଥାନ୍ତା ।"

"ଆପଣ ଅସମ୍ଭବ କଥା କହୁଛନ୍ତି ମିଷ୍ଟର ଶ୍ରୀବାସ୍ତବ । ଡି:ପି:ଆଇ: କେଉଁ ହେଡ୍‌ରେ କେତେ ଖରଚ ହେବ ବୋଲି ଜାଣିଥିଲେହେଁ ଆପଣଙ୍କ ଦପ୍ତରରୁ ଚିଠି ନ ପାଇଲା ପର୍ଯ୍ୟନ୍ତ ସେ କେମିତି ତଳ ଅଫିସ୍‌କୁ ନିର୍ଦ୍ଦେଶ ଦେବେ ? ବଜେଟରେ ବିଭିନ୍ନ ବିଭାଗକୁ ଦେବାପାଇଁ ଯାହା ଧାର୍ଯ୍ୟ ହେଲା, ସେସବୁ ବର୍ଷର ପ୍ରଥମରୁ କିସ୍ତିରେ ଯିବା ଦରକାର । ସବୁ ଟଙ୍କା କାହିଁକି ଏକାଥରକେ ବର୍ଷର ଶେଷବେଳକୁ ଯିବ ? ସେମାନଙ୍କୁ ଖର୍ଚ୍ଚ କରିବାକୁ ନିଶ୍ଚୟ ଅସୁବିଧା ହେବ । ବର୍ଷସାରା ଖେଳାଇ ହୋଇ ଯାଉଥିଲେ ସେମାନଙ୍କୁ କିଛି ଅସୁବିଧା ହୁଅନ୍ତାନି । ସମ୍ଭବତଃ ଆପଣଙ୍କ ଅଫିସ୍ ଠିକ୍ ଭାବରେ କାମ କରୁନି ? ଆପଣଙ୍କୁ ଆପଣଙ୍କ ବିଭାଗଟିକୁ ପ୍ରଥମତଃ ସଜାଡ଼ିବାକୁ ପଡ଼ିବ ମିଃ ଶ୍ରୀବାସ୍ତବ ।"

"ଆମ ବିଭାଗରେ ଖାଲି ଗୋଳମାଳ ରହିଯାଉନି ସାର୍ । ଫାଇନାନ୍ସ ବିଭାଗ ଯୋଗୁଁ ଏଥିରେ ମଧ୍ୟ ଗୋଳମାଳ ହେଉଛି ।"

"ସେଇଟା ଆପଣଙ୍କ ଦାୟିତ୍ୱ । ଫାଇନାନ୍ସ ବିଭାଗଠାରୁ ଠିକ୍ ସମୟରେ କାଗଜପତ୍ର ଅଣାଅଣି ଆପଣଙ୍କ ବିଭାଗ କରିବା କଥା । ଆପଣମାନେ ଚେଷ୍ଟାକଲେ କିଛି ଅସୁବିଧା ହୁଅନ୍ତାନି । ମାର୍ଚ୍ଚମାସ ପର୍ଯ୍ୟନ୍ତ ଗଡ଼ାଇ ଗଡ଼ାଇ ନେବା ମୁଁ ଦେଖୁଛି ଆପଣ-ମାନଙ୍କ ଏକ ବଦଭ୍ୟାସ । ତେଣୁ ବର୍ଷସାରା କିଛି କାମ ହେଉନି । ଫେବୃୟାରୀ, ମାର୍ଚ୍ଚ ମାସରେ ସାରାବର୍ଷର କାମ ହେଉଛି । ଏହାକୁ କ'ଣ କୁହାଯିବ ଶାସନ ? ମୁଁ ଆପଣଙ୍କ କାମରେ ମୋଟେ ସନ୍ତୁଷ୍ଟ ନୁହେଁ ମିଷ୍ଟର ଶ୍ରୀବାସ୍ତବ ।"

ଡ଼ି:ପି:ଆଇ:ଙ୍କ ଆଡ଼କୁ ଅନାଇ ଦେବସ୍ଥାନ କହିଲେ, "ତା'ଛଡ଼ା ବାପା, ଆପଣ ବାରମ୍ବାର ସେକ୍ରେଟେରିଙ୍କୁ ଫୋନ୍ କରୁନାହାନ୍ତି ତାଙ୍କ ଅଫିସ୍ ଚିଠିଦେବାରେ ଡେରି କରୁଛି କାହିଁକି ? ଆପଣ ମଝିରେ ମଝିରେ ଚାପ ପକାଉଥିଲେ ଏପରି ହେଉ ନଥାନ୍ତା । ଆପଣ ଯଦି ଭାବିବେ ସେକ୍ରେଟେରି ତ ପଠାଉ ନାହାନ୍ତି, ମୋ ମୁଣ୍ଡ କାହିଁକି ବଥାଇବି, ତେବେ କିଛି ହୋଇ ପାରିବନି ଏଠି । ଆପଣମାନେ ଯିଏ ଯେଉଁଠି ରହିଲେ, ଯଦି ଭାବିନେବେ ସେତିକି ଦାୟିତ୍ୱ ଆପଣଙ୍କର, ତା'ଛଡ଼ା ପାଦେ ଏପାଖକୁ କିମ୍ବା ସେପାଖକୁ ଯିବେ ନାହିଁ, ତା'ହେଲେ ଏହି ଶାସନ ଚାଲି ପାରିବ ନାହିଁ । ଅମୁକ କାମଟା ହେଲନି ବୋଲି ଦୋଷ ଅମୁକର, ମୋ କାମ ମୁଁ କରିଦେଇ ବସିଛି, ସେ ଯୁକ୍ତି ମଧ୍ୟ ଠିକ୍ ନୁହେଁ । ସବୁକଥାରେ ନିଜ ଉପରୁ ଦାୟିତ୍ୱ ଖସାଇଦେବା ପ୍ରବୃତ୍ତି ଭଲ ନୁହେଁ ବାପା । ଏଥିରେ ଆମ ଦେଶ ଶାସନ ଚାଲି ପାରିବନି । ଆମକୁ ଅମୁକ ଦାୟିତ୍ୱଟି ଦିଆଯାଇଛି, ତାକୁ ଲାଗିପାଇଁ ଆମକୁ କେମିତି କରିବାକୁ ପଡ଼ିବ, ସେଇଟା ସମସ୍ତେ ଦେଖିବା ଉଚିତ । ନିଜ ଉପରକୁ ଦାୟିତ୍ୱ ନେବା ମନୋଭାବ ଛାଡ଼ି ନିଜ ଉପରୁ ଦାୟିତ୍ୱ ଖସାଇବା ମନୋଭାବ ଧରିଲେ ଆମ ଦେଶ ଶାସନ ମୋଟେ ଚାଲି ପାରିବନି ।"

## ବିସ୍ଫୋରଣ

"ସାର୍, ରେଭେନ୍ସା କଲେଜରୁ ଦଳେ ଗବେଷଣା-ଛାତ୍ର ଆସିଛନ୍ତି ଆପଣଙ୍କୁ ସାକ୍ଷାତ କରିବା ପାଇଁ ।" ଦେବସ୍ଥାନର ଅଫିସ୍-କକ୍ଷ ଭିତରକୁ ପଶି ଆସି ପ୍ରାଇଭେଟ ସେକ୍ରେଟେରି କହିଲେ ।

"ମୋତେ ଦେଖା କରିବାକୁ ଆସିଛନ୍ତି ?"

"ହଁ, ଆଜ୍ଞା ।"

"ହେଉ, ସେମାନଙ୍କୁ ଅପେକ୍ଷା କରିବାକୁ କୁହ । ମୁଁ କିଛି ସମୟପରେ ସେମାନଙ୍କୁ ଡକାଇବି ।" ଏତିକି କହି ଫାଇଲ ଉପରେ ଦୃଷ୍ଟିନିବଦ୍ଧ କଲେ ଦେବସ୍ଥାନ । "ଓଃ, କି ଜମ୍ମ ଧରଣର ଫାଇଲ ? ମୂଳରୁ କିରାଣୀ ତା ବିଦ୍ୟାବୁଦ୍ଧିରେ ଯାହା ଦ'ଗାର ମାରି ଦେଇଛି, ତାକୁ କେହି ବିଚାର ନକରି ସମସ୍ତେ ଏକମତ, ଏକମତ ବୋଲି ଲେଖି ଚାଲିଛନ୍ତି । ପ୍ରକୃତ ବିଷୟଟି କଅଣ କେହି ବୁଝିବାକୁ ଚେଷ୍ଟା ବି କରି ନାହାନ୍ତି । ଶେଷରେ ସେକ୍ରେଟେରି ବି ସେଇଆ ଲେଖିଦେଲେ । ମୂଳ କିରାଣୀଟି ଯେଉଁ ନୋଟ୍ ଦେଇଛି ତା, ଠିକ୍ କି ଭୁଲ, ତାକୁ ବିଚାର କରି ଦେଖିବାକୁ ଯେମିତି କାହାର ବେଳ ନାହିଁ । ଏଇଆ କ'ଣ ଦେଶ-ଶାସନ ? କିରାଣୀମାନଙ୍କ ଉପରକୁ ଏତେ ବଡ଼ ବଡ଼ ଅଫିସର ଅଛନ୍ତି

କାହିଁକି ? ବଡ଼ ବିରକ୍ତ ହୋଇ ଫାଇଲ ଉପରେ ମନ୍ତବ୍ୟ ନ ଲେଖି ଫାଇଲ ଫେରାଇ ଦେଲା ଦେବସ୍ମାନ । ସେକ୍ରେଟେରୀଙ୍କୁ ତାଙ୍କ ସହିତ ଆଲୋଚନା କରିବା ପାଇଁ ନିର୍ଦ୍ଦେଶ ଦେଇଦେଲା ସେଥିରେ । ଫାଇଲ ଥୋଇଦେଇ ସଙ୍ଗେ ସଙ୍ଗେ ଡକାଇ ପଠାଇଲା ସାକ୍ଷାତକାରୀମାନଙ୍କୁ ।

ସେମାନେ ଆସି ନମସ୍କାର ଜଣାଇ ମନ୍ତ୍ରୀଙ୍କ ଆଗରେ ଠିଆହେଲେ । ଦେବସ୍ମାନ ସେମାନଙ୍କୁ ଚେୟାରରେ ବସିବା ପାଇଁ କହି ସେମାନଙ୍କ ଆସିବା କାରଣ ପଚାରିଲା ।

"ସାର୍, ଆମ୍ଭମାନଙ୍କୁ ବଡ଼ ହଇରାଣ କରୁଛନ୍ତି ରେଭେନ୍‌ସା କଲେଜ ପ୍ରିନ୍‌ସିପାଲ ।"

"ଆପଣମାନେ କ'ଣ କରନ୍ତି ?"

"ସାର୍, ଆମେ ସମସ୍ତେ ସେ କଲେଜରେ ଗବେଷଣା କରୁଛୁଁ ।"

"କେଉଁ ବିଭାଗରେ ?

"ସାର୍, ରସାୟନ ବିଭାଗରେ ।"

"ଆପଣମାନେ ସମସ୍ତେ କ'ଣ ଗବେଷଣା-ଛାତ୍ର ?"

"ହଁ ସାର୍, ଆମ ଭିତରୁ କେତେଜଣ ଶିକ୍ଷକ-ଗବେଷକ ମଧ୍ୟ ଅଛନ୍ତି ।"

"ଆପଣମାନଙ୍କୁ ପ୍ରିନ୍‌ସପାଲ କପରି ଭାବରେ ହଇରାଣ କରୁଛନ୍ତି ?"

"ସାର୍, ଆମେ ସମସ୍ତେ ସି:ଏସ୍:ଆଇ:ଆର୍:, ଇଉ:ଜି:ସି:, ଆଇ:ସି:ଏମ୍:ଆର୍: ଆଦି ଅନୁଷ୍ଠାନରୁ ସର୍ବଭାରତୀୟ ସ୍ତରରେ ପ୍ରତିଯୋଗିତା କରି ବୃତ୍ତିପାଇଛୁ ରସାୟନ ବିଭାଗର ବିଭିନ୍ନ ଅଧ୍ୟାପକଙ୍କ ଅଧୀନରେ ଗବେଷଣା ପାଇଁ । ପ୍ରିନ୍‌ସିପାଲ ମହାଶୟ ଆମ୍ଭମାନଙ୍କୁ ଗବେଷକ ଭାବରେ ଜଏନ୍ କରିବାକୁ ଦେଉ ନାହାନ୍ତି । ଜଏନ୍ ନ କରି-ପାରିଲେ ଆମ ବୃତ୍ତି କଟିଯିବ ସାର୍ ।"

"ଜଏନ୍ କରିବାକୁ ଦେଉ ନାହାନ୍ତି ? କାହିଁକି ? ଆପଣମାନଙ୍କର ଅପରାଧ ? ଆପଣମାନେ ଦରଖାସ୍ତ କଲାବେଳେ ପ୍ରିନ୍‌ସିପାଲଙ୍କ ଜରିଆରେ କ'ଣ ଦରଖାସ୍ତ କରି ନଥିଲେ ?"

"ହଁ ସାର୍, କରିଥିଲୁଁ । ବର୍ତ୍ତମାନର ଡ:ପି:ଆଇ: ସେତେବେଳେ ପ୍ରିନ୍‌ସପାଲ ଥିଲେ । ତାଙ୍କରି ଜରିଆରେ ଆମର ସବୁ ଦରଖାସ୍ତ ଯାଇଥିଲା ।"

"ଆପଣମାନଙ୍କୁ ଜଏନ୍ କରାଇ ନ ଦେବାର କାରଣ ?"

"ସେ କହୁଛନ୍ତି ରସାୟନ ବିଭାଗର କଣ୍ଟିଜେନ୍‌ସି ହିସାବପତ୍ର ଗୋଳମାଳିଆ ହୋଇଛି । ରସାୟନ ବିଭାଗର ମୁଖ୍ୟ ଅଧ୍ୟାପକ କେତେକ ମନମୁଖି ଖରଚ କରି ଯାଇଛନ୍ତି । ସେତେବେଳର ପ୍ରିନ୍‌ସିପାଲ ଓ ରସାୟନ ବିଭାଗ ମୁଖ୍ୟ ମିଶି ହିସାବପତ୍ରରେ ନାନା ବିଭ୍ରାଟ କରିଛନ୍ତି । ସେ ଗୋଳମାଳ ସବୁ ଠିକ୍ ନହେଲା ପର୍ଯ୍ୟନ୍ତ ସେ କାହାରିକୁ ରସାୟନ ବିଭାଗ ଗବେଷଣାରେ ଜଏନ୍ କରିବାକୁ ଦେବେନି ।

"ଆପଣମାନେ ମୋ ପାଖକୁ ଆସିବା ପୂର୍ବରୁ ଡ଼:ପି:ଆଇ:ଙ୍କୁ ଦେଖାକରି ଏକଥା କହିଥିଲେ ?"

"ହଁ ସାର୍, କହିଥିଲୁଁ । ସେ କହିଲେ, ପ୍ରିନ୍‌ସିପାଲ ମୋ କଥାକୁ ଖାତିର କରୁ ନାହାନ୍ତି । ମୁଁ କ'ଣ କରିବି ? ସେ ତ ମୁଖ୍ୟମନ୍ତ୍ରୀଙ୍କ ଲୋକ, ସେ କ'ଣ କାହା କଥା ଶୁଣୁଛନ୍ତି ?"

"ଡ଼:ପି:ଆଇ: ଏତକ କହିଦେଇ କ'ଣ ତାଙ୍କ ଦାୟିତ୍ୱ ତୁଲାଇଦେଲେ ?"

"ସାର୍, କିଛି ନ ହେବାରୁ ଆମେ ଆପଣଙ୍କ ପାଖକୁ ଆସିଲୁ । ଆମେ ସାତ ଆଠଜଣ ବଡ଼ ହଇରାଣ ହେଉଚୁ ସାର୍ । ବର୍ତ୍ତମାନ ଆମମାନଙ୍କ ଭବିଷ୍ୟତ ପୁରାପୁରି ଅନିଶ୍ଚିତ ।"

ଦେବସ୍ଥାନ ସୁଇଚ୍ ଟିପିଲା । ପ୍ରାଇଭେଟ୍ ସେକ୍ରେଟେରୀ ଆସିବାରୁ ତାଙ୍କୁ ଡ଼:ପି:ଆଇ:ଙ୍କୁ ଡାକିବାକୁ କହିଦେଲା । କହିଲା, ଡ଼:ପି:ଆଇ:ଙ୍କୁ ସଙ୍ଗେ ସଙ୍ଗେ ଆସିବା ପାଇଁ ଫୋନ୍ କର ।"

"ହେଉ, ଆପଣମାନେ ବାହାରେ ଅପେକ୍ଷା କରନ୍ତୁ । ମୁଁ ଡ଼:ପି:ଆଇ:ଙ୍କୁ ଡକାଉଛି, ଆସିଲେ ଆପଣମାନଙ୍କ କଥା ବୁଝାଯିବ ।"

ମନ୍ତ୍ରୀଙ୍କଠାରୁ ଡାକରା ପାଇ ସଙ୍ଗେ ସଙ୍ଗେ ଡ଼:ପି:ଆଇ: ମନ୍ତ୍ରୀଙ୍କ କୋଠିରେ ଆସି ପହଞ୍ଚିଗଲେ । ଅଭ୍ୟର୍ଥନା-କକ୍ଷରେ ଗବେଷଣା-ଛାତ୍ରମାନଙ୍କୁ ଦେଖି ସେ ଜାଣିନେଲେ କାହିଁକି ତାଙ୍କୁ ଡକାଯାଇଛି । ଡ଼:ପି:ଆଇ: ତରତର ହୋଇ ମନ୍ତ୍ରୀଙ୍କ କକ୍ଷକୁ ପଶିଯାଇ ମନ୍ତ୍ରୀଙ୍କ ସାମନା ଚେୟାରରେ ବସିଛନ୍ତି କି ନାହିଁ, ଦେବସ୍ଥାନ କହିଲା, "ବାପା, ଏହି ଗବେଷଣାରତ ଛାତ୍ରଗୁଡ଼ିକ ହଇରାଣ ହେଉଛନ୍ତି, ସେମାନେ ଜଏନ୍ କରିପାରୁ ନାହାନ୍ତି, ଆପଣ ସେମାନଙ୍କ କଥା ଟିକିଏ ବୁଝି ଦେଉନାହାନ୍ତି କାହିଁକି ? ସେମାନେ ମୋ ପର୍ଯ୍ୟନ୍ତ ଚାଲି ଆସିଲେ ? ଏତିକି ଛୋଟିଆ କଥାଟାକୁ ଯଦି ଆପଣ ସମାଧାନ କରି ନ ପାରିବେ, ଏହାର ସମାଧାନ କ'ଣ ମୋତେ କରିବାକୁ ପଡ଼ିବ ?"

"କଥାଟା ଗୋଳମାଳିଆ ଥିବାରୁ ମୁଁ କିଛି କରି ପାରିଲିନି । ବର୍ତ୍ତମାନ ପ୍ରିନ୍‌ସିପାଲ କହୁଛନ୍ତି, ରସାୟନ ବିଭାଗରେ କଣ୍ଟିଜେନ୍‌ସି ଖରଚରେ ନାନା ଗୋଳମାଳ ରହିଛି । ବିଭାଗୀୟ ମୁଖ୍ୟ ନାନା ମନମୁଖି ଖରଚ କରି ଯାଇଛନ୍ତି । ସେଗୁଡ଼ିକ ଠିକ୍ ନ ହେବା ପର୍ଯ୍ୟନ୍ତ ସେ କାହାରିକୁ ଜଏନ୍ କରିବାକୁ ଦେବେନି ।"

"ରସାୟନ ବିଭାଗର କଣ୍ଟିଜେନ୍‌ସି ଖରଚରେ କ'ଣ ଗୋଳମାଳ ହୋଇଛି, ଆପଣ ଦେଖିଛନ୍ତି ?"

"ହଁ, ଦେଖିଛି, ସେଗୁଡ଼ିକ ଗୋଳମାଳ ନୁହେଁ । ପ୍ରିନ୍‌ସିପାଲ ଭାବୁଛନ୍ତି ଗୋଳମାଳ ବୋଲି । ସେ ତ ଆର୍ଟସ୍ ଲୋକ, ସାଏନ୍‌ସ କଥା କିଛି ବୁଝିପାରୁ ନାହାନ୍ତି । ତେଣୁ ନିଜେ ସବୁ ଗୋଳମାଳ କରି ବସିଛନ୍ତି ।"

ଯେଉଁ ଲୋକ ବିଭିନ୍ନ ବିଭାଗର କଣ୍ଟିଜେନ୍‌ସି ଖରଚ ବୁଝି ନ ପାରିବ, ସେମିତି ଲୋକକୁ ପ୍ରିନ୍‌ସିପାଲ କରି କିଏ ? ରେଭେନ୍‌ସା କଲେଜରେ ଏମିତି ଅଜ୍ଞ ପ୍ରିନ୍‌ସିପାଲ କେଉଁଠିଦନଠାରୁ ଆସିଲେ, ମୁଁ ସେଇଆ ଦେଖି ଆଶ୍ଚର୍ଯ୍ୟ ହେଉଛି । ସେମିତି ଲୋକ ରେଭେନ୍‌ସା କଲେଜର ପ୍ରିନ୍‌ସପାଲ ହୋଇ ଆସିଲେ କେମିତି ?"

ସେ ପଗ୍ଭ ହେଉଛନ୍ତି ମୁଖ୍ୟମନ୍ତ୍ରୀଙ୍କ ଲୋକ ! ତାଙ୍କଠାରୁ ସିନିଅର ଥିଲେ ବି ସେମାନଙ୍କୁ ଉପେକ୍ଷା କରାଯାଇ ଏହାଙ୍କୁ ରଖାଯାଇଛି ।

"ଆପଣ ସେଥିରେ କେମିତି ଗ୍ଭଜି ହୋଇଗଲେ ? ଆପଣ ତ ମନାକରି ପାରିଥାନ୍ତେ ? ହଁ, ଆପଣ ପ୍ରିନ୍‌ସିପାଲଙ୍କ ସହିତ ଏ ଖରଚ ସମ୍ବନ୍ଧରେ ପ୍ରତ୍ୟକ୍ଷ ଆଲୋଚନା କରିଛନ୍ତି ?"

"ନା, କାଗଜପତ୍ରରୁ ଯାହା ଧାରଣା କରିଛି ।"

"ସେଗୁଡ଼ିକ ବି ମୋତେ କରିବାକୁ ପଡ଼ିବ ?"

ସୁଇଚ୍ ଟିପିଲି ଦେବସ୍ଥାନ । ପ୍ରାଇଭେଟ୍ ସେକ୍ରେଟେରି ଆସିଲେ । ରେଭେନ୍‌ସା କଲେଜ ପ୍ରିନ୍‌ସିପାଲଙ୍କୁ ତୁରନ୍ତ ଡାକିବାକୁ ଆଦେଶ ଦେଲି ଦେବସ୍ଥାନ ।

କିଛି ସମୟପରେ ପ୍ରିନ୍‌ସପାଲ ଆସି ପହଞ୍ଚିଗଲେ । ସେ ମନ୍ତ୍ରୀଙ୍କ କକ୍ଷ ଭିତରକୁ ପଶି ଆସିଲାକ୍ଷଣି ଦେଖିଲେ ଡ଼ି:ପି:ଆଇ: ପୂର୍ବରୁ ଆସି ପହଞ୍ଚି ଯାଇଛନ୍ତି । ସେ ଉଭୟଙ୍କୁ ନମସ୍କାର ଜଣାଇ ପାଖ ଚେୟାରରେ ବସିଲେ ।

ଦେବସ୍ଥାନ ପଗ୍ଭରିଲି, "ଆପଣ ରସାୟନ ବିଭାଗର ଗବେଷଣା ଗ୍ରାଣ୍ଟଗୁଡ଼ିକୁ ଜଏନ୍ କରିବାକୁ ଦେଉନାହାନ୍ତି କାହିଁକି ?"

"ଆଜ୍ଞା, ମୋର କିଛି ଦୋଷ ନାହିଁ । ରସାୟନ ବିଭାଗର ମୁଖ୍ୟଙ୍କ ଯୋଗୁଁ ସବୁ ଗୋଳମାଳ ।"

"କେମିତି ?"

"ମୁଁ ଯେଉଁସବୁ ପ୍ରଶ୍ନ ଉଠାଇଛି, ସେ ସବୁର ସନ୍ତୋଷଜନକ ଉତ୍ତର ସେ ଦେଉ ନାହାନ୍ତି ।"

"କି ପ୍ରକାର ପ୍ରଶ୍ନ ?"

"କଣ୍ଟିଜେନ୍‌ସି ଖରଚ ନେଇ ।"

"ସେ କ'ଣ ଉତ୍ତର ଦେଉଛନ୍ତି ?"

"ସେ ଯାହା ଉତ୍ତର ଦେଉଛନ୍ତି, ମୋର ସନ୍ତୋଷ ହେଲାଭଳି ନୁହେଁ । ସେ ଜାଣିଶୁଣି ଠିକ୍ ଉତ୍ତର ଦେଉ ନାହାନ୍ତି ବୋଲି ମୋର ଧାରଣା ।"

"ରସାୟନ ବିଭାଗ ମୁଖ୍ୟଙ୍କର ଉତ୍ତର ଠିକ୍ ନୁହେଁ ବୋଲି ଆପଣ କେମିତି ଜାଣୁଛନ୍ତି ?"

"ମୋତେ ସେଗୁଡ଼ିକ ମିଛ ବୋଲି ଜଣାପଡ଼ୁଛି । ମୋତେ କାହିଁକି, ଯେ'କୌଣସି ଲୋକଙ୍କୁ ବି ସେସବୁ ମିଛ ବୋଲି ଜଣାପଡ଼ିବ ।"

"ଗୋଟିଏ ଉଦାହରଣ ଦେଲେ ।"

"ରସାୟନ ବିଭାଗର ମୁଖ୍ୟ ଲାବରେଟୋରୀରେ ଖରଚ ହେବାପାଇଁ ଦୁଇ କ୍ୱିଣ୍ଟାଲ ଭେଜିଟେବୁଲ ଘିଅ କିଣିଛନ୍ତି । ଗତ ପାଞ୍ଚବର୍ଷର ହିସାବକୁ ଯାଞ୍ଚ କଲାରୁ ଜଣାପଡ଼ିଲା ଏମିତି ଘିଅ ଏଥିପୂର୍ବରୁ କେବେ କିଣାଯାଇନି । ଏହା ପ୍ରଥମ ଥର କିଣା ହୋଇଛି । ମୁଁ ପଚାରିଲି, ଏହି ଘିଅ ଲାବରେଟରୀରେ କେଉଁ କାମରେ ଲାଗିଲା ?"

ସେ ଉତ୍ତର ଦେଲେ, "ଅଏଲବାଥ୍‌ରେ ଲାଗିଲା ।"

"ପଚାରିଲି, ବର୍ତ୍ତମାନ ଯଦି ଅଏଲବାଥ୍‌ରେ ଲାଗିଲା, ଆଗରୁ କାହିଁକି ଲାଗୁ ନ ଥିଲା ? ଆଗରୁ ଲାବରେଟରୀରେ କେମିତି ଅଏଲବାଥ୍ ହେଉଥିଲା ? ଏସବୁ ପୁରାପୁରି ମିଛ ଆଜ୍ଞା । ସେମାନେ ଏହି ଘିଅରେ ଲାବରେଟରୀରେ ଜଳଖିଆ ତିଆରି କରି ଖାଇଛନ୍ତି । ମିଛ ହିସାବ ଦେଇ ଠକି ସରକାରଙ୍କଠାରୁ ଟଙ୍କା ନେଉଛନ୍ତି ।"

"ଆପଣଙ୍କର ମୁଣ୍ଡ ଠିକ୍ ଅଛି ଡକ୍ଟର ସିହ୍ନା ?"

"ଆଜ୍ଞା ।"

"ରସାୟନ ବିଭାଗର ମୁଖ୍ୟ ଜଣେ ଉଚ୍ଚପଦସ୍ଥ ଅଫିସର । ଆମ ରାଜ୍ୟର ସେ ଜଣେ ବଡ଼ ବୈଜ୍ଞାନିକ । ଆପଣ ତାଙ୍କ ନାଁରେ ଏଭଳି ମିଥ୍ୟା ଅଭିଯୋଗ କରୁଛନ୍ତି, ଆପଣଙ୍କୁ ଟିକିଏ ସଙ୍କୋଚ ଲାଗୁନି ? ଆପଣଙ୍କର ରସାୟନ ବିଭାଗର ଲାବରେଟରୀ ସମ୍ପର୍କରେ କିଛି ପ୍ରତ୍ୟକ୍ଷ ଜ୍ଞାନ ଅଛି ? ଆପଣ ସାଏନ୍‌ସ ପଢିଛନ୍ତି ?"

"ହଁ ସାର୍, ଆଇ.ଏସ୍‌ସି.ରେ ସାଏନ୍‌ସ ପଢ଼ିଥିଲି ।"

"ସେଥିପାଇଁ ଆପଣଙ୍କର ଧାରଣା ଯେ, ଭେଜିଟେବୁଲ ଘିଅରେ ଅଏଲବାଥ୍ ହେବନି । ଏହା ଖାଲି ଜଳଖିଆ ତିଆରିରେ ଲାଗିବ ? "ଅଳ୍ପ ବିଦ୍ୟା ଭୟଙ୍କରୀ" ଯେଉଁ କଥାଟି ଅଛି, ମୁଁ ଦେଖୁଛି ତାହା ପ୍ରକୃତରେ ସତ ।"

"ଆପଣଙ୍କର ଯଦି ପ୍ରତ୍ୟକ୍ଷ ଜ୍ଞାନ ନାହିଁ, ତେବେ ରସାୟନ ବିଜ୍ଞାନ ଲାବୋରେଟରୀକୁ ଯାଇ ଦେଖିଲେନି ଅଏଲବାଥ୍ ହୋଇଛି କି ନାହିଁ ? ଆପଣ ଯାଇଥିଲେ ?

"ନା ଆଜ୍ଞା, ଯାଇନି ।"

"ଅଥଚ ଗୋଟିଏ ହାସ୍ୟାସ୍ପଦ ଅଭିଯୋଗ କରୁଛନ୍ତି କ'ଣ ନା ବିଭାଗର ଲୋକେ ସରକାରୀ ଘିଅରୁ ଜଳଖିଆ ତିଆରି କରି ଖାଇଗଲେ । ଆଜିକାଲି ଲାବରେଟରୀମାନଙ୍କରେ ଅଏଲବାଥ୍ ହେଉଛି ଭେଜିଟେବୁଲ ଘିଅରୁ । ଏହା କଲେ ଲାବରେଟରୀ ଗନ୍ଧାଇବ ନାହିଁ । ଆଗରୁ ଯେଉଁ ତେଲରେ ଅଏଲବାଥ୍ ହେଉଥିଲା, ସେଥିରେ ଲାବୋରେଟରୀରେ ଅତ୍ୟଧିକ ଦୁର୍ଗନ୍ଧ ହେଉଥିଲା । ଏହି ଅସୁବିଧାକୁ ଦୂର କରିବା ପାଇଁ ବିଭାଗୀୟ ମୁଖ୍ୟ ହିଁ ଏଭଳି

ଭେଜିଟେବୁଲ ଘିଅର ପ୍ରବର୍ତ୍ତନ କରିଥାଇ ପାରନ୍ତି । ସେମାନେ ଏତେ ବଡ଼ ବଡ଼ ଅଫିସର, ଦୁଇକଲେ ଘିଅରେ ଜଳଖିଆ କରି ଖାଇଯିବେନି ।”

ଦେଖନ୍ତୁ ଡକ୍ଟର ସିହ୍ନା, ଆପଣ ରେଭେନ୍‌ସା କଲେଜ ଭଳି ବଡ଼ କଲେଜର ପ୍ରିନ୍‌ସିପାଲ ହେବାପାଇଁ ମୋଟେ ଯୋଗ୍ୟ ନୁହଁନ୍ତି । ଆପଣ ତ ଆର୍ଟସ୍ ଲୋକ, ବିଜ୍ଞାନ ବିଷୟରେ ପୂରା ଅଜ୍ଞ, ଆପଣଙ୍କୁ ଏ କଲେଜକୁ ଆଣିଲା କିଏ ? ଦୁଇମାସ ହେଲା ଆପଣ ସାତ ଆଠଜଣ ପିଲାଙ୍କୁ ଅଯଥା ଜଏନ୍ କରାଇ ନଦେଇ ଯେଉଁ ଅକ୍ଷମଣୀୟ ଅପରାଧ କରିଛନ୍ତି, ଆପଣଙ୍କୁ ସସ୍‌ପେଣ୍ଡ କରାଯିବା କଥା । ମୁଁ ଆପଣଙ୍କୁ ସସ୍‌ପେଣ୍ଡ୍ କରୁନାହିଁ । ଆପଣଙ୍କୁ ବ୍ରହ୍ମପୁର ଆର୍ଟସ୍ କଲେଜକୁ ବଦଳି କରିବାପାଇଁ ସେକ୍ରେଟେରିଙ୍କୁ କହୁଛି । ଆପଣଙ୍କ ଭଳି ଅଜ୍ଞ ଓ ଗୋଳମାଳିଆ ଲୋକ ରେଭେନ୍‌ସା କଲେଜରେ ରହିବାକୁ ମୋଟେ ଯୋଗ୍ୟ ନୁହଁନ୍ତି । ଆପଣଙ୍କ ଭଳି ଅଜ୍ଞ ଲୋକ ଆମ ଶିକ୍ଷା ବିଭାଗରେ ଅଛନ୍ତି, ଜାଣି ମୁଁ ଲଜ୍ଜିତ ହେଉଛି । ଏଇ ସାମାନ୍ୟ କାରଣ ପାଇଁ ଆପଣ ଏତେଗୁଡ଼ିଏ ମେଧାବୀ ଛାତ୍ରଙ୍କର କେରିୟର ନଷ୍ଟ କରିଦେବାକୁ ବସିଛନ୍ତି ? ମୁଁ ଏଥର ସାବଧାନ କରିଦେଉଛି ମିଷ୍ଟର ସିହ୍ନା, ଏମିତି ଭୁଲ ଯେମିତି ଅନ୍ୟ କଲେଜରେ ନ କରନ୍ତି । ଆପଣଙ୍କର ଯେଉଁ ଦୁଷ୍ଟବୁଦ୍ଧି ଅଛି, ତାକୁ ଆୟତ୍ତ କରନ୍ତୁ, ନଚେତ୍ ଦିନେ ଏଇ ଚାକିରୀରୁ ବିଦା ହୋଇଯିବେ ।

## ତେଲ୍ୟାଳିଶ

ଦେବସ୍ମାନ ଅଫିସ୍ ଯିବା ପାଇଁ ଖାଇବାକୁ ବସିଛି, ପି.ଏ. ଆସି ଖବର ଦେଲା, “ସାର୍, ମୁଖ୍ୟମନ୍ତ୍ରୀଙ୍କ ଫୋନ୍ ଆସିଛି ।”

“ମୁଁ ଯାଇ ଫୋନ୍ ଧରିବି ?” ଖାଇବାକୁ ଦେଉ ଦେଉ ଶାନ୍ତି ପଚାରିଲା ।

“ନା, ନା ଶାନ୍ତି, ତୁମେ ଧରନି । ଫୋନଟାକୁ ମୋଠାକୁ ନେଇ ଆସିବାକୁ କୁହ । ମୁଖ୍ୟମନ୍ତ୍ରୀ କ’ଣ କହିବାକୁ ଚାହୁଁଛନ୍ତି, ମୁଁ ଜାଣେ ।

ଦେବସ୍ମାନ ଫୋନ୍ ଧରିଲା ।

“ହଁ ହଁ, ମୁଁ ଦେବସ୍ମାନ କହୁଛି । କ’ଣ ଆଜ୍ଞା, କେଉଁ କଥା ?

“ରେଭେନ୍‌ସା କଲେଜ ପ୍ରିନ୍‌ସିପାଲ । ହଁ, ହଁ, ମୁଁ ତାଙ୍କୁ ବ୍ରହ୍ମପୁର ଆର୍ଟସ୍ କଲେଜକୁ ବଦଳି କରିବା ପାଇଁ ଆଦେଶ ଦେଇଛି । ସେ ଆର୍ଟସ୍ ଲୋକ । ସାଏନ୍‌ସ ବିଷୟରେ କିଛି ଧାରଣା ନାହିଁ । ସେ ରେଭେନ୍‌ସା କଲେଜ ଚଳାଇ ପାରୁନାହାନ୍ତି । କହାଁଠି ଭୁଲଭଟକା କରୁଛନ୍ତି, ଯାହାକୁ ଶୁଣିଲେ ଆପଣ ହସି ହସି ଗଡ଼ିଯିବେ ।”

ନା, ତାଙ୍କୁ ରେଭେନ୍‌ସା କଲେଜରେ ରଖି ହେବନି । ସେ ଏଠାରେ ରହିଲେ ସବୁ ଗୋଳମାଳ କରିଦେବେ । ସେ ଯେଉଁ ଭୁଲ କରିଛନ୍ତି, ତାଙ୍କୁ ସସ୍‌ପେଣ୍ଡ୍ କରାଯିବା

କଥା, ମୁଁ ସେତକ କରନାହିଁ । ବ୍ରହ୍ମପୁର ଆର୍ଟସ୍ କଲେଜ କିଛି ଖ୍ରୋଷ୍ଟ କଲେଜ ନୁହଁ, ବଡ଼ କଲେଜ । ସେ ସେଠାକୁ ଯାଆନ୍ତୁ ।

"ନା ଆଜ୍ଞା, ହୋଇପାରିବନି, ମୁଁ ଅକ୍ଷମ ।"

ଏତକ କହି ଦେବସ୍ମାନ ଫୋନ ଥୋଇଦେଲା । ଦେବସ୍ମାନ ଆଲଆକୁ ଭଜା ଦେଇ ଦେଇ ଶାନ୍ତ କହିଲା, "ମୁଖ୍ୟମନ୍ତ୍ରୀ ଗୋଟିଏ ଅନୁରୋଧ କରୁଛନ୍ତି, ତାଙ୍କ ମୁହେଁ ମୁହେଁ କ'ଣ ଏମିତି ନାହିଁ କରିଦେଉଛ ମ ?"

"ତୁମେ ଜାଣିନାହଁ ଶାନ୍ତ, ସେ ପ୍ରିନ୍‌ସିପାଲ ଯେଉଁ ଭୁଲ କରିଛନ୍ତି, ଆଉ କେହି ହୋଇଥିଲେ ତାଙ୍କୁ ସସ୍‌ପେଣ୍ଡ୍ କରି ଦେଇଥାଆନ୍ତା । ମୁଖ୍ୟମନ୍ତ୍ରୀଙ୍କ ଲୋକ ବୋଲି ସେ କାହାକୁ ମାନୁ ନାହାନ୍ତି, ଏମିତିକି ଡ଼ି:ପି:ଆଇ:ଙ୍କୁ ବି ମାନୁ ନାହାନ୍ତି ।"

"ମୁଖ୍ୟମନ୍ତ୍ରୀଙ୍କ ଇଚ୍ଛା ବିରୁଦ୍ଧରେ ଏହିଭଳି ଭାବରେ ଗଲେ ଏଠି ଆଉ ବେଶିଦିନ ନୁହେଁ ମୁଁ ଦେଖୁଛି"—ଶାନ୍ତ କହିଲା ।

"ତୁମର କ'ଣ ଏ ମନ୍ତ୍ରୀଙ୍କ କୋଠା ଦେଖି ବେଶି ମମତା ବଢ଼ିଗଲାଣି କି ଶାନ୍ତ ? ଖବରଦାର୍, ସେ ଭୁଲ କେବେ କରିବ ନାହିଁ । ସବୁବେଳେ ମନେ ରଖିଥିବ, ଆମେ ଆଜି ଏଠି ଅଛନ୍ତି, କାଲି ଏଠି ଥିବା କି ନାହିଁ ସନ୍ଦେହ ।"

"ପ୍ରକୃତରେ ମୋତେ ଏଠି ମୋଟେ ଭଲ ଲାଗୁନି । ଘଡ଼ିକୁଘଡ଼ି ତୁମେ ବାପାଙ୍କୁ ଯେମିତି ଭାବରେ ଡକାଇ ଆଣୁଛନା, ମୋତେ ଭାରି ଖରାପ ଲାଗୁଛି । ତୁମେ ଯେତେବେଳେ ପୁଅ, ବାପାଙ୍କୁ ଏମିତି ଫୋନରେ ଡକାଇ ଆଣିବା, ପୁଣି ସଙ୍ଗେ ସଙ୍ଗେ ଆସିବା ପାଇଁ କହିବା କ'ଣ ଉଚିତ ହେଉଛି ?"

"କିନ୍ତୁ କ'ଣ କରିବ ଶାନ୍ତ ? ଇଏ ହେଉଛି ଶାସନ ! ମୁଁ ବାପାଙ୍କ ଗୋଡ଼ତଳକୁ ହେଲେହେଁ ଶାସନରେ ଯେତେବେଳେ ପଶିଛି, ବାପାଙ୍କୁ ଡକାଇବାକୁ ପଡ଼ିବ । ତୁମେ କ'ଣ ଭାବୁଛ ଶାନ୍ତ, ବାପାଙ୍କୁ ଡକାଇବା ବେଳକୁ ମୋତେ ନିଜକୁ କଷ୍ଟ ହେଉନି ? କିନ୍ତୁ କ'ଣ କରିବ ? ଶାସନଡୋରକୁ ଯେତେବେଳେ ଧରିଛି, ଡକାଇବାକୁ ପଡ଼ିବ । ମୋ ଡାକରେ ପାଇ ସେ ମଧ୍ୟ ଆସିବେ । ସେତକ ନ କରିଥିଲେ ଗତ ଦୁଇମାସ ହେଲା ଦଳେ ମେଧାବୀ ପିଲା ଗବେଷଣା ନ କରି ଯେଉଁ ହଇରାଣ ହେଉଛନ୍ତି, ତାହା କ'ଣ ଏତେଶୀଘ୍ର ସମାଧାନ ହୋଇ ପାରିଥାନ୍ତା ?"

"ତୁମେ ବାପାଙ୍କୁ ବାରମ୍ବାର ନ ଡକାଇ ବାପାଙ୍କ ପାଖକୁ ଚାଲିଯାଇ ତାଙ୍କ ସହିତ ଆଲୋଚନା କରି ସେହିଠାରେ ଅର୍ଡ଼ର କରିଦେଇ ଆସିଲେ କଅଣ ହୁଅନ୍ତାନି ?"

ହସିଲା ଦେବସ୍ମାନ, "ଲୋକେ କ'ଣ କହିବେ, ସେଆଡ଼କୁ ଟିକିଏ ଖିଆଲ ଅଛି ତ ? ଲୋକେ କହିବେ, ‹ହୋ ସରକାରୀ ଶାସନ ନା ଘରୋଇ କାରବାର ? ଏମିତି ଶାସନ ହୁଏନି ଶାନ୍ତ,'ଶାସନର ଏକ ଡେକୋରମ୍ ଅଛି । ସେହି ଡେକୋରମ୍ ରଖିବାକୁ ପଡ଼ିବ,

ନଚେତ୍ ଲୋକେ ଆମକୁ ଛି ଛିକାର କରିବେ । ଆମେ ମୁହଁଟେକି ଚାଲିପାରିବା ନାହିଁ ଏଠି ।”

“କିନ୍ତୁ ଏସବୁ ଦେଖି ଦେଖି ମୋତେ ବଡ଼ ଖରାପ ଲାଗିଲାଣି । ମୁଁ ଖାଲି ଦିନ ଗଣୁଛି, ଆମେ ଏଠୁଁ କେଉଁଦିନ ବଦଳି ହୋଇ ଆମ ଗୋବିନ୍ଦପୁରକୁ ଚାଲିଯିବା । ତୁମେ ଯେ ମନ୍ତ୍ରୀ କାହିଁକି ହେଲ, ବର୍ତ୍ତମାନ ମୁଁ ସେଇଆ ଭାବୁଛି । ଆମେ ସେଠି ବେଶ୍ ଭଲରେ ଥିଲେ ।”

× × × ×

ସନ୍ଧ୍ୟା ପ୍ରାୟ ହୋଇଗଲାଣି । ସୀମନ୍ତିନୀ ଦେବୀ ଆସି ଶିକ୍ଷାମନ୍ତ୍ରୀଙ୍କ ଘରେ ପହଞ୍ଚିଗଲେ । ଘର ଭିତରକୁ ଶାଶୁଙ୍କୁ ପଶି ଆସିବା ଦେଖି ଶାନ୍ତି ଯାଇ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇ ଗୋଡ଼ଧୂଳି ନେଇ ପାଦ୍ରେଟି ଆଣିଲା । ସାଆନ୍ତମା’ଙ୍କୁ ମୁଣ୍ଡିଆ ମାରିବାକୁ ପିଲାମାନଙ୍କୁ କହିଦେଲା ।

ଚାରିଆଡ଼କୁ ଅନାଇ ସୀମନ୍ତିନୀ ଦେବୀ ଫୁସ୍‌ଫୁସ୍ ହୋଇ ପଚାରିଲେ, “କ’ଣ ମା, ପୁଅ କ’ଣ ଘରେ ନାହିଁ ?”

“ନା ବୋଉ, ସେ ମୁଖ୍ୟମନ୍ତ୍ରୀଙ୍କ ଘରକୁ ଯାଇଛନ୍ତି । ବର୍ତ୍ତମାନ ଆସିଯିବେ ଯେ ।“

“ତୁ ଦିନସାରା ଏଠି ବସି ବସି ବିରକ୍ତ ହୋଇ ଯାଉଥିବୁ ମା’ । ଟିକିଏ ଆମ ଘରଆଡ଼େ ବୁଲି ଆସୁନୁ ? ମୁଁ ତ ଘରେ ଏକାଟିଆ ଅଛି । ମୋ ମନ ସବୁବେଳେ ତୋରିଠାରେ ଓ ଏ ପିଲା ଦି’ଟାଙ୍କ ପାଖରେ । ତୁମମାନଙ୍କୁ ନ ଦେଖିଲାବେଳକୁ ମୋ ମନ ଅସ୍ଥ ଧରୁନି ମା’ ।”

“କ’ଣ କରିବି ବୋଉ ? ଘରେ ଏତେ କାମ ଯେ ମୋତେ ମରିବାକୁ ବି ତର ନାହିଁ । ସକାଳେ, ଉପରଓଳି ପିଲାମାନଙ୍କ ପାଠପଢ଼ା । ମଧ୍ୟାହ୍ନବେଳେ ସେ ଖାଇବାକୁ ଅଫିସରୁ ଆସିବେ । ସନ୍ଧ୍ୟାରେ ଅଫିସ୍‌ରୁ ଫେରିଲେ ସାଙ୍ଗସାଥି କେତେ ଆସୁଛନ୍ତି । ମୁଁ ତ ଏଠି ସବୁବେଳେ ଖଡ଼ା ପହରା ଦେଉଛି, ମୋତେ ବେଳ ମିଳୁଛି କେତେବେଳେ ? ମୋର କ’ଣ ମନ ହେଉନି ବୋଉ, ଆପଣମାନଙ୍କୁ ଯାଇ ଟିକିଏ ଦେଖି ଆସିବା ପାଇଁ ? ମୁଁ ଏଡ଼େ ହୀନକପାଳୀ ଯେ, ବାପାଙ୍କୁ ତ ଏ ପର୍ଯ୍ୟନ୍ତ ମୁଁ ଦେଖିନି, କି ସେ ମୋତେ କେବେ ଦେଖି ନାହାନ୍ତି । ପିଲାମାନେ ଏତେ ବଡ଼ ବଡ଼ ହେଲେଣି, ସେମାନେ କେବେ କ’ଣ ସାଆନ୍ତଙ୍କୁ ଦେଖିଲେଣି ନା ଚିହ୍ନିଲେଣି ? କେଡ଼େ ହୀନକପାଳିଆ ଏ ପିଲା ଦି’ଟା ବୋଉ ?”

“ସେ ଭୁଲ ତୋର ନୁହେଁ ମା, ସେ ଭୁଲ ତୋ ଶ୍ୱଶୁରଙ୍କର । ମୋତେ ବି ଶୁଣିଲାବେଳକୁ ଲାଜ ମାଡ଼ୁଛି ମା’ । ସେ କିଭଳି ବୋପ୍, ନାତି ନାତୁଣୀଙ୍କୁ ଚିହ୍ନି ନାହାନ୍ତି ଏ ପର୍ଯ୍ୟନ୍ତ । ଅନେକଥର ତ ସେ ଏଠାକୁ ଆସିଲେଣି । ମୁଁ ମଧ୍ୟ କେତେଥର କହିଲିଣି, ତୋତେ ଓ ପିଲାମାନଙ୍କୁ ଟିକିଏ ଦେଖି ଆସିବା ପାଇଁ । ସେ କ’ଣ ଶୁଣନ୍ତି ଜାଣୁ ମା’ ? ଶାସନକଳ ଭିତରେ ପାରିବାରିକ ସମ୍ପର୍କକୁ ଜାହିର କରାଯାଇପାରେ ନାହିଁ । ମନ୍ତ୍ରୀଙ୍କ ଘର

ଭିତରକୁ ବାରମ୍ବାର ଡ଼:ପି:ଆଇ: ଯିବା ଆସିବା କଲେ ଲୋକେ ନାନା କଥା କହିବେ, ପୁଅର ସମ୍ମାନରେ ବାଧା ପଡ଼ିଯିବ ।"

"ମୁଁ ପରା ଆଜି ତାଙ୍କୁ କହୁଥିଲି, ବାପାଙ୍କୁ ବାରମ୍ବାର ଏଭଳି ଭାବରେ ଡକାଇବା ମୋଟେ ଭଲ ନୁହେଁ । ଯେତେହେଲେ ସେ ବାପା, ଇଏ ହେଉଛନ୍ତି ପୁଅ । ପୁଅ ବାପ ପାଖକୁ ଯିବା କଥା, ବାପ ପୁଅ ପାଖକୁ ଆସିବା କଥା ନୁହେଁ । ବାପାଙ୍କୁ ଡକାଇବାକୁ ଆଦେଶ ଦେଇ ସେ କ'ଣ କିଛି କମ୍ ମନ କଷ୍ଟ କରନ୍ତି ବୋଉ ? ମୋତେ କୁହନ୍ତି, ତୁମେ କ'ଣ ଭାବୁଛ ଶାନ୍ତି, ବାପାଙ୍କୁ ଡକାଇଲାବେଳେ ମୋତେ କଷ୍ଟ ହୁଏନି ବୋଲି ? କିନ୍ତୁ କ'ଣ କରିବି, ଶାସନଡୋରି ତ ଧରିଛି, ସେ କଷ୍ଟ ମୋତେ ସହିବାକୁ ପଡ଼ିବ ।"

ମୁଁ ତାଙ୍କୁ ସେଥିପାଇଁ କେତେଥର କହିଲିଣି, ଚାଲ, ଆମେ ଏଠା ଛାଡ଼ି ଆମ ଗୋବିନ୍ଦପୁରକୁ ଚାଲିଯିବା । ଆମେ ସେଠି ବେଶ୍ ଭଲରେ ଥିଲେ ।

"ନା ମା', ତୁ ଏତେ ବ୍ୟସ୍ତ ହେଉଚୁ କାହିଁକି ? ପୁଅ ମନ୍ତ୍ରୀ ହେବାରେ ଯେ ଖୁସି ନୁହେଁ, ତା ମୁଁ ଜାଣେ । ଯେତେବେଳେ ଶାସନ ଦାୟିତ୍ୱ ଧରିଛି, ଏଭଳି ଛାଡ଼ି ପଳାଇଲେ ଲୋକେ କହିବେ କ'ଣ ? ଖାଲି ହସିବେ ସିନା ! ତା ସମ୍ମାନ କେତେ ତଳକୁ ଖସିଯିବ ଜାଣିଚୁ ?"

"ତୁ ପିଲାଦୁହିଁଙ୍କୁ କ'ଣ ସ୍କୁଲରେ ଦେଇନୁ ମା' ?"

"ନା ବୋଉ, ମୁଁ ଘରେ ପଢ଼ାଉଛି ।"

"ତୁ ପୁଅର ଖାଇବା ପିଇବା ଦାୟିତ୍ୱ ଭିତରେ ପିଲାମାନଙ୍କୁ ପଢ଼ାଇପାରୁଚୁ ମା ? ବେଳ ପାଉଛୁ କେମିତି ?"

"ହଁ ବୋଉ, ନ ପଢ଼ାଇବି କେମିତି ? ସେଥିପାଇଁ ସମୟ କରିବାକୁ ପଡୁଛି । ମୁଁ ତ ସ୍କୁଲରେ ଶିକ୍ଷୟିତ୍ରୀ ଥିଲି । ମୋତେ ପିଲାଙ୍କୁ ପଢ଼ାଇବାକୁ ଭଲ ଲାଗେ । ତା'ଛଡ଼ା ଆପଣଙ୍କ ପୁଅ କହନ୍ତି, ପିଲାମାନଙ୍କୁ ମା' ଯେଉଁଭଳି ଭାବରେ ଶିକ୍ଷା ଦେଇପାରିବ, ଅନ୍ୟ ଶିକ୍ଷକ ସେପରି ଦେଇପାରିବେନି । ପିଲାମାନେ ପ୍ରାଇମେରୀ ଶିକ୍ଷା ଶେଷ କଲା ପର୍ଯ୍ୟନ୍ତ ମା' ଠାରୁ ଶିକ୍ଷା ପାଇବା ଉଚିତ୍ । ଶ୍ରେଣୀ ଶ୍ରେଣୀ ପିଲାଙ୍କୁ ପଢ଼ାଇବା ଅଭ୍ୟାସ ମୋର ତ ମୂଳରୁ ଅଛି । ତେଣୁ ଘରେ ପଢ଼ାଉଛି । ସକାଳଓଳି ନଅଟାରୁ ବାରଟା, ଉପରଓଳି ଦୁଇଟାରୁ ପାଞ୍ଚଟା ।"

"ମୁଁ ଆଜି ଆସିଥିଲି ମା, ତୋତେ ଆମ ଘରକୁ ନେବାପାଇଁ । ତୋ ଶ୍ୱଶୁର ତୋତେ ଓ ପିଲାମାନଙ୍କୁ ନେବାପାଇଁ ମୋତେ ପଠାଇଛନ୍ତି । ତୋ ଶ୍ୱଶୁର ବଡ଼ ଅନୁତପ୍ତ, ତୋତେ ଓ ପିଲାମାନଙ୍କୁ କେବେ ଦେଖି ନାହାନ୍ତି ବୋଲି । ମୁଁ ପୁଣି ତୋତେ ଛାଡ଼ିଦେଇ ଯିବି ମା । ପୁଅ ଆସିବା ପୂର୍ବରୁ ତୁ ଆମ ଘରୁ ଫେରି ଆସିଥିବୁ ।"

"ହେଉ ବୋଉ, ବସନ୍ତୁ, ମୁଁ ତାଙ୍କଠାକୁ ଟିକିଏ ଖବର ପଠାଇଦିଏଁ । କାଲେ ଆମ ଫେରିବା ଡେରି ହୋଇଯିବ । ଘରର ପୂଜାରୀମାନଙ୍କୁ ରାତି ରନ୍ଧା ପାଇଁ ବରାଦ

କରିଦେଇ ନ ଗଲେ ସେମାନେ କିଛି କରିବେନି । ଏତିକି କାମ କରିସାରି ଶାଶୁଙ୍କ ଗୋଡ଼ରେ ପିଲା ଦୁଇଟିଙ୍କୁ ଧରି ବାନ୍ଧାରିଗଲା ଶାନ୍ତି ।

ଡ଼:ପି:ଆଇ:ଙ୍କ ଗୋଡ଼ତଳେ ଯେତେବେଳେ ବୋହୂ ଓ ନାତି ନାତୁଣୀ ମୁଣ୍ଡିଆ ମାରିଲେ, ନାରଣବାବୁଙ୍କ ଆଖିରୁ ଠପ୍ ଠପ୍ ଲୁହ ଗଡ଼ି ପଡ଼ିଲା । କେଡ଼େ ହତଭାଗା ସେ ! ଲକ୍ଷ୍ମୀପରି ବୋହୂ, କାର୍ତ୍ତିକ ଭଳି ନାତି ନାତୁଣୀଙ୍କୁ ସେ ଏତେଦିନ ଧରି ଦେଖିପାରି ନାହାନ୍ତି । ସାନ ପିଲା ଦୁଇଟିଙ୍କୁ କୋଳକୁ ଆଉଜାଇ ନେଇ ନେଇ କହିଲେ, "ଏ ପିଲାମାନେ କେଉଁଠି ପଢ଼ୁଛନ୍ତି ମା ?"

"ନା ବାପା, କୌଣସି ସ୍କୁଲରେ ନାମ ଲେଖାଇ ନାହାନ୍ତି । ତାଙ୍କ ବାପା କହନ୍ତି, ପିଲାମାନଙ୍କୁ ନିଜ ମା ବାପ ଯେମିତି ପଢ଼ାଇ ପାରିବେ, ସ୍କୁଲର ଶିକ୍ଷକ ଶିକ୍ଷୟିତ୍ରୀ ସେମିତି ପାରିବେନି । ସେମାନଙ୍କ ପ୍ରାଇମେରୀ ଶିକ୍ଷା ସରିଲେ ସେମାନେ ଯାଇ ଅନ୍ୟଠି ନାମ ଲେଖାଇବେ । ପ୍ରାଇମେରୀ ଶିକ୍ଷା ସେମାନେ ପୁରାପୁରି ଘରେ ପାଇବେ ।"

"କ'ଣ ମା', ଘରକୁ ଶିକ୍ଷକ ଡକାଇ ଆଣି ପଢ଼ାଉଛୁ ?"

"ନା ବାପା, କୌଣସି ଶିକ୍ଷକ ଆସନ୍ତିନି । ମୁଁ ନିଜେ ଘରେ ପଢ଼ାଏଁ, ସକାଳେ ତିନିଘଣ୍ଟା, ଉପରଓଳି ତିନିଘଣ୍ଟା । ସନ୍ଧ୍ୟାବେଳେ ସେମାନେ ନିଜେ ନିଜେ ପଢ଼ା କରନ୍ତି ।"

"ମୁଁ ଭାବିଥିଲି ମା, ଦେବି ତା ପିଲାଦୁହିଁଙ୍କୁ କେଉଁ ପବ୍ଲିକ୍ ସ୍କୁଲରେ ପଢ଼ାଉଥିବ ।"

"ପବ୍ଲିକ୍ ସ୍କୁଲକୁ ସେ ମୋଟେ ପସନ୍ଦ କରନ୍ତିନି ବାପା । ସେ କହନ୍ତି, ଏହା ଆମ ଦେଶରେ ଏକ ଭଣ୍ଡାମୀ । ପୁରାତନ ସାମନ୍ତବାଦୀ ଓ ରାଜାରାଜୁଡ଼ା ମନୋବୃତ୍ତିର ଏକ ପ୍ରତୀକ । ଆଁ, ଆମ ପିଲାଏ ସାଧାରଣ ପିଲାଙ୍କ ସାଙ୍ଗରେ ପଢ଼ିବେ ? ତା କଦାପି ହୋଇ ନ ପାରେ । ଏହି ଗର୍ବ ଟିକକ ପାଇଁ ଏହି ସଂସ୍ଥାର ଜନ୍ମ ।"

"ତୁ ଦେବିର ଖିଆପିଆ, ଘରର ଯାବତୀୟ ଦାୟିତ୍ୱ ବୁଝି ପିଲା ଦୁଇଟିଙ୍କୁ ପୁଣି ପଢ଼ାଇପାରୁ ମା' ।"

"ହଁ ବାପା, ଆଉ କଏ ଅଛି ? ଆମକୁ ତ ସବୁ କରିବାକୁ ପଡ଼ିବ । ଇଏ ସିନା ଆଜି ମନ୍ତ୍ରୀ ଅଛନ୍ତି, ମନ୍ତ୍ରୀ ହେବା ଆଗରୁ ମୁଁ ତ ପିଲାମାନଙ୍କୁ ଘରେ ପଢ଼ାଉଥିଲି । ଆଜି ମନ୍ତ୍ରିତ୍ୱ ଚାଲିଗଲେ, ଆମେ ଗୋବିନ୍ଦପୁର ଫେରିଗଲେ ମୁଁ ତ ପୁଣି ପଢ଼ାଇବି ଏମାନଙ୍କୁ ?"

"ତୁ ଏତେ କଷ୍ଟ କରିପାରୁଛୁ ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଛି ମା' । ପୂରାଥର ସବୁ ଖବର, ଘରର ସବୁ ଦାୟିତ୍ୱ ତୁଲାଇ ଏ ପିଲା ଦି'ଟାଙ୍କର ପାଠପଢ଼ା ବୁଝୁଛୁ, ଏହା କମ୍ ବଡ଼ କଥା ନୁହେଁ ମା' । ତୁ ଦିନସାରା ସବୁବେଳେ ତ ବ୍ୟସ୍ତ ରହୁଥିବୁ, ଖୁସିବାସି ଆନନ୍ଦ ପାଇଁ ସମୟ ନ ଥିବ ତୋର !"

"ନା ବାପା, ଲୋକମାନଙ୍କର ସେବା ତ ଆମ କାମ । ସେଇଥିରେ ଆମର ଆନନ୍ଦ । ଲୋକସେବା ଭଳି ଆନନ୍ଦ ଆଉ କେଉଁଥିରୁ କ'ଣ ମିଳିପାରିବ ବାପା ?"

## ତଉପାଲଣ

ଡ଼:ପି:ଆଇ:ଙ୍କୁ ଆଲୋଚନା ପାଇଁ ଡାକଦେବାକୁ ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ କହି ଦେଇଛି କି ନାହିଁ, ମୁଖ୍ୟମଂତ୍ରୀଙ୍କ ପାଖରୁ ଡାକରା ଆସିଲା । ଡ଼:ପି:ଆଇ: ଆସିଲେ ଅପେକ୍ଷା କରିବା ପାଇଁ କହିଦେଇ ଦେବସ୍ନାନ ଚାଲିଗଲା ମୁଖ୍ୟମଂତ୍ରୀଙ୍କ ବାସଭବନକୁ ।

ପ୍ରାଇଭେଟ୍ ସେକ୍ରେଟେରୀଙ୍କ ପାଖରୁ ଡାକରା ପାଇ ନାରଣବାବୁ ମଂତ୍ରୀଙ୍କ କୋଠିରେ ପହଞ୍ଚିଲାବେଳକୁ ମଂତ୍ରୀ ଘରେ ନାହାନ୍ତି । ପ୍ରାଇଭେଟ୍ ସେକ୍ରେଟେରୀ ତାଙ୍କୁ ଅପେକ୍ଷା କରିବା ପାଇଁ ଅନୁରୋଧ କରି ଅଭ୍ୟର୍ଥନା କକ୍ଷରେ ବସାଇ ଦେଇଗଲେ । ଡ଼:ପି:ଆଇ:ଙ୍କୁ ଅଭ୍ୟର୍ଥନା କକ୍ଷରେ ବସିଥିବାର ଦେଖିଲା ଚାକର ସନିଆ । ସଙ୍ଗେ ସଙ୍ଗେ ଯାଇ ମା'ଙ୍କୁ କହିଲା, "ମା, ସାଆନ୍ତେ ଆସିଛନ୍ତି । ସେ ଆମ ଦାଣ୍ଡଘରେ ବାବୁଙ୍କୁ ଅପେକ୍ଷା କରି ବସିଛନ୍ତି । ସାଆନ୍ତଙ୍କୁ କ'ଣ ଘର ଭିତରକୁ ଡ଼ାକି ଆଣିବି ମା' ?"

"ନା ରେ ସନିଆଁ; ବାପାଙ୍କୁ ଭିତରକୁ ଡାକନା । ବାବୁ ଶୁଣିଲେ କାଳେ ବିରକ୍ତ ହେବେ ।"

ଶାନ୍ତି ଏଇକଥା କେଇପଦ କହିଲାବେଳେ ମନ ଭିତରେ ଅନୁଭବ କରୁଥିଲା ବଡ଼ ବ୍ୟଥା । କେଡ଼େ ହୀନକପାଳୀ ସେ । ଶ୍ୱଶୁର ବାହାରେ ଅପେକ୍ଷା କରିଛନ୍ତି, ସେ ତାଙ୍କୁ ଘର ଭିତରକୁ ଡାକି ପାରୁନି । ପିଲାମାନେ ସାଆନ୍ତଙ୍କ ପାଖକୁ ଯିବାକୁ ଚାହିଁଲାରୁ ସେ ସେମାନଙ୍କୁ ନାନା କଥା କହି ଭୁଲାଇ ଦେଉଛି, ଛାଡ଼ୁ ନାହିଁ । ଶ୍ୱଶୁର ବୋଲି ଯେଉଁ ସମ୍ପର୍କ, ତାଙ୍କ ପାଦପୂଜା ତା'ର କରିବା କଥା । କେଡ଼େ ହତଭାଗିନୀ ସେ, ପୂଜା ତ ଦୂରର କଥା, ତାଙ୍କୁ ଟିକିଏ ବି ଘର ଭିତରକୁ ଡାକି ପାରୁନି । "ହେ ଭଗବାନ, ମୋତେ କି ଅବସ୍ଥାରେ ଆଣି ପକାଇଲ ପ୍ରଭୁ ? ଶ୍ୱଶୁରଙ୍କୁ ଦେଖୁଛି, ଅଥଚ ତାଙ୍କୁ ଟିକିଏ ସମ୍ମାନ କି ଶ୍ରଦ୍ଧା ଦେଇପାରୁନି । ପ୍ରଭୁଙ୍କର ମୋ ପ୍ରତି ଏ କି ପରୀକ୍ଷା କେଜାଣି !"

"ବୋଉ, ଆମେ ଟିକିଏ ସାଆନ୍ତଙ୍କ ପାଖକୁ ଯାଆନ୍ତୁନି ?" ବଡ଼ପୁଅ ସନ୍ତୋଷ ପଚାରିଲା ।

"ନା ବାପ, ସେଇଟା ଲୋକଙ୍କ ଆଖିରେ ଭଲ ଦିଶିବନି । ସେ ସରକାରୀ କାମରେ ଆସିଛନ୍ତି । ତୋ ବାପାଙ୍କ ସହିତ ସରକାରୀ କଥାବାର୍ତ୍ତା ଅଛି । ତୁମମାନଙ୍କର ସେଠିକି ଯିବା ଉଚିତ ହେବନି । ଅନ୍ୟମାନେ ତ ସେଠି ତୋ ବାପାଙ୍କୁ ଅପେକ୍ଷା କରି ବସିଛନ୍ତି ।

ତୁମେ ସେଠାକୁ ଗଲେ କିଏ କିଛି ଭାବିପାରେ । ଆମେ ଆଜି ସନ୍ଧ୍ୟାବେଳେ ସାଆନ୍ତଙ୍କ ଘରକୁ ଚାଲିଯିବା ।

× × × ×

ସନ୍ଧ୍ୟାବେଳେ ସୀମନ୍ତିନୀ ଦେବୀ ଚାଲି ଆସିଲେ ମନ୍ତ୍ରୀଙ୍କ ଘରକୁ ବୋହୂକୁ ଦେଖିବା ପାଇଁ । ସେ ଆସିଥାନ୍ତି ରିକ୍‌ସାରେ । ସୀମନ୍ତିନୀ ଦେବୀଙ୍କୁ ରିକ୍‌ସାରୁ ଓହ୍ଲାଇବା ଦେଖି ଶାନ୍ତି ଦୌଡ଼ିଗଲା ଶାଶୂଙ୍କ ପାଖକୁ । ଶାଶୂଙ୍କୁ ପାଛୋଟି ଆଣୁ ଆଣୁ ସେ ପଚାରିଲା, "ବୋଉ, ଆପଣ କ'ଣ ଆଜି ରିକ୍‌ସାରେ ଆସିଛନ୍ତି ? ଗାଡ଼ି କ'ଣ ନାହିଁ କି ?"

"ନା ମା, ତୋ ଶ୍ୱଶୁର ପରା ଟୁର୍‌ରେ ଯାଇଛନ୍ତି । ସେ ଗାଡ଼ିଟିକୁ ନେଇ ଯାଇଛନ୍ତି । ଗାଡ଼ି ନାହିଁ, ଆସିଥାନ୍ତି କେମିତି ମା ! ତେଣୁ ରିକ୍‌ସାରେ ଚାଲି ଆସିଲି । ଆମ କ୍ୱାର୍ଟରରେ ଦୁଇ ଦୁଇଟା ସରକାରୀ ଗାଡ଼ି ଥୁଆ ହୋଇଛି । ତୋ ଶ୍ୱଶୁରଙ୍କର ତାଗିଦ୍ ଖବରଦାର, ନିଜ ଘରୋଇ କାମ ପାଇଁ ସରକାରୀ ଗାଡ଼ିକୁ ଯେମିତି ବ୍ୟବହାର ନ କର ! ଯେଉଁଦିନ ଦେଖିବି ତୁମେ ସରକାରୀ ଗାଡ଼ି ନିଜ ଘରୋଇ କାମ ପାଇଁ ବ୍ୟବହାର କରୁଛ, ମୁଁ ସେଦିନ ଚାକିରିରୁ ଇସ୍ତଫା ଦେଇଦେବି ସୀମନ୍ତିନୀ । ତୋ ଶ୍ୱଶୁରଙ୍କର ଏତେ ତାଗିଦ୍, ମୁଁ ପୁଣି ସରକାରୀ ଗାଡ଼ିନେଇ ଆସିବି, ପୁଣି ମଂତ୍ରୀଙ୍କ ଘରକୁ ? ପୁଅକୁ ତୁ କ'ଣ ଜାଣିନୁ ? ଏଠାକୁ ଆସିଲେ ପୁଅ କ'ଣ ରଖିବ ? ସେ ଓଲଟି କହିବ, ବୋଉ, ତୁ ଶେଷରେ ସରକାରୀ ଗାଡ଼ିକୁ ଘରୋଇ କାମରେ ଲଗାଇଲୁ ? ଏହାଯଦି ପ୍ରଚାର ହୋଇଯାଏ, ପୁଅର ସମ୍ମାନହାନି ତ ବାପର ସମ୍ମାନହାନି । ରିକ୍‌ସାରେ ଆସିଲି ବୋଲି କ'ଣ ତତେ ଖରାପ ଲାଗୁଛି ମା ?"

"ନା ବୋଉ, ସେ କଥା ନୁହେଁ । ଆପଣ ତ ଏତେଦିନ ମଟରଗାଡ଼ିରେ ଦିନ କଟାଇ ଆସିଲେ । ବର୍ତ୍ତମାନ ରିକ୍‌ସାରେ ଆସିଲେ ଅଡ଼ୁଆ ଅଡ଼ୁଆ ଲାଗୁଥିବ ନିଶ୍ଚୟ ।"

"ନା, ମା, ସେ ବଡ଼ଲୋକୀ ଆମର ନାହିଁ । ଯେତେବେଳେ ଯାହା ମିଳିଲା, ସେଥିରେ ଚାଲିଯିବା କଥା ।"

"ଆମ ଗାଡ଼ିତ ଏଠି ଥିଲା । ଫୋନ୍ କରି ଦେଇଥିଲେ ପଠାଇ ଦେଇଥାନ୍ତି ବୋଉ !"

"ଆଲୋ ବାପ, ତୋ ଶ୍ୱଶୁର ଆଉ ମୋ ମୁଣ୍ଡ ରଖିଥାନ୍ତେ ? ଏ ବି ତ ସେଇ ସରକାରୀ ଗାଡ଼ି । ତା'ଛଡ଼ା ଘରୋଇ କାମ ପାଇଁ ଫୋନ୍ ବ୍ୟବହାର କଲେ ତୋ ଶ୍ୱଶୁର ଖାଇ ଚଢ଼ନ୍ତି । ସେ କହନ୍ତି, ଏ ଫୋନ୍ ଅଛି ସରକାରୀ କାମ ପାଇଁ, ଘରୋଇ କାମ ପାଇଁ ଅଲଗା ଫୋନ୍ ରଖ । ଯଦି ରଖି ନ ପାରିବ, ତେବେ ଫୋନ ବ୍ୟବହାର ଭୁଲିଯାଅ ।"

"ଆପଣଙ୍କ ପୁଅ ବି ସେମିତି । ମୁଁ ଆପଣଙ୍କୁ ଫୋନ କରିବା ପାଇଁ କହିଲେ, ସେ ମନା କରନ୍ତି । ସେ ଠିକ୍ ସେମିତି କହନ୍ତି, ସରକାରୀ ଫୋନ ଘରୋଇ'କାମ ପାଇଁ ନୁହେଁ ।

କହନ୍ତି, ବୋଉ ସହିତ ଯଦି କଥାବାର୍ତ୍ତା କରିବା ପାଇଁ ଏତେ ଇଚ୍ଛା, କୁହ ସେଥିପାଇଁ ଅଲଗା ଫୋନ୍‌ଟିଏ ବସାଇଦେବ । ସେ ଫୋନ୍‌ର ପଇସା ଆମକୁ ଦେବାକୁ ପଡ଼ିବ ।"

"ତୁମ ପୁଅଙ୍କ କଥାଶୁଣି ମୁଁ କହେ, ନା ଥାଉ, ବୋଉ ତ ବେଳେବେଳେ ଆସୁଛନ୍ତି, ଆଉ ଫୋନ୍‌ଟାଏ ଦରକାର କ'ଣ ?"

"ଦେବସ୍ମାନ କ'ଣ ଆଜି ଘରେ ଅଛି ମା ?"

"ହଁ ବୋଉ, ସେ ଆଜି ଘରେ ଅଛନ୍ତି । ଅଫିସ୍ ଘରେ ଫାଇଲ ଦେଖୁଛନ୍ତି । କ'ଣ ତାଙ୍କ ପାଖକୁ ଯିବେ ବୋଉ ?"

"ନା ମା, ତା କାମରେ ଗୋଳମାଳ ହେବ । ପୁଅକୁ ଦିନେହେଲେବି ସାହସ କରି ଘରକୁ ଡାକିପାରୁନି ମା ! ମଂତ୍ରୀ ହେବା ଆଗରୁ ତୋ ଶ୍ୱଶୁର ନ ଥିଲାବେଳେ ସେ କେତେଥର ଘରକୁ ଯାଏ । ପଖାଳ ଖାଇବା ପାଇଁ ଝୁଙ୍କ୍ ଲଗାଏ । ମୁଁ କେଡ଼େ ହତଭାଗିନୀ, ପୁଅଟାକୁ ଦିନଟାଏ ପାଇଁ ଘରକୁ ଖାଇବାକୁ ଡାକିପାରୁନି । ଡର, କାଳେ କିଏ କ'ଣ ପଦେ କହିଦେବ । ମୋଠାରୁ ତୋ ଶ୍ୱଶୁରଙ୍କର ଆହୁରି ଡର । ମୁଁ ପୁଅକୁ ଘରକୁ ଖାଇବା ପାଇଁ ଡାକିବା କଥା କହିଲେ, ତୋ ଶ୍ୱଶୁର ଦାନ୍ତକାମୁଡ଼ି ପକାନ୍ତି । ଆଁ, ମଂତ୍ରୀଙ୍କୁ ଆମ ଘରକୁ ଡାକିବ ? ସ୍ୱରିଆଡ଼େ ସ୍ପଷ୍ଟ ହୋଇଯିବ ମଂତ୍ରୀ ଡ଼:ପି:ଆଇ:ଙ୍କ ଘରକୁ ସବୁବେଳେ ଧାଉଁଛନ୍ତି । ଦେବ କି ମୁଁ ଆଉ କ'ଣ ମୁଣ୍ଡଟେକି ଚାଲିପାରିବି ରାସ୍ତାରେ ?"

"ପୁଅ ବାରମଜା ଖାଇବାକୁ ଖୁବ ଭଲପାଏ ମା, ତା ପାଇଁ ମୁଁ ନିଜେ ତିଆରି କରି ଦଇଟା ବାରମଜା ଆଣିଛି ।"

"ଆପଣଙ୍କ ନାତି ନାତୁଣୀଙ୍କ ପାଇଁ କ'ଣ ଆଣିଛନ୍ତି ବୋଉ ?"

"ସେମାନେ କ'ଣ ଖାଇବାକୁ ଭଲ ପାଆନ୍ତି, ମୁଁ ଜାଣିଲି କେମିତି ମା ? ଜାଣିଥିଲେ ସିନା ଆଣିଥାନ୍ତି । ଆଜି କହିନା ସେମାନେ କ'ଣ ଭଲ ପାଆନ୍ତି, ଆରଥରକୁ ନିଶ୍ଚୟ ଆଣିବି ।"

"ସେମାନେ କ'ଣ ଭଲ ପାଇବେ ବୋଉ ? ଆମେ ତ ଧନୀଘରର ପିଲା ନୋହୁଁ । ଗରିବଙ୍କ ଘରେ ଆଉ କ'ଣ ମିଳିବ ? ସେମାନେ ଭଲ ପାଆନ୍ତି ଚୁଡ଼ାଭଜା । ମୋ ବୋଉ ଯେତେବେଳେ ଏଠାକୁ ଆସେ ପିଲାମାନଙ୍କ ପାଇଁ ଚୁଡ଼ାଭଜା ସାଙ୍ଗରେ ଆଣିଥାଏ ।"

"ହଁ ବୋଉ ! ଆମକୁ ଚୁଡ଼ାଭଜା ଖୁବ ଭଲଲାଗେ । ମା, ଆମ ପାଇଁ ଚୁଡ଼ାଭଜା ଆରଥରକୁ ଆଣିବ, ଆମକୁ ଖୁବ ଭଲ ଲାଗିବ ଖାଇବାକୁ । ଗତଥର ଆଈ ଚୁଡ଼ାଭଜା ଆଣିଥିଲେ । ଖୁବ ବଢ଼ିଆ ଲାଗୁଥିଲା ଆମକୁ ।"

ଶାଶୁଙ୍କୁ ନେଇ ଶାନ୍ତି ଡ୍ରଇଂରୁମ୍‌ରେ ବସାଇଲା । ପିଲା ଦୁଇଟିଙ୍କୁ କୋଳରେ ବସାଇ ସୀମନ୍ତିନୀ ଦେବୀ କହିଲେ, "ତୋ ଶ୍ୱଶୁର ସବୁବେଳେ ତୋର ପ୍ରଶଂସା କରନ୍ତି ମା । ତୁ ଦିନରାତି କେତେ ଖଟି ପିଲାଙ୍କ ପଛରେ ଲାଗିଛୁ, ସେ କହି ଦୁଃଖ କରନ୍ତି ।

କହନ୍ତି, ମଂତ୍ରୀମାନଙ୍କ ସ୍ତ୍ରୀ କେତେ ହସଖୁସି ମଉଜ ମଜଲିସ୍‌ରେ ଦିନ କାଟୁଛନ୍ତି, ଅଥଚ ଆମ ବୋହୂର ଖଟି ଖଟି ଦିନ ଯାଉଛି । ଆମୋଦ ପ୍ରମୋଦ, ମଉଜ ମଜଲିସ୍ କ'ଣ ଜାଣିଲାନି ସେ । ତୋ ଶ୍ୱଶୁର ଏଠିକି ଆସିଲେ କେବେ ଘର ଭିତରକୁ ଚାଲି ଆସନ୍ତି ନା ମା' ?''

''ଭୁଲରେ ବି ଆସନ୍ତିନି ବୋଉ । ମୁଁ ବି ଡାକପାରେନି ଭିତରକୁ, କାଳେ କିଏ କିଛି ଖବର ପକାଇବ । ବାପା ଡ଼ଃପିଃଆଇଃ, ପୁଅ ମଂତ୍ରୀ ବୋଲି ସମସ୍ତଙ୍କ ଆଖି ଏମାନଙ୍କ ଉପରେ । ଫାଇଲ ଦେଖୁ ଦେଖୁ କାଳେ କେଉଁଠି ବାପାଙ୍କୁ ପୁଚ୍ଛାଇଲି ଭଳି କିଛି ଲେଖା ହେଲା କି କ'ଣ, ଜାଣିବାପାଇଁ ବହୁତ ଲୋକଙ୍କ ଆଗ୍ରହ, ତେଣୁ ସେ ଖୁବ ସାବଧାନ ହୋଇ ଚଳନ୍ତି ।''

ବାପା ଯେଉଁଦିନ ପ୍ରଥମେ ଏଠାକୁ ଆସିଥିଲେ ବୋଉ, ବାପାଙ୍କ ଆଗରୁ ସେକ୍ରେଟାରୀ ଆସି ଯାଇଥିଲେ । ସେକ୍ରେଟାରୀ ସ୍ୱାମୀଙ୍କ ସାଙ୍ଗରେ କଥା ହେଉଥିଲେ, ଏତିକିବେଳେ ବାପା ଭିତରକୁ ପଶି ଆସିଲେ । ବାପାଙ୍କୁ ଦେଖି ଇଏ ଠିଆ ହେବାପାଇଁ ଉଠି ପଡ଼ିଲେ । ମଂତ୍ରୀ ଠିଆହେବା ଦେଖି ସେକ୍ରେଟେରୀ ବି ଠିଆହୋଇ ପଡ଼ିଲେ । ସେକ୍ରେଟେରୀଙ୍କୁ ଏହା ଖୁବ ଅପମାନ ଲାଗିଲା । ସେ ଯାଇ ଚିଫ୍ ସେକ୍ରେଟେରୀଙ୍କ ପାଖରେ ଆପତ୍ତି କଲେ । କହିଲେ ତାଙ୍କୁ ଅନ୍ୟ ବିଭାଗକୁ ବଦଳି କରିଦେବା ପାଇଁ । କାରଣ ଦେଖାଇଲେ ସେ ବାପ-ପୁଅଙ୍କ ଭିତରେ ରହି ଶାସନ ଚଳାଇ ପାରିବେନି । ଚିଫ୍ ସେକ୍ରେଟେରୀ କଥା କ'ଣ ପଚାରିଲାରୁ, ସେ ସବୁକଥା ଫିଟାଇ କହିଲେ । ହସିଲେ ଚିଫ୍ ସେକ୍ରେଟେରୀ । କହିଲେ, ''ଦେଖ ମିଷ୍ଟର ଶ୍ରୀବାସ୍ତବ, ତୁମେ ବୟସରେ ଡ଼ଃପିଃଆଇଃଙ୍କଠାରୁ ଢେର୍ ଗ୍ରେଟ । ତୁମେ ତାଙ୍କ ପୁଅ ବୟସର । ତୁମେ ଯଦି ସାଏନ୍ସ ଗ୍ରାଜ ହୋଇଥାନ୍ତ ଓ ରେଭେନ୍ସା କି ସେ ଥିବା କୌଣସି କଲେଜରେ ପଢ଼ିଥାନ୍ତ, ତେବେ ତାଙ୍କ ଛାତ୍ର ହୋଇଥାନ୍ତ । ସେ ତେଣୁ ତୁମ ଗୁରୁଶ୍ରେଣୀର । ସେ ଆସିଲାରୁ ଯଦି ତୁମକୁ ଠିଆହେବାକୁ ପଡ଼ିଲା, ସେଥିପାଇଁ ଅପମାନିତ ବୋଧ କରୁଛ କାହିଁକି ?''

ଚିଫ୍ ସେକ୍ରେଟେରୀ ମୁଖ୍ୟମନ୍ତ୍ରୀଙ୍କୁ ଏହି କଥା କହିଲେ । ସେ ସେକ୍ରେଟେରୀ ଅନ୍ୟ ବିଭାଗକୁ ବଦଳି ହୋଇଗଲେଣି । ଏହା ଗତକାଲିର ଘଟଣା । କିଏ ନୂଆ ସେକ୍ରେଟେରୀ ଆସୁଛନ୍ତି ଜଣାନାହିଁ । ଇଏ କହୁଥିଲେ, ତାଙ୍କର ଜଣେ ପାଠପଢ଼ା ସାଙ୍ଗ କାଳେ ସେକ୍ରେଟେରୀ ହୋଇ ଆସୁଛନ୍ତି ।

''ଯାହା କହନ୍ତୁ ବୋଉ, ଆମେ ଗୋବିନ୍ଦପୁରରେ ବେଶ୍ ଭଲରେ ଥିଲୁଁ । ସେଠି ମିଳାମିଶି ଚଳିବା ପାଇଁ ସାଥି ଗାଟି ଥିଲା । ଦିନଗୁଡ଼ାକ କେତେ ଆନନ୍ଦରେ କଟି ଯାଉଥିଲା—ଆମେ ଜାଣିପାରୁ ନ ଥିଲୁ ।''

ଇଏ ପୁଣି କେଉଁ ଦଳରେ ହୋଇ ନ ଥିବାରୁ ଆମ ଘରକୁ କୌଣସି ମନ୍ତ୍ରୀ କି ସେମାନଙ୍କ ଛୁଆପିଲା ଭୁଲରେ ବି ବୁଲି ଆସନ୍ତିନି, ଯେମିତି ସେମାନେ ଆମକୁ ଏକଘରିଆ

କରି ଦେଇଛନ୍ତି । ବେଳେବେଳେ ସ୍ୱାଙ୍କ ସାଙ୍ଗ ଦୁଇ ଚାରିଜଣ ଏମ୍.ଏଲ୍.ଏ. ଯାହା ଆସନ୍ତି । ଏଥିପାଇଁ ଆମକୁ ଏଠି ମୋଟେ ଭଲ ଲାଗୁନି, ଏକାଟିଆ ହୋଇ କେତେ ମଣିଷ ଚଳିବ ଏଠି ? ଆମେ ଗୋବିନ୍ଦପୁରରେ ବେଶ୍ ଭଲରେ ଥିଲୁଁ ।

## ପଇଁ ଚାଳିଶ

"କିଏ ? ମଧୁସ୍ମିତା ? ତୁମେ ହଠାତ୍ କୁଆଡ଼େ ଚାଲି ଆସିଲ ?" ପ୍ରତି ନମସ୍କାର ଜଣାଇ ଜଣାଇ ଦେବସ୍ମାନ ପଚାରିଲେ ।

"ସାର୍, ଇଏ ହେଉଛନ୍ତି ମୋ ସ୍ୱାମୀ, ମିଷ୍ଟର ଓଝା । ଢେଙ୍କାନାଳ ଜିଲ୍ଲାର କଲେକ୍ଟର ।"

ମିଷ୍ଟର ଓଝା ଦେବସ୍ମାନବାବୁଙ୍କୁ ନମସ୍କାର କରନ୍ତେ, ଉଭୟଙ୍କୁ ଚେୟାରରେ ବସିବାକୁ କହିଲେ ଦେବସ୍ମାନ ।

ମଧୁସ୍ମିତା ଆଡ଼କୁ ଅନାଇ ପଚାରିଲେ ଦେବସ୍ମାନ, "ତୁମେ ବର୍ତ୍ତମାନ କେମିତି ଅଛ ମଧୁସ୍ମିତା ? ଅନେକଦିନ ପରେ ତୁମ ସହିତ ଦେଖା । ବାପା କେମିତି ଅଛନ୍ତି କହିଲ ?"

"ସାର୍, ବାପା ଭଲ ଅଛନ୍ତି । ଅବସର ନେଇସାରିବା ପରେ ବର୍ତ୍ତମାନ ସେ ଗାଁରେ ରହୁଛନ୍ତି । ମୋର ଭାଇ ଜଣେ କଟକରେ ବିଜିନେସ୍ କରୁଛନ୍ତି ।"

"ଆଉ କୁଆଡ଼େ ଚାଲି ଆସିଲ ହଠାତ୍ ?"

"ସାର୍, ବଡ଼ ଅସୁବିଧାରେ ପଡ଼ିଥିବାରୁ ସାହାଯ୍ୟ ପାଇଁ ଆପଣଙ୍କ ପାଖକୁ ଚାଲି ଆସିଲୁ ।"

"କ'ଣ ଅସୁବିଧା ହୋଇଛି, କହୁନାହଁ ?"

"ମୋ ସ୍ୱାମୀଙ୍କ ନାଁରେ ବହୁତଗୁଡ଼ିଏ ଅଭିଯୋଗ ଆସିଛି ଆପଣଙ୍କ ପାଖକୁ । ତାଙ୍କ ଉପରସ୍ଥ କମିଶନର ତାଙ୍କ ଉପରେ ରାଗରଖି ତାଙ୍କ ନାଁରେ ଏଣ୍ତେତେଣ୍ତ କ'ଣ ଗୁଡ଼ାଏ ଲେଖି ଦେଇଛନ୍ତି । ଆପଣଙ୍କଠାକୁ ସ୍ୱାଙ୍କ ନାଁରେ ଯେତେସବୁ ଅଭିଯୋଗ ଆସିଛି, କୌଣସିଟି ସତ ନୁହେଁ ସାର୍ ।"

"ତୁମେ ଜାଣିଛ ମୋଠାକୁ ଫାଇଲ ଆସିଛି ବୋଲି ?"

"ହଁ ସାର୍, ଫାଇଲ ଆପଣଙ୍କଠାରେ ଅଛି ।"

"ମୁଁ ତ ଫାଇଲ ଦେଖିନି, କିଛି କହି ପାରିବିନି ନ ଦେଖିଲା ପର୍ଯ୍ୟନ୍ତ । ଅଭିଯୋଗ ସବୁ କି ଧରଣର, ଜାଣିଥିଲେ ସିନା ଯାହା କରିବା କଥା କହନ୍ତି । ମୁଁ ତ ବର୍ତ୍ତମାନ ବଡ଼ ବ୍ୟସ୍ତ ଅଛି ମଧୁସ୍ମିତା, ତୁମେ ଆଉ କିଛିଦିନ ଗଡ଼ି ଆସ, ମୁଁ ଦେଖିବି କ'ଣ କରିହେବ ପାରିବ ।"

ବଡ଼ ବିମର୍ଷ ବଦନରେ ସ୍ୱାମୀ-ସ୍ତ୍ରୀ ଦୁହେଁ ମଂତ୍ରୀଙ୍କ କୋଠିରୁ ଫେରିଲେ । ମଧୁସ୍ମିତା ଭାବିଥିଲା, ଦେବସ୍ମାନ ତା'ର ସାର୍, ପୂର୍ବଭଳି ଯେମିତି ଥିଲେ, ତାଙ୍କୁ ଆଦର ଦେଖାଉଥିଲେ, ଏବେ ବି ସେମିତି ଥିବେ ! ସାର୍‌ଙ୍କ ଗାମ୍ଭୀର୍ଯ୍ୟ, ସ୍ୱଳ୍ପ କଥାବାର୍ତ୍ତା ତାଙ୍କୁ ଭୟଭୀତ କରି ପକାଇଲା । ବାଟରେ ଆସୁ ଆସୁ ଭାବିଲା, ମଂତ୍ରୀଙ୍କୁ ଦେଖା କରିବାପରେ ତାଙ୍କ ସ୍ତ୍ରୀଙ୍କୁ ଦେଖାକରିବା ଉଚିତ୍ ଥିଲା । ତାଙ୍କ ସ୍ତ୍ରୀ ଯଦି ତାଙ୍କ ପ୍ରତି ଦୟାପରବଶ ହୋଇ ତାଙ୍କ ପାଇଁ ମଂତ୍ରୀଙ୍କଠାରେ କିଛି ସୁପାରିଶ କରନ୍ତି ! ଆସନ୍ତା ଥର ମନ୍ତ୍ରୀଙ୍କୁ ଦେଖା କରିବାକୁ ଆସିଲେ ଆଗ ତାଙ୍କ ସ୍ତ୍ରୀଙ୍କୁ ସାକ୍ଷାତ କରିବାକୁ ସେ ଯିବ ।

ମଧୁସ୍ମିତା ଚାଲିଗଲାପରେ ଓଝା ନାଁ ଶୁଣି ଦେବସ୍ମାନର କୌତୂହଳ ଜନ୍ମିଲା । ତା ମନରେ ସନ୍ଦେହଜାତ ହେଲା, ଏ କ'ଣ ସେହି ଓଝା, ଯେ କି କଟକ ଜିଲ୍ଲାର କଲେକ୍ଟର ଥିଲେ ? ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ଡାକି ମିଷ୍ଟର ଓଝାଙ୍କ ଫାଇଲ ବାହାର କରିବାକୁ କହିଲା । ଫାଇଲ ଦେଖି ତା ମୁଣ୍ଡ ଗରମ ହୋଇଗଲା । ସେ ଯାହା ସନ୍ଦେହ କରୁଥିଲା ଠିକ୍ ସେଇଆ । ଏ ହେଉଛନ୍ତି ସେହି ଓଝା, ଯାହାଙ୍କ ନାଁରେ ସାରା ରାଜ୍ୟରେ ନିନ୍ଦାର ସ୍ରୋତ ଛୁଟି ଚାଲିଛି । ମଦ୍ୟପ, ବ୍ୟଭିଚାରୀ, ଲାଞ୍ଚଖୋର, ସ୍ତ୍ରୀମାନଙ୍କର ସତୀତ୍ୱ ଅପହରଣକାରୀ ଭାବରେ ସାରା ରାଜ୍ୟରେ ନିନ୍ଦିତ । ମଦଖାଇ ଅଫିସ୍‌ରେ ଯାହା ଇଚ୍ଛା ତାହା ବ୍ୟବହାର କରନ୍ତି ।

ଟୁର୍‌ରେ ଯାଉଛନ୍ତି ଅତି ଅସଚ୍ଚରିତ୍ରା ଯୁବତୀମାନଙ୍କୁ ସଙ୍ଗରେ ନେଇ । ଡାକବଙ୍ଗଳାମାନଙ୍କରେ ନାନା ବୀଭତ୍ସକାଣ୍ଡ କରୁଛନ୍ତି । ଭିଜିଲାନସ ବିଭାଗ ତରଫରୁ ତାଙ୍କ ନାଁରେ ଅସଂଖ୍ୟ ପ୍ରକାର ଅଭିଯୋଗ । ନାନା ଭାବରେ ଅସତ୍ ଉପାୟରେ ବି:ଡ଼ି:ଓ:-ମାନଙ୍କଠାରୁ ଲାଞ୍ଚ ନେଇ ସେହି ପଇସାରେ ମଦ ଖାଇ ଗଡ଼ୁଛନ୍ତି । ମଦ ଖାଇ ରାସ୍ତାଘାଟରେ ପଡ଼ିବା ଦୃଷ୍ଟାନ୍ତ ମଧ୍ୟ ରହିଛି । ଲାଞ୍ଚ ନଦେଲେ ତଳ ଅଫିସରମାନଙ୍କ ଚରିତ୍ର-ପଞ୍ଜିକାରେ ନାନା ମିଛକଥା ଲେଖି ସେମାନଙ୍କ କେରିୟରକୁ ନଷ୍ଟ କରି ଦେଉଛନ୍ତି । ତଳ ଅଫିସର-ମାନେ ବି ତାଙ୍କୁ ସବୁବେଳେ ଡରିକରି ଥାଆନ୍ତି । ପୋଲିସକୁ ହାତରେ ରଖି ନାନା ଲୋକଙ୍କୁ ହଇରାଣ କରି ଯାହା ସୁବିଧା ନେବାକଥା, ତାହା ହାସଲ କରିପାରୁଛନ୍ତି ।

କମିଶନରଙ୍କଠାରୁ ଆରମ୍ଭ କରି ବିଭାଗୀୟ ସେକ୍ରେଟେରୀ ପର୍ଯ୍ୟନ୍ତ ସମସ୍ତେ ତାଙ୍କ ନାଁରେ ଫାଇଲ ଫାଇଲ ଲେଖିଛନ୍ତି । ଜଣେ ସରକାରୀ ଅଫିସର ଏପରି ବେପରୁଆ ମନୋଭାବ ଓ କଳଙ୍କିତ ଚରିତ୍ର ନେଇ ଯଦି ରହନ୍ତି, ତେବେ ସେଭଳି ଲୋକଙ୍କୁ ନେଇ ସରକାର କେମିତି ଚାଲିବ—ଭାବିପାରିଲା ନାହିଁ ଦେବସ୍ମାନ । ଉପରିସ୍ଥ ମନ୍ତ୍ରୀମାନଙ୍କୁ ଧରାଧରି କରିବାରେ ଏ ବଡ଼ ସିଦ୍ଧହସ୍ତ । ଉପରସ୍ଥ ଅଫିସର ଏହାଙ୍କ ନାଁରେ କିଛି ଲେଖିଲେ ସେ ମଂତ୍ରୀଙ୍କୁ ଧରାଧରି କରି ସେସବୁ କଟାଇ ଦିଅନ୍ତି । ସେ ଏହା ଭିତରେ କେତେ କମିଶନରଙ୍କୁ ଯେ ବଦଳି କରାଇ ଦେଲେଣି, ତା'ର ହିସାବ ନାହିଁ । ଯେଉଁ ଦଳର ମଂତ୍ରୀ ଆସିଲେ, ସେ ତାଙ୍କୁ ହାତରେ ରଖିପାରନ୍ତି ? ବିଭିନ୍ନ ଦଳର ପାଣ୍ଡିକୁ ମୋଟା

ମୋଟା ଗୃହ୍ଣା ଦେବାରେ ଖବ୍ ଧୁରନ୍ଧର । କମିଶନରମାନେ ବଦଳି ହୋଇଛନ୍ତି ସିନା, କିନ୍ତୁ ଏହାଙ୍କ ଚରିତ୍ର-ପଞ୍ଜିକାରେ ନାନା କଡ଼ା ମନ୍ତବ୍ୟ ନ ଲେଖି ଛାଡ଼ି ନାହାନ୍ତି । କଟକ ଜିଲ୍ଲାର ମଧୁପୁର ଡାକବଙ୍ଗଳାର ଘଟଣାକୁ ପ୍ରାଞ୍ଜଳ ଭାବରେ ଲିପିବଦ୍ଧ କରିଛନ୍ତି କମିଶନର ଭେଙ୍କଟରମଣ । ସେହି ରିପୋର୍ଟକୁ ପଢ଼ି ଦେବସ୍ଥାନ ରାଗି ନାଲି ହୋଇଗଲେ ।

ସ୍ତ୍ରୀ ଶାନ୍ତିକୁ ଡକାଇଆଣି ପଚାରିଲେ ଦେବସ୍ଥାନ, "ଏହି ଯେଉଁ ଅଫିସର ଓ ତାଙ୍କ ସହଧର୍ମିଣୀ ବର୍ତ୍ତମାନ ଏଠାକୁ ଆସିଥିଲେ, ତାଙ୍କୁ ତୁମେ ଚିହ୍ନିପାରୁଛ ଶାନ୍ତି ?"

"ମୁଁ ତ ଦେଖିନି ସେମାନଙ୍କୁ ।"

"ଆରେ, ଆଃ, କେଡ଼େ ବଡ଼ ଭୁଲ ହୋଇଗଲା ? ତୁମକୁ ଦେଖାଇ ପାରିଲିନି ସେମାନଙ୍କୁ । ଏ ହେଉଛନ୍ତି ସେହି ଜିଲ୍ଲାପାଳ, ଯେ ତୁମକୁ ମଧୁପୁର ଡାକବଙ୍ଗଳାକୁ ଦିନେ ସନ୍ଧ୍ୟାବେଳେ ଡ଼କାଇ ନେଇଥିଲେ । ତାଙ୍କ ନା ହେଉଛି ପ୍ରେମନାଥ ଓଝା । ଏବେ ସେ ଘଟଣା ତୁମ ମନେପଡୁଛି ? ଦେଖ ଏହି ଅଫିସରଙ୍କ ଚରିତ୍ର-ପଞ୍ଜିକା । ତୁମକୁ ଯେଉଁ କମିଶନର ଭେଙ୍କଟରମଣ ରକ୍ଷା କରିଥିଲେ, ସେ ଏହାଙ୍କ ସମ୍ପର୍କରେ କ'ଣ ଲେଖିଛନ୍ତି ଦେଖ ।" ଏତକ କହି ଫାଇଲଟିକୁ ଶାନ୍ତି ହାତକୁ ବଢ଼ାଇଦେଲେ ଦେବସ୍ଥାନ ।

ଶାନ୍ତି ସେ ଫାଇଲଟିକୁ ପଢି ତା ମୁଣ୍ଡ ଗରମ ହୋଇଗଲା । କିଛି ସମୟପରେ ତା'ର ଆଖିରୁ ବହିଚାଲିଲା ଲୋତକସ୍ରୋତ । ଏହି ଅଫିସରଜଣକ ତାକୁ ତଳିତଳାନ୍ତ କରିଦେଇ ଦାଣ୍ଡରେ ବସାଇବାକୁ କି ଚକ୍ରାନ୍ତ କରି ନଥିଲେ ସତେ ! ଦେବସ୍ଥାନବାବୁ ତାକୁ ଉଦ୍ଧାର କରି ନଥିଲେ ଏହି ଅଫିସରଟି ପାଇଁ ସେ କେଉଁଦିନରୁ ଆତ୍ମହତ୍ୟା କରି ଏହି ସଂସାରରୁ ବିଦାୟ ନେଇ ସାରନ୍ତାଣି ।

× × × ×

"ସାର୍, ସାର୍", ଦେବସ୍ଥାନର ଶୟନକକ୍ଷର କଲିଂବେଲ୍‌କୁ ଚପି ଡାକଲେ ପି.ଏ. ।

ନିଦୁଆ ଆଖିରେ କବାଟ ଖୋଲିଲେ ଦେବସ୍ଥାନବାବୁ ।

"ସାର୍, ଚିଫ୍ ମିନିଷ୍ଟର ଫୋନ୍ କରିଛନ୍ତି । ଫୋନ୍ କ'ଣ ଏଠାକୁ ଘେନି ଆସିବି ?"

"ଆଁ, ଏ ଅବେଳଟାରେ ଫୋନ୍ ? ହେଉ ଘେନିଆସ ।"

(ଫୋନ୍ ଧରି) "ହଁ, ହଁ, ମୁଁ ଦେବସ୍ଥାନ । କ'ଣ ଆଜ୍ଞା ?"

"ମୁଁ ତୁମ ଫାଇଲ ଦେଖୁଥିଲି । ତୁମେ ବଡ଼ ବଡ଼ ଜିଲ୍ଲାର ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ ଭାବରେ ଖାଲି ପ୍ରମୋଟି ଆଇ.ଏ.ଏସ୍.ମାନଙ୍କୁ କ'ଣ ଥୋଇଛ ? ଗୋଟାଏ ସୁଦ୍ଧା ସିଧାସଳଖ ଆଇ.ଏ.ଏସ୍.ଙ୍କୁ ଦେଇନାହଁ ? କଥା କ'ଣ, ତୁମେ ଯୁବ ଆଇ.ଏ.ଏସ୍.ମାନଙ୍କ ଆଡ଼କୁ ଏତେ ବିମୁଖ କାହିଁକି ?"

"ନାହିଁ ଆଜ୍ଞା, ମୁଁ ବିମୁଖ ନୁହେଁ । ମୋ ମତ ହେଉଛି ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ପଦବୀ ହେଉଛି ଏକ ଗୁରୁତ୍ୱପୂର୍ଣ୍ଣ ପଦବୀ । ସେଠାରେ ଯୁବ ଆଇ.ଏ.ଏସ୍.ମାନଙ୍କୁ ଥୋଇଦେଲେ ସେମାନେ ଜଟିଳ ସମସ୍ୟାବେଳେ ଠିକ୍ ଭାବରେ ସିଦ୍ଧାନ୍ତ ଗ୍ରହଣ କରି ପାରିବେନି । ବୟସର ପରିପକ୍ୱତା ଯଥାଯଥ ସିଦ୍ଧାନ୍ତ ଗ୍ରହଣରେ କେତେ ସାହାଯ୍ୟକାରୀ ହୁଏ, ତାହା ଆପଣ ତ ଭଲ ଭାବରେ ଜାଣନ୍ତି । ତେଣୁ ଯୁବ ଆଇ.ଏ.ଏସ୍.ମାନଙ୍କୁ ସେସବୁ ସ୍ଥାନରେ ଥୋଇଦେଲେ ନାନା ଭୁଲଭଟକା ହେବା ସମ୍ଭାବନା ଥାଏ । ସେମାନେ ଖୁବ୍ ମେଧାବୀ ହୋଇପାରନ୍ତି, କାମକାର୍ଯ୍ୟରେ ଖୁବ୍ ଦକ୍ଷ ହୋଇ ଥାଇପାରନ୍ତି, କିନ୍ତୁ ଜଟିଳ ପରିସ୍ଥିତିରେ ସିଦ୍ଧାନ୍ତ ନେବାର ପରିପକ୍ୱତା ସେମାନଙ୍କର ଆସି ନଥାଏ । ତେଣୁ ମୁଁ ସେସବୁ ସ୍ଥାନରେ ସେମାନଙ୍କୁ ରଖିବାକୁ ଚାହେଁନି । ମୋ ମତ ଅନ୍ତତଃ ପନ୍ଦରବର୍ଷ ଚାକିରିର ଅଭିଜ୍ଞତା ନଥିଲେ କେହି ସେହି ପଦବୀରେ ରହିବା ଉଚିତ୍ ନୁହେଁ ।"

"ତା'ହେଲେ ତ ସେମାନେ ଗୋଟିଏ ବଡ଼ ଅଭିଜ୍ଞତାରୁ ବଞ୍ଚିତ ହେଲେ ? ନିଜେ ଗୋଟିଏ ଜିଲ୍ଲାର ପୂରା ଦାୟିତ୍ୱ ବହନ ନ କଲା ପର୍ଯ୍ୟନ୍ତ ଆମେ ସେମାନଙ୍କ କାର୍ଯ୍ୟଦକ୍ଷତା ମାପିବା କେମିତି ? ପନ୍ଦରବର୍ଷ ବେଳକୁ ସେମାନଙ୍କର ତ କମିସନର ପାହ୍ୟାକୁ ଆସିଯିବା କଥା । ସେତେବେଳେ ସେମାନଙ୍କୁ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍ କଲେ ସେମାନଙ୍କର ସେ କାମକୁ ଇଚ୍ଛା ନଥିବ ।"

"ସେମାନଙ୍କ ଇଚ୍ଛା ଅନିଚ୍ଛା ଦେଖିବା ନା ଜିଲ୍ଲାର ସୁଶାସନ ଦେଖିବା ? ସେମାନେ କମିସନର ପଦବୀକୁ ଯିବାପୂର୍ବରୁ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଭାବରେ ସେମାନଙ୍କ ଦକ୍ଷତା ଦେଖିନେଲେ ଠିକ୍ ହେବ । ସେମାନଙ୍କ ଅଭିଜ୍ଞତା ବି ହୋଇଯିବ, ଆମ ଦକ୍ଷତା ମାପିବା ବି ହୋଇଯିବ । ମୁଁ ଯେଉଁମାନଙ୍କୁ ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ ଭାବରେ ବାଛିଛି, ସେମାନଙ୍କର ଚରିତ୍ର-ପଞ୍ଜିକାକୁ ଭଲ ଭାବରେ ଅନୁଧ୍ୟାନ କରିଛି । ସେମାନଙ୍କ ସମ୍ବନ୍ଧରେ ସେମାନଙ୍କ ଉପରିସ୍ଥ କମିସନରମାନଙ୍କ ମତାମତ ନେଇଛି । ଯେଉଁ ଡିଭିଜନକୁ ଯିବେ, ସେହି ଡିଭିଜନର କମିସନରମାନଙ୍କ ଆପତ୍ତି ଅଭିଯୋଗ ମଧ୍ୟ ଶୁଣିଛି । ଏତେ ବିଚାର ଆଲୋଚନା ପରେ ମୁଁ ଯେତେବେଳେ ନିଶ୍ଚିତ ହୋଇଛି ଯେ ଏହି ଅଫିସରଜଣକ ସେହି କାର୍ଯ୍ୟପାଇଁ ସବୁଠାରୁ ଅଧିକ ଉପଯୁକ୍ତ ଓ ତାଙ୍କଠାରୁ ଅଧିକ ଉପଯୁକ୍ତ ଲୋକ ଆଉ ନାହାନ୍ତି, ସେତେବେଳେ ମୁଁ ତାଙ୍କୁ ସେଠାରେ ଥୋଇଛି ।"

"ମୁଁ ସେଥିଭିତରୁ ଗୋଟାଏ ଦୁଇଟା ପରିବର୍ତ୍ତନ କରିବାକୁ ଚାହୁଁଛି । ସେଥିରେ ତୁମର କ'ଣ କିଛି ଆପତ୍ତି ଅଛି ?"

"ଆପଣ ଦୟାକରି କିଛି ଅଦଳବଦଳ କରନ୍ତୁନି ଆଜ୍ଞା । କେହି ଆପଣଙ୍କୁ କାହା ପାଇଁ କହିଛନ୍ତି ବୋଧେ ? ମୁଁ ବହୁତ ବିବେଚନା କରିଛି । ଆପଣ ଗୋଟାଏ ଦୁଇଟା ଅଦଳ-ବଦଳ କରିଦେଲେ ମୁଁ ଅଡୁଆ ପରିସ୍ଥିତିରେ ପଡ଼ିଯିବ । ମୋ ସିଦ୍ଧାନ୍ତ ଯେ ନିରପେକ୍ଷ ନୁହେଁ, ଲୋକେ କହି ବୁଲିବେ । ଆପଣ ଅଦଳବଦଳ କରିବେ, ଦୋଷ ଆସିବ ମୋ

ଉପରକୁ ମୋ ନିରପେକ୍ଷତା ନେଇ । ଯେଉଁମାନେ ଆପଣଙ୍କୁ ସେମିତି କିଛି ଅନୁରୋଧ କରିଛନ୍ତି, ଆପଣ ସେମାନଙ୍କୁ ଅନ୍ୟ ଭାବରେ ସାହାଯ୍ୟ କରିବାକୁ ଚେଷ୍ଟା କରନ୍ତୁ । ଶାସନରେ ହସ୍ତକ୍ଷେପ କଲେ ଆପଣ ହିଇରାଣ ହୋଇଯିବେ, ମୁଁ ବି ହଇରାଣ ହୋଇଯିବି ।"

ଏତିକି କହି ଦେବସ୍ଥାନବାବୁ ଫୋନ୍ ଥୋଇ ଦେଇଛନ୍ତି କି ନାହିଁ, ପଲଙ୍କର ଅନ୍ୟ ପାଖରେ ଶୋଇଥିଲେ ଶାନ୍ତି । ନିଦ ଭାଙ୍ଗିଗଲାରୁ ସେ ଶୋଇରହି ଶୁଣୁଥିଲେ ସ୍ୱାମୀଙ୍କ କଥାବାର୍ତ୍ତା ମୁଖ୍ୟମନ୍ତ୍ରୀଙ୍କ ସହିତ । ହଠାତ୍ ଉଠିପଡ଼ି କହିଲେ, "ମୁଖ୍ୟମନ୍ତ୍ରୀ ଗୋଟାଏ ଅନୁରୋଧ ତୁମକୁ କରୁଛନ୍ତି, ତୁମେ ମୁହେଁ ମୁହେଁ ତାଙ୍କ ଅନୁରୋଧକୁ କେମିତି କାଟି ଦେଉଛ ମ ? ସେ ହେଲେ ମୁଖ୍ୟମନ୍ତ୍ରୀ, ତାଙ୍କ ଉପରେ କେତେଆଡ଼ୁ କେତେ ପ୍ରକାର ଚାପ ପଡ଼ୁଥିବ । ତୁମେ ଏମିତି ମୁହେଁ ମୁହେଁ କାଟିଦେଲେ ସେ କେତେ ଅଡୁଆରେ ପଡ଼ିଯିବେ, ସେଆଡ଼କୁ ଭାବୁଛ କି ?"

"ଯିଏ ଯାହା ଅନୁରୋଧ କରିବ, ସବୁ କ'ଣ ଏହି ଶାସନ ଉପରେ କରାଯିବ ? ଅନ୍ୟ କେଉଁଠି କଲେ କ୍ଷତି କ'ଣ ? ଅନ୍ୟ ବହୁବାଟ ଅଛି, ଯାହାଦ୍ୱାରା ସେମାନଙ୍କୁ ସନ୍ତୁଷ୍ଟ କରାଯାଇ ପାରିବ । ଶାସନ ଉପରେ ଆଞ୍ଚ ଆଣି ଶାସନ ଉପରେ ପକାଇଲେ କେତେ ଅସୁବିଧା ହୋଇଯିବ କହିଲ ?"

"ତୁମେ ଯେଉଁ ଖଣ୍ଡାଧାର ଉପରେ ଚାଲୁଛନା, ସେମିତି ଚାଲିଲେ ଶାସନ ଚାଲିବନି । ତୁମଭଳି ଖଣ୍ଡାଧାର ଉପରେ ଚାଲିଲାବାଲାଙ୍କର ସ୍ଥାନ ଆଧୁନିକ ଶାସନ କ୍ଷେତ୍ରରେ ନାହିଁ । ନୀତି, ନିୟମ, ନିରପେକ୍ଷତାକୁ ବଜାୟ ରଖି ଶାସନରେ ଟିକିଏ ଏପାଖ ସେପାଖ କଲେ ସେମିତି କିଛି କ୍ଷତି ନାହିଁ । ଆଦର୍ଶକୁ ତୁମେ ଯେ ଠିକ୍ ଉଦ୍ଧିଲ କରି ସେହି ଅନୁସାରେ ଚାଲିବ, ଝୁଣ୍ଟିପଡ଼ିବ ସିନା, ବେଶିଦୂର ଆଗେଇ ପାରିବନି । ମୁଖ୍ୟମନ୍ତ୍ରୀ ଗୋଟାଏ କ'ଣ ଟିକିଏ ଅଦଳବଦଳ କରିବାକୁ ଚାହୁଁଛନ୍ତି, ରାଜି ହୋଇ ଯାଇଥିଲେ ମହାଭାରତଟା କ'ଣ ଅଶୁଦ୍ଧ ହୋଇ ଯାଇଥାନ୍ତା ? ଲୋକେ ଜାଣିଛନ୍ତି, ତୁମେ ଏକସିଙ୍ଗିଆ ଲୋକ, ତେଣୁ ତୁମକୁ କେହି କିଛି ଅନୁରୋଧ କରୁ ନାହାନ୍ତି । କିନ୍ତୁ ସେ ତ ମୁଖ୍ୟମନ୍ତ୍ରୀ, କେତେ ପ୍ରକାର ଅନୁରୋଧ ଆସୁଥିବ ବିଭିନ୍ନ କୋଣରୁ । କେତେବେଳେ ପାର୍ଟି ଅନୁରୋଧ ତ କେତେବେଳେ ନିର୍ବାଚନ ମଣ୍ଡଳୀ ଅନୁରୋଧ, କେତେବେଳେ ସାଙ୍ଗସାଥୀ ଅନୁରୋଧ । ଟିକିଏ ଯଦି ଏପାଖ ସେପାଖ କରିଦେଲେ, କ୍ଷତିଟା କ'ଣ ହୋଇଗଲା ? ମୁହେଁ ମୁହେଁ ନାହିଁ କରି ଦେଉଛ କେମିତି ମ ?"

"ସେ ଟିକିଏ ଅଦଳ ବଦଳ କରିଦେଲେ ଲୋକେ କ'ଣ ଜାଣିବେ ସେ କରିଛନ୍ତି ବୋଲି ? ନା—ମୁଁ କହି ବୁଲିବି ସେ କରିଛନ୍ତି, ମୁଁ କରିନାହିଁ ବୋଲି ? ମୁଁ କରିଛି ବୋଲି ତ ଲୋକେ ଜାଣିବେ । ସଙ୍ଗେ ସଙ୍ଗେ ଲୋକେ କହିବେନି ମୋର ନୀତି-ନିୟମ, ନିରପେକ୍ଷତା ବୋଲି କିଛି ନାହିଁ, ମନ ମୁତାବକ ଯାହାକୁ ଯେଉଁଠି ଥୋଇ ଦେଲି ?"

"ସାହାହେଲେ ବି ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧକୁ ଏମିତି ଏଡ଼ାଇଦେବା ଠିକ୍ ହେଲନି । ଯେତେହେଲେ ସେ ମୁଖ୍ୟମନ୍ତ୍ରୀ । ତାଙ୍କ ସମ୍ମାନ ରକ୍ଷା କରିବା ତୁମ କର୍ତ୍ତବ୍ୟ କ'ଣ ନୁହେଁ ?"

"ଥାଉ ଥାଉ, ତୁମେ ଶୋଇପଡ଼ । ମୋତେ କର୍ତ୍ତବ୍ୟ ଅକର୍ତ୍ତବ୍ୟ ବୁଝାଇବା ଦକ୍ଷତା ତୁମର ଆସିନି ।"

× × × ×

ଠିକ୍ ପନ୍ଦରଦିନ ପରେ ମଧୁସ୍ମିତା ତା'ର ସ୍ୱାମୀଙ୍କୁ ଧରି ମନ୍ତ୍ରୀଙ୍କ ବାସଭବନରେ ଆସି ପହଞ୍ଚିଗଲା । ଦେବସ୍ମାନ ସେମାନଙ୍କୁ ଅଭ୍ୟର୍ଥନା କକ୍ଷରେ ଅପେକ୍ଷା କରିବାପାଇଁ ଚପରାଶି ହାତରେ କହିଦେଇ ନିଜେ ଫାଇଲ ଦେଖାରେ ଲାଗିଗଲେ । ଦେବସ୍ମାନର ପୂର୍ବତନ ଗ୍ରହଣୀ ଭାବରେ ମଧୁସ୍ମିତା ଗତଥର ଯେଉଁ ସ୍ୱାଗତ ପାଇଥିଲା, ଏଥର ତା'ର ଅଭାବ ଦେଖି ନିଜେ ନିଜେ ଆତଙ୍କିତ ହୋଇପଡ଼ିଲା । ମନ୍ତ୍ରୀଙ୍କ ସ୍ତ୍ରୀଙ୍କୁ ସାକ୍ଷାତ କରିବାପାଇଁ ଯେଉଁ ଯୋଜନା କରି ଆସିଥିଲା, ତାହା ସେହି ଆତଙ୍କରେ ମଉଳିଯିବାକୁ ବସିଲା ।

କିଛି ସମୟ ଅପେକ୍ଷା କରିବାପରେ ଦେବସ୍ମାନ ସେମାନଙ୍କୁ ଭିତରକୁ ଡ଼କାଇଲେ । ମଧୁସ୍ମିତାକୁ ଦେଖି ଦେବସ୍ମାନ କହିଲେ, "ଦେଖ ମଧୁସ୍ମିତା, ମୁଁ ବଡ଼ ଦୁଃଖିତ, ତୁମ ସ୍ୱାମୀଙ୍କୁ ମୁଁ କୌଣସି ପ୍ରକାରେ ସାହାଯ୍ୟ କରିପାରୁନି । ତାଙ୍କ ଚାକିରି ଆରମ୍ଭ ଦିନରୁ ତାଙ୍କର ସବୁ ଉପରିସ୍ଥ ଅଫିସର ତାଙ୍କ ବିରୋଧରେ ଏତେ ଲେଖିଛନ୍ତି ଯେ, ତାଙ୍କୁ ସାହାଯ୍ୟ କରିବା ପାଇଁ ମୋ ହାତ ବନ୍ଧା ।"

"ସାର୍, ଆପଣ ଟିକିଏ ଯଦି ଆମକୁ ଦୟା ନ କରୁଛନ୍ତି ଆମେ ଭାସିଯିବୁଁ, ଆମ ସଂସାର ଉଜୁଡ଼ିଯିବ ସାର୍ ।" କହୁ କହୁ କାନ୍ଦି ପକାଇଲା ମଧୁସ୍ମିତା । ନଷ୍ଟଚରିତ୍ର ଓ ଖଳ ପ୍ରକୃତିର ସ୍ୱାମୀକୁ ରକ୍ଷା କରିବାପାଇଁ କି ଆକୁଳ ନିବେଦନ !

"ଦେଖ ମଧୁସ୍ମିତା, ଚାକିରିମୂଳରୁ ସ୍ୱାଙ୍କ ନାଁ'ରେ ଚାରି ଚାରିଜଣ କମିଶନର ଅତି ଖରାପ ଭାବରେ ଲେଖିଛନ୍ତି । ସବୁ ପ୍ରକାର ଅପକର୍ମରେ ଏ ଧୁରନ୍ଧର । ଜୀବନରେ ଏ ଯେ କେଉଁ ଦୁଷ୍କର୍ମ ନ କରିଛନ୍ତି, ତାହା ଖୋଜି ପାଇବା କଷ୍ଟକର ହେବ ।"

"ସାର୍, ସେସବୁ ମିଛ । ମୁଁ ନିର୍ଦ୍ଦୋଷ ସାର୍, ମୁଁ ନିର୍ଦ୍ଦୋଷ । କମିଶନରମାନେ ରାଗ ରଖି ମୋତେ ଏମିତି ହଇରାଣ କରିଛନ୍ତି ।"

"ସବୁ କମିଶନର କ'ଣ ଆପଣଙ୍କ ଉପରେ ରାଗ ରଖିଲେ ମିଷ୍ଟର ଓଝା ? ସେମାନେ କ'ଣ ଲେଖିଛନ୍ତି ଶୁଣିବେ ? କମିଶନର ଭେଙ୍କଟରମଣ ଆପଣ କଟକଜିଲ୍ଲାରେ ଜିଲ୍ଲାପାଳ ଥିଲାବେଳେ ଲେଖିଛନ୍ତି, ସେ ବିଭିନ୍ନ ସୂତ୍ରରୁ ପ୍ରମାଣ ପାଇଛନ୍ତି, ମିଷ୍ଟର ଓଝା କଟକ ଜିଲ୍ଲାପାଳ ଥିଲାବେଳେ ପନ୍ଦରଗୋଟି ନାରୀଧର୍ଷଣ କରିଛନ୍ତି ବିଭିନ୍ନ ଡ଼ାକ-ବଙ୍ଗଳାରେ । ଅଭିଯୁକ୍ତ ସ୍ତ୍ରୀମାନେ ଥାନାରେ ଏତଲା ଦେଇଛନ୍ତି, କିନ୍ତୁ ଫଳ କିଛି ହୋଇନି । ନିଜ ପ୍ରଭାବ ଯୋଗୁଁ କେଶ୍‌ଗୁଡ଼ାକୁ ଦବାଇ ଦିଆଯାଇଛି । ସେତିକବେଳେ ସେ

ବି.ଡି.ଓ.ମାନଙ୍କୁ ଧରି ଅନ୍ୟାୟ ଭାବରେ ଟଙ୍କା ସଂଗ୍ରହ କରିଛନ୍ତି ଦୁଇଲକ୍ଷ ପଞ୍ଚସ୍ତରୀ ହଜାର । ସେଥିରୁ ଲକ୍ଷେ ଟଙ୍କା ମନ୍ତ୍ରୀଙ୍କ ଦଳୀୟ ପାଣ୍ଠିକୁ ଚାନ୍ଦାଦେଇ ବାକିତକ ନିଜେ ଆତ୍ମସାତ୍ କରିଛନ୍ତି । ପାଞ୍ଚଗୋଟି ସଭାରେ ସେ ମଦନଶାରେ ତାଙ୍କୁ ଫୁଲମାଳ ଦେଉଥିବା ଝିଅମାନଙ୍କୁ ଫୁଲମାଳ ଦେଲାବେଳେ ହଜାର ହଜାର ଲୋକଙ୍କ ଆଗରେ କୁଣ୍ଢାଇପକାଇ ଅତି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିଛନ୍ତି ।''

ବାଲେଶ୍ୱର ଜିଲ୍ଲାରେ ଥିଲାବେଳେ ନାରୀଧର୍ଷଣ ତେର୍, ଟଙ୍କା ଆତ୍ମସାତ ଦେଢ଼-ଲକ୍ଷରୁ ଅଧିକ । କେନ୍ଦୁଝର ଜିଲ୍ଲାରେ ଥିଲାବେଳେ ନାରୀଧର୍ଷଣ ନଅ । ଟଙ୍କା ଆତ୍ମସାତ୍ ଦୁଇଲକ୍ଷ ପାଖାପାଖି । ଇଏ ଭଦ୍ରଲୋକ ଏମିତି ଯେ, ନାରୀଧର୍ଷଣ କଲାବେଳେ ଏହାଙ୍କର ବାଛବିଚାର ନଥାଏ । ଏମିତିକି ସେ କୌଣସି ଡ଼ାକବଙ୍ଗଳାକୁ ଆସିଲେ ସେହି ଡ଼ାକ-ବଙ୍ଗଳାକୁ ମେହେନ୍ତରାଣୀମାନେ ପାଇଖାନା ସଫା କରିଯିବାକୁ ଭୟ କରନ୍ତି । ତୁମ ସ୍ୱାମୀ ଏତେ ପ୍ରଭାବଶାଳୀ ଯେ, ତାଙ୍କ ବିରୋଧରେ ଲେଖିଥିବାରୁ ସେ କମିଶନର ମିଷ୍ଟର ଭେଙ୍କଟରମଣଙ୍କୁ ଓଡ଼ିଶା ରାଜ୍ୟରୁ ଦିଲ୍ଲୀକୁ ବଦଳି କରାଇ ଦେଇଥିଲେ । ସେହି ଭେଙ୍କଟରମଣ ବର୍ତ୍ତମାନ ଚିଫ୍ ସେକ୍ରେଟେରୀ ହୋଇ ଓଡ଼ିଶାକୁ ଫେରି ଆସିଛନ୍ତି । ମିଷ୍ଟର ଭେଙ୍କଟରମଣ ଗୋଟିଏ କେଶ୍‌କୁ ଅତି ପ୍ରାଞ୍ଜଳଭାବରେ ଲେଖିଛନ୍ତି, ଗୋବିନ୍ଦପୁର ଗ୍ରାମପଞ୍ଚାୟତର ମହିଳା ସମିତିର ସେକ୍ରେଟେରୀ ଶାନ୍ତି ମହାନ୍ତିଙ୍କ ବିଷୟରେ । ତାଙ୍କ ଉପରେ ଅର୍ଥ ଆତ୍ମସାତ୍‌ର ଏକ ମିଥ୍ୟା ଅଭିଯୋଗ କରି ମିଷ୍ଟର ଓଝା ତାଙ୍କୁ ଦିନେ ମଧୁପୁର ଡ଼ାକବଙ୍ଗଳାକୁ ଡ଼କାଇ ଆଣିଥିଲେ ସନ୍ଧ୍ୟାବେଳେ । ଉଦ୍ଦେଶ୍ୟ ଥିଲା, ତାଙ୍କୁ ଆରେଷ୍ଟର ଭୟ ଦେଖାଇ ଧର୍ଷଣ କରିଥାନ୍ତେ । ହଠାତ୍ ସେଠିକିବେଳେ କମିଶନର ଭେଙ୍କଟରମଣ ପହଞ୍ଚିଯାଇ ଝିଅଟିକୁ ରକ୍ଷାକରି ତାଙ୍କ ଗାଡ଼ିରେ ତାଙ୍କ ନିଜ ଘରକୁ ପଠାଇ ଦେଇଥିଲେ ।

ସେହି ଝିଅଟିର ବିଭାଘର ହେବାର ଥିଲା ଓଝାଙ୍କ ଅଫିସରେ ଜନୈକ କିରାଣିଙ୍କ ସହିତ । ସେ ଝିଅଟି ଅସଚ୍ଚରିତ୍ରା, କଲେକ୍ଟରଙ୍କ ରକ୍ଷିତା ବୋଲି କହି ବିଭାଘର ଭାଙ୍ଗି ଦେଇଥିଲେ ମିଷ୍ଟର ଓଝା । ଏହି ମିଥ୍ୟା ଅଭିଯୋଗର ଶିକାର ହୋଇ ଝିଅଟି ଆତ୍ମହତ୍ୟା କରିବା ଉଦ୍ଦେଶ୍ୟରେ ପୋଖରୀକୁ ଡ଼େଇଁ ପଡ଼ିଥିଲା ।

"ଏ ଅଭିଯୋଗ ସବୁ କ'ଣ ମିଛ ମିଷ୍ଟର ଓଝା ?"

"ହଁ ସାର୍, ଏସବୁ ଡ଼ାହା ମିଛ । ଏଥିରେ ସତ୍ୟତା ବୋଲି ଟିକିଏ ନାହିଁ । ମୁଁ ଠାକୁରଙ୍କ ରାଣଦେଇ କହିପାରେ । ଭେଙ୍କଟରମଣ ମୋ ଉପରେ ରାଗ ରଖି ଏମିତି ଲେଖି ଦେଇଛନ୍ତି ସାର୍ ।"

ଦେବସ୍ମାନ କଲିଂବେଲ୍ ଚିପିଲା । ଚପରାଶି ଆସିଲାରୁ ମା'ଙ୍କୁ ଡ଼ାକି ଦେବାକୁ କହିଲା । ଶାନ୍ତି ଆସି ଦୁଆରମୁହଁରେ ପହଞ୍ଚିଛି କି ନାହିଁ, ଦେବସ୍ମାନ କହିଲା, "ଆପଣ ଏହାଙ୍କ ମୁହଁକୁ ଅନାଇ କୁହନ୍ତୁ ମିଷ୍ଟର ଓଝା, ଆପଣ ଏହାଙ୍କୁ ଧର୍ଷଣ କରିବା ପାଇଁ

ସେଦିନ ସନ୍ଧ୍ୟାବେଳେ ମଧୁପୁର ଡ଼ାକବଙ୍ଗଳାକୁ ଡ଼କାଇ ନେଇ ନ ଥିଲେ ମିଥ୍ୟା ଅଭିଯୋଗ କରି ? ସ୍ତ୍ରୀଙ୍କର ବିଶ୍ରାମଘର ଖାଲି କରିଦେବାପାଇଁ ସେ ବି.ଡି.ଓ.ଙ୍କୁ ପଠାଇ ନଥିଲେ ବିଶ୍ରାମଘରବେଳେ ବାରଯାତ୍ରୀ ମେଳରେ ? ଏହି ଝିଅଟି ଆତ୍ମହତ୍ୟା କରିବା ପାଇଁ ପୋଖରୀକୁ କ'ଣ ଡେ଼ଇଁପଡ଼ି ନଥିଲା ? ଆପଣ ଏହାଙ୍କ ମୁହଁକୁ ଅନାଇ କହନ୍ତୁ ଏହା ସତ କି ମିଛ ।"

ହଠାତ୍ ମିଷ୍ଟର ଓଝା ଉଠି ଆସି ଦେବସ୍ମାନର ଗୋଡ଼ ଧରି ପକାଇ କାନ୍ଦି କାନ୍ଦି କହିଲେ, "ମୋତେ କ୍ଷମା କରନ୍ତୁ ସାର୍, ମୁଁ ନିହାତି ଦୋଷୀ । ବହୁତ ଦୋଷ କରିଛି ଆଜ୍ଞା । ମୋ ଭଳି ପାପୀ ଦୁନିଆରେ ନାହିଁ । ମୋ ଚରିତ୍ର-ପଞ୍ଜିକାରେ ଯାହାସବୁ ଲେଖା ହୋଇଛି—ସେସବୁ ସତ । ମୋତେ କ୍ଷମା କରନ୍ତୁ ଆଜ୍ଞା, ମୁଁ ଆପଣଙ୍କ ଗୋଡ଼ ଧରୁଛି ।"

ଆଖିଆଗରେ ଏସବୁ କ'ଣ ଘଟିଯାଉଛି ଦେଖି ମଧୁସ୍ମିତା ତାଟଙ୍ଗା । ସେ ଯେଉଁ ସ୍ୱାମୀଙ୍କୁ ସାଧୁ ଚରିତ୍ରବାନ୍ ବୋଲି ଭାବି ଏତେଦିନ ଧରି ପୂଜା କରି ଆସୁଥିଲା, ତାଙ୍କ ପ୍ରକୃତ ରୂପ କ'ଣ ଏଇଆ ? ଆଜି ଯେ ମନ୍ତ୍ରୀଙ୍କ ସହଧର୍ମିଣୀ, ତାଙ୍କୁ ଧର୍ଷଣ କରିବା ପାଇଁ ସ୍ୱାମୀଙ୍କ ଅପଚେଷ୍ଟା କି ଘୃଣ୍ୟ, କି ଲଜ୍ଜାକର, ଭାବି ପାରିଲାନି ମଧୁସ୍ମିତା । ଏତେ ଅସଚ୍ଚରିତ୍ର ସ୍ୱାମୀଙ୍କୁ ନେଇ ସେ କିପରି ଘର ସଂସାର କରୁଛି, ଭାବି ଭାବି ତା ଆଖି ଲୁହରେ ପୂର୍ଣ୍ଣ ହୋଇଗଲା । ସେ ହଠାତ୍ ଚେୟାରରୁ ଉଠିପଡ଼ି ଶାନ୍ତିର ଗୋଡ଼ ଧରି ପକାଇ କାନ୍ଦି କାନ୍ଦି କହିଲା, "ମୋତେ କ୍ଷମାକର ଭଉଣୀ ! ମୋ ସ୍ୱାମୀ ଆପଣଙ୍କ ପ୍ରତି ଏତେ ଗର୍ହିତ କାମ କରିଛନ୍ତି ଶୁଣି ମୁଁ ଅତ୍ୟନ୍ତ ଲଜ୍ଜିତ । ମୋତେ କ୍ଷମାକର ଭଉଣୀ, ମୋତେ କ୍ଷମାକର ।"

ମିଷ୍ଟର ଓଝାଙ୍କୁ ଗୋଡ଼ତଳୁ ଉଠାଇ ଚେୟାରରେ ବସାଇଦେଇ ଦେବସ୍ମାନ କହିଲା, "ଦେଖନ୍ତୁ ମିଷ୍ଟର ଓଝା, ମୁଁ ଆପଣଙ୍କର ଏସବୁ ଦୋଷକୁ ଛାଡ଼ି ଦେଇପାରେ । ଏବେ ଭିଜିଲାନ୍ସ ବିଭାଗ ତରଫରୁ ଆପଣଙ୍କ ନାଁରେ ଯେଉଁସବୁ ଅଭିଯୋଗ ଆସିଛି, ସେଥିରୁ ରକ୍ଷା କରିବା ମୋ କ୍ଷମତା ବାହାରେ । ଆପଣ ଓଝା ସାର୍ଟିଆ ଧରି ହରିଜନ ବୋଲି ସଫେଇ ଦେଇ ହରିଜନଙ୍କ ଆଇ.ଏ.ଏସ୍. କୋଟାରୁ ଆଇ.ଏ.ଏସ୍. ହୋଇଛନ୍ତି । ଭିଜିଲାନ୍ସ ବିଭାଗ ସ୍ପଷ୍ଟ ଭାବରେ ପ୍ରମାଣ ପାଇ ସାରିଛି ଯେ ଆପଣ ହରିଜନ ନୁହଁନ୍ତି, ସବର୍ଣ୍ଣ । ହରିଜନ ନ ହୋଇ ହରିଜନ ବୋଲି କହି କେନ୍ଦ୍ର ସରକାରଙ୍କୁ ଠକିଛନ୍ତି । ଗତକାଲି ଚିଫ୍ ସେକ୍ରେଟେରୀ ସେହି ରିପୋର୍ଟ ନେଇ ମୋ ପାଖକୁ ଆସିଥିଲେ । ଆପଣ ମନ୍ତ୍ରୀମାନଙ୍କୁ ଧରି ଏହି ଘଟଣାଟାକୁ ବହୁଦିନ ଧରି ଲୁଚାଇ ରଖିବାକୁ କ୍ଷମ ହୋଇଥିଲେ । ସେମାନେ ଆପଣଙ୍କୁ ଘଣ୍ଟ ଘୋଡ଼ାଇ ରଖିଥିବାରୁ ଏହି କଥାଟି ପଦାକୁ ବାହାରିପାରି ନଥିଲା । କିନ୍ତୁ ବର୍ତ୍ତମାନର ଚିଫ୍ ସେକ୍ରେଟେରୀ ଅତି ସଚ୍ଚୋଟ ଲୋକ ଥିବାରୁ ଏହାକୁ ଆଉ ଲୁଚାଇ ରଖିବା ଉଚିତ ମନେ କଲେନି । ଭିଜିଲାନ୍ସ ବିଭାଗର ରିପୋର୍ଟ ସହ ଏହି ଘଟଣାଟିକୁ ଦିଲ୍ଲୀକୁ ପଠାଇଦେଲେ । ସେଥିରେ ଆପଣଙ୍କୁ ଚାକିରିରୁ ବରଖାସ୍ତ କରିବାପାଇଁ ସୁପାରିଶ କରାଯାଇଛି । ଆପଣଙ୍କ ଚରିତ୍ର-ପଞ୍ଜିକା ଭଲ ଥିଲେ କେଜାଣି କେହି ଆପଣଙ୍କୁ

ରକ୍ଷା କରିପାରିଥାନ୍ତେ, କିନ୍ତୁ ତାହା ଅତ୍ୟନ୍ତ ଜଘନ୍ୟ ଥିବାରୁ କେହି ଆପଣଙ୍କୁ ରକ୍ଷାକରି ପାରିବେନି ମିଷ୍ଟର ଓଝା !"

ମଧୁସ୍ମିତା ଆଡ଼କୁ ଅନାଇ କହିଲେ, "ମୁଁ ବିଶେଷ ଦୁଃଖିତ ମଧୁସ୍ମିତା, ମୁଁ ତୁମ ସ୍ୱାମୀଙ୍କୁ କୌଣସି ପ୍ରକାରେ ରକ୍ଷାକରି ପାରୁନି ।"

ଏତିକି କହି ମଧୁସ୍ମିତା ଓ ତାଙ୍କ ସ୍ୱାମୀଙ୍କୁ ବିଦାୟ କରିଦେଇ ଦେବସ୍ନାନ ଚାଲିଗଲା ସେକ୍ରେଟେରିଏଟ୍ । ସେ ଅଫିସରୁ ଫେରି ସନ୍ଧ୍ୟାବେଳେ ରେଡିଓରୁ ଶୁଣିଲା, ମଧୁସ୍ମିତା ଏହି ଘଟଣାର ଠିକ୍ ପରେ ପରେ କଟକର ଜୋବ୍ରାଠାରେ ମହାନଦୀର ଅଥଳ ପାଣିକୁ ଡେଇଁପଡ଼ି ଆତ୍ମହତ୍ୟା କରିଛି ।"

## ଛଅୟାଳିଶ

ନିଜ ଗେଟ୍ ପାଖରେ ପୂର୍ବତନ ଶିକ୍ଷାମନ୍ତ୍ରୀ ମିଷ୍ଟର ମହାନ୍ତି ଓ ତାଙ୍କ ସ୍ତ୍ରୀଙ୍କୁ ରିକ୍ସାରୁ ଓହ୍ଲାଇବା ଦେଖି ଦେବସ୍ନାନ ଚମକି ପଡ଼ିଲା । ସେ ସେମାନଙ୍କୁ ପାଛୋଟି ଆଣିବା ପାଇଁ ଦୌଡ଼ିଯାଇ କହିଲା, "ଆଜ୍ଞା, ହଠାତ୍ ଆପଣ କୁଆଡ଼େ ଚାଲି ଆସିଲେ ? ମୋତେ ତ କହିଥିଲେ ମୁଁ ଯାଇ ଆପଣଙ୍କ ସହି ସାକ୍ଷାତ କରିଥାନ୍ତି । ଆପଣ ଏତେ କଷ୍ଟ କରି···?"

"ନାଇଁ ବାପ ଦେବ, ଆମର ତୋ'ଠାରେ କାମ ଅଛି, ଆମେ ନ ଆସି ତୋତେ କ'ଣ ଡ଼କାଇନେବୁ ?"

ମିଷ୍ଟର ମହାନ୍ତି ଓ ମିସେସ୍ ମହାନ୍ତିଙ୍କୁ ସୋଫାରେ ବସାଇ ଦେବସ୍ନାନ ସେମାନଙ୍କର ଭଲ ମନ୍ଦ ସବୁ ପଚାରିଲା । ମିଷ୍ଟର ମହାନ୍ତି କହିଲେ, "ଆମ୍ଭେମାନେ ତ ଆସି ବୁଢ଼ା-ବୁଢ଼ୀ ହେଲୁ ବାପ ଦେବ । ରକ୍ତଚାପ ରୋଗରେ ବାରମ୍ବାର ପଡ଼ିବା ହେତୁ ରାଜନୀତି ପୁରାପୁରି ଛାଡ଼ି ଦେଲିଣି । ମୋ ଝିଅଟିକୁ ବିବାହ ଦେଇଥିଲି ମିଷ୍ଟର ସିଂହଙ୍କ ସହିତ । ସେ ବହୁଦିନ ଧରି କୁଅଁର ଜଳବିଦ୍ୟୁତ୍ ଯୋଜନାର ପରିଚାଳକ ଥିଲେ । ତାଙ୍କ ବିରୋଧରେ ଭିଜିଲାନ୍‌ସ ଦ୍ୱାରା ଟଙ୍କା ଆତ୍ମସାତ୍ ଅଭିଯୋଗ ଆସିଛି ତୁମଠାକୁ । ଏହାର ସତ୍ୟାସତ୍ୟ କେତେଦୂର, ମୁଁ ଜାଣେନି । ଦେଖିବ ବାପ, ଯଦି କିଛି ସାହାଯ୍ୟ କରିପାରିବ ।"

"ହଁ ବାପ ଦେବ" ମିସେସ୍ ମହାନ୍ତି କହିଲେ, "ତୁମେ ତ ହେଲ ମୋ ପୁଅଭଳି । ତୁମେ ଯଦି ତାକୁ ନ ରଖିବ, ଆମର ଆଉ କିଏ ସାହା ଭରସା ଅଛି ବାପ ? ଶାନ୍ତା ତ ହେଲା ଆମର ଗୋଟିଏ ବୋଲି ଝିଅ । ତାକୁ ତ ତୁମେ ଜାଣିଛ ପାଠ ପଢ଼ିଲାଦିନୁ । ଅନ୍ତତଃ ତା'ରି ମୁହଁକୁ ଚାହିଁ ଏତିକି ଦୟାକର ବାପ, ତା ନହେଲେ ତା ସଂସାର ଉଜୁଡ଼ିଯିବ"—କହୁ କହୁ କାନ୍ଦି ପକାଇଲେ ମିସେସ୍ ମହାନ୍ତି ।

"ହେଉ ଆଜ୍ଞା, ମୁଁ ଦେଖିବି । ଯାହା ସାହାଯ୍ୟ କରିଯାଇ ପାରିବ, ସେତକ ନିଶ୍ଚୟ କରିବି । ଆପଣମାନେ ଏତକ ପାଇଁ ଏତେ କଷ୍ଟକରି ମୋଠାକୁ ଦୌଡ଼ି ଆସିଲେ ? ଫୋନ୍‌ରେ ତ କହିଦେଇ ପାରିଥାନ୍ତେ ?"

"ଏସବୁ କଥା ଫୋନ୍‌ରେ କୁହାଯାଏନି ବାପ ଦେବ ।"

ଏତିକବେଳେ ଶାନ୍ତି ଟ୍ରେରେ ଦୁଇଗ୍ଲାସ୍ ସର୍ବତ୍ ଆଣି ଟି-ପୟ ଉପରେ ଥୋଇଦେଇ ନମସ୍କାର ଜଣାଇ ପାଖ ସୋଫାରେ ବସିଲା ।

ମିଷ୍ଟର ମହାନ୍ତି ଆରମ୍ଭ କଲେ । "ଦେଖ ବାପ ଦେବ । ମୁଁ ତୁମର ରଚନାତ୍ମକ କାମର ଅଶେଷ ପ୍ରଶଂସା ଶୁଣିଛି । ତୁମେ ମଧୁପୁର ବ୍ଲକ ଅଞ୍ଚଳରେ ଯାହାସବୁ କରିଛ, ତାହା ସମସ୍ତଙ୍କ ଆଖି ଖୋଲି ଦେଇଛି । ଗାଁର ନିରୀହ ମୂର୍ଖ ଜନତାର ଶକ୍ତି କେତେ, ତା ଆଗରେ ସରକାରୀ ସାହାଯ୍ୟ କିଛି ନୁହେଁ, ଏହା ତୁମେ ପ୍ରମାଣ କରି ଦେଇଛ । ତୁମର ଏହି କାର୍ଯ୍ୟ ସାରା ଭାରତବର୍ଷରେ ଚାଞ୍ଚଲ୍ୟ ଖେଳାଇ ଦେଇଛି । ଶାସକଦଳ ବ୍ୟତୀତ ଆମ ଦଳ ମଧ୍ୟ ତୁମ କାମର ବେଶ୍ ତାରିଫ୍ କରିଛନ୍ତି । ତୁମେ ଏହି କାମଦ୍ୱାରା ସାରା ଭାରତବାସୀଙ୍କ ଆଖି ଖୋଲି ଦେଇଛ ।"

"ଇଏ ସେଥିରେ ମୋର ପ୍ରଧାନ ସାହାଯ୍ୟକାରିଣୀ । ଯାଙ୍କ ସାହାଯ୍ୟ ପାଇ ନଥିଲେ ଆଜି ସେ ଅଞ୍ଚଳରେ ମୁଁ କିଛି କରିପାରି ନଥାନ୍ତି ଆଜ୍ଞା ।"

ଶାନ୍ତି ଆଡ଼କୁ ଅନାଇ, "ତୁ ମା ବି ଦେବ ଭଳି ରଚନାତ୍ମକ କର୍ମୀ ? ଆଃ, ତୁମ ଦୁଇଜଣଙ୍କୁ ଦେଖି ଆମ ନୟନ ସାର୍ଥକ ହେଲା ମା' । ଭଗବାନ ତୁମମାନଙ୍କୁ କୋଟି ପରମାୟୁ ଦିଅନ୍ତୁ । ତୁମ୍ଭେମାନେ ଏହିଭଳି ଜନସେବାରେ ନିଜକୁ ନିୟୋଜିତ କର ।"

ସରବତ୍ ପିଇ ପିଇ ମିଷ୍ଟର ସିଂହ କହିଲେ, "ହେଉ ବାପ, ଆମ ଦିନକାଳ ତ ସରିଲା । ଏବେ ତୁମ ଦିନକାଳ ଆସୁଛି । ମୁଁ ଭୁଲିଗଲି ପଚାରିବାକୁ । ତୁମ ବାପା ବର୍ତ୍ତମାନ କେମିତି ଅଛନ୍ତି ? ସେ ପରା ବର୍ତ୍ତମାନ ଡି.ପି.ଆଇ. ଅଛନ୍ତି ? ତୁମେ ମନ୍ତ୍ରୀ, ତୁମ ବାପା ଡି.ପି.ଆଇ., ତୁମେ କେମିତି ଶାସନ ଚଳାଉଛ ଶୁଣେ ?"

"ନାହିଁ ଆଜ୍ଞା, କିଛି ତ ଅସୁବିଧା ହେଉନି । ମୁଁ ମୋ ପରିସୀମା ଭିତରେ ଅଛି, ବାପା ତାଙ୍କ ପରିସୀମା ଭିତରେ ଅଛନ୍ତି । ଅସୁବିଧା ହେଉନି କେଉଁଠି ।"

"ସେ ତ ନାନା କାର୍ଯ୍ୟରେ ତୁମ ସହିତ ସାକ୍ଷାତ କରିବାକୁ ଆସୁଥିବେ ? ତାଙ୍କ ଶାସନରେ କେଉଁଠି ଭୁଲଭଟକା ହେଉଥିଲେ ତୁମେ ତ ଅସନ୍ତୋଷ ପ୍ରକାଶ କରୁଥିବ ?"

ହସିଲା ଦେବସ୍ମିନ । "ସେତକ ଯାହା ଟିକିଏ ଅସୁବିଧା ହେଉଛି ।"

"ମୁଁ କାଲେ ଶୁଣିଛି, ଡି.ପି.ଆଇ. ଘର ଭିତରକୁ ପଶି ଆସିଲେ ମନ୍ତ୍ରୀ ଠିଆହୋଇ ପଡ଼ୁଛନ୍ତି ?"

"ଆପଣ ସେ ଖବର ବି ପାଇଛନ୍ତି ଆଜ୍ଞା ? ତାହା ନହେବ କେମିତି ? ଯେତେହେଲେ ସେ ବାପା । ଆମ୍ଭ ହସ୍ପିଟରେ ସେ ଆସିଲେ ଆମେ ଠିଆ ହେବା

କଥା । ପାଶ୍ଚାତ୍ୟ ସଂସ୍କୃତିରେ ଅବଶ୍ୟ ଏମିତି ନାହିଁ । ସ୍ୱିକାରରେ ସେ ପିତା ମୋ ଅଧୀନରେ, ହେଲେ ମୋତେ ତ ଜନ୍ମଦେଇ ଶ୍ରେଷ୍ଟିଟି ଧନୁ ଏତେବଡ଼ କରିଛନ୍ତି । ସେ ତାଙ୍କ ପ୍ରାପ୍ୟ ସମ୍ମାନ ନ ପାଇବେ କେମିତି ଆଜ୍ଞା ?''

''ଏହା ଉପରେ କାଲେ ତୁମ ଶାସକ ଦଳ ଓ ଆମ ବିରୋଧୀ ଦଳ ଭିତରେ ବହୁବାର ଆଲୋଚନା ହୁଏ । ଉଭୟ ଦଳଙ୍କ ପ୍ରଶଂସା, ତୁମେ କେବେ ତୁମ ପଦସର ବାହାରକୁ ଯାଇ କେଉଁଠି ବାପାଙ୍କୁ ସାହାଯ୍ୟ କରିନ । ବରଂ ବହୁ ସମୟରେ ବାପାଙ୍କର ଭୁଲ ଦେଖାଇ ତାଙ୍କ କାର୍ଯ୍ୟର କଠୋର ସମାଲୋଚନା କରିଛ । ସବୁଠାରୁ ଆଶ୍ଚର୍ଯ୍ୟ, ତୁମ ବାପା ତୁମଠାରୁ ସମାଲୋଚନା ଶୁଣି ମଧ୍ୟ ସେ କେବେ ଅପମାନିତ ଅନୁଭବ କରି ନାହାନ୍ତି । ସେ ଯେତେବେଳେ ତୁମଠାକୁ ଆସନ୍ତି, ଭାବନ ପୁଅଠାକୁ ଆସିଛନ୍ତି ସାକ୍ଷାତ ପାଇଁ । ସେ ଆସନ୍ତି ନିଜ ବିଭାଗର ସର୍ବୋଚ୍ଚ କର୍ତ୍ତାଙ୍କଠାକୁ ଆଦେଶ ଗ୍ରହଣ ପାଇଁ ।''

''ହଁ, ବାପାଙ୍କ ସେହି ସଦ୍‌ଗୁଣ ମୁଁ ଲକ୍ଷ୍ୟ କରିଛି ଆଜ୍ଞା । ପୁଅ ପାଖରୁ କିଛି ଗୋଟିଏ ସୁବିଧା ନିଜପାଇଁ ହାସଲ କରିନେବାକୁ ସେ କେବେ ଚେଷ୍ଟା କରିନାହାନ୍ତି । ଏପରିକି ସେ ମୋଠାକୁ ସରକାରୀ କାର୍ଯ୍ୟରେ ଆସିଥିଲେ ବି ଭୁଲରେ ଆମ ଘର ଭିତରକୁ ପଶି ନାହାନ୍ତି, କି ମୋ ସ୍ତ୍ରୀ ଛୁଆପିଲାଙ୍କ ସହିତ କଥାବାର୍ତ୍ତା କରି ନାହାନ୍ତି । ସରକାରୀ କାମ ବ୍ୟତୀତ ମୋ ସହିତ କି ସ୍ତ୍ରୀ ପିଲାଙ୍କ ସହିତ ସାକ୍ଷାତ କରିବା ପାଇଁ ଦିନକ ପାଇଁ ଆମ ଘରକୁ ଆସି ନାହାନ୍ତି ମଧ୍ୟ ।''

''ମୁଁ ଯେତେବେଳେ ଶିକ୍ଷାମନ୍ତ୍ରୀ ଥିଲି, ତୁମ ବାପାଙ୍କ ସଚ୍ଚୋଟପଣିଆକୁ ମୁଁ ଭଲ ଭାବରେ ଜାଣିବାର ସୁଯୋଗ ପାଇଥିଲି । ସେ ସୁବିଧାବାଦୀ ନୁହଁନ୍ତି କି କେବେ ନଥିଲେ । ଉପରିସ୍ଥ ହାକିମଠାରୁ ସୁବିଧା ମାରିନେବା ତାଙ୍କ ଜାତକରେ ନାହିଁ । ତଥାପି ଏହି ଅସୁବିଧାକୁ ଏଡ଼ାଇବା ପାଇଁ ତୁମେ ଏ ବିଭାଗ ନେଇ ନଥାନ୍ତ । ନେଇଥିଲେ ବାପାଙ୍କୁ ଅନ୍ୟଆଡ଼େ ବଦଳି କରି ଦେଇଥାନ୍ତ ।''

''ଆପଣ ତ ଜାଣିଛନ୍ତି, ମୁଁ କେଉଁ ଦଳର ନୁହେଁ । ମନ୍ତ୍ରୀ ହେବାପାଇଁ ମୁଁ କେବେ ରାଜି ନ ଥିଲି ।''

''ତା ତ ମୁଁ ଜାଣିଛି, ଦିଲ୍ଲୀରୁ ପ୍ରଧାନମନ୍ତ୍ରୀଙ୍କ ଅନୁରୋଧ ରକ୍ଷାକରି ତୁମେ ମନ୍ତ୍ରୀ ହୋଇଛ ।''

''ତାଙ୍କର ଅନୁରୋଧକ୍ରମେ ମୁଁ ଶିକ୍ଷା ବିଭାଗକୁ ଧରିଛି । ପ୍ରଧାନମନ୍ତ୍ରୀ ଶିକ୍ଷା ବିଭାଗକୁ ଅନ୍ୟ କାହାକୁ ଦେବାକୁ ଚାହିଁ ନ ଥିଲେ ।''

''ତା ତ ହେବା ସ୍ୱାଭାବିକ, ତୁମେ ଶିକ୍ଷା ବିଭାଗର ଲୋକ । ତୁମକୁ ସେ ବିଭାଗ ନ ଦିଅନ୍ତେ ବା କେମିତି ? ତେବେ ତୁମେ ଶିକ୍ଷାବିଭାଗ ନେଲାପରେ ବାପାଙ୍କୁ ଅନ୍ୟ କେଉଁଠାକୁ ବଦଳି କରି ଦେଇଥାନ୍ତ ।''

"ଆପଣ ତ ଜାଣିଛନ୍ତି, ବାପା ତଳୁ ଉଠି ଉଠି ଏବେ ଉପରକୁ ଆସିଛନ୍ତି । ପ୍ରତ୍ୟେକ ଲୋକର ଇଚ୍ଛା—ସେ କେମିତି ତା'ର ବିଭାଗର ସର୍ବୋଚ୍ଚ କର୍ତ୍ତା ହେବ । ବାପାଙ୍କର ବି ସେଇ ଇଚ୍ଛା ଥିବା ସ୍ୱାଭାବିକ । ମୁଁ ମନ୍ତ୍ରୀ ହେବାଆଗରୁ ବାପା ଡ.ପି.ଆଇ. ହୋଇ ସାରିଥିଲେ । ତାଙ୍କୁ ଅନ୍ୟତ୍ର ବଦଳି କରି ଦେଇଥିଲେ, ସେ ନିଶ୍ଚୟ ମନକଷ୍ଟ କରିଥାନ୍ତେ । ତା'ଛଡ଼ା ତାଙ୍କ ଚାକିରିକାଳ ଆଉ ମାତ୍ର ବର୍ଷେଟାଏ ଅଛି । ସେଭଳି ଅବସ୍ଥାରେ ତାଙ୍କୁ ବଦଳି କରିଦେଲେ ତାଙ୍କ ମନରେ ନିଶ୍ଚୟ କଷ୍ଟ ହେବ । ପୁଅ ହୋଇ ବାପାଙ୍କୁ ବଦଳି କରିବାଟା ଲୋକଙ୍କ ଆଖିରେ କେତେ ଖରାପ ଦିଶିଥାନ୍ତା କୁହନ୍ତୁ ତ ? ଭାବିଲି ବାପାଙ୍କୁ କୌଣସି ପ୍ରକାରେ ଚଳାଇନେବି । ଅବସର ନେଲାବେଳେ ତାଙ୍କ ମନରେ କୌଣସି କଷ୍ଟ ଦେବା ମୋର ଇଚ୍ଛା ନୁହେଁ ।"

"ମୁଁ ଶୁଣିଥିଲି, ତୁମ ବାପ-ପୁଅଙ୍କର କେତେଦିନ ଧରି ଦେଖା-ସାକ୍ଷାତ ହୋଇ ନ ଥିଲା । ତୁମେ ରଚନାତ୍ମକ କାମକୁ ଆବୋରି ନେଇଥିବାରୁ ସେ ତୁମକୁ ପୁଅ ତାଲିକାରୁ କାଲେ କାଟି ଦେଇଥିଲେ ?"

"ଆପଣ କ'ଣ ସବୁ ଟିକିନିଖି ଖବର ରଖିଛନ୍ତି ଆଜ୍ଞା ?"

"ହଁ ବାପ, ବେଳେବେଳେ କେତେ କଥା ଏହି କାନରେ ଆସି ପଡ଼େ । ବୁଢ଼ା ହେଲେ ବି କେତେଲୋକ ତ ଆସନ୍ତି, କେତେ କଥା କହନ୍ତି ।"

"ହଁ ଆଜ୍ଞା, ବାରବର୍ଷ ପରେ ଆମର ଦେଖାସାକ୍ଷାତ ହୁଏ ଏହି ଘରେ । ମୁଁ ବସିଥାଏ ମନ୍ତ୍ରୀଙ୍କ ଆସନରେ । ବାପା ଆଉ ସେକ୍ରେଟେରୀ ମୋ ସାମନା ଚେୟାରରେ ବସିଥାନ୍ତି । ରାଜ୍ୟର ଶିକ୍ଷାନୀତି ଉପରେ ଆଲୋଚନା ଚାଲିଥାଏ । ଦେଖିଲି, ବାପା ମୋ ଅଧୀନରେ କାମ କରିବା ପାଇଁ କୌଣସି ଅନିଚ୍ଛା ଦେଖାଇଲେ ନାହିଁ ।"

ଯଦି ତାଙ୍କର ଅନିଚ୍ଛା ଦେଖିଥାନ୍ତି, ତେବେ ତାଙ୍କୁ ମୁଁ ଅନ୍ୟତ୍ର ବଦଳି କରି ଦେଇଥାନ୍ତି । ସେହିଦିନଠାରୁ ଆମ ଚଳାଚଳରେ କିଛି ଅସୁବିଧା ଦେଖାଦେଇନି ।"

ତା ବାଦ୍ ମୁଁ ଏହି ପଦବୀରେ କେତେଦିନ ଯେ ରହିବି, ସେ ବି ଗୋଟିଏ କଥା । ଆମେ ତ ଗାଁରେ ରହି ଲୋକମାନଙ୍କ ସହିତ ସେମାନଙ୍କ ସୁଖଦୁଃଖ ଭିତରେ କାମ କରିବା ଲୋକ । ଆମକୁ କ'ଣ ଏ ବଡ଼ବଡ଼ିଆ କାରବାର ଭଲ ଲାଗୁଛି ? ମୋ ସ୍ତ୍ରୀ ଓ ପିଲାମାନେ ତ ଏଠି ରହି ରହି ଅତିଷ୍ଠ ହୋଇ ପଡ଼ଲେଣି । ସେମାନଙ୍କ ଇଚ୍ଛା, ଆମେ କେମିତି ଏ ସ୍ଥାନ ଛାଡ଼ି ନିଜ କର୍ମକ୍ଷେତ୍ରକୁ ଚାଲିଯିବୁ । ବାପା-ବୋଉ ଏହି ସହରରେ ରହୁଛନ୍ତି ବୋଲି ସେମାନେ ଏଠି କୌଣସି ପ୍ରକାରେ ପଡ଼ି ରହିଛନ୍ତି । ତା ନ ହୋଇଥିଲେ ସେମାନେ କେଉଁଦିନରୁ ଭୁବନେଶ୍ୱର ଛାଡ଼ି ସାରନ୍ତେଣି ।

"ବାପ ଦେବସ୍ଥାନ, ଲୋକେ ମନ୍ତ୍ରୀ ହେବାପାଇଁ ଶିବ ଉପରେ କେତେ ଚମ୍ପା ଚଢ଼ାଉଛନ୍ତି । ତୁମେ ଓଲଟି କହୁଛ କ'ଣ ନା ମନ୍ତ୍ରିତ୍ୱ ଛାଡ଼ି ପଳାଇବ ? କେବିନେଟ୍‌ରେ ତୁମ ସ୍ଥାନ ପୁଣି କେତେ ଉଚ୍ଚରେ, ମୁଖ୍ୟମନ୍ତ୍ରୀଙ୍କ ଠିକ୍ ତଳକୁ । ସରକାରରେ ତୁମ

ସମ୍ମାନ, ତୁମ କ୍ଷମତା କେତେ ଅଧିକ, ଅଥଚ ତୁମେ ଏମିତି କହୁଛ ? ଏଭଳି ସମ୍ମାନ ଓ କ୍ଷମତାକୁ କିଏ କ'ଣ ସହଜରେ ଛାଡ଼ି ଦେଇପାରେ ?"

"ତେବେ ଦେଖୁଛ ଆଜ୍ଞା, ମୁଁ ଯଦି ଶିକ୍ଷା ବିଭାଗରେ ସେମିତି କିଛି ଆଖିଦୃଶିଆ କାମ କରି ନ ପାରିବି, ତେବେ ମନ୍ତ୍ରିତ୍ୱକୁ ଜାବୁଡ଼ିଧରି ଲାଭ କ'ଣ ? ମୁଁ ଯଦି ଏହି ବିଭାଗରେ ଥାଇ ରାଜ୍ୟର କିଛି ଉନ୍ନତି କରି ନ ପାରିଲି, ତେବେ ମୁଁ ଏହାକୁ ଛାଡ଼ିଦେଇ ମୋ କାର୍ଯ୍ୟକ୍ଷେତ୍ରକୁ ଚାଲି ନ ଯିବି କାହିଁକି ?"

"ହେଉ, ତୁମର ବହୁତ ସମୟ ଏ ଚୁଡ଼ାଟା ନଷ୍ଟ କଲଣି ବାପ, ତେବେ ମନେରଖିଥା ବାପ, ମୋ ଅନୁରୋଧଟା । ସେ ତ ମୋର ଗୋଟିଏ ବୋଲି ଜୋଇଁ ।"

ନିଜ ସ୍ତ୍ରୀଙ୍କ ଆଡ଼କୁ ଅନାଇ କହିଲେ, "ମନେଅଛି ଗାୟତ୍ରୀ, ଆଜକୁ ପନ୍ଦରବର୍ଷ ତଳର କଥା । କହିଥିଲିନା, ତୁମେ ଦେବସ୍ମାନ ଭଳି ପିଲାକୁ ନିନ୍ଦୁଛ । ଦିନେ ତା'ର ଗୋଡ଼ତଳକୁ ଆସିବ । ଆଜି ସେଇଦିନ ଆସିଛି ଗାୟତ୍ରୀ । ଆମେ ଆଜି ତା'ର ଗୋଡ଼ଧରି ଭିକ୍ଷା କରୁଛୁ ଆମ ଝିଅର ସମ୍ମାନ ।"

ସେମାନେ ଚାଲିଗଲା ପରେ ଶାନ୍ତ ପଚାରିଲା, "ଏ କ'ଣ ତାଙ୍କ ସ୍ତ୍ରୀଙ୍କୁ ଏମିତି କହିଗଲେ, ଗୋଡ଼ତଳକୁ ଆସିବା କଥା, ଏହାର ଅର୍ଥ ?"

ହସିଲା ଦେବସ୍ମାନ । "ହଁ ଶାନ୍ତ, ମନ୍ତ୍ରୀ ଚାହୁଁଥିଲେ ତାଙ୍କର ଏହି ଝିଅ ଶାନ୍ତାକୁ ମୋ ସହିତ ବିବାହ ଦେବାପାଇଁ । ମୁଁ ଆଇ.ଏ.ଏସ୍. ଚାକିରି ଛାଡ଼ି ଦେଇଥିବାରୁ ତାଙ୍କ ସ୍ତ୍ରୀ ମୋତେ ଜୋଇଁ କରିବାକୁ ମନା କରି ଦେଇଥିଲେ । ତାଙ୍କର ଆଇ.ଏ.ଏସ୍. ଜୋଇଁ ଦରକାର । ସେତେବେଳେ ମନ୍ତ୍ରୀ ରାଗିକରି ତାଙ୍କ ସ୍ତ୍ରୀକୁ କ'ଣ କହିଦେଇଥିବେ, ଆଜି ସେଇଆ ଚେତାଇ ଦେଉଛନ୍ତି । ସେହି ଆଇ.ଏ.ଏସ୍. ଜୋଇଁ କେଉଁଠି କ'ଣ ଗଲତି କରିଥିବ, ସେଥିପାଇଁ ବୁଢ଼ାବୁଢ଼ୀ ଦିହେଁ ଏଠାକୁ ଦୌଡ଼ି ଆସିଛନ୍ତି । ତାଙ୍କ ଜୋଇଁଙ୍କ ଫାଇଲ ମୋଠାରେ ଅଛି କି କଅଣ ଜାଣିନି । କିଛି ଗୋଟାଏ ଗର୍ହିତ କାମ କରିଥିବେ ନିଶ୍ଚୟ । ଆଇ.ଏ.ଏସ୍. ଜୋଇଁ ପାଇଁ ପାଗଳ ହେବାର ଏହା ଏକ ପରିଣତି ।"

× × × ×

"ନମସ୍କାର ଆଜ୍ଞା" କହୁଁ କହୁଁ ପ୍ରାଇଭେଟ୍ ସେକ୍ରେଟେରୀଙ୍କ ସହିତ ରେଭେନ୍ସା କଲେଜର ବରିଷ୍ଠ ପଦାର୍ଥବିଜ୍ଞାନ ଅଧ୍ୟାପିକା ଡକ୍ଟର ରେଖା ମହାନ୍ତି ଶିକ୍ଷାମନ୍ତ୍ରୀଙ୍କ ଚେମ୍ବର ଭିତରକୁ ପଶି ଆସିଲେ ।

"ଆସନ୍ତୁ ଆସନ୍ତୁ, ରେଖାଦେବୀ । ବହୁତଦିନ ପରେ ଆପଣଙ୍କ ସହିତ ସାକ୍ଷାତ । କେମିତି ଅଛନ୍ତି, ଭଲ ଅଛନ୍ତି ତ ? ବସନ୍ତୁ, ବସନ୍ତୁ । ହଁ, କୁଆଡ଼େ ଚାଲି ଆସିଲେ କ୍ଷଣେ ? କ'ଣ କିଛି··· ।"

"ମୋର ଆଜ୍ଞା ଟ୍ରାନ୍ସଫର ହୋଇଛି ବଲାଙ୍ଗୀର ମହିଳା କଲେଜକୁ ପ୍ରିନ୍ସିପାଲ ଭାବରେ ।"

"ବେଶ୍ ତ ଭଲ ହୋଇଛି । ଏତେଦିନ ଅଧ୍ୟାପିକା ହୋଇ ରହିଲେ । ଏଥର ପ୍ରିନ୍ସିପାଲ ହୁଅନ୍ତୁ । ସେ ଅନୁଭୂତିଟା ବାଦ୍ ପଡ଼ିଯିବ କାହିଁକି ? ପ୍ରିନ୍ସିପାଲ ଚାକିରି, ଖୁବ ଭଲ ଚାକିରି ।"

"ପ୍ରିନ୍ସିପାଲ ହେବାକୁ ମୋର ଆପତ୍ତି ନାହିଁ ଆଜ୍ଞା । ହେଲେ ମୋ ସ୍ୱାମୀଙ୍କର ସେଠାକୁ ବଦଳି ହୋଇପାରୁନି । ମୋ ପିଲାଦୁଇଟି ଛୋଟ ଛୋଟ । କଟକ କନ୍‌ଭେଣ୍ଟ ସ୍କୁଲରେ ପଢ଼ୁଛନ୍ତି । ମୋ ସ୍ୱାମୀଙ୍କର ଟୁରିଙ୍ଗ୍ ସର୍ଭିସ୍ । ମୁଁ ଚାଲିଗଲେ ପିଲା ଦୁଇଟି ହଇରାଣ ହୋଇଯିବେ ଆଜ୍ଞା ।"

"ତା'ହେଲେ ଆପଣ କ'ଣ ଚାହୁଁଛନ୍ତି ?"

"କେଉଁଠି ପାଖଆଖକୁ..."

"ଆପଣ ତ ରେଭେନ୍‌ସା କଲେଜରେ ଥିଲେ । ସେଠାରେ ଗବେଷଣା କରୁଥିଲେ । କେତେ ପିଲାଙ୍କୁ ପିଏଚ୍.ଡି. ପାଇବାରେ ସାହାଯ୍ୟ କରିଛନ୍ତି । ରେଭେନ୍‌ସା କଲେଜର ପଦାର୍ଥବିଜ୍ଞାନ ବିଭାଗର ଯେଉଁ ଦୁର୍ନାମ ଥିଲା ଯେ ସେଠି ଗବେଷଣା ଆଦି ହୁଏନି, ଅଧ୍ୟାପକମାନେ ସବୁଦା ଫାଙ୍କିମାରି ବୁଲନ୍ତି, ସେହି ଦୁର୍ନାମକୁ ଆପଣ ତ ଭାଙ୍ଗି ସେଠି ସୁନାମ ଆଣି ପାରିଛନ୍ତି । ଆଜି ସାରା ଭାରତରେ ଆପଣଙ୍କ ବିଭାଗର ପ୍ରସିଦ୍ଧି । ଏଠାକାର ଗବେଷଣା ଖୁବ୍ ଉଚ୍ଚକୋଟୀର ବୋଲି ଅନ୍ୟମାନେ କହିବା ମୁଁ ଶୁଣିଛି । ଏତେ ସୁନାମ ଆଣିବାସତ୍ତ୍ୱେ ଆପଣଙ୍କୁ ବଦଳି କରାଗଲା କାହିଁକି ?"

"ସମ୍ଭବତଃ ଆପଣଙ୍କର ସେହି ଛଅବର୍ଷିଆ ଆଇନ ।"

"ସେ ଆଇନ କ'ଣ ସମସ୍ତଙ୍କ ପାଇଁ ସମାନ ଭାବରେ ଲାଗୁ ହେବାକଥା ? ଯେଉଁମାନେ ଗବେଷଣା କରୁଛନ୍ତି, ଯେଉଁମାନେ ଡିପାର୍ଟମେଣ୍ଟର ମେରୁଦଣ୍ଡ, ଯେଉଁମାନଙ୍କ ଶିକ୍ଷା ତଥା ଗବେଷଣାଯୋଗୁଁ କଲେଜର ସୁନାମ ହେଉଛି, ସେମାନଙ୍କ ପାଇଁ ଏହା କ'ଣ ଲାଗୁ ହେବାକଥା ?"

ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ଡାକି ରେଖାଦେବୀଙ୍କ ଫାଇଲ ଆଣିବାକୁ ଆଦେଶ ଦେଲେ ଦେବସ୍ଥାନବାବୁ ।

କିଛି ସମୟ ଫାଇଲ ଦେଖୁ ଦେଖୁ କହିଲେ, "ଓଃ, ଆପଣଙ୍କ ଡିପାର୍ଟମେଣ୍ଟ ହେଡ୍ ଆପଣଙ୍କ ଉପରେ ଭାରି ଅସନ୍ତୁଷ୍ଟ । ସେ ଆପଣଙ୍କ ବିରୋଧରେ ଫାଲେ ଲେଖିଛନ୍ତି । ଆପଣଙ୍କ ବିରୋଧରେ ଇନ୍‌ସବ୍‌ଅର୍ଡ଼ିନେସନ୍ ଚାର୍ଜ ବି ଆଣିଛନ୍ତି । ତାଙ୍କର ଲେଖା ଦେଖି ଡି.ପି.ଆଇ. ଆପଣଙ୍କୁ ବଲାଙ୍ଗୀର ବଦଳି କରିଛନ୍ତି । ସେକ୍ରେଟେରୀ ମଧ୍ୟ 'ଓ କେ' କରିଛନ୍ତି । କିନ୍ତୁ ଦି'ଜଣଯାକ ଦେଖି ନାହାନ୍ତି, ହେଡ୍ ଯାହା ଲେଖିଛନ୍ତି ତାହା କେତେଦୂର ସତ୍ୟ ବା ଯୁକ୍ତିଯୁକ୍ତ ।"

"ଆପଣ କ'ଣ ହେଡ଼ଙ୍କ କଥାକୁ ମୋଟେ ମାନନ୍ତିନି ରେଖାଦେବୀ ? ସେ ଯାହା କହନ୍ତି, ଆପଣ କାଳେ ତା'ର ଓଲଟା କରନ୍ତି ?"

"ନାହିଁ ଆଜ୍ଞା, ତାହା ଠିକ୍ ନୁହେଁ । ଆପଣ କ'ଣ ଡକ୍ଟର ରାଉତରାୟଙ୍କୁ ଜାଣନ୍ତି ନି ? ସେ ତ ଆଡ଼ପାଗଳଆ ଲୋକ । ବର୍ତ୍ତମାନ କହୁଥିବେ ଗୋଟିଏ କଥା, ପର-ମୁହୂର୍ତ୍ତରେ ଆଉ ଏକ କଥା । ସେ ବା କେତେ ସମସ୍ତ ଡିପାର୍ଟମେଣ୍ଟରେ ଥାନ୍ତି ? ସବୁବେଳେ ତ କଚେରୀରେ । ସେ ବର୍ତ୍ତମାନ ଆପଣଙ୍କୁ ଗୋଟିଏ କଥା କହୁଥିବେ କରିବା ପାଇଁ, ଆପଣ କରି ସାରିଲେ କହିବେ, ତୁମକୁ ସେମିତି କରିବାକୁ କିଏ କହିଲା ? ତାଙ୍କର ମୋଟେ ମନେ ନଥିବ, କିଛି ସମୟ ତଳେ ସେ କ'ଣ କହିଥିଲେ ! ମୁଁ ଜାଣେ ସେ ତ ଆଡ଼ପାଗଳଆ ଲୋକ, ତେଣୁ ଯେଉଁଟା ଉଚିତ ମନେକରେ ତାହା ହିଁ କରେ । ସେ ଏଥିରେ ରାଗିଯାଇ ମୋ ବିରୋଧରେ କେତେ କ'ଣ ଲେଖିଥିବେ ।"

"ହଁ, ସେହିଭଳିଆ ଜଣାପଡ଼ୁଛି । ରେଭେନ୍‌ସା କଲେଜ ପ୍ରିନ୍‌ସିପାଲ ତାଙ୍କ ଉପରେ ଖୁସି ନୁହଁନ୍ତି । ତାଙ୍କୁ ସେହି ବିଭାଗରୁ ଅନ୍ୟତ୍ର ନେଇଯିବା ପାଇଁ ସରକାରଙ୍କୁ ଲେଖିଛନ୍ତି । ପ୍ରିନ୍‌ସିପାଲଙ୍କ ମତ—ତାଙ୍କୁ ସେଠୁ ନ ନେଲେ ସେ ଡିପାର୍ଟମେଣ୍ଟରେ ନାନା ବିଭ୍ରାଟ କରି ବସିବେ । ଯେଉଁଲୋକ ଡିପାର୍ଟମେଣ୍ଟରେ ରହନ୍ତି ନି, ତାଙ୍କୁ ହେଡ୍ କରି କି ଲାଭ ?"

"ଡକ୍ଟର ରାଉତରାୟ ବୁଢ଼ାଲୋକ, ତାଙ୍କ ସ୍କୁଲର ଆଉ ମାତ୍ର ବର୍ଷଟାଏ ବାକି । ତାଙ୍କୁ ଏ ବୟସରେ ଅବା କେଉଁଠିକୁ ବଦଳି କରିବେ ? ତେଣୁ ଡି.ପି.ଆଇ. ଭାବିଚନ୍ତି ଆପଣଙ୍କୁ ବଦଳି କରିଦେଲେ । କିନ୍ତୁ ଡି.ପି.ଆଇ.ଙ୍କର ଏହି ସିଦ୍ଧାନ୍ତ ଠିକ୍ ହୋଇନି ବୋଲି ମୋତେ ଜଣାପଡ଼ୁଛି । ସେକ୍ରେଟେରୀ ବି କେମିତି ଓକେ କଲେ, ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।

"ଆପଣ କ'ଣ ରେଭେନସା କଲେଜରେ ରହିବାକୁ ଚାହୁଁଛନ୍ତି ରେଖାଦେବୀ ?"

"ସିଏ ଯଦି ରହିବେ, ମୋତେ ରଖନ୍ତୁନି ଆଜ୍ଞା । ମୋତେ ଆଉ କେଉଁଠିକି—"

"ହେଉ, ମୁଁ ଡି.ପି.ଆଇ. ଓ ସେକ୍ରେଟେରୀଙ୍କୁ ଡକାଉଛି । ସେମାନଙ୍କ ସହିତ ଆଲୋଚନା କରି ଯାହା ଉଚିତ ହେବ—କରିବି ।"

"ହେଉ, ତେବେ ମୁଁ ଆସୁଛି ଆଜ୍ଞା । ଏତକ କହି ନମସ୍କାର ଜଣାଇ ବାହାରି ଯାଉଥିଲେ ରେଖାଦେବୀ । ଦେବସ୍ନାନବାବୁ ହଠାତ୍ ପଛରୁ ଡାକି ପଚାରିଲେ, "ଆପଣଙ୍କୁ ଶୈଳବାଳା ମହିଳା କଲେଜକୁ ପ୍ରିନ୍‌ସିପାଲ ଭାବରେ ବଦଳି କଲେ ଆପଣଙ୍କର କିଛି ଅସୁବିଧା ହେବନି ତ ? ଆପଣ କଟକରେ ରହିପାରିବେ ।"

"ଅସୁବିଧା ହେବନି ଆଜ୍ଞା, ଚଳିବ । ହେଲେ, ତାହା ତ ଏକାଜଛାରେ । ଆପଣଙ୍କ ଛ'ବର୍ଷିଆ ଆଇନ୍ ?"

"ସେଥିପାଇଁ ଆପଣ ଚିନ୍ତିତ କାହିଁକି ? ସେକଥା କ'ଣ ମୁଁ ବୁଝିବିନି ?"

ରେଖାଦେବୀ ଚାଲି ଯାଇଛନ୍ତି କି ନାହିଁ, ଦେବସ୍ନାନବାବୁ ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ଡାକି ରେଖାଦେବୀ ଓ ଡ଼କ୍ଟର ରାଉତରାୟଙ୍କ ଗୁପ୍ତ ପଞ୍ଜିକା ରିପୋର୍ଟ ଆଦି ମଗାଇ ଆଣିବାପାଇଁ କହି ଉପରଓଳି ପାଞ୍ଚଟାବେଳକୁ ଡି.ପି.ଆଇ. ଓ ସେକ୍ରେଟେରୀଙ୍କୁ ଆସିବା ପାଇଁ ଖବର ପଠାଇଦେବା ପାଇଁ କହିଲେ ।

× × × ×

କ'ଣ ମିଷ୍ଟର ସଲିମ୍, ରେଖାଦେବୀ ରେଭେନସା କଲେଜର ପଦାର୍ଥବିଜ୍ଞାନ ବିଭାଗରେ ଗବେଷଣା ଆଦି କରାଉଛନ୍ତି, ବହୁ ଛାତ୍ର-ଛାତ୍ରୀଙ୍କୁ ସେ ପିଏଇଚ୍.ଡ଼ି. ପାଇବାରେ ସାହାଯ୍ୟ କରିଛନ୍ତି। ଭଲ ପଢ଼ାନ୍ତି ବୋଲି ତାଙ୍କର ସୁନାମ ଅଛି। ତାଙ୍କର ପ୍ରତିବର୍ଷ ବହୁ ଗବେଷଣା-ପ୍ରବନ୍ଧ ଦେଶ ବିଦେଶର ପତ୍ର-ପତ୍ରିକାରେ ପ୍ରକାଶ ପାଉଛି। ତାଙ୍କରିଯୋଗୁଁ ରେଭେନ୍ସା କଲେଜ ପଦାର୍ଥବିଜ୍ଞାନ ବିଭାଗର ସୁନାମ ସାରା ଭାରତବର୍ଷରେ ଅଛି, ତାଙ୍କୁ ସେଠୁ ବଲାଙ୍ଗୀର ପଠାଇଦେବାର ଉଦ୍ଦେଶ୍ୟ ?"

"ସେ ସେଠାକୁ ପ୍ରମୋସନରେ ଯାଉଛନ୍ତି ସାର୍।"

"ତାଙ୍କୁ କ'ଣ କଟକରେ ରଖି ପ୍ରମୋସନ ଦିଆଯାଇପାରି ନଥାନ୍ତା ?"

"ହଁ, ଦିଆଯାଇପାରିଥାନ୍ତା, କିନ୍ତୁ ସେ ଏହି ଜିଲ୍ଲାରେ ଛ'ବର୍ଷରୁ ଅଧିକକାଳ ରହିଲେଣି।"

"ତାଙ୍କୁ ରେଭେନ୍ସା କଲେଜ ପଦାର୍ଥବିଜ୍ଞାନ ବିଭାଗରେ ପ୍ରୋଫେସର କଲେ କ୍ଷତି କ'ଣ ?"

ଡ଼କ୍ଟର ରାଉତରାୟଙ୍କୁ ତା'ହେଲେ ହଟାଇବାକୁ ପଡ଼ିବ। ସେ ବୃଢ଼ାଲୋକ, ବର୍ତ୍ତମାନ ଏ ବୟସରେ କଟକରୁ ବଦଳି ହେଲେ ଅସୁବିଧାରେ ପଡ଼ିଯିବେ। ତାଙ୍କ ପେନ୍ସନ୍ କାଗଜପତ୍ର ଠିକ୍ କରି ପାରିବେନି। ସେଥିପାଇଁ ମୁଁ ତାଙ୍କୁ ଡିଷ୍ଟର୍ବ୍ କରିବାକୁ ଚାହିଁଲିନି। ଡି.ପି.ଆଇ.ଙ୍କ ପ୍ରସ୍ତାବରେ ଓକେ କଲି।"

"ତାଙ୍କୁ ଯଦି ରେଭେନସା କଲେଜରୁ ଶୈଳବାଳା ମହିଳା କଲେଜକୁ ବଦଳି କରାଯାଏ, ଅସୁବିଧା କ'ଣ ହେବ ?" ଦେବସ୍ମାନବାବୁ ପଚାରିଲେ।

"ସେଠାରେ ତ ପ୍ରୋଫେସର ପୋଷ୍ଟ ନାହିଁ।"

"ନଥାଉ, ସେ ତାଙ୍କ ପୋଷ୍ଟ ନେଇ ସେଠାକୁ ଚାଲିଯିବେ।"

"ଏହା କ'ଣ ଅସୁନ୍ଦର ଦିଶିବନି ଆଜ୍ଞା ? ରେଭେନ୍ସା କଲେଜରୁ ପୁଣି ଶୈଳବାଳା ମହିଳା କଲେଜ ?"

"କାହିଁକି, ଏଥିପୂର୍ବରୁ ଏଭଳି ଏକାଧିକ ଘଟଣା ରେଭେନସା କଲେଜରେ ତ ଘଟିଛି। ବହୁ ବରିଷ୍ଠ ପ୍ରୋଫେସର ରେଭେନ୍ସା କଲେଜରୁ ଶୈଳବାଳାକୁ ବଦଳି ହୋଇଛନ୍ତି। ସେଠାରୁ ସେମାନେ ଅବସର ନେଇଛନ୍ତି। କେହି କିଛି ତ ଭାବି ନାହାନ୍ତି। ବର୍ତ୍ତମାନ କଲେ ଭାବିବେ କାହିଁକି ? ଡ଼କ୍ଟର ରାଉତରାୟ ରେଭେନ୍ସାରେ ରହି ଠିକ୍ ଭାବରେ ଡିପାର୍ଟମେଣ୍ଟ ସମ୍ଭାଳି ପାରୁନାହାନ୍ତି। ରେଭେନ୍ସା କଲେଜ ପ୍ରିନସିପାଲ ତ ସେଇଆ ଚାହାଁନ୍ତି।"

"ତା'ହେଲେ ଡ଼କ୍ଟର ରାଉତରାୟଙ୍କୁ ଶୈଳବାଳା କଲେଜକୁ ବଦଳି କରି ରେଖାଦେବୀଙ୍କୁ କ'ଣ ରେଭେନ୍ସାରେ ହେଡ୍ କରି ରଖିବାକୁ ଆପଣ କହୁଛନ୍ତି ?"

"ମୋ ମତରେ ତାହାହିଁ ସବୁଠାରୁ ଭଲ ହେବ, ସେଥିପାଇଁ ସେ ଖୁବ୍ ଯୋଗ୍ୟ । ତାଙ୍କୁ ଏଡ଼ହକ୍ ପ୍ରୋଫେସର କରିବା ପାଇଁ ଯାହା ଯାହା କରିବା ଦରକାର, ଆପଣ କରାଇନିଅନ୍ତୁ । ସେ ବହୁଦିନ ହେଲା ରିଡ଼ର ପଦରେ ରହିଲେଣି । ତାଙ୍କର ପ୍ରୋଫେସର ପଦବୀ ଡେରିଦିନ ହେଲା ଡ୍ୟୁ ହେଲାଣି ।"

"ହେଉ ଆଜ୍ଞା, ମୁଁ ତାହା ହିଁ କରୁଛି ।"

"ଦେଖନ୍ତୁ, ଆଜ ଯେମିତ ନୋଟିଫିକେସନ ହୁଏ ।"

"ହେଉ ଆଜ୍ଞା ।"

"ଡ଼ି.ପି.ଆଇ. କ'ଣ ହେଡ଼କ୍ୱାର୍ଟରରେ ନାହାନ୍ତି କି ? ସେ କାହିଁକି ଆସିଲେନି ? ଆମ ଡ଼ିସିସନ ସେ ତ ଜାଣିବା କଥା ।"

"ଡ଼ି.ପି.ଆଇ. ଛୁଟିରେ ଅଛନ୍ତି ଆଜ୍ଞା । ତାଙ୍କୁ ଜ୍ୱର ।"

"କ'ଣ ସାଧାରଣ ଜ୍ୱର ? ମୁଁ କେମିତ ଜାଣିପାରିଲିନି ? ହେଉ, ତାଙ୍କୁ ଆମ ଡ଼ିସିସନ ଫୋନରେ ଜଣାଇଦେବେ ।"

× × × ×

"ଶାନ୍ତି, ଶାନ୍ତି, କୁଆଡ଼େ ଗଲ ।" ଶାନ୍ତିଙ୍କୁ ଡ଼ାକି ଡ଼ାକି ଦେବସ୍ମିନବାବୁ ଘର ଭିତରକୁ ଚାଲି ଆସିଲେ ।

ଶାନ୍ତି ପିଲାଦୁଇଟିଙ୍କୁ ପଢ଼ାଉଥିଲା । ସ୍ୱାମୀଙ୍କର ଡ଼ାକ ଶୁଣି ତାଙ୍କ ପାଖକୁ ଚାଲି ଆସି କହିଲା, "ହଁ, କ'ଣ କି ?"

"ତୁମେ ଜାଣିଛ ଶାନ୍ତି, ବାପାଙ୍କୁ କାଲେ ଜ୍ୱର ହୋଇଛି ।"

"ତୁମକୁ କିଏ କହିଲା ?"

"ସେକ୍ରେଟେରୀ କହୁଥିଲେ । ବାପା ଆଜ ଛୁଟିରେ ଅଛନ୍ତି । ସେଥିପାଇଁ ଏଠା ମିଟିଂକୁ ଆସି ପାରିଲେନି ।"

"କାହିଁ, ବୋଉତ ମୋତେ ଫୋନ୍ କରି ନାହାନ୍ତି ! ବାପାଙ୍କୁ ସାଧାରଣ ଜ୍ୱର ହୋଇଥିବ ବୋଧେ । ନଚେତ୍ ବୋଉ ମୋତେ ନିଶ୍ଚୟ ଫୋନ୍ କରିଥାନ୍ତେ ।

"ଯେଉଁ ଜ୍ୱର ହେଉ, ଆମର ଦେଖି ଆସିବା କଥା । ତୁମେ ବର୍ତ୍ତମାନ ଗଲ ଶାନ୍ତି, ଦେଖି ଆସିବ ବାପାଙ୍କ ଦେହ କେମିତ ଅଛି ।"

"ତୁମେ କ'ଣ ଯିବନି ?"

"ମୁଁ ଯାଇଥାନ୍ତି ଯେ, ବର୍ତ୍ତମାନ କେବିନେଟ୍ ମିଟିଂ ଅଛି । ମୋତେ ସେଠାକୁ ଯିବାକୁ ପଡ଼ିବ । ତୁମେ ବୁଲି ଆସିବ, ମୋ ଅସୁବିଧା କଥା ବୋଉଙ୍କୁ କହିଦେବ । କହିବ ପରେ ମୁଁ ସୁବିଧାଦେଖି ଯିବି ।"

"ହେଉ, ତାହାହେଲେ ମୁଁ ଯାଉଛି ।"

"ତୁମେ ଯିବ କେଉଁଥିରେ ?"

"କାହିଁକି, ଶକ୍‌ସାରେ ଚାଲିଯିବି । ପିଲା ଦୁଇଟି ତ ସାଙ୍ଗରେ ଅଛନ୍ତି । ଅସୁବିଧା କ'ଣ ?"

## ସତଚାଳିଶ

ଭୁବନେଶ୍ୱର ସେକ୍ରେଟେରିଏଟରେ ଶିକ୍ଷାମନ୍ତ୍ରୀଙ୍କ ଆଲୋଚନା-କକ୍ଷ । ଓଡ଼ିଶାର ସବୁ ବିଶ୍ୱବିଦ୍ୟାଳୟର କୁଳପତିମାନେ ଶିକ୍ଷାମନ୍ତ୍ରୀଙ୍କ ସହିତ ବିଶ୍ୱବିଦ୍ୟାଳୟ ପରିଚାଳନା ନେଇ ଆଲୋଚନା ପାଇଁ ଏକତ୍ରିତ ହୋଇଥାନ୍ତି । ଆଲୋଚନା ଆରମ୍ଭ କରିବାକୁ ଯାଇ ଶିକ୍ଷାମନ୍ତ୍ରୀ କହିଲେ, "ଦେଖନ୍ତୁ ଆଜ୍ଞା, ଦେଶର ଯୋଗ୍ୟତମ ବ୍ୟକ୍ତିମାନଙ୍କୁ ବାଛି ଆମେ କୁଳପତି ଆସନରେ ବସାଇଛୁ । ଆପଣମାନେ ଥାଉଁ ଥାଉଁ ଆମ ଶିକ୍ଷା ଯଦି ନିମ୍ନାଭିମୁଖୀ ହେଲା, ଅଫିସ୍ ପରିଚାଳନା ମନମୁଖି ଚାଲିଲା, ଛାତ୍ର ଅଶାନ୍ତି ସବୁଦିନେ ଲାଗି ରହିଲା, ତେବେ ଦେଶର ସାଧାରଣ ଲୋକେ ଆପଣମାନଙ୍କୁ କେଉଁ ଆଖିରେ ଦେଖିବେ, ମୁଁ ଭାବିପାରୁନି । ଏଠି ତ ଶିକ୍ଷା ବିଭାଗର ସେକ୍ରେଟେରି ଅଛନ୍ତି, ଡି.ପି.ଆଇ. ଅଛନ୍ତି, ଆପଣମାନେ କହନ୍ତୁ, କ'ଣ କଲେ ଏହିସବୁ ଅସୁବିଧା ଦୂର ହୋଇ ବିଶ୍ୱବିଦ୍ୟାଳୟମାନଙ୍କରେ ପୂର୍ବ ଶୃଙ୍ଖଳା ଫେରି ଆସିପାରିବ । ମୁଁ ବଡ଼ ବ୍ୟଥିତ, ଆମ ବିଶ୍ୱବିଦ୍ୟାଳୟ ଶାସନ ଦିନକୁ ଦିନ ତଳକୁ ଯାଉଛି ।"

"ଆପଣ ଯେଉଁ ଛାତ୍ର-ଅଶାନ୍ତି କଥା କହୁଛନ୍ତି" ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ଘୋଷ ଉଠି ଆରମ୍ଭ କଲେ— "ତାହା ଆମ୍ଭମାନଙ୍କ ହାତରେ ନାହିଁ । ଛାତ୍ରମାନେ ସର୍ବଦା ବାହାର ରାଜନୀତିଜ୍ଞମାନଙ୍କ ଦ୍ୱାରା ପରିଚାଳିତ ହେଉଛନ୍ତି । ସେମାନଙ୍କ ପଛଆଡ଼େ ବିଭିନ୍ନ ରାଜନୈତିକ ଦଳ କାର୍ଯ୍ୟ କରୁଛନ୍ତି । ସେମାନେ ଯେତେବେଳେ ଚାହୁଁଛନ୍ତି, ସେତେବେଳେ ଧର୍ମଘଟ ଆଦି ଛାତ୍ର-ଅଶାନ୍ତି ସୃଷ୍ଟି କରୁଛନ୍ତି । ରାଜନୀତିଜ୍ଞମାନେ ଯଦି ଛାତ୍ରମାନଙ୍କୁ ସବୁକଥାରେ ହାତବାରିସି ନ କରନ୍ତେ, ତେବେ ମୋ ମତରେ ଛାତ୍ର-ଅଶାନ୍ତି ସବୁଦିନ ପାଇଁ ଦୂର ହୋଇପାରନ୍ତା ।"

ହସିଲେ ଦେବସ୍ମାନବାବୁ । "ଆପଣମାନଙ୍କ ଯୁକ୍ତି ଯଥାର୍ଥ, କିନ୍ତୁ ବର୍ତ୍ତମାନର ପରିସ୍ଥିତି ପାଇଁ ନୁହେଁ । ଆପଣମାନଙ୍କର ଆଶା କରିବା ଭୁଲ ଯେ, ଛାତ୍ରମାନେ ରାଜନୀତିଜ୍ଞମାନଙ୍କ ଦ୍ୱାରା ପ୍ରଭାବିତ ହେବେ ନାହିଁ । ତା କେମିତି ହେବ ? ଆମ ସମାଜରେ ବିଭିନ୍ନ ପ୍ରକାର ଲୋକ ଅଛନ୍ତି, ଛାତ୍ରମାନେ ସେମାନଙ୍କ ସଂସ୍ପର୍ଶରେ ଆସୁଛନ୍ତି । ତେଣୁ ବିଭିନ୍ନ ପ୍ରକାର ପ୍ରଭାବ ଛାତ୍ରମାନଙ୍କ ଉପରେ ଯେ ପଡ଼ିବ, ତାହାକୁ ବାଦ୍ ଦିଆଯାଇ ନପାରେ । ତା'ଛଡ଼ା ଆପଣଙ୍କ ଅଧ୍ୟାପକମାନଙ୍କ ପ୍ରଭାବ ସେମାନଙ୍କ ଉପରେ କାହିଁକି ପଡୁନି, ସେଇଟାକୁ

ମଧ୍ୟ ବିଗ୍ଭର କରିବାକୁ ପଡ଼ିବ । ଛାତ୍ରମାନେ ତ ଅଧ୍ୟାପକମାନଙ୍କର ଅଧିକ ସଂସ୍ପର୍ଶରେ ଆସୁଛନ୍ତି, ସେମାନଙ୍କ ପ୍ରଭାବ ଛାତ୍ରମାନଙ୍କ ଉପରେ ନ ପଡ଼ିବା ଦୁର୍ଭାଗ୍ୟର କଥା । ଅଧ୍ୟାପକମାନେ ଛାତ୍ରମାନଙ୍କୁ ନେତୃତ୍ୱ ଦେଇପାରୁ ନଥିବାରୁ, ସେମାନେ ବାହାର ଲୋକଙ୍କ ନେତୃତ୍ୱକୁ ବାଧ୍ୟ ହୋଇ ଗ୍ରହଣ କରୁଛନ୍ତି । ବଡ଼ ଦୁଃଖର କଥା, ବିଶ୍ୱବିଦ୍ୟାଳୟମାନଙ୍କରେ ନେତୃତ୍ୱ ଦେଲାଭଳି ଅଧ୍ୟାପକଙ୍କ ସଂଖ୍ୟା ଦିନକୁଦିନ କମିବାରେ ଲାଗିଛି । ଅଧ୍ୟାପକମାନେ ଛାତ୍ରମାନଙ୍କ ବିଭିନ୍ନ ସମସ୍ୟା ପ୍ରତି ଉଦାସୀନ ରହୁଛନ୍ତି । ସେମାନେ ଭାବୁଛନ୍ତି, ଛାତ୍ର-ମାନଙ୍କ ସମସ୍ୟା ପ୍ରତି ସେମାନଙ୍କର ମୁଣ୍ଡ ଖେଳାଇବା ଦରକାର ନାହିଁ । ଅଧ୍ୟାପକମାନେ ଯଦି ଛାତ୍ରମାନଙ୍କୁ ନିଜର ବୋଲି ଭାବୁଥାଆନ୍ତେ, ସେମାନେ କ'ଣ ଏଭଳି ଉଦାସୀନ ରହିପାରନ୍ତେ ? ଅଧ୍ୟାପକମାନେ ଭାବୁଛନ୍ତି, ସେମାନଙ୍କର କାମ ହେଲା କେବଳ ଅଧ୍ୟାପନା । ସେତିକ କରିଦେଲେ ସେମାନଙ୍କର କାମ ଶେଷ । ଏହା ପ୍ରକୃତିରେ ଠିକ୍ ନୁହେଁ । ଛାତ୍ରମାନଙ୍କ ସମସ୍ୟା ପ୍ରତି ମନୋନିବେଶ କରି ସେମାନଙ୍କୁ ଦିଗ୍‌ଦର୍ଶନ ଦେବା ଅଧ୍ୟାପକ-ମାନଙ୍କର ଆଉ ଏକ କର୍ତ୍ତବ୍ୟ । ସେହିଭଳି ଆଦର୍ଶ ଅଧ୍ୟାପକଙ୍କ ସଂଖ୍ୟା ଯେମିତି ବଢ଼ିବ, ସେଆଡ଼କୁ ଆପଣମାନେ ଦୃଷ୍ଟି ଦେବେ ବୋଲି ମୋର ଆଶା ।"

ଆଉ ଗୋଟିଏ କଥା, ବିଶ୍ୱବିଦ୍ୟାଳୟମାନଙ୍କରେ ଅଫିସ୍-ପରିଚାଳନା ଅତି ଖରାପ । ତାହାର ଉନ୍ନତି କରିବାପାଇଁ ଆପଣମାନେ କି କି ଯୋଜନା କରିଛନ୍ତି, ଜାଣିଲେ ଖୁସି ହେବି ।

କୁଳପତିମାନେ ଦେବସ୍ନାନବାବୁଙ୍କର ପ୍ରଶ୍ନରେ ଚୁପ୍ । ସତେ ଯେମିତି ସେମାନଙ୍କର ସେଆଡ଼କୁ ମୋଟେ ନଜର ନାହିଁ ।

ମୁହଁରେ ଟିକିଏ ବିରକ୍ତିଭାବ ଫୁଟାଇ ଦେବସ୍ନାନବାବୁ କହିଲେ, "ମୁଁ ଶୁଣି ଆଶ୍ଚର୍ଯ୍ୟ ହେଉଛି, ଆପଣମାନଙ୍କ ଅଫିସ୍‌ରେ ଅଫିସରମାନେ, କିରାଣୀମାନେ ଠିକ୍ ସମୟରେ ଅଫିସ୍‌କୁ ନ ଆସି ମନଇଚ୍ଛା ଆସନ୍ତି । ଉପର ଅଫିସ୍‌ରୁ ଆସୁଥିବା ଚିଠିର ଉତ୍ତର ବର୍ଷ ବର୍ଷ ଧରି ଯାଇପାରେନି । ଗୋଟିଏ ବିଭାଗ ପାଇଁ ନିର୍ଦ୍ଦିଷ୍ଟ ଥିବା ଟଙ୍କା ଅନ୍ୟ ବିଭାଗରେ ମନମୁଖି ଭାବରେ ଖର୍ଚ୍ଚ କରି ଦିଆଯାଏ । ପୁରାପୁରି ବିଶୃଙ୍ଖଳା । ସତେ ଯେମିତି ବିଶ୍ୱବିଦ୍ୟାଳୟ-ମାନଙ୍କରେ ଶାସନ ବୋଲି କିଛି ନାହିଁ ।"

"ଆମ ହାତରେ କଅଣ ଅଛି ଆଜ୍ଞା ? ସେମାନଙ୍କ ସଂଘ ତ ଏସବୁର ମୂଳରେ । ସେମାନଙ୍କ ସଂଘ ସେମାନଙ୍କୁ ଯେମିତି ଭାବରେ ନିର୍ଦ୍ଦେଶ ଦେଉଛି, ସେମାନେ ସେମିତି କରୁଛନ୍ତି । ଆଜି କଲମ ଛାଡ଼, କାଲି ଅଫିସ୍ ଛାଡ଼, ପଅରିଦିନକୁ ଅନଶନ, ତା ପରଦିନକୁ ଘେରାଉ । ଆମେ ଏହା ଭିତରେ ଯେ କ'ଣ କରିପାରିବୁ ଭାବିପାରୁନୁ ।" ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ପଟେଲ କହିଲେ ।

"ଏହାକୁ ଆପଣମାନେ ଯଦି ନ ଦେଖିବେ, ଆପଣମାନଙ୍କ ପାଇଁ କ'ଣ ଆଉ କିଏ ଦେଖିବ ? ଏ'ଟା ଆପଣମାନଙ୍କ ସମସ୍ୟା । ଏହାର ସମାଧାନ ଆପଣମାନଙ୍କୁ ହିଁ କରିବାକୁ

ପଡ଼ିବ । ଏହି ବିଶ୍ୱବିଦ୍ୟାଳୟ ପ୍ରଶାସନକୁ ଏମିତି ଲଗାମଛଡ଼ା କରିଦେଲେ ଚଳିବନି । ଏହାର ସମାଧାନ ପାଇଁ ଆପଣମାନେ କ'ଣ ଚିନ୍ତା କରୁଛନ୍ତି ଦୟାକରି କହନ୍ତୁ ?"

କୁଳପତିମାନେ ସମସ୍ତେ ଚୁପ୍ । ସତେ ଯେମିତି ସେମାନେ କ'ଣ ଉତ୍ତରଦେବେ ଭାବିପାରୁ ନାହାନ୍ତି ।

"ଦେଖନ୍ତୁ" ଦେବସ୍ଥାନବାବୁ ଆରମ୍ଭ କଲେ, "ଆପଣମାନଙ୍କ ବିଶ୍ୱବିଦ୍ୟାଳୟରେ ଯେଉଁ ଛାତ୍ର ବିଶୃଙ୍ଖଳା, ଅଫିସ୍ ବିଶୃଙ୍ଖଳା, ଅଧ୍ୟାପକମାନଙ୍କ ଭିତରେ ବିଶୃଙ୍ଖଳା ସୃଷ୍ଟି ହୋଇଛି, ତା'ର ମୂଳରେ ଅଛନ୍ତି ବିଶ୍ୱବିଦ୍ୟାଳୟର କେତେକ ମୁଷ୍ଟିମେୟ ଲୋକ । ସେମାନେ ଏହିସବୁ ଗୋଳମାଳ ପାଇଁ ଅନେକାଂଶରେ ଦାୟୀ । ସେମାନେ ଗୋଟିଏ ସ୍ଥାନରେ ବହୁଦିନ ଧରି ରହିଯିବା ଦ୍ୱାରା ନାନା ପ୍ରକାର ଦଳ କରି ଏହିସବୁ କାଣ୍ଡ ଭିଆଉଛନ୍ତି ।

ମୁଁ ଭାବୁଛି ସରକାରୀ ଅଫିସ୍‌ମାନଙ୍କରେ ଯେମିତି ବଦଳି ହେଉଛି, ଆପଣମାନଙ୍କ ବିଶ୍ୱବିଦ୍ୟାଳୟ ଭିତରେ ସେମିତି ବଦଳି ହେବା ଆବଶ୍ୟକ । ଗୋଟିଏ ବିଶ୍ୱବିଦ୍ୟାଳୟର କିରାଣୀ ଅନ୍ୟ ବିଶ୍ୱବିଦ୍ୟାଳୟକୁ ବଦଳି ହେବ, ଗୋଟିଏ ବିଶ୍ୱବିଦ୍ୟାଳୟ ଅଫିସରଙ୍କର କିଛିଦିନ ପରେ ଅନ୍ୟ ଏକ ବିଶ୍ୱବିଦ୍ୟାଳୟକୁ ବଦଳି ହେବ । ଗୋଟିଏ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ଅନ୍ୟ ଏକ ବିଶ୍ୱବିଦ୍ୟାଳୟକୁ ବଦଳି ହେବେ । ତା'ହେଲେ ଗୋଳମାଳ ଅନେକ ପରିମାଣରେ କମିଯିବ । ଏହି କର୍ମଚାରୀମାନେ ଗୋଟିଏ ସ୍ଥାନରେ ବହୁଦିନ ଧରି ରହିଯିବା ଫଳରେ ଓ ସେମାନଙ୍କ ମନରେ ବଦଳିର ଭୟ ନ ଥିବାରୁ ସେମାନେ ସ୍ୱେଚ୍ଛାଚାରୀ ହୋଇ ଯାଉଛନ୍ତି ଓ ମନଇଚ୍ଛା କାମ କରୁଛନ୍ତି ।"

ଆପଣମାନେ ଯଦି ରାଜି ହୁଅନ୍ତି, ତେବେ ପ୍ରତି ପାଞ୍ଚବର୍ଷରେ ବିଶ୍ୱବିଦ୍ୟାଳୟ ବିଶ୍ୱବିଦ୍ୟାଳୟ ଭିତରେ ବଦଳି ପ୍ରଥାକୁ ଆରମ୍ଭ କରାଯିବ । ସେଥିପାଇଁ ବିଶ୍ୱବିଦ୍ୟାଳୟ ଆଇନକୁ ବଦଳାଇବାକୁ ଦରକାର ପଡ଼ିପାରେ । ସବୁ ବିଶ୍ୱବିଦ୍ୟାଳୟ ସମନ୍ୱୟରେ ଏକ କମିଟି ଗଢ଼ାଯିବ, ଯାହାକି ଅଧ୍ୟାପକମାନଙ୍କ ଚରିତ୍ର ପଞ୍ଜିକା, ଶିକ୍ଷା, ଗବେଷଣା ଆଦିକୁ ଜାଞ୍ଚ କରିବ । ମୁଁ ଶୁଣୁଛି, ଅଧ୍ୟାପକମାନଙ୍କର ଚରିତ୍ର ପଞ୍ଜିକା କାଲେ ଲେଖାଯାଏନି ? ଏଇଟା ବିଶେଷ ଭଲ କଥା ନୁହେଁ । ଚରିତ୍ର ପଞ୍ଜିକା ନ ଥିବାରୁ ସେମାନେ ମନମୁଖି ହୋଇ ଯାଉଛନ୍ତି । ମୁଁ ତାହାର ପ୍ରବର୍ତ୍ତନ କରିବାକୁ ଚାହେଁ ।

ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ଡକ୍ଟର ରାଓ ପଟ୍ଟନାୟକ ଉଠି କହିଲେ, "ମୁଁ ଆପଣଙ୍କ ସହିତ ଏକମତ, କିନ୍ତୁ ଏହି ବଦଳି ତାଲିକାରୁ ଅଧ୍ୟାପକମାନଙ୍କୁ ବାଦ୍ ଦିଆଯିବା ଉଚିତ ବୋଲି ମୁଁ ଭାବୁଛି । କାରଣ, ପ୍ରତି ପାଞ୍ଚବର୍ଷରେ ସେମାନେ ବଦଳି ହେଲେ ବିଶ୍ୱବିଦ୍ୟାଳୟର ଗବେଷଣାର ମାନ କମିଯିବ । ସେମାନେ ସେମାନଙ୍କ ବଦଳି ପାଇଁ ଏତେ ଚିନ୍ତିତ ହୋଇପଡ଼ିବେ ଯେ, ମନଧ୍ୟାନ ଦେଇ ଗବେଷଣା କରିପାରିବେ ନାହିଁ ।"

ହସିଲେ ଦେବସ୍ଥାନବାବୁ, "ଆପଣମାନେ ସମସ୍ତେ ଜାଣନ୍ତି ପୃଥିବୀରେ ସବୁଠାରୁ ବେଶି ଗବେଷଣା ହେଉଥିବା ଆମେରିକା ଯୁକ୍ତରାଷ୍ଟ୍ରରେ ପ୍ରତି ପାଞ୍ଚବର୍ଷରେ ଥରେ ଲେଖାଏଁ ଅଧ୍ୟାପକମାନେ ନିଯୁକ୍ତି ପାଆନ୍ତି । ସେହି ବିଶ୍ୱବିଦ୍ୟାଳୟରେ ନିଯୁକ୍ତି ପାଇବା ପୂର୍ବରୁ ବହୁତ ଅଧ୍ୟାପକ ସ୍ଥାନ ବଦଳି କରିଥାନ୍ତି । ସେମାନେ ଯଦି ପ୍ରତି ପାଞ୍ଚବର୍ଷରେ ଗୋଟିଏ ବିଶ୍ୱବିଦ୍ୟାଳୟ ଛାଡ଼ି ଅନ୍ୟ ବିଶ୍ୱବିଦ୍ୟାଳୟକୁ ଯାଇ ସେମାନଙ୍କ ଗବେଷଣାମାନ ଏତେ ଉଚ୍ଚରେ ରଖି ପାରିଛନ୍ତି, ଆମ ଅଧ୍ୟାପକମାନେ ପାରିବେନି ବୋଲି ଆପଣ ଭାବୁଛନ୍ତି କାହିଁକି ? ଆମେରିକାର ବହୁତ ନୋବେଲ ପୁରସ୍କାର ବିଜେତା ନିଜ ଜୀବନକାଳ ଭିତରେ ବହୁତ ବିଶ୍ୱବିଦ୍ୟାଳୟରେ ଚାକିରି କରିଥାନ୍ତି । ଆପଣ ପରି ସେହି ଦେଶରେ କିଛିଦିନ ପୋଷ୍ଟ ଡକ୍‌ଟରାଲ କରିଥିଲେ ? ଆପଣ କ'ଣ ଜାଣିନାହାନ୍ତି ସେ ଦେଶର ରୀତି ?"

ତା'ଛଡ଼ା ମୁଁ ଶୁଣୁଛି, କ୍ଷମା କରିବେ, ଆପଣମାନଙ୍କ ବିଶ୍ୱବିଦ୍ୟାଳୟର ଅଧ୍ୟାପକ-ମାନେ କାଳେ ଯଥାରୀତି କ୍ଲାସ୍ ନେଉ ନାହାନ୍ତି । ପିଲମାନଙ୍କ ପାଠ୍ୟକ୍ରମ ଠିକ୍ ଭାବରେ ଶେଷ ହେଉନି । ସେମାନେ ପାଠପଢ଼ା, ଗବେଷଣା ଛଡ଼ା ଅନ୍ୟ କାମରେ ନିଜ ନିଜକୁ ଏତେ ବ୍ୟସ୍ତ ରଖୁଛନ୍ତି ଯେ, ପାଠ ପଢ଼ାଇବାକୁ ବେଳ ହେଉନି । ସେମାନେ ନାନା ପ୍ରକାର ଉପାୟରେ ଯୋଗାଡ଼ କରି ଏ ବିଶ୍ୱବିଦ୍ୟାଳୟରୁ ସେ ବିଶ୍ୱବିଦ୍ୟାଳୟ ହୋଇ ପରୀକ୍ଷା, ଇଣ୍ଟରଭିଉ କାର୍ଯ୍ୟରେ ଏତେ ସମୟ ଦେଉଛନ୍ତି ଯେ, ନିଜ ପ୍ରଧାନ କର୍ତ୍ତବ୍ୟ ପାଠ ପଢ଼ାଇବାକୁ ବେଳ ପାଉ ନାହାନ୍ତି । ମୋ ମତରେ ଏଇଟା ନିହାତି ଗର୍ହିତ କଥା ।

ଏଥିପାଇଁ ମୋର ଏକମାତ୍ର ପରାମର୍ଶ, ପ୍ରତ୍ୟେକ ବିଭାଗ ପାଇଁ ଗୋଟିଏ ଗୋଟିଏ କମିଶନ ଗଢ଼ାଯିବ । ସେମାନେ ବିଭିନ୍ନ ବିଶ୍ୱବିଦ୍ୟାଳୟ ବୁଲି ଅଧ୍ୟାପକମାନଙ୍କ ଶିକ୍ଷାଦାନ, ଗବେଷଣା ଆଦିକୁ ତନଖି କରିବେ । ସେମାନଙ୍କ ରିପୋର୍ଟ ଆପଣମାନଙ୍କଠାରେ ପହଞ୍ଚିବ । ଆପଣମାନେ ଫାଙ୍କିଥିବା ଅଧ୍ୟାପକମାନଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ କରିବେ । ବିଶ୍ୱ-ବିଦ୍ୟାଳୟଗୁଡ଼ିକ ଭିତରେ ଯେଉଁ ଅଧ୍ୟାପକମାନେ ସିନିୟର, ନିରପେକ୍ଷ, ସେଇମାନେ ଏହି ତିନିଜଣିଆ କମିଶନରେ ରହିବେ । ମୁଁ ଭାବୁଛି ଏଥିରେ ଆପଣମାନଙ୍କର କାହାରି କିଛି ଆପତ୍ତି ନଥିବ ।

ଜଣେ ଦୁଇଜଣ କୁଳପତି ଏଥିରେ ଊଁ ଚୁଁ ହେଉଥିଲେ । ଅନ୍ୟମାନେ କେହି କିଛି ନ କହିବାରୁ ସେମାନେ ଚୁପ୍ ରହିଲେ ।

ସରକାରଙ୍କ ଉପରେ ଆପଣମାନଙ୍କ ଆକ୍ଷେପ, ସରକାରୀ ସାହାଯ୍ୟ ଯଥା ସମୟରେ ପହଞ୍ଚୁନି । ତେଣୁ ଶାସନ ପରିଚାଳନାରେ ନାନା ବ୍ୟାଘାତ ଘଟୁଛି । ମୁଁ ବର୍ତ୍ତମାନ ଡ.ପି.ଆଇ. ଓ ସେକ୍ରେଟେରୀଙ୍କୁ ପଚାରୁଛି, ଏହା କାହିଁକି ହେଉଛି ?"

ଡ.ପି.ଆଇ. ଉଠି କହିଲେ, "ସରକାର ଯେଉଁ ଗ୍ରାଣ୍ଟ ଦେଉଛନ୍ତି, ତାହା ଠିକ୍ ଭାବରେ ଖରଚ ହୋଇ ତହିଁର ରିପୋର୍ଟ ଠିକ୍ ସମୟରେ ପହଞ୍ଚୁ ନ ଥିବାରୁ ପର ପର ଗ୍ରାଣ୍ଟ୍ ଛଡ଼ାଯାଇ ପାରୁନି ।"

କୁଳପତିମାନଙ୍କ ଆଡ଼କୁ ଅନାଇ କହିଲେ ଦେବସ୍ଥାନବାବୁ ଏକ ବିଦ୍ରୂପାତ୍ମକ ହସ । "ମୁଁ ଦେଖୁଛି, ଆପଣମାନେ ଆପଣମାନଙ୍କ କର୍ତ୍ତବ୍ୟରେ ହେଳା କରୁଛନ୍ତି । ଆପଣମାନଙ୍କୁ ଏହି କଥା କେଉଁପରି କହିଲାବେଳକୁ ମୋତେ ଦୁଃଖ ଲାଗୁଛି । ଆପଣମାନେ କୁଳପତି ଭାବରେ ନିଜ ନିଜ ଦାୟିତ୍ୱ ଯଥାଯଥ ତୁଲାଇପାରୁ ନ ଥିବାରୁ ଏହିସବୁ ବିଶୃଙ୍ଖଳା ଘଟୁଛି ।"

ବିଗତ ସରକାର ଆପଣମାନଙ୍କ କାର୍ଯ୍ୟରେ ଅସନ୍ତୁଷ୍ଟ ହୋଇ ଠିକ୍ କରିଥିଲେ ଆପଣମାନଙ୍କୁ ବିଦାୟ ଦେଇ ଆପଣମାନଙ୍କ ସ୍ଥାନରେ ବ୍ୟୁରୋକ୍ରାଟ୍ ଆଇ.ଏ.ଏସ୍.ମାନଙ୍କୁ ନିଯୁକ୍ତି ଦେବେ ବୋଲି । ମୁଁ ଅବଶ୍ୟ ସେହି ସିଦ୍ଧାନ୍ତକୁ ଗ୍ରହଣ ନ କରି କାଟି ଦେଇଛି । ତେବେ ଆପଣମାନଙ୍କୁ ମୋର ବିନମ୍ର ନିବେଦନ, ବିଶ୍ୱବିଦ୍ୟାଳୟର ଶାସନକୁ ଶୃଙ୍ଖଳିତ କରିବା ପାଇଁ ଆପଣମାନେ ଚେଷ୍ଟା କରନ୍ତୁ । ଆପଣମାନେ ଯଦି ଆପଣମାନଙ୍କ କାର୍ଯ୍ୟ ତୁଲାଇ ନ ପାରନ୍ତି, ତେବେ ତାହା ତୁଲାଇବା ପାଇଁ କ'ଣ ବାହାରୁ ଲୋକ ଆସିବେ ?

ଗତ ଦୁଇବର୍ଷର ଛାତ୍ର-ସମସ୍ୟାକୁ ମୁଁ ଅନୁଧ୍ୟାନ କରି ଦେଖିଛି, କୁଳପତିମାନଙ୍କ ଅବହେଳାରୁ ଏହି ଛାତ୍ର ଅଶାନ୍ତି ଉପୁଜିଛି । ବହୁ କୁଳପତିଙ୍କ ଦାୟିତ୍ୱହୀନତା ବହୁ ଛାତ୍ର-ଧର୍ମଘଟକୁ ଡାକି ଆଣିଛି । ଆପଣମାନେ ରାଜ୍ୟର ଏକ ଗୁରୁତ୍ୱପୂର୍ଣ୍ଣ ଓ ଦାୟିତ୍ୱପୂର୍ଣ୍ଣ ପଦବୀରେ ଥାଇ ଏଭଳି ଉଦାସୀନତା ଦେଖାଇଲେ ଏହା ଆମ ରାଜ୍ୟର ଦୁର୍ଭାଗ୍ୟ ବୋଲି ମଣିବାକୁ ହେବ । ମୋର ଆପଣମାନଙ୍କୁ ବିନମ୍ର ଅନୁରୋଧ, ଶାସନ ପରିଚାଳନାରେ ଯଦି କେଉଁଠି କିଛି ଅସୁବିଧା ହେଉଛି, ଆପଣମାନେ ମୋ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରନ୍ତୁ, ମୁଁ ଦେଖିବି ଯଥାଶୀଘ୍ର ସେ ଅସୁବିଧା କେମିତି ଦୂରୀଭୂତ ହେବ । ବିଶ୍ୱବିଦ୍ୟାଳୟର ପାଠପଢ଼ା, ଗବେଷଣା ଯେପରି ଅଧିକ ଉନ୍ନତ ହୁଏ, ଛାତ୍ର ଅଶାନ୍ତି ଯେମିତି ନ ହୁଏ ସେଥିପ୍ରତି ଆପଣମାନେ ଅଧିକ ଦୃଷ୍ଟି ଦେବାକୁ ମୋର ବିନମ୍ର ଅନୁରୋଧ ।

ହଁ, ଆଉ ଗୋଟିଏ କଥା । ଆମ ରାଜ୍ୟରେ ଅଧିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଚାରିଆଡ଼ୁ ଦାବି ହେଉଛି । ଏହି ଦାବି ପ୍ରତି ଆମ ସରକାର ସଚେତନ । ଉତ୍ତର ଓଡ଼ିଶାରେ ଆଉ ଗୋଟିଏ ବିଶ୍ୱବିଦ୍ୟାଳୟ ନ କଲେ ଚଳିବନି । ସେଠାକାର ଲୋକମାନେ ବହୁଦିନ ଧରି ଦାବି କରି ଆସୁଛନ୍ତି । ଏଣେ ଉତ୍କଳ ବିଶ୍ୱବିଦ୍ୟାଳୟ ଆକାର ଦୃଷ୍ଟିରୁ ସମ୍ବଲପୁର, ବ୍ରହ୍ମପୁର ଅପେକ୍ଷା ଯଥେଷ୍ଟ ବଡ଼ ହୋଇଥିବାରୁ ଏହାକୁ ଭାଙ୍ଗି ଆଉ ଦୁଇଗୋଟି ବିଶ୍ୱବିଦ୍ୟାଳୟ ସୃଷ୍ଟି କରିବା ପାଇଁ ସରକାର ଚିନ୍ତା କରୁଛନ୍ତି । ଆଜିକାଲି ଯୁଗରେ ବହୁସଂଖ୍ୟକ ଛାତ୍ର ଛାତ୍ରୀ ଥିବା ବିଶ୍ୱବିଦ୍ୟାଳୟ ପରିଚାଳନା ଦୃଷ୍ଟିରୁ ସୁବିଧାଜନକ ନୁହେଁ । ତେଣୁ ସରକାର ଚିନ୍ତା କରୁଛନ୍ତି ମୟୂରଭଞ୍ଜ ଓ ବାଲେଶ୍ୱର ଜିଲ୍ଲାକୁ ନେଇ ବ୍ୟାସକବି ଫକୀରମୋହନ ବିଶ୍ୱବିଦ୍ୟାଳୟ ଓ କଟକ ଓ ଢେଙ୍କାନାଳକୁ ନେଇ ଉତ୍କଳମଣି ଗୋପବନ୍ଧୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ । ବ୍ୟାସକବି ଫକୀରମୋହନଙ୍କ ଜନ୍ମସ୍ଥାନ ବାଲେଶ୍ୱର ହୋଇଥିବାରୁ ଏହି ବିଶ୍ୱବିଦ୍ୟାଳୟଟି ବାଲେଶ୍ୱରରେ ହିଁ ପ୍ରତିଷ୍ଠିତ

ହେବା ଉଚିତ । ଓଡ଼ିଶାର ଶିକ୍ଷା ତଥା ସଂସ୍କୃତିର ପ୍ରାଣକେନ୍ଦ୍ର କଟକ ହୋଇଥିବାରୁ ଉତ୍କଳମଣି ଗୋପବନ୍ଧୁ ବିଶ୍ୱବିଦ୍ୟାଳୟ କଟକରେ ରହିବା ଯଥାର୍ଥ ହେବ । ଭୁବନେଶ୍ୱର ଓ ପୁରୀଜିଲ୍ଲା କଲେଜମାନଙ୍କୁ ନେଇ ଉତ୍କଳ ବିଶ୍ୱବିଦ୍ୟାଳୟ ରହିବ । ଏହାକଲେ ଉତ୍କଳ ବିଶ୍ୱବିଦ୍ୟାଳୟ ଅପେକ୍ଷାକୃତ ଶ୍ରେଷ୍ଠ ହୋଇପିବ ଓ ଏହାର ପରିଚାଳନା ଆଗ ଅପେକ୍ଷା ଭଲ ହେବ । ଏହି ବିଶ୍ୱବିଦ୍ୟାଳୟର କର୍ମଚାରୀ, ଅଫିସରମାନଙ୍କଠାରୁ ଆରମ୍ଭ କରି ଅଧ୍ୟାପକ ପର୍ଯ୍ୟନ୍ତ ସମସ୍ତେ ଏହି ତିନୋଟି ବିଶ୍ୱବିଦ୍ୟାଳୟରେ ବାଣ୍ଟିହୋଇ ରହିବେ । ଆବଶ୍ୟକ ହେଉଥିବା ଅନ୍ୟ ଅଧ୍ୟାପକମାନଙ୍କୁ ନିଯୁକ୍ତ ଦିଆଯିବ । ଆସନ୍ତା ବିଧାନସଭା ଅଧିବେଶନରେ ଏ ସମ୍ପର୍କରେ ବିଶଦ ଆଲୋଚନା ହୋଇ ଆବଶ୍ୟକୀୟ ଆଇନ ପ୍ରଣୟନ କରାଯିବ । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ସହିତ ମୁଁ କିଛିଦିନ ତଳେ ଦିଲ୍ଲୀରେ ଆଲୋଚନା କରିଥିଲି । ସେମାନେ ମୋ ପ୍ରସ୍ତାବରେ ରାଜି । କାରଣ ଆୟୋଗ ବର୍ତ୍ତମାନ ଚାହୁଁଛି ଶ୍ରେଷ୍ଠ ଶ୍ରେଷ୍ଠ ବିଶ୍ୱବିଦ୍ୟାଳୟକୁ ପ୍ରୋତ୍ସାହନ ଦେବାପାଇଁ । ସେମାନଙ୍କ ମତ ବିଶ୍ୱବିଦ୍ୟାଳୟର ଆକାର କମ୍ ହେଲେ ପ୍ରଶାସନ ଭଲ ହେବ ଓ ଛାତ୍ର ସମସ୍ୟା କମିଯିବ ।

## ଅଠଚାଳିଶ

"ଦେଖନ୍ତୁ ମିଷ୍ଟର ସଲାମ, ଆପଣ ଯେଉଁ ଫାଇଲଟି ମୋଠାକୁ ପଠାଇଛନ୍ତି, ସେ ଫାଇଲଟି ଧନ୍ୟ । ଆପଣ ବି ଧନ୍ୟ । ଆପଣ ସେଥିରେ ଯାହା ଲେଖିଛନ୍ତି, ସେ ବିଷୟରେ କିଛି ଭାବିଚିନ୍ତି ଲେଖିଛନ୍ତି ନା ଏମିତି ଖାମଖିଆଲି ଭାବରେ ଲେଖି ଦେଇଛନ୍ତି ? ଆପଣ ଜଣେ ଅଭିଜ୍ଞ ପ୍ରଶାସକ । ଆପଣଙ୍କୁ ମୁଁ ବାଛି ବାଛି ଏଇ ଶିକ୍ଷା ବିଭାଗକୁ ଆଣିଥିଲି । ଶେଷରେ ଆପଣ ଏଭଳି ଦାୟିତ୍ୱହୀନ ଭାବରେ ନୋଟଦେଇ ଫାଇଲଟାକୁ ମୋଠାକୁ ପଠାଇଦେବେ ବୋଲି ମୁଁ ଆଶା କରି ନଥିଲି । ଆପଣଙ୍କ କାର୍ଯ୍ୟଦକ୍ଷତା ଉପରେ ମୋର ଯେଉଁ ବିଶ୍ୱାସ ଥିଲା, ଦେଖୁଛି ଆପଣ ତାହାଠାରୁ ଢେର୍ ଦୂରରେ ।"

ଆପଣ ଚାହୁଁଛନ୍ତି, ରେଭେନ୍‌ସା କଲେଜ ଓ ଅନ୍ୟାନ୍ୟ କଲେଜରେ ଗବେଷଣା କରୁଥିବା ଛାତ୍ରମାନେ ଯେଉଁ କଣ୍ଟିଜେନ୍‌ସି ଗ୍ରାଣ୍ଟ୍ କେନ୍ଦ୍ର ସରକାରୀ ସଂସ୍ଥାରୁ ପାଉଛନ୍ତି, ସେହି ଗ୍ରାଣ୍ଟ୍‌ରୁ ସେମାନେ ବିଜୁଳିଖର୍ଚ୍ଚ ଦେବେ, ପାଣି ଖର୍ଚ୍ଚ ଦେବେ ? ଆଉ ବାକି ରହିଲେ କାହିଁକି, ସେଥିରେ ଯୋଗ କରିଦେଲେ ନାହିଁ ପିଅନ, ଚପରାସୀ, ମେହେନ୍ତର, ଝାଡ଼ୁବାଲାମାନଙ୍କ ଦରମା ବାବଦକୁ କିଛି କିଛି ଦେବେ ! ଆପଣ ଗୋଟିଏ ବାଟ କରନ୍ତୁ, ସେମାନେ ଯାହା କଣ୍ଟିଜେନ୍‌ସି ଗ୍ରାଣ୍ଟ୍ ପାଉଛନ୍ତି, ସେସବୁକୁ ଆପଣ ଏହିସବୁ ଖରଚ ବାବଦକୁ କାଟି ନିଅନ୍ତୁ । ସେମାନଙ୍କୁ ଆଉ କିଛି ଦିଅନ୍ତୁନି । ଆପଣ ସେସବୁ ସଂସ୍ଥାର ସର୍କୁଲାର ଦେଖିଛନ୍ତି ? ସେମାନେ ଏହି କଣ୍ଟିଜେନ୍‌ସି ଗ୍ରାଣ୍ଟ୍ ଯାହା ପାଆନ୍ତି, କ'ଣ ପାଇଁ

ପାଆନ୍ତି, କାହିଁକି ପାଆନ୍ତି ଜାଣନ୍ତି ? ଜାଣିଥିଲେ ସମ୍ଭବତଃ ଆପଣ ଏଭଳି ଦାୟିତ୍ୱହୀନ ନୋଟ୍ ଦେଇ ନ ଥାନ୍ତେ ।

ଆପଣ ଜାଣନ୍ତି, ସେମାନେ ଏହି ଯେଉଁ କଣ୍ଟିଜେନ୍‌ସି ଗ୍ରାଣ୍ଟ୍ ପାଆନ୍ତି, ସେଥିରୁ ସେମାନେ ସେମାନଙ୍କ ଗବେଷଣା ପାଇଁ ଆବଶ୍ୟକ ହେଉଥିବା ନାନା ରାସାୟନିକ ପଦାର୍ଥ କିଣିବେ, ଯାହାକୁ ସେହି କଲେଜ ସେମାନଙ୍କୁ ଯୋଗାଇଦେଇ ପାରିବନି । ସେମାନେ ଆବଶ୍ୟକ କରୁଥିବା ଛୋଟ ଛୋଟ ଯନ୍ତ୍ରପାତି, ଯାହା ସେ କଲେଜ ସେମାନଙ୍କୁ ଯୋଗାଇ ପାରିବନି ଓ ଯେଉଁ ଯନ୍ତ୍ରପାତି ନ ହେଲେ ସେମାନଙ୍କ ଗବେଷଣା ବନ୍ଦ ହୋଇଯିବ, ସେହିସବୁ ଯନ୍ତ୍ରପାତି ସେମାନେ କିଣିବେ । ସରକାର ଯଦି ସେମାନଙ୍କ କଣ୍ଟିଜେନ୍‌ସି ଗ୍ରାଣ୍ଟ୍ ନେଇ ଯାଆନ୍ତି, ତେବେ ସେମାନଙ୍କ ଗବେଷଣା ମନକୁମନ ବନ୍ଦ ହୋଇଯିବ । ସେମାନଙ୍କର ଆବଶ୍ୟକ ହେଉଥିବା ଜିନିଷ ତ କଲେଜ ଦେଇପାରିବନି, ଆପଣ ସେମାନଙ୍କ କଣ୍ଟିଜେନ୍‌ସି ଗ୍ରାଣ୍ଟ୍ ଉପର୍ଯ୍ୟୁକ୍ତ ଖରଚ ବାବଦକୁ ନେଇଯିବେ, ତେବେ ସେମାନେ ଗବେଷଣା କରିବେ କେଉଁଥିରେ ? କ'ଣ ଆକାଶକୁ ଅନାଇ ? ଆପଣ ଆଇ.ଏସ୍‌ସି., ବି.ଏସ୍‌ସି., ଏମ୍.ଏସ୍‌ସି. ପିଲାଙ୍କ ପାଇଁ ସବୁ ପ୍ରକାର ଖରଚ ବହନ କରୁଥିଲାବେଳେ ଏମାନଙ୍କ ପାଇଁ ଆପଣଙ୍କର ଏଭଳି ବୈମାତୃକ ଭାବ କାହିଁକି ? ସେମାନେ କ'ଣ ସେହି କଲେଜର ଛାତ୍ର ନୁହଁନ୍ତି ? ସେମାନଙ୍କ ପିଏଇଚ୍.ଡି. ଡିଗ୍ରୀ କ'ଣ ଗୋଟାଏ ଡିଗ୍ରୀ ନୁହେଁ ? କୌଣସି କଲେଜରୁ ଯଦି ଅଧିକ ପିଏଇଚ୍.ଡି. ଡିଗ୍ରୀଧାରୀ ଯୁବକ ବାହାରନ୍ତି ତେବେ ଜାତୀୟ ସ୍ତରରେ ବା ଆନ୍ତର୍ଜାତିକ ସ୍ତରରେ ସେହି କଲେଜର ସେତେ ସୁନାମ ହୁଏ । କୌଣସି କଲେଜର ସୁନାମ ହୁଏନି, ଖାଲି ଆଇ.ଏସ୍‌ସି., ବି.ଏସ୍‌ସି., ଏମ୍.ଏସ୍‌ସି. ଡିଗ୍ରୀଧାରୀ ବାହାରିଲେ ବୋଲି, ସେମାନଙ୍କ ପ୍ରକୃତ ସୁନାମ ହୁଏ, କେଉଁ ଦରର ପିଏଇଚ୍.ଡି. ଡିଗ୍ରୀଧାରୀ ବାହାରନ୍ତି ଓ ସେମାନଙ୍କ ଗବେଷଣା କେତେ ଉଚ୍ଚମାନର । ଆପଣ ଯେଉଁ ବାଟ ଧରିଲେଣି, ସେଥିରେ ମନକୁମନ କଲେଜମାନଙ୍କରେ ଗବେଷଣା ବନ୍ଦ ହୋଇଯିବ । ଅନ୍ୟାନ୍ୟ ରାଜ୍ୟ ଗବେଷଣାଛାତ୍ରଙ୍କ ସୁବିଧା ପାଇଁ ନାନା ସୁଯୋଗ ଦେଉଥିଲା-ବେଳେ ଆପଣ ସେମାନଙ୍କ ଟଙ୍କାରୁ କଟି କାଟିରଖିଲେ, ସାରା ଭାରତରେ ଆମ ସରକାରର ଯେଉଁ ବଦନାମ ହେବ, ଆପଣ ସେଆଡ଼କୁ ଟିକିଏ ଭାବିଛନ୍ତି ତ ? ଆମର ଏହି ସରକାରୀ ଆଦେଶ ପାଇଁ ଆମକୁ ଲୋକେ ଛି ଛି କାର କରିବେ, ଏହା ଆମର ହୀନ ମନୋବୃତ୍ତିର ପରିଚାୟକ ହେବ । ତା'ଛଡ଼ା ଆପଣ ଏହି ବ୍ୟବସ୍ଥାରେ କେତେ ଟଙ୍କା ସଞ୍ଚୟ କରିପାରିବେ ?

ପ୍ରାୟ ଲକ୍ଷେଟଙ୍କା ପାଖାପାଖି ତ ? ଏତେବଡ଼ ରାଜ୍ୟର ସରକାର ପକ୍ଷରେ ସାମାନ୍ୟ ଲକ୍ଷେଟଙ୍କା କ'ଣ ଯେ ମୁଁ ବୁଝିପାରୁନି । ଏତେବଡ଼ ଉନ୍ନତ ପ୍ରସ୍ତାବ ଯାହା ମୁଣ୍ଡରୁ ବାହାରିଲା, ତାଙ୍କୁ ଧନ୍ୟବାଦ ଦେବା କଥାଏହି । ପ୍ରସ୍ତାବର ଆରମ୍ଭକର୍ତ୍ତା କିଏ ? ଆପଣ ?

"ନା ।"

"ତେବେ ?"

"ରେଭେନ୍‌ସା କଲେଜର ଭୂତପୂର୍ବ ପ୍ରିନ୍‌ସିପାଲ—ଡକ୍ଟର ସିହ୍ନା ।"

"ଓହୋ, ସେହି ଲୋକ, ଏବେ ଯାହାଙ୍କୁ ମୁଁ ବ୍ରହ୍ମପୁର ଆର୍ଟସ୍ କଲେଜକୁ ବଦଳି କଲି । ବାଃ, ବଡ଼ ଯୋଗ୍ୟ ଲୋକଟିଏ ଅଛନ୍ତି ଶିକ୍ଷା ବିଭାଗରେ, କି ଚମତ୍କାର ବୁଦ୍ଧି ଶାସନ ପରିଚାଳନାରେ ! ଆର୍ଟସ୍ ଲୋକ, ଭାବୁଥିବେ କଣ୍ଟିଜେନ୍‌ସି ବାବଦ ଟଙ୍କା କେନ୍ଦ୍ର ସରକାରରୁ ପାଇ ଏହି ଗବେଷଣା ଗ୍ରନ୍ଥମାନେ ସେଥିରୁ ଚା ଜଳଖିଆ ଖାଇ ଦେଉଛନ୍ତି । ଯେଉଁ ଲୋକ କଣ୍ଟିଜେନ୍‌ସି ଖରଚ କ'ଣ ବୁଝିପାରେ ନାହିଁ, ସେହି ଲୋକ ଯେତେବେଳେ ଏହି ପ୍ରସ୍ତାବ ଦେଲେ, ଆପଣ ତାହା ଉପରେ କାର୍ଯ୍ୟାନୁଷ୍ଠାନ କଲେ କେମିତି ?"

ଆପଣ ସେ ପ୍ରିନ୍‌ସିପାଲଙ୍କୁ ଜାଣି ନଥାଇ ପାରନ୍ତି ମିଷ୍ଟର ସନ୍ନାମ, ଡି.ପି.ଆଇ. ତାଙ୍କୁ ଭଲ ଭାବରେ ଜାଣନ୍ତି, ସେ କେମିତି ଖାଲପ୍ରକୃତିର ଲୋକ, ବିଜ୍ଞାନ ବିଷୟରେ କେମିତି ଅଜ୍ଞ । ସେଭଳି ଲୋକଙ୍କ ପ୍ରସ୍ତାବକୁ ଡି.ପି.ଆଇ. ଫରଓ୍ୱାର୍ଡ଼ କଲେ କେମିତି ?

ଡି.ପି.ଆଇ.ଙ୍କ ଆଡ଼କୁ ଅନାଇ କହିଲେ, "ଆପଣ ଏହାକୁ ଫରଓ୍ୱାର୍ଡ଼ କରିବା ଉଚିତ ନ ଥିଲା ! ଆପଣ ତାଙ୍କ ପ୍ରସ୍ତାବକୁ ଅଳିଆଗଦାକୁ ଫୋପାଡ଼ିଦେଇ ପାରିଥାନ୍ତେ । ଏଭଳି ମୂଲ୍ୟହୀନ ପ୍ରସ୍ତାବକୁ ପଠାଇ ଆପଣ କେତେବଡ଼ ଭୁଲ ଯେ କରିଛନ୍ତି, ମୁଁ ଭାବିପାରୁନି । ଆପଣମାନେ ମନେ ମନେ ଖୁସି ହେଉଥିବେ ଯେ, ଏହାଦ୍ୱାରା ଆପଣ ସରକାରଙ୍କର ଲକ୍ଷେଟଙ୍କା ଲାଭ କରାଇ ଦେଇଛନ୍ତି । ଏହି ଶିକ୍ଷା ବିଭାଗରେ ବିଭିନ୍ନ ସ୍ତରରେ କେତେ କୋଟି ଟଙ୍କା ଯେ ବରବାଦ ହେଉଛି, ସେଆଡ଼କୁ କାହାରି ଲକ୍ଷ୍ୟ ଅଛି କି ?"

ଆପଣମାନେ ଜାଣନ୍ତି ଆମ ରାଜ୍ୟରେ ଅନେକ ସ୍ଥାନରେ ପ୍ରାଇମେରି ସ୍କୁଲ ପ୍ରକୃତରେ ନାହିଁ, କି ପ୍ରକୃତରେ କୌଣସି ଶିକ୍ଷକ ନାହାନ୍ତି, ଅଥଚ ସେଠାରେ ଶିକ୍ଷକମାନେ ପ୍ରତି ମାସରେ ଦରମା ପାଉଛନ୍ତି । ସେ ସ୍କୁଲ ବାବଦରେ ପ୍ରତି ମାସରେ ବିଭିନ୍ନ ଖର୍ଚ୍ଚ ଚାଲିଛି । ହରିଜନ ଓ ଆଦିବାସୀ ପିଲାଙ୍କୁ ସାହାଯ୍ୟ ଦେବା ନାଁରେ ଲକ୍ଷ ଲକ୍ଷ ଟଙ୍କାର ବହି, ସ୍ଲେଟ୍, ଖାତା, କଲମ ଆଦି ପ୍ରତିବର୍ଷ କିଣା ଚାଲିଛି ଓ କାଗଜ କଲମରେ ବଣ୍ଟା ଚାଲିଛି । କିନ୍ତୁ ପ୍ରକୃତରେ କିଛି କିଣା ହେଉନି କି ବଣ୍ଟାଯାଉନି । ସରକାରଙ୍କ ତହବିଲରୁ ଟଙ୍କା ଯାଉଛି, କିଣା, ବଣ୍ଟା ଖାଲି କାଗଜ କଲମରେ ଚାଲିଛି । ଆମ ରାଜ୍ୟର ବହୁ ସ୍କୁଲରେ ଜଣେ ଶିକ୍ଷକ ଦୁଇ ତିନିଟା ସ୍କୁଲରେ ପାଠ ପଢ଼ାଉଛନ୍ତି । କିନ୍ତୁ ପ୍ରତ୍ୟେକ ସ୍କୁଲ ପାଇଁ ଶିକ୍ଷକଙ୍କୁ ଅଲଗା ଅଲଗା ଦରମା ଦିଆଯାଉଛି । ଜଣେ ଜଣେ ଶିକ୍ଷକ ଦୁଇ ତିନିଟା ସ୍କୁଲରୁ ପ୍ରତି ମାସରେ ଅଲଗା ଅଲଗା ଦରମା ନେଉଛନ୍ତି । ଏହିଭଳି ଭାବରେ ଧରି ବସିଲେ ଏହି ଶିକ୍ଷା ବିଭାଗରେ କୋଟି କୋଟି ଟଙ୍କା ବରବାଦ ହୋଇ ପାଣି ଭଳି ବୋହି ଯାଉଛି । ସେଆଡ଼କୁ ଆପଣମାନଙ୍କର କାହାରି ଲକ୍ଷ୍ୟ ନାହିଁ । ଏଠି ଶହେ

ଦେଢ଼ଶହ ଗବେଷଣା ଗ୍ରନ୍ଥଙ୍କ କଣ୍ଟିଜେନ୍‌ସି ଟଙ୍କାରୁ କଛୁ କଛୁ କାଟିନେଲେ ଆମ ସରକାରଙ୍କ ଅର୍ଥାଭାବ ମେଣ୍ଟିଯିବ । ଧନ୍ୟ ଆପଣମାନେ, ଧନ୍ୟ ଆପଣମାନଙ୍କ ଶାସନ ।

ଶିକ୍ଷା ବିଭାଗରେ ଏହିସବୁ ଯେତେ ଅଳିଆ ଅଛି, ସେସବୁକୁ ସଫା କରିବାପାଇଁ ଆପଣମାନଙ୍କୁ ମୁଁ କେତେଦିନ ହେଲା କେତେଥର କହିଲଣି, ଯାହାକୁ ସଫା କରିପାରିଲେ ଆପଣମାନଙ୍କର ସୁନାମ ହୁଅନ୍ତା, ସରକାରଙ୍କର କୋଟି କୋଟି ଟଙ୍କା ବଞ୍ଚିପାରନ୍ତା । ତା'ଛଡ଼ା ଗତ କୋଡ଼ିଏବର୍ଷ ତଳେ କଲେଜର ବିଜ୍ଞାନ ବିଭାଗମାନଙ୍କୁ ବିଜ୍ଞାନ ଯନ୍ତ୍ରପାତି ଓ କେମିକେଲ ପାଇଁ ଯେଉଁ ଗ୍ରାଣ୍ଟ୍ ଦିଆଯାଉଥିଲା, ଏବେବି ତା'ର ପରିମାଣ ସେଇଆ ଅଛି । ଏହା ଭିତରେ ଜିନିଷପତ୍ରର ଦାମ୍ ସାତ ଆଠଗୁଣ ବଢ଼ିଗଲାଣି । ସେହି ପୁରୁଣା ଗ୍ରାଣ୍ଟ୍‌ରେ ସେମାନେ ଜିନିଷପତ୍ର କିଣି ସେମାନଙ୍କ ପିଲାଙ୍କୁ କେମିତି ଯୋଗାଇବେ ? ଏହାଫଳରେ କ'ଣ ହେଉଛି ଆପଣମାନେ ଜାଣନ୍ତି ? ଅନେକ କଲେଜରେ ଠିକ୍ ଭାବରେ ପ୍ରାକ୍ଟିକାଲ କ୍ଲାସ୍ ହେଉନି । କେମିତି ହେବ ? ବିଭିନ୍ନ କଲେଜରେ ସରକାର ମନଇଚ୍ଛା ସିଟ ବଢ଼ାଇ ଦେଉଛନ୍ତି । ସେହି ଅନୁସାରେ ଗ୍ରାଣ୍ଟ୍ ବଢୁନି । ସେସବୁ ଡିପାର୍ଟମେଣ୍ଟ ଚାଲିବ କେମିତି ? ସରକାରଙ୍କ ଟଙ୍କା ନାହିଁ ଆଳରେ ସେମାନଙ୍କୁ ଅଧିକ ଗ୍ରାଣ୍ଟ୍ ଦେବା ନାଁ' କେହି ଧରୁ ନାହାନ୍ତି ! ଏଥିଯୋଗୁଁ କଲେଜର ପ୍ରିନ୍‌ସିପାଲମାନେ କେମିତି ହିନସ୍ତା ହେଉଥିବେ, କେହି ଚିନ୍ତା କରୁ ନାହାନ୍ତି । ଏହାକୁ କ'ଣ କୁହାଯିବ ଶାସନ ? ଆପଣମାନେ ତାହା ନକରି ଅତି ଗ୍ରେଟ ଜିନିଷଟାଏ ଉପରେ ଖୋଳତାଡ଼ କରି ଏତେବଡ଼ ଫାଇଲ୍‌ଟାଏ କରି-ସାରିଲେଣି । ଯାଉମତ ଗୋଟାଏ ଚମ୍ପୁଲୁଟା ।

ଆପଣମାନଙ୍କ ପ୍ରସ୍ତାବକୁ ମୁଁ ଯଦି ଗ୍ରହଣ କରିନିଏ, ଆପଣମାନେ ଜାଣନ୍ତି, ଏହା ସାରା ଭାରତରେ କିଭଳି ଚାଞ୍ଚଲ୍ୟ ସୃଷ୍ଟି କରିବ ? ଗବେଷଣାବିରୋଧୀ ମନ୍ତ୍ରୀଭାବରେ ମୋତେ ଲୋକେ ଛି ଛିକାର କରିବେ । କେନ୍ଦ୍ର ସରକାରଙ୍କ ସେହିସବୁ ଫଣ୍ଡ ଆମ ସରକାରକୁ ହୀନ ପ୍ରକୃତିର ସରକାର ବୋଲି ଅଭିହିତ କରିବେ, ସେଆଡ଼କୁ ଆପଣମାନଙ୍କର ଦୃଷ୍ଟି ଅଛି ତ ? ମୁଁ ଯେତେବେଳେ ଚିନ୍ତା କରୁଛି ଆମ ରାଜ୍ୟର ଯେଉଁସବୁ କଲେଜରେ ଗବେଷଣା ଚାଲିଛି, ସେମାନଙ୍କୁ ଅଧିକ ଗ୍ରାଣ୍ଟ୍ ଦେଲେ ସେମାନେ ଆହୁରି ଭଲ ଭାବରେ ଗବେଷଣା କରିପାରିବେ, ଆପଣମାନେ ଠିକ୍ ସେତିକବେଳେ ଗବେଷଣାକୁ ଧ୍ୱଂସ କରିବା ପାଇଁ ଏଭଳି ପ୍ରସ୍ତାବମାନ ଆଣିଛନ୍ତି । ଏହି ଫାଇଲ୍‌କୁ ଅଳିଆଗଦାକୁ ଫିଙ୍ଗିଦେବା ପାଇଁ ମୁଁ ଏହା ଉପରେ ଆଦେଶ ଦେଇଛି ଓ ସେଥିସହିତ ସେହି ହୀନପ୍ରକୃତି ବିଶିଷ୍ଟ ପ୍ରିନ୍‌ସିପାଲ୍‌ଙ୍କୁ ଏଭଳି ପ୍ରସ୍ତାବ ପାଇଁ ସରକାରଙ୍କ ଅସନ୍ତୋଷ ଦର୍ଶାଇ ଏକ କଡ଼ା ଚିଠି ଲେଖନ୍ତୁ ।

ଦେବସ୍ମାନବାବୁ ସେକ୍ରେଟେରି ଓ ଡି.ପି.ଆଇ.ଙ୍କୁ ବିଦା କରିଦେଇ ଘର ଭିତରକୁ ଆସିଲେ । ସଙ୍ଗେ ସଙ୍ଗେ କେମିତି ଖାଇଦେଇ ସେକ୍ରେଟେରିଏଟ୍‌କୁ ଯିବେ, ସେଠାରେ ଶିକ୍ଷକ ପ୍ରତିନିଧିମାନଙ୍କ ସହିତ ଏକ ଆଲୋଚନା ଅଛି । ଘରକୁ ଯାଇ ଦେଖନ୍ତି ତ ପଢ଼ାଘରେ ଶାନ୍ତି ନାହିଁ । ପିଲାଦୁଇଟି ନିଜ ନିଜ ଟେବୁଲ ପାଖରେ ବସି ପଢୁଛନ୍ତି ।

ମା' ବୁଆଡ଼େ ଗଲେ ବୋଲି ଘରର ସଜନିଆକୁ ପଚାରିଲାରୁ ସଜନିଆ କହିଲା, "ମା' ଶୋଇବା ଘରେ ଶୋଇଛନ୍ତି ।"

ଅବେଳରେ ଶାନ୍ତି କାହିଁକି ଶୋଇଲା, ଜାଣିବା ପାଇଁ ଦେବସ୍ମିତ ଚାଲିଗଲା ଶୋଇବା ଘରକୁ । ଦେଖିଲା ଶାନ୍ତି ଖଟ ଉପରେ ଶୋଇରହି କହିଁ କହିଁ ହୋଇ କାନ୍ଦୁଛି । ଶାନ୍ତିର ହଠାତ୍ ଏ କ'ଣ ହେଲା, ସେ କାନ୍ଦୁଛି କାହିଁକି, ଜାଣିବାପାଇଁ ଦେବସ୍ମିତ ଖଟ ଉପରେ ବସିପଡ଼ି ଶାନ୍ତିକୁ ହଲାଇଦେଲା । କାନ୍ଥଆଡ଼କୁ ମୁହଁକରି ଶୋଇରହି ଫୁଟଭଳି କାନ୍ଦିବାକୁ ଲାଗିଲା ଶାନ୍ତି ।

ଦେବସ୍ମିତ ବଡ଼ ବ୍ୟସ୍ତ ହୋଇପଡ଼ିଲା, ଶାନ୍ତିର କ'ଣ ହେଲା ଭାବି । ତାକୁ ହଲାଇଦେଇ ପଚାରିଲା, "ତୁମର କ'ଣ ହେଲା ଶାନ୍ତି, ତୁମେ କାନ୍ଦୁଛ କାହିଁକି ?"

ରାଗମିଶ୍ରିତ ସ୍ୱରରେ ଉତ୍ତରଦେଲା, "ମୋ ସହିତ ଲାଗନ୍ତ, ମୋ ଦେହ ଭଲ ନାହିଁ ।"

"କ'ଣ ହୋଇଛି ତୁମର ?"

"କିଛି ହୋଇନି ।"

"ତେବେ କାନ୍ଦୁଛ କାହିଁକି ?"

"ତୁମର ଜାଣିବା ଦରକାର ନାହିଁ ।"

"ଏ କ'ଣ, ଏଇ କିଛି ସମୟ ତଳେ ଭଲ ଥିଲ, ପିଲାମାନଙ୍କୁ ପଢ଼ାଉଥିଲ । ହଠାତ୍ ପଢ଼ା ବନ୍ଦ କରି କାନ୍ଦୁଛ, କ'ଣ ନା କିଛି ହୋଇନି । ହେଉ ତେବେ ଚାଲ ମୋତେ ଖାଇବାକୁ ଦେବ, ମୁଁ ସେକ୍ରେଟେରିଏଟ୍ ଯିବି ।"

"ସନା ଅଛି, ପୁଷ୍ପା ଅଛି । ସେମାନେ କ'ଣ ତୁମକୁ ଖାଇବାକୁ ଦେବେନି ଯେ ମୁଁ ଯିବି ? ତୁମେ ଡାଇନିଂରୁମ୍‌କୁ ଯାଅ, ସେମାନେ ତୁମକୁ ଖାଇବାକୁ ଦେଇଦେବେ ।"

"ତୁମେ କ'ଣ ଜାଣିନ ଶାନ୍ତି, ତୁମେ ଖାଇବାକୁ ନଦେଲେ ମୁଁ ଖାଏନି ।"

"ଯେତେଦିନ ଦେଉଥିଲି, ସେତେଦିନ । ଆଉ ଏବେ ନୁହେଁ ।"

"ତେବେ ଦୋଷ ମୋର କ'ଣ ହେଲା କହୁନ, ଯା' ପାଇଁକି ତୁମର ଏତେ ରାଗ, ଏତେ ରୋଷ ।"

ଶାନ୍ତି କିଛି ଉତ୍ତର ନଦେଇ ଚୁପ୍ କରି ଶୋଇରହିଲା ।

"ହେଉ, ତା'ହେଲେ ତୁମେ ଶୋଇଥାଅ । ମୁଁ ସେକ୍ରେଟେରିଏଟ୍ ଚାଲି ଯାଉଛି । ସେଠି କିଛି ଜଳଖିଆ ମଗାଇନେବି ଖାଇବା ପାଇଁ ।"

"ମୁଁ ତୁମକୁ ଗୋଟିଏ ସର୍ତ୍ତରେ ଖାଇବାକୁ ଦେବି । ଯଦି ରାଜି ହୁଅ ।" ଶାନ୍ତି ହଠାତ୍ ବିଛଣାରୁ ଉଠିପଡ଼ି କହିଲା ।

ହସିଲା ଦେବସ୍ମିତ । "କି ସର୍ତ୍ତ ?"

ଶାନ୍ତ ହଠାତ୍ ଗୋଟାଏ କାଗଜ ଦେବସ୍ମାନ ହାତକୁ ବଢ଼ାଇଦେଇ କହିଲା, "ତୁମେ ଏଥିରେ ଦସ୍ତଖତ କର ।"

ଦେବସ୍ମାନ କାଗଜଖଣ୍ଡିକୁ ଦେଖି ଚମକି ପଡ଼ିଲା । ମନ୍ତ୍ରିତ୍ୱରୁ ଇସ୍ତଫା ଦେବାପାଇଁ ମୁଖ୍ୟମନ୍ତ୍ରୀଙ୍କଠାକୁ ଏକ ଚିଠି । ହସିଲା ଦେବସ୍ମାନ, "କ'ଣ ତମ ମୁଣ୍ଡ ଖରାପ ହୋଇଗଲାଣି ଶାନ୍ତ ? ଏମିତି ଚିଠିଟାରେ ମୋତେ ଦସ୍ତଖତ କରିବା ପାଇଁ କ'ଣ କହୁଛ ?"

"ଆମେ ଆଉ ଏଠି ରହିବା ନାହିଁ । ତୁମେ ଆଜି ଇସ୍ତଫା ଦେଇଦିଅ । ଚାଲ ଆମେ ଗୋବିନ୍ଦପୁର ଚାଲିଯିବା । ତୁମେ ତ ପ୍ରଥମେ ପ୍ରଥମେ ମନ୍ତ୍ରୀ ହେବାପାଇଁ ରାଜି ହେଉ ନଥିଲ । ଆମକୁ କ'ଣ ମିଳିବ ଏ ମନ୍ତ୍ରିତ୍ୱରୁ । ଆମେ ଆଉ ଏଠି ରହିବାନି ।"

"କିନ୍ତୁ ଶାନ୍ତ ! କିଛି ଗୋଟିଏ କାରଣ ନଥାଇ ହଠାତ୍ ଇସ୍ତଫା ଦେବି କେମିତି କହୁଛ ? ଲୋକେ ଆମକୁ କ'ଣ ଭାବିବେ ?"

"ହଁ, କାହିଁକି ଇସ୍ତଫା ଦେବ ? ବାପାଙ୍କ ଉପରେ ହାକିମାତି କରିବ ଏଠି । ତୁମେ ମନ୍ତ୍ରୀ ହୋଇଥିଲ ବାପାଙ୍କ କାର୍ଯ୍ୟ ଉପରେ ସମାଲୋଚନା କରିବା ପାଇଁ ! ଯେତେ-ହେଲେ ତୁମେ ପୁଅ, ସେ ହେଉଛନ୍ତି ବାପା, ତୁମେ ଯେ ତାଙ୍କୁ କେମିତି ଅନ୍ୟମାନଙ୍କ ଆଗରେ ଏତେ କଡ଼ା କଡ଼ା କଥା କହିପାରୁଛ ମୁଁ ଭାବିପାରୁନି ।"

"ତୁମେ ଜାଣନି ଶାନ୍ତ, ବାପା ଯେଉଁ ଭୁଲ କରିଛନ୍ତି··· ।"

"ହଁ, ତୁମେ ବାପାଙ୍କ ଭୁଲ ଧରିବ ନାହିଁ ତ ଆଉ କିଏ ଧରିବ ? ଭଲ ପୁଅ ଜନ୍ମ ହୋଇଥିଲ ? ମୋତେ କିନ୍ତୁ ଏସବୁ ଭଲ ଲାଗୁନି । ତୁମେ ଏହି ଭୁବନେଶ୍ୱରରେ ରୁହ । ମୁଁ ପିଲା ଦୁଇଟିକୁ ଧରି ଗୋବିନ୍ଦପୁର ଚାଲିଯାଉଛି । ମୁଁ ଏଠି ଆଉ ମୁହୂର୍ତ୍ତେ ରହିପାରିବିନି । ତୁମେତ ମନ୍ତ୍ରିତ୍ୱ ଛାଡ଼ି ପାରିବନି । ତୁମେ ଏଠି ରୁହ । ବାପାଙ୍କ ଉପରେ ଆହୁରି ହାକିମାତି କର । ମୁଁ ଯାଏ । ମୁଁ ଆଉ ଏ ଦୃଶ୍ୟ ଦେଖିପାରିବିନି କି ଆଉ ଏତେ କାନ୍ଦି ପାରିବିନି । ତୁମେ ଆଜି ସେକ୍ରେଟେରିଏଟ୍‌ରୁ ଆସିଲାବେଳକୁ ମୁଁ ଗୋବିନ୍ଦପୁର ଚାଲି ଯାଇଥିବି ।"

"ଦେଖ ଶାନ୍ତ, ଏହା ତୁମର ନିହାତି ପିଲାଳିଆମି । ତୁମେ କ'ଣ ଭାବୁଛ ମୁଁ ବାପାଙ୍କ ଭୁଲ ଦେଖାଇଲା ବେଳକୁ ମୋତେ କଷ୍ଟ ଲାଗୁନି । କିନ୍ତୁ କ'ଣ କରିବି, ଏଇତ ଶାସନ ।"

"ମନ୍ତ୍ରୀ ହେବା ଦିନରୁ ମୋତେ ତ କହି ଆସୁଛ, ଇଏ ଶାସନ, ଇଏ ଶାସନ, ଆଉ କେତେ କହିବ ?"

ଦୁନିଆରେ ଆଉ କେହି ଶାସନ କରୁଛନ୍ତି ନା ତୁମେ ଏକା ଶାସନ କରୁଛ ? ଶାସନ ପୁଣି କାହା ଉପରେ ? ନିଜ ବାପାଙ୍କ ଉପରେ । ଆମେ ତ ଗଠନାତ୍ମକ କର୍ମୀ, ଗଠନମୂଳକ କାମ କରିବା ହେଲା ଆମ ଆଦର୍ଶ । ଏ ଶାସନରୁ ଆମକୁ କ'ଣ ମିଳିବ ?

ତୁମେତ ମନ୍ତ୍ରିତ୍ୱ ମୂଳରୁ ଚାହୁଁ ନଥିଲ, ଯଦି ହେଲ ଆଉ ଛାଡ଼ିବାକୁ ମନ ହେଉନି ? ଶକ୍ତି, ସାମର୍ଥ୍ୟ, ହାକମାଡର ଆକର୍ଷଣ କ'ଣ ଏତେ ?

"ନା ଶାନ୍ତି, ତୁମେ ମୋତେ ଭୁଲ ବୁଝୁନି । ମୁଁ କ୍ଷମତା ଲାଳସାରେ ଏଠି ପଡ଼ିରହିନି । ଏଠି ଯେଉଁ ଦୁର୍ନୀତି, ଅନ୍ୟାୟ ସବୁ ବ୍ୟାପି ରହିଛି, ସେଗୁଡ଼ିକୁ ଦୂର କରିବା ମୋର ଉଦ୍ଦେଶ୍ୟ । ଯଦି ନ ପାରିବି, ତେବେ ସଙ୍ଗେ ସଙ୍ଗେ ଛାଡ଼ି ଚାଲିଯିବି ।"

"ତୁମେ କ'ଣ ଜାଣିନାହଁ ଶିକ୍ଷା ବିଭାଗରେ କି କି ଦୁର୍ନୀତି କେଉଁ କେଉଁ ସ୍ତରରେ ରହିଛି ? ସେସବୁକୁ ବାପା ଦୂର କରିପାରିବେ ନା ତୁମ ସେକ୍ରେଟେରୀ ଦୂର କରିପାରିବେ, ନା ତୁମେ ନିଜେ ଦୂର କରିପାରିବ ? ପ୍ରାଇମେରୀ ସ୍କୁଲ ନାହିଁ, ଶିକ୍ଷକ ନାହାନ୍ତି, ଅଥଚ ସରକାରୀ ଟଙ୍କା ଖରଚ ଚାଲିଛି—ଏହା କ'ଣ ଆଜିକା କଥା ? ଏହା ଭିତରେ କେତେ ସରକାର ଆସିଲେଣି, କେତେ ଗଲେଣି; କିନ୍ତୁ ସେସବୁ ସେମିତି ଚାଲିଛି । ହରିଜନ ପିଲାଙ୍କ ପାଇଁ ବହି ସ୍ଲେଟ କିଣା, ଏହାତ ଆବହମାନ କାଳରୁ ରହି ଆସିଛି । ବହି ସ୍ଲେଟ ଆଦି କିଛି କିଣା ହେଉନି, ଅଥଚ ବିଲ୍ ପେମେଣ୍ଟ୍ ଚାଲିଛି । ଏଥିରେତ ତଳୁ ଉପର ପର୍ଯ୍ୟନ୍ତ ବହୁଲୋକ ସମ୍ପୃକ୍ତ । ରାଜନୀତିକ ଦଳମାନେ ଏଥିରେ ସାମିଲ । ତୁମେ କ'ଣ ସେସବୁ ଧରି ବନ୍ଦ କରିପାରିବ ? ତୁମେ ବନ୍ଦ କଲେ ମୁଖ୍ୟମନ୍ତ୍ରୀଙ୍କ ଉପରେ ଚାପ ପଡ଼ିବ, ସେ ତୁମକୁ କହିବେ କୋହଳ ନୀତି ଧରିବା ପାଇଁ । ଯଦି ନ ଧରିଲ, ମୁଖ୍ୟମନ୍ତ୍ରୀଙ୍କ ସହିତ ମନାନ୍ତର । ତା କିଛିଦିନ ପରେ ବିଦାୟ ।

"ତା'ହେଲେ ତୁମେ କ'ଣ କହିବାକୁ ଚାହୁଁଛ, ସେସବୁ ଦୁର୍ନୀତି ଆମ ସମାଜରୁ ଯିବନି ? ସେସବୁ ସେମିତି ରହିଥିବ ? ସରକାର ପରେ ସରକାର ଆସୁଥିବ ଯାଉଥିବ ।"

"ଆମ ଲୋକେ ଦୁର୍ନୀତି ବିରୋଧୀ ନହେଲେ ପର୍ଯ୍ୟନ୍ତ ଏସବୁ କ'ଣ ସମାଜରୁ ଯିବ ବୋଲି ତୁମେ ଭାବୁଛ ?"

"ଲୋକେ ଦୁର୍ନୀତି ବିରୋଧୀ ହେବେ କେମିତି ?"

"ଉପଯୁକ୍ତ ଶିକ୍ଷା ଦିଆଗଲେ ।"

"ଆମ ଶିକ୍ଷିତ ଲୋକେତ ବେଶି ଦୁର୍ନୀତି ସପକ୍ଷରେ । ସେମାନେ ତ ଦୁର୍ନୀତିକୁ ବେଶି ପ୍ରଶ୍ରୟ ଦେଉଛନ୍ତି । ସେମାନଙ୍କ ଯୋଗୁଁ ତ ବର୍ତ୍ତମାନ ଦୁର୍ନୀତି ସୁନୀତିରେ ପରିଣତ ହେବାକୁ ବସିଲାଣି ।"

"ପିଲାମାନଙ୍କୁ ଖାଲି ପାଠ ପଢ଼ାଇଦେଲେ ଯେ ଉପଯୁକ୍ତ ଶିକ୍ଷା ଦିଆ ହୋଇଗଲା ଏମିତି ଭାବିବା ଭୁଲ୍ । ଚରିତ୍ର ଗଠନ ହେଲା ଶିକ୍ଷାର ପ୍ରକୃତ ଉଦ୍ଦେଶ୍ୟ । ମୂଳରୁ ସେମାନଙ୍କ ଚରିତ୍ର ଗଠନ ଦରକାର । ତାହା ପୁଣି ପ୍ରାଇମେରୀ ସ୍ତରରୁ ଆରମ୍ଭ ହେବା ଉଚିତ । ଯେଉଁଦିନ ଚରିତ୍ରବାନ୍ ପିଲା ଆମ ସ୍କୁଲରୁ ବାହାରିବେ, ସେହିଦିନ ଆମ ସମାଜରୁ ଦୁର୍ନୀତି ମନକୁମନ ଲୋପ ପାଇଯିବ । ଯେଉଁଦିନ ଏହି ଉଚ୍ଚ ଚରିତ୍ରର ପିଲାମାନେ

ସେମାନଙ୍କ ବାପା, ମା'ଙ୍କର ଦୁର୍ନୀତି ଦେଖାଇ ସେମାନଙ୍କୁ ଭର୍ତ୍ସନା କରିବେ, ସେହି ଦିନଠାରୁ ଆମ ସମାଜରୁ ଦୁର୍ନୀତି ଗଲା ବୋଲି ଜାଣ ।"

## ଅଣଚାଷ

"କିଏ ଶୁଭ୍ରା, ତୁମେ ହଠାତ୍ ? କେବେ ଆମେରିକାରୁ ଆସିଲ ?"

ଶୁଭ୍ରା ଗୋଡ଼ତଳେ ମୁଣ୍ଡିଆ ମାରି ଗୋଡ଼ଧୂଳି ନେଇ ମୁଣ୍ଡରେ ମାରୁ ମାରୁ ହସି ହସି କହିଲା, "ନା ସାର୍, ମୁଁ ତ କାଲି ଆସିଲି । ବାପାଙ୍କ ପାଖରୁ ଶୁଣିଲି ଆପଣ କାଲେ ଆମ ରାଜ୍ୟର ଶିକ୍ଷାମନ୍ତ୍ରୀ ହୋଇଛନ୍ତି, ତେଣୁ ଖୁସି ହୋଇ ସାକ୍ଷାତ କରିବାକୁ ଚାଲି ଆସିଲି ।"

ଚାରିଆଡ଼କୁ ଟିକେ ବଡ଼ ବଡ଼ ଆଖିରେ ଅନାଇ ଅନାଇ ଶୁଭ୍ରା କହିଲା, "ଯାହାହେଉ ସାର୍, ଏତେଦିନକେ ଆପଣଙ୍କ ସମ୍ମାନ ରଖିଲାଭଳିଆ କାର୍ଯ୍ୟଟିଏ ମିଳିଗଲା । ଏତେଦିନକେ ଆମ ଦେଶର ଲୋକେ ଆପଣଙ୍କ ମହତ୍ତ୍ୱ ବୁଝିଲେ । କିନ୍ତୁ କାହିଁ କେଉଁଆଡ଼େ ତ ମନ୍ତ୍ରୀହେବାର ସାଜସଜ୍ଜା ଦେଖିପାରୁନି ।"

"ଫେର୍ ତୁମ ଦୁଷ୍ଟାମି ଆରମ୍ଭ ହୋଇଗଲା ନା କଅଣ ? ତୁମେ ପୃଥିବୀର ଜଣେ ଏତେବଡ଼ ଦାୟିତ୍ୱସମ୍ପନ୍ନ ବୈଜ୍ଞାନିକ ହେଲଣି, ତଥାପି ତୁମର ସେ ପିଲାଳିଆମି ଗଲାନି । ତୁମେ ଆମେରିକାରେ ଏମିତି ପିଲାଳିଆମି ଦେଖାଅ ନା ଏଇଠି ଦେଖାଉଛ ? ତୁମେ କ'ଣ ଭାବୁଛ ଶୁଭ୍ରା, ମୁଁ ଖୁସିରେ ମନ୍ତ୍ରୀ ହେବାପାଇଁ ଏଠାକୁ ଦୌଡ଼ି ଆସିଛି ?"

"ଆପଣ ଯେଉଁ ରଚନାତ୍ମକ କାମରେ ନିଜକୁ ନିୟୋଜିତ କରିଛନ୍ତି, ସେହି କାମରେ ଥିବା ଲୋକ ଯେ କେବେ ମନ୍ତ୍ରିତ୍ୱ ପାଇଁ ଧାଇଁ ଆସିବ, ଏ ବିଶ୍ୱାସ ମୋର ନାହିଁ । ତେବେ ଆପଣଙ୍କର ନିଃସ୍ୱାର୍ଥପର ଗଠନମୂଳକ କାମ ପାଇଁ ଦେଶ କ'ଣ ସମ୍ମାନ ଦେବା ଉଚିତ ନୁହେଁ ?"

"ସେଇଠି ତୁମ ଭାବନାରେ ଭୁଲ ଶୁଭ୍ରା । ଯିଏ ଦେଶକାମ କରେ, ଗଠନମୂଳକ କାମ କରେ, ସେ ଦେଇଜାଣେ, ନେଇ ଜାଣେନା ବା ନେବାକୁ କିଛି ଚାହେଁନା ।"

"ତେବେ ଦେଶର ତ ଆପଣଙ୍କ ପ୍ରତି କିଛି ଗୋଟାଏ କର୍ତ୍ତବ୍ୟ ଅଛି ?"

"ଏହି କର୍ତ୍ତବ୍ୟ କ'ଣ ମୋତେ ମନ୍ତ୍ରୀ କରିବା ? ମନ୍ତ୍ରୀ ହେଲି ହଁ, ଦେଖିବି ଯଦି ଦେଶପାଇଁ କିଛି କରି ନ ପାରିଲି, ତେବେ ମନ୍ତ୍ରିତ୍ୱ ଛାଡ଼ିଦେଇ ମୋ ପୂର୍ବ କାମକୁ ଫେରି ନଯିବି କାହିଁକି ?"

"ଆପଣତ ନ କରିପାରିବାର ଲୋକ ନୁହଁନ୍ତି ସାର୍, ସବୁଥିରେ ଆପଣଙ୍କର ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ଅଛି । ଆପଣ ଆପଣଙ୍କ ବିଭାଗକୁ ଯେମିତି ଦକ୍ଷତାର ସହିତ ଚଳାଇ

ପାରୁଥିବେ, ଅନ୍ୟ କେହି ସେମିତି ଚଳାଇ ପାରିବ, ମୁଁ ଭାବିପାରୁନି । ତା'ଛଡ଼ା ଆପଣଙ୍କର କେଉଁଠି ତ କିଛି ଦୁର୍ବଳତା ନାହିଁ । ତେଣୁ ଆପଣ ଯେ କିଛି କରିପାରୁ ନ ଥିବେ, ମୁଁ ଏହା ବିଶ୍ୱାସ କରିପାରିବିନି ।"

"ଆରେ, ଆମେ ଏଠି ଠିଆହୋଇ କଥାବାର୍ତ୍ତା ହେଉଛେ କ'ଣ ? ଭିତରକୁ ଆସ ।"

ଏତକ କହି ଦେବସ୍ମାନ ଶୁଭ୍ରାକୁ ଡାକି ନେଇଗଲା ଡ୍ରଇଂରୁମ୍‌କୁ । ଅନ୍ୟଘରୁ ଶାନ୍ତିକୁ ଡାକି ଆଣୁ ଆଣୁ କହିଲା, "ଦେଖିଲଣି ଶାନ୍ତି, ଆଜି ଆମ ଘରକୁ କିଏ ଆସିଛି ?"

"ଆରେ ଶୁଭ୍ରାଦେବୀ ଯେ, ନମସ୍କାର । ଆପଣ କେବେ ଆମେରିକାରୁ ଆସିଲେ ?"

"ନମସ୍କାର, ଏଇ କାଲି ତ ଆସିଲି । ଆପଣମାନେ ଏଠି ରହୁଛନ୍ତି ଜାଣି ଚାଲି ଆସିଲି । ଆପଣମାନେ ଏଠି ନ ଥିଲେ ମୋତେ ଯିବାକୁ ପଡ଼ିଥାନ୍ତା, ଆପଣମାନଙ୍କ ସେହି ପୂର୍ବସ୍ଥାନ ଗୋବିନ୍ଦପୁରକୁ । ସିଏ ଅତି ଚମତ୍କାର ଜାଗାଟିଏ ଶାନ୍ତିଦେବୀ । ଆପଣମାନେ ସେହି ଗାଁଟିକୁ କ'ଣ କରି ଗଢ଼ି ନାହାନ୍ତି ସତେ ! ମୋତେ ଭାରି ଭଲଲାଗେ ସେହି ସ୍ଥାନଟି, ସତେ ଯେମିତି ସ୍ୱର୍ଗର ବୈକୁଣ୍ଠପୁର ।"

"ସେଇ ଗୋବିନ୍ଦପୁରକୁ ଯିବାପାଇଁ ଶାନ୍ତି ଏବେ ଯେଉଁ ଜିଦ୍ ଧରିଥିଲା, ତୁମେ ଶୁଣିଲେ ହସି ହସି ଗଡ଼ିଯିବ ଶୁଭ୍ରା । ଦିନେ ହଠାତ୍ କୁପି ଯାଇଥିଲା ଶାନ୍ତି । ମୋତେ ଗୋଟିଏ କାଗଜ ଆଣି କହିଲା ଏଥିରେ ଦସ୍ତଖତ କର । ସେ କାଗଜ ପୁଣି କ'ଣ ଜାଣିଛ ? ମନ୍ତ୍ରିତ୍ୱରୁ ଇସ୍ତଫା ଦେବାପାଇଁ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଏକ ଚିଠି ।"

"କିନ୍ତୁ, କାରଣ ?"

"ବାପାଙ୍କର ଏକ ଭୁଲ୍ ପାଇଁ ବାପାଙ୍କ ଉପରେ ବିରକ୍ତ ହେଲି ବୋଲି । ସେ ବୁଝିପାରେନି ଶୁଭ୍ରା, ବାପାଙ୍କ ଉପରେ ମୁଁ ବିରକ୍ତ ହେଲାବେଳେ ମୋତେ କେମିତି କଷ୍ଟ ହୁଏ । କିନ୍ତୁ କ'ଣ କରିବ ? ଇଏତ ଦେଶ ଶାସନ !"

"ବୁଝିଲେ ଶୁଭ୍ରାଦେବୀ, ପ୍ରତିଦିନ ସକାଳ ହେଲାଠାରୁ ରାତିରେ ଶୋଇଲା ପର୍ଯ୍ୟନ୍ତ ମୁଁ ସ୍ୱାମୀଙ୍କଠାରୁ ସବୁବେଳେ ଶୁଣୁଛି ଗୋଟିଏ କଥା । ଇଏ ଦେଶ ଶାସନ, ଇଏ ଦେଶ ଶାସନ । ଏହା ଶୁଣି ଶୁଣି ମୋ କାନ ବଧିର ପଡ଼ିଗଲାଣି । ସେଥିପାଇଁ କହିଲି, ଚାଲ ଆମେ ଗୋବିନ୍ଦପୁର ପଳାଇଯିବା । ଏ ଦେଶ ଶାସନ ଆମର ଦରକାର ନାହିଁ । କ'ଣ କିଛି ଖରାପ କହିଲି ?"

"କିନ୍ତୁ, କିଛି ଗୋଟିଏ କାରଣ ନଥାଇ ସାର୍ କେମିତି ପଳାଇଯିବେ ଶାନ୍ତିଦେବୀ ?"

"ବାପାଙ୍କର ସେ ଭୁଲ୍ ଯିଏ ଶୁଣିବ, ସେ ବିରକ୍ତ ହେବ ଶୁଭ୍ରା । ତୁମେ ଜାଣିଥିବ ଶୁଭ୍ରା, କିଛିଦିନ ତଳେ ରେଭେନ୍‌ସା କଲେଜରେ ଜଣେ ପ୍ରିନ୍‌ସିପାଲ୍ ଥିଲେ ଡକ୍ଟର ସିହ୍ନା

କେମିଷ୍ଟ୍ରୀରେ ନୁହେଁ, ଅର୍ଥନୀତି ବିଭାଗରେ । ସରକାରଙ୍କୁ ଏକ ଚିଠି ଲେଖିଥିଲେ, ଯେଉଁ ଛାତ୍ରମାନେ ଗବେଷଣା କରୁଛନ୍ତି, ସେମାନେ ଡିପାର୍ଟମେଣ୍ଟର ପାଣି ଖରଚ, ଗ୍ୟାସ୍ ଖର୍ଚ୍ଚ, ବିଜୁଳିଶକ୍ତି ଖର୍ଚ୍ଚ ବାବଦକୁ କିଛି ଟଙ୍କା ସେମାନଙ୍କ କଣ୍ଟିଜେନ୍‌ସି ଗ୍ରାଣ୍ଟ୍‌ରୁ କାଟିକରି ସରକାରଙ୍କୁ ଦିଅନ୍ତୁ ।"

"ହଁ ହଁ ସାର୍, ଏଇ କିଛି ସମୟତଳେ ମୁଁ ରେଭେନ୍‌ସା କଲେଜକୁ ଯାଇଥିଲି । ଠିକ୍ ଏଇକଥା ଆଲୋଚନା ଚାଲିଥିଲା ସେଠି ଅଧ୍ୟାପକମାନଙ୍କ ଭିତରେ ଶୁଣି ଆସିଲି । ସେମାନେ ଭୂତପୂର୍ବ ପ୍ରିନ୍‌ସିପାଲଙ୍କୁ ଯେଉଁ ଭାଷାରେ ଗାଳି ଦେଉଛନ୍ତି ମୁଁ ଶୁଣି ଭାଟିଗଲି ।"

"ବାପା ଏହି ପ୍ରସ୍ତାବଟାକୁ ଫରଓ୍ୱାର୍ଡ଼ କରି ସରକାରଙ୍କୁ ପଠାଇଦେଲେ । ତୁମେ କହିଲ ଶୁଭ୍ରା, ବାପା ଡି.ପି.ଆଇ. ହିସାବରେ ଏହାକୁ ଫରଓ୍ୱାର୍ଡ କରିବା କ'ଣ ଉଚିତ ଥିଲା ?"

"ସାର୍, ସେ ଯେଉଁ ପ୍ରିନ୍‌ସିପାଲ ଥିଲେନା ଅତି ଖଳପ୍ରକୃତିର ଲୋକ । ନିଜର ପୁଣି ଅସଂଖ୍ୟ ପ୍ରକାର ଗଲ୍‌ତି, ଆପଣ ଶୁଣିଲେ କାନରେ ହାତଦେବେ । ରସାୟନ ବିଭାଗରେ ଅଧିକ ଗବେଷଣା ହେଉଛି ବୋଲି ସହି ନପାରି ଏଭଳି କାଣ୍ଡ ଭିଆଇଛନ୍ତି । ରସାୟନ ବିଭାଗ ଉପରେ ତାଙ୍କର ଭାରି ରାଗ । ମୁଖ୍ୟମନ୍ତ୍ରୀଙ୍କ ଲୋକ ବୋଲି କାହାରିକୁ ଖାତିର ନକରି ମନଇଚ୍ଛା କରି ଯାଉଥିଲେ । ଆପଣ ସେହି ଲୋକକୁ ବଦଳି କରିଦେଇ ଖୁବ୍ ଭଲ କରିଛନ୍ତି ।"

"ଗୁଡ଼ ସେକଥା ଶୁଭ୍ରା, ତୁମେ ବର୍ତ୍ତମାନ କୁହ, ଆମେରିକାରେ ତୁମ ଗବେଷଣା କେମିତି ଚାଲିଛି ? ସୁପର୍‌କଣ୍ଡକ୍ଟର ପାଇଁ ତୁମର ସେହି ପଲିମର୍ କେମିତି କାମ ଦେଉଛି ଶୁଣେ ?"

"ସାର୍, ଅତିପରିବାହୀ ଭାବରେ ଆମର ଏବେ ଆଉ ଏକ ପଲିମର୍ ପରୀକ୍ଷାକ୍ଷେତ୍ରରୁ ବାହାରି ଏକ ଦକ୍ଷ ଅତିପରିବାହୀ ଭାବରେ ବଜାରକୁ ଆସିଯିବା ଉପରେ । ଏହି ପଦାର୍ଥଟିର ଶକ୍ତିଶାଳିତା ବର୍ଣ୍ଣନାତୀତ । ଏଥିରୁ ତିଆରି ବିଦ୍ୟୁତ୍‌ଚୁମ୍ବକ ଏତେ ଶକ୍ତିଶାଳୀ ଯେ ଏହାକୁ ବ୍ୟବହାର କରି ମେଗ୍‌ଲେଭ୍ ଟ୍ରେନ୍ ଆମେରିକାର କେତେକ ସହରରେ ବ୍ୟବହାର ହେବା ଉପରେ । ଏହି ରେଲଗାଡ଼ିର ବେଗ କେତେ ଜାଣନ୍ତି ସାର୍, ଘଣ୍ଟାକୁ ୬୦୦ କିଲୋମିଟର ।

"ଅତି ଚମତ୍କାର କଥା ଶୁଭ୍ରା । ତୁମ କୃତିତ୍ୱ ଶୁଣି ମୁଁ ଭାରି ଖୁସି ।"

"ଏହି ଆବିଷ୍କାର ପାଇଁ ଆମେ ଏବେ ଆମେରିକାର ସର୍ବଶ୍ରେଷ୍ଠ ସମ୍ମାନ ଫ୍ରେଙ୍କ୍‌ଲିନ୍ ପଦକ ପାଇଛୁ । କିଛିଦିନ ହେଲା ଆମ ନାଁ ଯୁକ୍ତରାଷ୍ଟ୍ରରୁ ନୋବେଲ ପ୍ରାଇଜ୍ ପାଇଁ ପଠାଯାଇଛି । ଅଧ୍ୟାପିକା ମିସ୍ କାଟୁସୋ, ତାଙ୍କର ସହକର୍ମୀ ମେରି ଲିଟଲ୍‌ମେନ୍ ଓ ସେଥିସହିତ ମୋ ନାଁ । ମୁଁ ଶୁଣୁଛି କାଲେ ଇଂଲଣ୍ଡର ଆଉଜଣେ ବୈଜ୍ଞାନିକ ସେ ପୁଣି କେମ୍ବ୍ରିଜର, ଅତିପରିବାହୀ ପାଇଁ ଗୋଟିଏ ଅତି ଚମତ୍କାର ଜୈବ ପଦାର୍ଥ ବାହାର

କରିଛନ୍ତି । ତାଙ୍କ ନାଁ ମଧ୍ୟ ଇଂଲଣ୍ଡରୁ ପଠାଯାଇଛି । ଆଶା କରାଯାଉଛି, ଏହି ବର୍ଷର ପଦାର୍ଥବିଜ୍ଞାନରେ ଏହି ଦୁଇଦଳ ଭିତରୁ କେଉଁ ଦଳ ବା ଉଭୟେ ନୋବେଲ ପୁରସ୍କାର ପାଇବାର ସମ୍ଭାବନା ଅଛି । ତା ଯଦି ହୁଏ, ତେବେ ସେହି ଇଂରେଜ ବୈଜ୍ଞାନିକ, ମିସ୍ କାରୁସୋ, ମିସ୍ ଲିଟଲ୍‌ମେନ୍ ନୋବେଲ ପୁରସ୍କାର ବିଜେତା ହେବେ, ମୋ ନାଁ କଟିଯିବ । କାରଣ ଏକସଙ୍ଗରେ ତିନିଜଣରୁ ଅଧିକ ଲୋକ ନୋବେଲ ପୁରସ୍କାର ପାଇବେନି ବୋଲି ଆଇନ୍ ଅଛି । ଯଦି ଇଂଲଣ୍ଡର ସେ ବୈଜ୍ଞାନିକଙ୍କ ନାମ ନୋବେଲ ପ୍ରାଇଜ୍ ପାଇଁ ଗୃହୀତ ନହୁଏ, ତେବେ ମିସ୍ କାରୁସୋ ଓ ମିସ୍ ଲିଟଲ୍‌ମେନ୍‌ଙ୍କ ସହି ମୁଁ ନୋବେଲ ପ୍ରାଇଜ୍ ବିଜେତା ହେବି । ଆଉ ଅଳ୍ପଦିନ ଭିତରେ ଜଣା ପଡ଼ିଯିବ ଏକା, ଆମ ଦଳ ନୋବେଲ ପ୍ରାଇଜ ପାଉଛି କି ନାହିଁ ।”

“ମୁଁ ଅତ୍ୟନ୍ତ ଆନନ୍ଦିତ ଶୁଭ୍ରା, ତୁମ ନାମ ନୋବେଲ ପୁରସ୍କାର ପାଇଁ ଯାଇଛି ବୋଲି । ଏହା ତୁମ ପକ୍ଷରେ ତ ଖୁବ୍ ବଡ଼ ସମ୍ମାନ, ମୋ ପକ୍ଷରେ ବି କମ୍ ନୁହେଁ । ମୋର ଜଣେ ଛାତ୍ରୀ ଯେ ଆଜି ନୋବେଲ ପୁରସ୍କାର ବିଜେତା ହେବ, ଏହାଠାରୁ ବଡ଼ ସମ୍ମାନ ମୋ ପାଇଁ ଆଉ କ’ଣ ହୋଇପାରେ ଶୁଭ୍ରା ?”

“କିନ୍ତୁ ଏ ସମ୍ମାନ ଆମର ହକ୍ ନୁହେଁ ସାର୍ । ଏହା ଆପଣଙ୍କ କୃତିତ୍ୱ । ଆପଣ ସେହି ଦିଗଟି ଆରମ୍ଭ କରିଥିବାରୁ ଏକ ପଲିମର୍ ଅତିପରିବାହୀ ପ୍ରକୃତି ଦେଖାଇପାରୁଛୁ । ଆମ ଦଳ ଯଦି ଏଥିପାଇଁ ନୋବେଲ ପୁରସ୍କାର ପାଏ, ଏହା ଆପଣଙ୍କ କୃତିତ୍ୱ ବୋଲି ଧରାଯିବ ସାର୍ । ମିସ୍ କାରୁସୋଙ୍କୁ କିଏ ଏହି ଗବେଷଣା ପାଇଁ ଧନ୍ୟବାଦ ଦେଲେ, ସେ ଆଗ ଆପଣଙ୍କ ନାଁ କହନ୍ତି ।”

“ମିସ୍ କାରୁସୋ ମୋତେ ଧନ୍ୟବାଦ ଦେଇପାରନ୍ତି, କିନ୍ତୁ ଏହା ତାଙ୍କର କୃତିତ୍ୱ । ସେଥିରେ ମୋର କିଛି ନାହିଁ ।”

“ଦେଖୁଛ ଦେଖୁଛ ଶାନ୍ତି, ଶୁଭ୍ରା ଆମ ଦେଶ ପାଇଁ କେତେବଡ଼ ସମ୍ମାନଟାଏ ନେଇ ଆସୁଛି ! ଭାରତମାତାର ସେ ଅତି ଯୋଗ୍ୟତମ ସନ୍ତାନ ଶାନ୍ତି ।” ଆନନ୍ଦରେ ଉତ୍ଫୁଲ୍ଲିତ ହୋଇ କହି ପକାଇଲେ ଦେବସ୍ମାନ ।

“ତୁମେ କ’ଣ ସବୁଦିନ ପାଇଁ ଆମେରିକାରେ ରହିଯିବ ଶୁଭ୍ରା ? ତୁମକୁ ଯଦି ଭାରତରେ ଅଧ୍ୟାପକ ଚାକିରି ମିଳେ, କ’ଣ ଆସିବାକୁ ଇଚ୍ଛୁକ ନୁହଁ ?”

“ନା ସାର୍, ମୋଟେ ନୁହେଁ । ଏଠିତ ବିଜ୍ଞାନ କି ବୈଜ୍ଞାନିକର ମହତ୍ତ୍ୱ କେହି ବୁଝନ୍ତି ନାହିଁ । ଆପଣ ଯାହା ଦୁଃଖ କରି କହନ୍ତି, ଏଠି ଖାଲି ଗବେଷଣା ନାଁରେ ଚମ୍ପୁକୁଟା ଚାଲିଛି, ତାହା ଅକ୍ଷରେ ଅକ୍ଷରେ ସତ । ଏଠିତ ବୈଜ୍ଞାନିକମାନେ ଗଣା ହୁଅନ୍ତି କାହା ଅଧୀନରେ କେତେଜଣ ପିଏଇଚ୍.ଡି. ପାଇଲେ, କାହାର କେତୋଟା ଗବେଷଣା ପ୍ରବନ୍ଧ ପ୍ରକାଶ ପାଇଲା । ଏଠି ସମସ୍ତେ ସଂଖ୍ୟା ଉପରେ ଚାଲନ୍ତି, ଗୁଣାତ୍ମକ ମାନ ଦେଖନ୍ତିନି । ସେଇ ଗୋଟିଏ କାମ କେତେ ଥିସିସ୍‌ରେ ଯେ ଏପାଖ ସେପାଖ ହୁଏ, ତା’ର ଇୟତ୍ତା

ନାହିଁ । ସଂଖ୍ୟା ଉପରେ ଗୁଲିଲେ ଏହିଭଳି ଏପାଖ ସେପାଖ କରିବାଛଡ଼ା ଆଉ କ'ଣ ଉପାୟ ଅଛି ଯେ ? ଏମିତି ଜାଲିୟାତି କରି ଯା'ଠାରୁ ଯେତେ ଅଧିକ ପିଲା ପିଏଇଚ୍.ଡ଼ି. ପାଇଲେ, ସେ ସେତେବଡ଼ ବୈଜ୍ଞାନିକ । ଯା'ର ଯେତେ ଗବେଷଣା ପ୍ରବନ୍ଧ ପ୍ରକାଶ ପାଇଲା, ସେ ସେତେ ବଡ଼ ବୈଜ୍ଞାନିକ । କାମର ଗୁଣାତ୍ମକ ମାନ କେତେ, ସେଆଡ଼କୁ କାହାରି ଦୃଷ୍ଟି ନଥାଏ । ଆମେରିକାରେ ଏକଥା କହିଲେ ଲୋକେ ହସି ହସି ଗଡ଼ିଯିବେ । ଏହା କ'ଣ କେବେ କୃତି ବୈଜ୍ଞାନିକ ବାଛିବାର ମାନଦଣ୍ଡ ହୋଇପାରେ ସାର୍ ? ସାର୍ ଆପଣ ବିଶ୍ୱାସ କରିବେନି, ଆମର ଯେଉଁ କାମ ଆଜି ନୋବେଲ ପ୍ରାଇଜ ପାଇଁ ଯାଇଛି, ତାହା ମାତ୍ର ପ୍ରକାଶ ପାଇଥିଲା ଏକ ନୋଟ୍ ଭାବରେ ବିଲାତର 'ନେଚର୍' ପତ୍ରିକାରେ । ପୂରା ପ୍ରବନ୍ଧ ଏ ପର୍ଯ୍ୟନ୍ତ ପ୍ରକାଶ ପାଇନି ।"

"ଖାଲି ତୁମର କାହିଁକି ଶୁଭ୍ରା, ତୁମ ଆଗରୁ ବହୁ ନୋବେଲ ପୁରସ୍କାର ବିଜେତାଙ୍କ କାମ ନେଚର୍ ପତ୍ରିକାରେ ନୋଟ୍ ଭାବରେ ସର୍ବପ୍ରଥମ ପ୍ରକାଶିତ ହୋଇ ସେମାନଙ୍କ ପ୍ରସିଦ୍ଧି ପ୍ରଚାର କରି ଦେଇଥାଏ । ଓ୍ୱାଟସନ୍-କ୍ରିକ୍‌ଙ୍କ କାମ ଜାଣ ? ନେଚର୍ ପତ୍ରିକାର ଏକ ନୋଟ୍ ତ ସେମାନଙ୍କ ପାଇଁ ନୋବେଲ ପୁରସ୍କାର ଘେନି ଆସିଥିଲା । ମୁଁ ତୁମ ସହିତ ଏକମତ ଶୁଭ୍ରା, ପ୍ରବନ୍ଧର ସଂଖ୍ୟା, କି ପିଏଇଚ୍.ଡ଼ି. ଗ୍ରୁପଙ୍କ ସଂଖ୍ୟା କୌଣସି ବୈଜ୍ଞାନିକର କୃତି ନିର୍ଣ୍ଣୟ କରିବାରେ ମାନଦଣ୍ଡ ହୋଇ ନପାରେ । ଶିକ୍ଷାମନ୍ତ୍ରୀ ଭାବରେ ମୁଁ ସେ ସଂଖ୍ୟାକୁ କେବେ ଗୁରୁତ୍ୱ ଦିଏନି । ଅବଶ୍ୟ ମୋ ପୂର୍ବରୁ ଏଠି ଯେଉଁମାନେ ଥିଲେ, ସେମାନେ ତ ଗବେଷଣା ବିଷୟରେ ଅଜ୍ଞ ଥିଲେ, ତେଣୁ ସେମାନଙ୍କୁ ଯିଏ ଯାହା ବୁଝାଇଦେଲା, ସେମାନେ ସେଥିରେ ଭଳି ଯାଉଥିଲେ ।"

"ତା'ଛଡ଼ା ଏଠି ଆଉ ଏକ ଖରାପ ପ୍ରଥା ରହିଆସିଛି ସାର୍ । ଯାହାକୁ ମୁଁ ପ୍ରଥା ବୋଲି କହିବିନି, ବୈଜ୍ଞାନିକମାନଙ୍କର ଅସାଧୁତା ବୋଲି କହିବି । ଏ ଦେଶରେ ବହୁ ବୈଜ୍ଞାନିକ ପିଏଇଚ୍.ଡ଼ି. ପରେ ପୁଣି ଡ଼ି.ଏସ୍‌ସି. ଡ଼ିଗ୍ରୀ ପାଇବା ପାଇଁ ଥିସିସ୍ ଦିଅନ୍ତି । ଆମେରିକାରେ ସେଭଳି ପ୍ରଥା ନାହିଁ । ଏହା ଇଂଲଣ୍ଡରେ ଅଛି । ଗବେଷଣା ପାଇଁ ଏକାଧିକ ଡିଗ୍ରୀ ପାଇବାର ବ୍ୟବସ୍ଥା ଆମେରିକାରେ ନାହିଁ । ଆମେ ଇଂରେଜମାନଙ୍କର ଅନ୍ଧ ଅନୁକରଣ କରିଥିବାରୁ ଆମ ଦେଶରେ ସେହି ପ୍ରଥା ରହି ଆସିଛି । ଆମେରିକାନ୍‌ମାନଙ୍କୁ ଦୁଇଟା ଡିଗ୍ରୀ କଥା କହିଲେ—ସେମାନେ ଥଟ୍ଟା କରିବେ, ହସି ହସି ଗଡ଼ିଯିବେ । ଏକାଧିକ ଗବେଷଣା ଡିଗ୍ରୀ କେବେ ବୈଜ୍ଞାନିକ ମାନଦଣ୍ଡ ନିର୍ଣ୍ଣୟ କରିବାରେ ସହାୟକ ହୋଇନପାରେ । ନିଜର କାମର ମାନ ନିଜର ମାନଦଣ୍ଡର ପରିଚାୟକ । ଦେଶର ମୂର୍ଖ ଜନତା ଓ ଅଜ୍ଞ ପ୍ରଶାସକମାନଙ୍କୁ ଠକାଇବାର ଏହା ଏକ କାରସାଦି । ଯାହାର, ପିଏଇଚ୍.ଡ଼ି., ଡ଼ି.ଏସ୍‌ସି. ଦୁଇଟା ଡ଼ିଗ୍ରୀ ଅଛି, ସେ ନିଶ୍ଚୟ ଖାଲି ପିଏଇଚ୍.ଡ଼ି. ଡ଼ିଗ୍ରୀଥିବା ବୈଜ୍ଞାନିକଠାରୁ ବଡ଼ । ଏଭଳି ପ୍ରତାରଣାପୂର୍ଣ୍ଣ ପ୍ରଚାର କେତେ ନିକୃଷ୍ଟ ଧରଣର, ମୁଁ ଭାବିପାରେନି ସାର୍ ।"

ଏହାଠାରୁ ଆହୁରି ସାନ ହେଉଛି, ଆମ ଦେଶର ବହୁ ବୈଜ୍ଞାନିକ ସେମାନଙ୍କ ଅଧୀନରେ ହୋଇଥିବା ପିଏଇଚ୍.ଡ଼ି. ଛାତ୍ରମାନଙ୍କ ଗବେଷଣା କାର୍ଯ୍ୟକୁ ଏକ ସନ୍ଦର୍ଭ ଆକାରରେ ବିଶ୍ୱବିଦ୍ୟାଳୟରେ ପଇଠ କରି ଉଚ୍ଚତର ଡ଼.ଏସ୍‌ସି. ଡ଼ିଗ୍ରୀ ପାଇଁ ଚେଷ୍ଟା କରନ୍ତି ଓ କେତେକେ ପାଆନ୍ତି ମଧ୍ୟ । ଗବେଷଣାରେ ଆନ୍ତର୍ଜାତିକ ନୀତି ଅନୁସାରେ ଗୋଟିଏ କାର୍ଯ୍ୟ ଗୋଟିଏ ଡ଼ିଗ୍ରୀ ପାଇଁ ବ୍ୟବହୃତ ହୋଇଥିଲେ, ସେହି କାର୍ଯ୍ୟ ଅନ୍ୟଜଣେ ଲୋକର ଆଉ ଏକ ଡ଼ିଗ୍ରୀ ପାଇଁ ବିନିଯୋଗ ହୋଇ ନପାରେ । ଯଦି ହୁଏ, ତେବେ ଏହା ପୁରାପୁରି ଏକ ଅସାଧୁତା ବା ଖୋଲାଖୋଲି ଖିପାରେ ଚୋରି । ଗବେଷଣାରେ ଯଦି ଚୋରି ବା ଅସାଧୁତା ଦେଖାଦେଲା, ସେ ବୈଜ୍ଞାନିକ ବିଶ୍ୱାସଯୋଗ୍ୟ ନୁହେଁ ବା ତା କାମ ବିଶ୍ୱାସଯୋଗ୍ୟ ହୋଇ ନପାରେ । ଯେଉଁ ବୈଜ୍ଞାନିକ ଆଉ ଗୋଟିଏ ଡ଼ିଗ୍ରୀ ପାଇବା ପାଇଁ ଅସାଧୁତା ବା ଚୋରିର ଆଶ୍ରୟ ନେଲା, ସେ ବୈଜ୍ଞାନିକ ତା ଗବେଷଣାରେ ଯେ ସେହିଭଳି କେତେ ଚୋରି କରି ନଥିବ, ତାକୁ ଅସ୍ୱୀକାର କରିବ କିଏ ?

"ଏହା କ'ଣ ଆମ ରାଜ୍ୟରେ କେଉଁଠି ହୋଇଛି ନା ମନରୁ ଏମିତି କହୁଛ ? ଏଭଳି ହୋଇଥିଲେ, ଏହା ଖୁବ ଅନ୍ୟାୟ । ତୁମେ କ'ଣ କାହାକୁ ଏମିତି କରିବାର ଜାଣିଛ ଶୁଭ୍ରା ? ଯଦି ଜାଣିଛ ସେମାନଙ୍କର ନାମ ମୋତେ ଦେଇପାରିବ ?"

"ଜାଣିଛି ଯେ, ହେଲେ ମୁଁ ନାମ ଦେବାଟା ସୁନ୍ଦର ହେବନି । ଆମ ଓଡ଼ିଶାର କେତେକ ବିଶ୍ୱବିଦ୍ୟାଳୟରେ ଏହା ହୋଇଛି । ଆପଣ ଜାଣିବାକୁ ଚେଷ୍ଟାକଲେ ନିଶ୍ଚୟ ଜାଣିପାରିବେ । ମୋ ମତରେ ଏଗୁଡ଼ିକ ଜୁଆଚୋରି ଛଡ଼ା ଅନ୍ୟ କିଛି ନୁହେଁ । ଯେଉଁ ଦେଶର ବୈଜ୍ଞାନିକମାନଙ୍କ ସାଧୁତା ଏତେ ନିମ୍ନଧରଣର, ମୁଁ କ'ଣ ସେହି ଦେଶର ବିଶ୍ୱବିଦ୍ୟାଳୟକୁ ଆସିବାକୁ ଆପଣ କହୁଛନ୍ତି ସାର୍ ? ମୁଁ ବରଂ ଚାକିରି ନ କରିବି, ଏହିସବୁ ସ୍ଥାନର ପଦପଦବୀରେ କଦାପି ରହିବିନି । ଆମ ଦେଶ ଯେ କେଉଁ ଅନ୍ଧକାର ଯୁଗରେ ଅଛି, ମୁଁ ଭାବିପାରେନି ସାର୍ ।"

"ସାର୍, ଫୋନ୍ ଆସିଛି ପୋଲିସ୍ ଷ୍ଟେସନରୁ ।" ରୁମ୍ ଭିତରକୁ ପଶି ଆସି ପି.ଏ. ଖବର ଦେଲା ।

"ମୋ ପାଖକୁ ?"

"ହଁ ସାର୍, ଆପଣଙ୍କ ପାଖକୁ ।"

"ତେବେ ଫୋନ୍‌ଟା ଏଠାକୁ ନେଇଆସ ।"

ଦେବସ୍ମିନ ଫୋନ୍ ଧରିଲା । 'ହଁ, ହଁ, ମୁଁ ଶିକ୍ଷାମନ୍ତ୍ରୀ କହୁଛି ।" "ଆଁ, ଆଁ, ଶାନ୍ତା ଆତ୍ମହତ୍ୟା କରିଛି ବାଥ୍‌ରୁମ୍‌ରେ ? ଏଇ କିଛି ସମୟତଳେ ସେ ଓ ତା'ର ସ୍ୱାମୀ ଏଠାକୁ ଆସିଥିଲେ । ହଁ, ହଁ, ଏହି କିଛି ସମୟ ତଳେ । ଆଁ, ଏଠାରୁ ଫେରି ବାଥ୍‌ରୁମ୍‌ରେ ନିଜ ଦେହରେ ପେଟ୍ରୋଲ ଢାଳି ନିଆଁ ଲଗାଇ ପୋଡ଼ି ମରିଛି ଶାନ୍ତା ?

"ଓଃ, କେତେ ଦୁଃଖର କଥା ସତେ ? ନିଜ ସ୍ୱାମୀଙ୍କ ଅପକୀର୍ତ୍ତି ଜାଣିବାପରେ ସେ ଆତ୍ମହତ୍ୟା କରିଥିବ ନିଶ୍ଚୟ ! ଝିଅଟା ବଡ଼ ସେନ୍‌ସିଟିଭ୍ ଥିଲା ।"

"ସାର୍, କିଏ ଆତ୍ମହତ୍ୟା କଲା ?" ଶୁଭ୍ରା ବ୍ୟସ୍ତ ହୋଇ ପଚାରିଲା । ଶାନ୍ତ ମଧ ବ୍ୟସ୍ତ ହୋଇ ଠିକ୍ ପଚାରିବା ଉପରେ ।

"ଏହି କିଛି ସମୟତଳେ ଶାନ୍ତା ଓ ତା'ର ସ୍ୱାମୀ ମୋଠାକୁ ଆସିଥିଲେ, ସ୍ୱାମୀଙ୍କ ନାଁରେ ଏକ ଭିଜିଲାନ୍‌ସ ମୋକଦ୍ଦମା ନେଇ । ମୋକଦ୍ଦମାଟି ଏମିତି ସାଙ୍ଘାତିକ ଯେ, ମୋଠାରୁ କିଛି ସାହାଯ୍ୟ ମିଳିବା ସମ୍ଭବ ହେଲାନି । ସ୍ୱାମୀଙ୍କ ଅପକୀର୍ତ୍ତିରୁ ରକ୍ଷା ପାଇବା ପାଇଁ ଶାନ୍ତା ବାଧହୋଇ ଘରେ ଯାଇ ଆତ୍ମହତ୍ୟା କଲା । ବଡ଼ ଦୁଃଖଦ ଘଟଣା ସତେ ! ବିଚାରି ବଡ଼ ଆଶାରେ ଧାଇଁ ଆସିଥିଲା ମୋଠାକୁ । ତୁମେ ବୋଧହୁଏ ଚିହ୍ନି ନଥିବ ଶୁଭ୍ରା, ଓଡ଼ିଶାର ଭୂତପୂର୍ବ ଶିକ୍ଷାମନ୍ତ୍ରୀ ମିଷ୍ଟର ଧନୁର୍ଦ୍ଧର ମହାନ୍ତିଙ୍କ ଜ୍ୟେଷ୍ଠାକନ୍ୟା ସେ । ରେଭେନ୍‌ସା କଲେଜରେ ସେ ଏମ୍.ଏସ୍‌ସି. ପଢୁଥିଲାବେଳେ ମୁଁ ସେଠି ଅଧ୍ୟାପକ ଥିଲି । ମୋର ଛାତ୍ରୀ ଥିଲା ଶାନ୍ତା । ସେ ତୁମଠାରୁ ଢେର୍ ସିନିୟର ଥିଲା ।"

"ଆପଣଙ୍କ ସହିତ ଯାହାଙ୍କ ବିବାହ ପ୍ରସ୍ତାବ ଚାଲିଥିଲା, ଆପଣ ଯେତେବେଳେ ଆଇ:ଏ:ଏସ୍: ହେଲେ । ଇଏ ସେହି ଝିଅଟି ? ମୁଁ ସେତେବେଳେ ଫାଏଷ୍ଟ୍ କଲେଜରେ ଆଇ:ଏସ୍‌ସି: ପଢୁଥିଲି ।"

"ତୁମେ କେମିତି ସେ ଖବର ପାଇଲ ଶୁଭ୍ରା ! ମୁଁ ଦେଖୁଛି ତୁମେ ବଡ଼ ଓସ୍ତାଦ୍ ଏସବୁ ଖବର ରଖିବାରେ ।"

"ସାର୍ ଥିଲି, ବର୍ତ୍ତମାନ ନୁହେଁ ! ସାର୍, ମୁଁ ବହୁତ ଖବର ରଖେ । ଖବର ସଂଗ୍ରହ କରିବା ମୋର ଗୋଟିଏ ବଡ଼ ହବି ଥିଲା ସେତେବେଳେ ।"

"ଆପଣଙ୍କ ମନେଥିବ ସାର୍, ଆପଣ ମୋତେ ଆରେଷ୍ଟ୍ କରି ଯେତେବେଳେ ଲାଲବାଗ ଥାନା ହାଜତରେ ରଖିଦେଲେ, ଆପଣ କେଉଁଠି ରହନ୍ତି, ଆପଣ କାହା ପୁଅ, କେଉଁ ଝିଅର ଆପଣଙ୍କୁ ବିଭାହେବା ପାଇଁ ପ୍ରସ୍ତାବ ଅଛି, ସେହିସବୁର ଠିକଣାଖି ଖବର ସେହିଦିନ ସନ୍ଧ୍ୟାସୁଦ୍ଧା ସଂଗୃହୀତ ହୋଇ ମୋଠାରେ ପହଞ୍ଚି ଯାଇଥିଲା । ରେଭେନ୍‌ସା କଲେଜର ପଦାର୍ଥବିଜ୍ଞାନ ଅଧ୍ୟାପିକା ରେଖା ମହାନ୍ତିଙ୍କୁ ଆପଣ କିଭଳି ଭଲ ପାଉଥିଲେ, ସେ ମଧ ଆପଣଙ୍କୁ କେତେ ଭଲ ପାଉଥିଲେ, ମୁଁ ସେହିଦିନ ଜାଣିଲି । ଆପଣମାନେ ପରସ୍ପରକୁ ଖୁବ୍ ଭଲ ପାଇ ଘଣ୍ଟା ଘଣ୍ଟା ଧରି କଲେଜ ପଡ଼ିଆରେ ବସି କଥାବାର୍ତ୍ତା ହେଉଥିଲେହେଁ, ସାହସ ଅଭାବରୁ ପରସ୍ପରକୁ ବିଭାହେବା କଥା କେହି ଉଠାଉ ନଥିଲେ । ରେଖାଦେବୀଙ୍କ ପକ୍ଷରୁ ବିଭାଘର ପ୍ରସ୍ତାବ ଆସିଥାନ୍ତା, କିନ୍ତୁ ଆପଣ ଆଇ:ଏ:ଏସ୍: ପାଇଯିବାରୁ ରେଖାଦେବୀଙ୍କ ପରିବାର ଡରିଗଲେ । ସେତେବେଳେ ଡ:ପି:ଆଇ:ଙ୍କ ଘରୁ, ଶିକ୍ଷାମନ୍ତ୍ରୀଙ୍କ ଘରୁ ବିଭାଘର ପ୍ରସ୍ତାବ ଆସିବାର ସୂଚନା ପାଇ ରେଖାଦେବୀ ଜଣେ

ଇଞ୍ଜିନିୟରଙ୍କୁ ବିଭା ହୋଇଗଲେ । ପଦସ୍ଥ ଅଫିସର ତଥା ଧନୀଘରର ଝିଅମାନଙ୍କୁ ବିବାହ କରିବାକୁ ଆପଣ ସର୍ବଦା ପଛଉଥିଲେ, କ'ଣ ନା ସେମାନେ ଆପଣଙ୍କ ଘରେ ଚଳି ପାରିବେନି ବୋଲି ।''

"ତୁମେ ଏଡ଼େ ଓସ୍ତାଦ୍ ଝିଅ ଶୁଭ୍ରା, ମୁଁ ଜାଣି ନଥିଲି ।''

"ନା ସାର୍, ଫେର୍ ଭୁଲ କଲେ । ମୁଁ ଥିଲି, ବର୍ତ୍ତମାନ ନୁହେଁ ।''

"ଶୁଭ୍ରାଦେବୀ ଯାହାସବୁ କହିଲେ ତାହା କ'ଣ ସତ ? କେଉଁ ରେଖାଦେବୀଙ୍କୁ ତୁମେ ବିବାହ କରିବାକୁ ଚାହୁଁଥିଲ ? ସେଦିନ ଯେ ନିଜ ବଦଳି ପାଇଁ କହିବାକୁ ତୁମଠାକୁ ଆସିଥିଲେ ?''

"ହଁ ଶାନ୍ତି, ସେହି ।''

"ତୁମେତ ସହଜରେ କାହା ଅନୁରୋଧକୁ ରଖନି । ତାଙ୍କ ଅନୁରୋଧକୁ ତୁମେ କ'ଣ ସେଥିପାଇଁ ରଖିନେଇ ତାଙ୍କୁ ସଙ୍ଗେ ସଙ୍ଗେ ପ୍ରୋଫେସର ପାହ୍ୟାକୁ ପ୍ରମୋସନ ଦେଇଦେଲ । ଏହା ତୁମର ଦୁର୍ବଳତା ନୁହେଁ ତ ? ଯଦି ହୋଇଥାଏ, ବାପା କେତେ ଖରାପ ଭାବିଥିବେ ତୁମକୁ ?''

"ନା, ନା, ଶାନ୍ତି । ରେଖାଦେବୀଙ୍କ ପ୍ରତି ବିରାଟ ଅନ୍ୟାୟ ହୋଇ ଯାଇଥିଲା ବହୁବର୍ଷ ଧରି । ତାଙ୍କ ପ୍ରମୋସନ ବହୁ ଆଗରୁ ହେବା ଉଚିତ ଥିଲା । ସେହି ଭୁଲକୁ ସୁଧାରିବା ପାଇଁ ମୁଁ ସେଦିନ ସେଭଳି ଡିସିସନ୍ ନେଲି ।''

"ଶୁଭ୍ରାଦେବୀ ବର୍ତ୍ତମାନ ଯେଉଁକଥା କହିଲେ, ସତରେ କ'ଣ ତୁମେ ତାଙ୍କୁ ଆରେଷ୍ଟ କରି ଥାନା ହାଜତରେ ରଖି ଦେଇଥିଲ ?'' ବଡ଼ ଆଶ୍ଚର୍ଯ୍ୟ ହୋଇ ପଚାରିଲି ଶାନ୍ତି ।

"ହଁ ଶାନ୍ତି, ତୁମେ ଶୁଭ୍ରାକୁ ବର୍ତ୍ତମାନ ଯେମିତି ଶିଷ୍ଟ, ଭଦ୍ର ଦେଖୁଛ, ଶୁଭ୍ରା ତା'ର କଶୋରୀ ବୟସରେ ସେମିତି ନଥିଲା । ପୋଷାକପତ୍ର ପିନ୍ଧିବାରେ ସେ ସେତେ ଭଦ୍ର ନଥିଲା । ଧନୀର ଦୁଲାଳୀ ସେ । କିହାତି ଆଧୁନିକ ଧରଣର ଆମେରିକାନ୍ ପୋଷାକ ପିନ୍ଧି କଲେଜକୁ ଆସିବା ଥିଲା ତା'ର ଏକ ବଦଭ୍ୟାସ । ସେଥିପାଇଁ ହାଏଷ୍ଟ୍ କଲେଜରେ ହୋଇଥିଲା ଏକ ଷ୍ଟ୍ରାଇକ୍ । ମୁଁ ସେତେବେଳେ ଥିଲି କଟକରେ ଆଡ଼ିସନାଲ ଜିଲ୍ଲା ମାଜିଷ୍ଟ୍ରେଟ୍ । ଅଶ୍ଳୀଳ ପୋଷାକ ପିନ୍ଧିଥିବା ଅପରାଧରେ ଶୁଭ୍ରାକୁ ଆରେଷ୍ଟ କରି ଥାନା ହାଜତରେ ପକାଇ ଦେଇଥିଲି । ତା ନ ହୋଇଥିଲେ ଶୁଭ୍ରାର ମନରେ ପରିବର୍ତ୍ତନ ଆସି ନଥାନ୍ତା କି କଲେଜ ଷ୍ଟ୍ରାଇକ୍ ସରି ନଥାନ୍ତା ।''

"ମୋତେ ଆପଣ ଆଜିର ଶୁଭ୍ରା ଭାବରେ ଦେଖି ନଥାନ୍ତେ ଶାନ୍ତିଦେବୀ ।''

ଦେବବାବୁଙ୍କ ମୁହଁରୁ କଥା ଛଡ଼ାଇନେଇ କହିଲା ଶୁଭ୍ରା, "ମୁଁ ବର୍ତ୍ତମାନ ବୁଝୁଛି ସାର୍ । ଆପଣ ମୋତେ ସେଦିନ ଆରେଷ୍ଟକରି ହାଜତରେ ପକାଇଦେଇ ନଥିଲେ ମୁଁ ଠିକ୍ ବାଟକୁ ଆସିପାରି ନଥାନ୍ତି । ମୁଁ ଖାଲି ଆପଣଙ୍କଠାରୁ ପ୍ରାଥମିକ ଗବେଷଣା ଟ୍ରେନିଂ

ପାଇନି ସାର୍, ମୋତେ ଆଜି ମଣିଷ କରି ଗଢ଼ି ତୋଳିବାରେ ଆପଣଙ୍କ ଅବଦାନ ଅସୀମ । ମୁଁ ଆଜି ଯଦି ମଣିଷ ହୋଇଥାଏ କି ବୈଜ୍ଞାନିକ ହୋଇଥାଏ ତେବେ ତାହା ସୁଦ୍ଧା ଆପଣଙ୍କ ଯୋଗୁଁ । ଆନ୍ତର୍ଜାତିକ କ୍ଷେତ୍ରରେ ମୁଁ ଆଜି ଯାହାସବୁ ସମ୍ମାନ ପାଇଛି, ସେସବୁ ଆପଣଙ୍କ ଯୋଗୁଁ ସାର୍ । ଆପଣ ସେ ଶୁଭ୍ରାର ମୃତ ଶରୀର ଉପରେ ଗଢ଼ି ତୋଳିଥିଲେ ଯେଉଁ ନୂତନ ଶୁଭ୍ରା, ସେହି ସୃଷ୍ଟିର ସ୍ରଷ୍ଟା ଭାବରେ ମୋର ସମସ୍ତ ସମ୍ମାନ ଆପଣଙ୍କ ପାଦତଳେ ଲୋଟିପଡ଼ିବା କଥା ।''

କିଛି ସମୟ ରହି, "ଶାନ୍ତାଦେବୀ କାହିଁକି ଆତ୍ମହତ୍ୟା କଲେ ସାର୍ ?'' ପଚାରିଲା ଶୁଭ୍ରା ।

"ତୁମେତ ଜାଣିଛ ଶୁଭ୍ରା, ତାଙ୍କ ବାପା ବହୁ ଖୋଜାଖୋଜି କରି ଝିଅକୁ ଜଣେ ଦକ୍ଷ ଆଇ:ଏ:ଏସ୍: ଅଫିସରଙ୍କୁ ବିବାହ ଦେଇଥିଲେ । ସେହି ଆଇ:ଏ:ଏସ୍: ଅଫିସରଙ୍କ ବିରୁଦ୍ଧରେ ବହୁଦିନ ଧରି ଭିଜିଲାନ୍ସ ବିଭାଗ ଲାଗିଥିଲା । ସେ ବର୍ତ୍ତମାନ ଯେତିକି ଧନର ମାଲିକ ହୋଇଛନ୍ତି, ତାଙ୍କ ଜୀବନକାଳ ଭିତରେ ସେ ସେତେ ଧନ କଦାପି ନ୍ୟାୟଭାବରେ ଅର୍ଜନ କରିପାରି ନଥାନ୍ତେ । ତେଣୁ ପ୍ରଶ୍ନ ହେଲା, ସେ ଏତେ ଧନ ଆଣିଲେ କେଉଁଠୁ ? ଚାକିରିକାଳ ଭିତରେ ସେ ନିଶ୍ଚୟ ସରକାରୀ ଧନ ଆତ୍ମସାତ୍ କରିଛନ୍ତି । ତା ଯଦି ପ୍ରମାଣିତ ହୋଇଯାଏ, ତେବେ ଚାକିରି ଯିବ ଓ ସେ ଜେଲ ଭୋଗିବେ ।

ନିଜକୁ ରକ୍ଷା କରିବା ପାଇଁ ଏହି ଗଚ୍ଛିତ ଧନ ସେ କେମିତି ପାଇଲେ ତହିଁର ଯେଉଁ କୈଫିୟତ ଦେଲେ, ଶୁଣିଲେ ତୁମେ କାନରେ ହାତଦେବ ଶୁଭ୍ରା । ତୁମେ ଶୁଣି ପାରିବନି ସେ କୈଫିୟତ ।

"ଆଁ, ଏମିତି ! କୁହନ୍ତୁ ତ କ'ଣ ସେ କୈଫିୟତ ।''

"ଶୁଣିବ ? ସେ କୈଫିୟତ ଦେଲେ, ତାଙ୍କ ସ୍ତ୍ରୀ ଶାନ୍ତା ରାତିରେ ବିଭିନ୍ନ ହୋଟେଲକୁ କଲ୍‌ଗାର୍ଲ ଭାବରେ ଯାଇ ଏହି ଧନ ସଂଗ୍ରହ କରିଛି । ପୁଣି ହିସାବଦେଲେ, ତାଙ୍କ ସ୍ତ୍ରୀ ଏହି କାର୍ଯ୍ୟ ଆରମ୍ଭ କରିଥିଲେ ବିବାହର ବହୁବର୍ଷ ପୂର୍ବରୁ । ସେ ସେହିଦିନରୁ ସଞ୍ଚିତ ଗୁପ୍ତଧନ ତାଙ୍କୁ ଦେଇଥିଲେ ବିବାହର ପରେ ।''

"ଏହି କୈଫିୟତକୁ କ'ଣ ଭିଜିଲାନ୍ସ ବିଭାଗ ବିଶ୍ୱାସ କଲା ?''

"କେମିତି ବା କରିଥାନ୍ତା ! ଜଣେ ମନ୍ତ୍ରୀଙ୍କ ଝିଅ, ପୁଣି ଉଚ୍ଚ ମେଧାବୀ ଛାତ୍ରୀ, ସେ କ'ଣ କେବେ ଏଭଳି ଏକ ହୀନ ଜୀବନଯାପନ କରିପାରେ ? ଶାନ୍ତା ମୋର ଛାତ୍ରୀ, ଅତି ଉଚ୍ଚ ଭଦ୍ର ଚରିତ୍ରର ଝିଅ ବୋଲି ମୁଁ ତାକୁ ଜାଣେ । ଏ ପରିସ୍ଥିତିରେ ଏଭଳି ଏକ ତାହାମିଛ କୈଫିୟତକୁ କିଏବା କାହିଁକି ଗ୍ରହଣ କରିବ ?''

ଏଇ କିଛିଦିନ ତଳେ ଶାନ୍ତା ଓ ତା'ର ସ୍ୱାମୀ ମୋଠାକୁ ଆସିଥିଲେ । ମୁଁ ତାଙ୍କ କୈଫିୟତକୁ ଯେତେବେଳେ ପଢ଼ି ଶୁଣାଇଦେଲି, ଶାନ୍ତାକୁ ବଡ଼ ବାଧିଲା ଏହି କୈଫିୟତ । ସେ ପାଗଳୀଭଳି ହୋଇଗଲା ଏହି କୈଫିୟତ ଶୁଣୁ ଶୁଣୁ ।

"ଏଭଳି କୈଫିୟତ କାହାକୁ ନ ବାଧିବ ସତେ ? ଓଃ ମଣିଷ ନିଜ କୁକର୍ମକୁ ଘୋଡ଼ାଇବା ପାଇଁ ନିଜ ଧର୍ମପତ୍ନୀର ମାନ ମହତକୁ ଏମିତି ବଳି ଦେଇପାରେ ? ଓଃ ସେ ମଣିଷ ନା ପିଶାଚ ? ଏତେବଡ଼ ଡାହାମିଛ କଥା ନିଜ ସ୍ୱାମୀ ତାଙ୍କ ସ୍ତ୍ରୀଙ୍କ ନାଁରେ ଯେ କହିପାରନ୍ତି, ମୁଁ ଧାରଣା କରିପାରୁନି ସାର୍ ।"

"ଏଭଳି ଦୁର୍ନାମକୁ ନେଇ ଶାନ୍ତା କେମିତି ଜୀବନଧାରଣ କରିଥାନ୍ତା କହିଲ ଶୁଭ୍ରା ? ସ୍ୱାମୀ ପାପର ପ୍ରାୟଶ୍ଚିତ କଲା ନିଜ ଜୀବନକୁ ଆହୁତି ଦେଇ । ଆଇ.ଏ.ଏସ୍. ଜୋଇଁ ପାଇଁ ଯେଉଁ ବାପ ମା' ପାଗଳ ହୁଅନ୍ତି, ତା'ର ପରିଣତି ହୁଏ ଏହିଭଳି ଶୋଚନୀୟ ଭାବରେ । ବଡ଼ ଦୁଃଖଦାୟକ ଏଇ ଘଟଣା । ଲୋକେ ଯେତେବେଳେ ଅନ୍ୟାୟରେ ଧନ ଉପାର୍ଜନ କରନ୍ତି, ସେମାନେ ଆଗପଛ କିଛି ବିଚାର ନକରି ଅସନ୍ତ ଧନ ସଂଗ୍ରହରେ ଲାଗି ପଡ଼ନ୍ତି । ଏହାର ଫଳ ଯେ ଦିନେ ବିଷମୟ ହୁଏ, ସେଆଡ଼କୁ ସେମାନଙ୍କର ଦୃଷ୍ଟି ନଥାଏ ।"

ଏଇ କିଛିଦିନ ତଳେ ମୋର ଆଉଜଣେ ଛାତ୍ରୀ ଆତ୍ମହତ୍ୟା କରିଥିଲା ଅତି ନିର୍ମମ ଭାବରେ ମହାନଦୀରେ ଝାସଦେଇ । ତାଙ୍କ ସ୍ୱାମୀ ଜଣେ ଆଇ.ଏ.ଏସ୍. ଅଫିସର । ନିଜ ସ୍ୱାମୀ ଅତ୍ୟଧିକ ବ୍ୟଭିଚାରୀ, ଲାଞ୍ଚଖୋର, ଅସଚ୍ଚରିତ୍ର ବୋଲି ଜାଣିଲାପରେ ସେ ଆତ୍ମହତ୍ୟା କଲେ । ତୁମେ ତାଙ୍କୁ ଜାଣିଥିବ ଶୁଭ୍ରା । ସେ ଆମ ରାଜ୍ୟର ଭୂତପୂର୍ବ ଡ଼.ପି.ଆଇ. ଡକ୍ଟର ଶାନ୍ତନୁ ମହାପାତ୍ରଙ୍କ କନ୍ୟା ମଧୁସ୍ମିତା । ସେ ମଧ ଶାନ୍ତାର ସହପାଠିନୀ ଥିଲା ।

"ହଁ ସାର, ଜାଣେ । ତାଙ୍କ ସହିତ ମଧ ଆପଣଙ୍କର ବିଭାଘର ପ୍ରସ୍ତାବ ଚାଲିଥିଲା ସେ ସମୟରେ ।"

"ତୁମେ ବି ସେ ଖବର ରଖିଛ ? ତୁମକୁ ଆଉ ପାରିହେବନି ଦେଖୁଛି ।"

"ମଧୁସ୍ମିତାର ସ୍ୱାମୀ ମିଷ୍ଟର ଓଝା ଚାକିରୀରୁ ବରଖାସ୍ତ ହେଲାପରେ ପାଗଳ ହୋଇଯାଇ କଟକ ବଡ଼ ଡାକ୍ତରଖାନାରେ ଚିକିତ୍ସିତ ହେଉଥିଲେ । ସେ ବର୍ତ୍ତମାନ ଭଲ ହେଲେଣି କି କଅଣ ଜାଣିନି । ଜୀବନସାରା ସେ ଯେଉଁ ଅକ୍ଷମଣୀୟ ଅପରାଧ କରିଛନ୍ତି, ସେଥିଯୋଗୁଁ ସେ ଯେ ପାଗଳାମୀରୁ ଭଲ ହେବେ ଏଥିରେ ମୋର ଯଥେଷ୍ଟ ସନ୍ଦେହ ଅଛି ।"

ଦେବବ୍ରତ, ଶୁଭ୍ରା କଥାବାର୍ତ୍ତା ହେଉଥାନ୍ତି, ହଠାତ୍ ବାହାରେ ଏକ ଗଣ୍ଡଗୋଳ ଶୁଣାଗଲା—'ହେଇ ପାଗଳ ଅଇଲା', 'ହେଇ ପାଗଳ ଅଇଲା', ପିଲାମାନେ ବଡ଼ ଜୋରରେ ପାଟି କରୁଥାନ୍ତି । ପାଟି ସଙ୍ଗେ ସଙ୍ଗେ ଢୋ, ଢା ଢେଲା ପଥର ପଡ଼ିବାର ଆବାଜ । ଦେବବ୍ରତ ଓ ଶୁଭ୍ରା ଦୁଆରପାଖକୁ ଯାଇ କ'ଣ ହେଲା ଅନେଇଲାବେଳକୁ ପାଗଳଟାଏ ପିଲାଙ୍କଠାରୁ ଢେଲାମାଡ଼ ଖାଇବା ଭୟରେ ମନ୍ତ୍ରୀଙ୍କ ଗେଟ୍ ଭିତରକୁ ପଳାଇ ଆସୁଛି ଢେଲାମାଡ଼ରୁ ରକ୍ଷା ପାଇବା ପାଇଁ । ଏହି ଗଣ୍ଡଗୋଳ ଶୁଣି ଶାନ୍ତି ମଧ ଘର ଭିତରୁ ଦାଣ୍ଡ ଦୁଆରକୁ ଚାଲି ଆସିଲା ଗଣ୍ଡଗୋଳ କ'ଣ ହେଉଛି ଜାଣିବା ପାଇଁ । ସେ ଆସି

ବାରଣ୍ଡାରେ ଠିଆ ହୋଇଛନ୍ତି କି ନାହିଁ, ପାଗଳଟା ଗେଟ୍‌ଆଡ଼ୁ ଦୌଡ଼ିଆସି ଶାନ୍ତିର କୋଡ଼ତଳେ ପଡ଼ିଯାଇ କହିଲା, "ମା' ମୋତେ ରକ୍ଷାକର, ରକ୍ଷାକର ମା', ଏମାନେ ମୋତେ ମାରି ପକାଇବେ ।"

"ଏ ପାଗଳଟା କେଉଁଠୁ ଆସିଲା ? ହଠାତ୍ ଚକ୍ଷାର କରି ଉଠିଲା ଶାନ୍ତି । ସଙ୍ଗେ ସଙ୍ଗେ ଚପରାଶୀମାନଙ୍କୁ ଡାକିଲା ଏ ପାଗଳଟାକୁ ଗେଟ୍ ବାହାରକୁ ବାହାର କରିଦେବା ପାଇଁ । ପାଗଳଠାରୁ ଦୂରେଇଯାଇ ଶୁଭ୍ରା ଓ ଦେବସ୍ମାନ ଯେଉଁଠି ଠିଆ ହୋଇଥିଲେ ସେଇଠିଯାଇ ଠିଆହେଲା ଶାନ୍ତି ।

ଦେବସ୍ମାନ ଚିହ୍ନିଲା, ଏ ପାଗଳ ଆଉ କେହି ନୁହେଁ, କଟକଜିଲ୍ଲାର ପୂର୍ବତନ ଜିଲ୍ଲାପାଳ ମିଷ୍ଟର ପ୍ରେମନାଥ ଓଝା । ହସ୍ପିଟାଲରୁ ସମସ୍ତଙ୍କ ଅଲକ୍ଷ୍ୟରେ ପଳାଇ ଆସି ସମ୍ଭବତଃ ରାସ୍ତାରେ ବୁଲୁଛି ।

ଶାନ୍ତିକୁ ଲକ୍ଷ୍ୟକରି ଦେବସ୍ମାନ ପଚାରିଲା, "ତୁମେ ଏହାଙ୍କୁ ଚିହ୍ନିପାରୁଛ ଶାନ୍ତି, ଏ କିଏ ?"

ଶାନ୍ତି ଚିହ୍ନି ନପାରି ଦେବସ୍ମାନର ମୁହଁକୁ ବଲବଲ କରି ଅନାଇ ରହିଲା ।

"ଏ ହେଉଛନ୍ତି ସେହି କଟକଜିଲ୍ଲାର ପୂର୍ବତନ ଜିଲ୍ଲାପାଳ ମିଷ୍ଟର ପ୍ରେମନାଥ ଓଝା ।"

"ଆଁ, ମିଷ୍ଟର ଓଝା ?" ଚମକିପଡ଼ିଲା ଶାନ୍ତି ।

ଓଃ, କି ଦୁରବସ୍ଥା ସତେ ! ଦେହରେ କିଛି ନାହିଁ, ଛିଣ୍ଡା ପେଣ୍ଟ୍, ଛିଣ୍ଡା ସାର୍ଟଟାଏ । ଦେହସାରା ଧୂଳିଧୂସର । ଠାଏ ଠାଏ ଦେହରେ ଟେକାମାଡ଼ର ଚିହ୍ନ । କେଉଁଠୁ କେଉଁଠୁ ରକ୍ତ ବି ବୋହୁଛି ।

ଗେଟ୍ ପାଖରେ ପିଲାମାନେ ଠିଆହୋଇ ପାଟି କରୁଥାନ୍ତି, "ଏ ପାଗଳଟାକୁ ବାହାର କରି ଦିଅନ୍ତୁ ଆଜ୍ଞା । ସେ ସେଠି ଅଇଁଠାପତର ଗୋଟେଇଥିଲା । କୁକୁରଠାରୁ ଅଇଁଠା-ପତର ଛଡ଼ାଇନେଇ ଇଏ ତାକୁ ଗୋଟେଉଛି । ତାକୁ ବାହାର କରି ଦିଅନ୍ତୁ ସେଠୁ । ସେଠି ତାକୁ ବସିବାକୁ ଦିଅନ୍ତୁନି ଆଜ୍ଞା ।"

ଶାନ୍ତି ପାଗଳଟାକୁ ପୁଣିଥରେ ଅନାଇଲା । ପାଗଳର ଫେରି ସେହି କାକୁତି-ମିନତି । "ମୋତେ ରକ୍ଷାକର ମା, ମୋତେ ରକ୍ଷାକର, ମୋତେ ଏମାନେ ମାରି ପକାଇବେ ।"

ଶାନ୍ତି ଆଖିରୁ ଦୁଇଟୋପା ଉଷ୍ମ ଅଶ୍ରୁ ଗଡ଼ିପଡ଼ିଲା ବାରଣ୍ଡାର ସେଇ ସିମେଣ୍ଟ ଚଟାଣ ଉପରେ । ଏ ଖାଲି ଲୋତକ ନୁହେଁ କି ପ୍ରତିହିଂସାର ଲୋତକ ନୁହେଁ । ଏ ଲୋତକ ହେଉଛି ଦୟା ଓ କାରୁଣ୍ୟର ଲୋତକ । ମନେ ମନେ ଭାବୁଥାଏ ଶାନ୍ତି, କି ଅତ୍ୟାଚାରୀ ନ ଥିଲା ଏହି ଓଝା ? ଆଜି କି ହିନସ୍ତା ନ ହେଉଛି ଇଏ ? ସ୍ତ୍ରୀ ଗଲା, ପୁଅକରି ଗଲା, ଘରଦ୍ୱାର ଗଲା, ଶେଷରେ ପାଗଳ ହୋଇ ଅଇଁଠାପତ୍ର ଗୋଟେଉଛି । ନାରୀହରଣ,

ନାରୀ ଧର୍ଷଣ, ଲୁଣ୍ଠନ, ଲଞ୍ଚ ଆଦି କୁକର୍ମରେ କି ସିଦ୍ଧହସ୍ତ ନଥିଲି ଇଏ ? ଏହି କୁକର୍ମର ଫଳ ତାକୁ ଯେ ଦିନେ ଏମିତି ଭାବରେ ଭୋଗିବାକୁ ପଡ଼ିବ, ଜାଣିଥିଲେ ହୁଏତ ବିଷ୍ଣୁର ଏହି ଅବାଟକୁ ଆସି ନଥାନ୍ତା । ଓଃ, କି ଦଣ୍ଡ ଭଗବାନଙ୍କ ବିଗ୍ଭରରେ ଯତେ ?

ହସିଲି ଶୁଭ୍ରା, ପାଗଳର କାକୁତିମିନତି ଶୁଣି ଏକ ଦସ୍ୟୁମାସ୍ଥ ହସ । "ଭଗବାନ ଏହାକୁ କ୍ଷମା ଦେଇପାରିବେନି ଶାନ୍ତିଦେବୀ । ନିଜ କୁକର୍ମରୁ ଇଏ ଏମିତି ତିଳେ ତିଳେ କଷ୍ଟପାଇ ମରିବ । ଭଗବାନଙ୍କ ବିଗ୍ଭରରେ ଏହାର ଦୈହିକ କଷ୍ଟ ଶେଷ ନହେଲା ପର୍ଯ୍ୟନ୍ତ ଏହାଙ୍କଠାକୁ ମୃତ୍ୟୁ ଆସିବନି । ଏହିଭଳି ପାପ ପାଇଁ ମଣିଷ ଦଣ୍ଡଠାରୁ ଢେର ଅଧିକ ନିର୍ମମ ଭଗବାନଙ୍କ ଦଣ୍ଡ ।"

## ପର୍ତ୍ୟଶ

ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରେ କେବିନେଟ୍ ମିଟିଂ । ସବୁ ମନ୍ତ୍ରୀ, ଉପମନ୍ତ୍ରୀ, ରାଷ୍ଟ୍ରମନ୍ତ୍ରୀ ସମ୍ମିଳିତ ହୋଇ ଏଥିରେ ଯୋଗଦେଇଥାନ୍ତି । ସଭାପତିତ୍ୱ କରୁଥାନ୍ତି ସ୍ୱୟଂ ମୁଖ୍ୟମନ୍ତ୍ରୀ ମିଷ୍ଟର ସିଂହ । କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ବିଷୟ ଉପରେ କେବିନେଟ୍‌କୁ ସେଦିନ ଏକ ସିଦ୍ଧାନ୍ତ ନେବାକୁ ପଡ଼ିବ । ସାରା ରାଜ୍ୟରେ ଟେକ୍‌ନୋକ୍ରାଟ୍ ଓ ବ୍ୟୁରୋକ୍ରାଟ୍ ନେଇ ଯେଉଁ ବାଦାନୁବାଦ ଗ୍ଭଲିଥିଲା ତା'ର ଏକ ସମାଧାନ ସେହି ମିଟିଂରେ ହୋଇଯିବାର ଆଶା ଥାଏ । ଗତ ସରକାର ବେଳୁଁ ରାଜ୍ୟରେ ଦେଖାଦେଇଛି ଏହି ବାଦାନୁବାଦ ।

ବିଗତ ସରକାର ରାଜ୍ୟର ସବୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନମାନଙ୍କରେ ଭଲ ଶାସନ ପରିଗ୍ଭଳନା ପାଇଁ ଆଇ.ଏ.ଏସ୍. ଅଫିସରମାନଙ୍କୁ ମୁତୟନ କରିଥିଲେ । ଏପରିକି ସ୍ୱାସ୍ଥ୍ୟ ବିଭାଗ, କୃଷି ବିଭାଗ, ମତ୍ସ୍ୟ ବିଭାଗ ପ୍ରଭୃତି ବହୁ ବିଭାଗର ନିର୍ଦ୍ଦେଶକ ଭାବରେ ସେ ସରକାର ଆଇ.ଏ.ଏସ୍.ମାନଙ୍କୁ ନିଯୁକ୍ତି ଦେଇଥିଲେ । ଏହାଫଳରେ ବହୁ ବିଭାଗରେ ନାନା ଅସନ୍ତୋଷ ଓ ଆନ୍ଦୋଳନ ଦେଖାଦେଇଥିଲା । ସେମାନଙ୍କର ଦାବୀ ବିଭାଗୀୟ ମୁଖ୍ୟଭାବରେ ବିଭାଗୀୟ ବିଶେଷଜ୍ଞମାନେ ରହିବା କଥା, ଆଇ.ଏ.ଏସ୍.ମାନେ ରହିବା ଉଚିତ ନୁହେଁ । ଆଜିକାର ମିଟିଂରେ ସେ ସମ୍ପର୍କରେ ଆଲୋଚିତ ହୋଇ ସିଦ୍ଧାନ୍ତ ଗ୍ରହଣ କରାଯିବ ।

ମୁଖ୍ୟମନ୍ତ୍ରୀ ସମସ୍ୟାଟିକୁ ପ୍ରାଞ୍ଜଳ ଭାବରେ ବୁଝାଇଦେଲେ । ତତ୍ପରେ ବିଭିନ୍ନ ସଭ୍ୟମାନଙ୍କୁ ସେମାନଙ୍କ ମତାମତ ବ୍ୟକ୍ତ କରିବାପାଇଁ କୁହାଗଲା । ସମସ୍ତେ ଖୋଲାମନ ନେଇ ଏହା ଉପରେ ଯେମିତି ଆଲୋଚନା କରନ୍ତି ଅନୁରୋଧ କରାଗଲା ।

ମେମ୍ବରମାନେ ଜଣକପରେ ଜଣେ ସେମାନଙ୍କ ମତାମତ ବ୍ୟକ୍ତ କଲେ । ଗ୍ଭହୁଁ ଗ୍ଭହୁଁ ମେମ୍ବରମାନେ ଦୁଇଦଳରେ ବିଭକ୍ତ ହେଲାଭଳି ଜଣାପଡ଼ିଲା । ଦଳେ ହେଲେ

ଆଇ.ଏ.ଏସ୍. ସପକ୍ଷବାଦୀ, ଦଳେ ବିପକ୍ଷବାଦୀ । ପ୍ରତ୍ୟେକ ପ୍ରତ୍ୟେକଙ୍କର ମତକୁ ଖୁବ୍ ଦୃଢ଼ଭାବରେ ଉପସ୍ଥାପିତ କରିବାକୁ ଚେଷ୍ଟା କଲେ ।

ଦେବସ୍ମାନ ସେ ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ମେମ୍ବରଙ୍କ ମତ ଶୁଣୁଥାଏ, ନିଜ ମତ ବ୍ୟକ୍ତ କରି ନଥାଏ । ସମସ୍ତେ କହିସାରିଲା ପରେ ତାଙ୍କୁ ଅନୁରୋଧ କରାଗଲା ନିଜ ମତବ୍ୟକ୍ତ କରିବା ପାଇଁ ।

ସମସ୍ତେ ଜାଣନ୍ତି ଦେବସ୍ମାନ କିଛିଦିନ ତଳେ ଆଇ.ଏ.ଏସ୍. ଥିଲି । ଇସ୍ତଫାଦେଇ ଚାଲି ଆସିଛି ସେ ଚାକିରୀରୁ । ଟେକ୍ନୋକ୍ରାଟ୍‌ର ଭୂମିକା ତାଙ୍କୁ ଭଲଭାବରେ ଜଣା, କାହିଁକନା ସେ ନିଜେ ଜଣେ ବଡ଼ ବୈଜ୍ଞାନିକ । ତେଣୁ ତା ମତାମତ ନିଶ୍ଚୟ ଗୁରୁତ୍ୱପୂର୍ଣ୍ଣ ହେବ ଓ ସମସ୍ୟାଟିର ସମାଧାନ ଦିଗରେ ନିଶ୍ଚୟ ଖୁବ୍ ସହାୟକ ହେବ !

ସେ ଆରମ୍ଭ କଲେ, "ଦେଖନ୍ତୁ, ସବୁ ଉଚ୍ଚ ପଦବୀରେ ଆଇ.ଏ.ଏସ୍.ମାନଙ୍କୁ ରଖିବା ସପକ୍ଷରେ ମୁଁ ମୋଟେ ନୁହେଁ । ଯେଉଁମାନେ ସେମାନଙ୍କୁ ସେସବୁ ସ୍ଥାନରେ ରଖିବାକୁ ଚାହାନ୍ତି, ସେମାନଙ୍କ ଏକମାତ୍ର ଯୁକ୍ତି ହେଉଛି ସେମାନେ ରହିଲେ ଅଫିସ୍ ପରିଚାଳନା ଠିକ୍ ଭାବରେ ଚାଲିବ । ତେବେ ଆମର ଗୋଟିଏ କଥା ମନେରଖିବା ଉଚିତ ଅଫିସ୍ ଠିକ୍ ଭାବରେ ଚାଲିଲେ କି କାଗଜପତ୍ର ଠିକ୍ ଭାବରେ ରହିଲେ କି ଶାସନ ସୁ-ଶୃଙ୍ଖଳ ହେଲେ କ'ଣ ଦେଶକୁ ପ୍ରକୃତରେ ଉନ୍ନତି ପଥରେ ଆଗେଇ ନେଇ ହେବ ? ଦେଶର ଉନ୍ନତି ପାଇଁ ପ୍ରତି ବିଭାଗରେ କି କି ଯୋଜନା ତିଆରି ହେବ ଓ ସେଗୁଡ଼ିକ କେମିତି କାର୍ଯ୍ୟକାରୀ ହେବ ତା ଉପରେ ଦୃଷ୍ଟିଦେବା କଥା । ସେଥିପାଇଁ ବିଶେଷଜ୍ଞ ନହେଲେ ଏଗୁଡ଼ିକୁ କରିବ କିଏ ?

ଆଇ.ଏ.ଏସ୍.ମାନେ କ'ଣ ସବୁ ବିଷୟରେ ବିଶେଷଜ୍ଞ ? ସେମାନେ କ'ଣ ସବୁ ଯୋଜନା ତିଆରି କରିପାରିବେ ? ଅବଶ୍ୟ କେତେକ ସ୍ଥାନରେ ଦେଖାଯାଇଛି ଏହି ଆଇ.ଏ.ଏସ୍.ମାନେ ସେହି ବିଭାଗର କେତେଜଣ ନିକୃଷ୍ଟ ଧରଣର କାନକୁହାଙ୍କୁ ଧରି ଏକ ତୃତୀୟଶ୍ରେଣୀର ଯୋଜନା ତିଆରି କରନ୍ତି ଓ ତାକୁ ନିଜ ତିଆରି ପ୍ରଥମଶ୍ରେଣୀର ଯୋଜନା ବୋଲି କହି କାର୍ଯ୍ୟକାରୀ କରାନ୍ତି । ତେଣୁ ସେ ପରିସ୍ଥିତିରେ ଏହି ଯୋଜନା ନିକୃଷ୍ଟ ଧରଣର ନହେବ କେମିତି ?

ମୋ ମତରେ ପ୍ରତ୍ୟେକ ବିଭାଗର ମୁଖ୍ୟ ବିଭାଗୀୟ ବିଶେଷଜ୍ଞ ରହିବା ଉଚିତ । ପ୍ରତ୍ୟେକ ବିଭାଗରୁ ଭଲ ଦକ୍ଷ ଅଫିସରମାନଙ୍କୁ ସର୍ବଭାରତୀୟ ସ୍ତରରେ ବାଛି ସେମାନଙ୍କୁ ଆଇ.ଏ.ଏସ୍. ଭଳି ସର୍ବଭାରତୀୟ କ୍ୟାଡ଼ରରେ ରଖାଯିବା ଦରକାର । ଆଇ:ଏ:ଏସ:-ମାନଙ୍କୁ ଯେମିତି ପ୍ରଥମରୁ ନାନା ପ୍ରକାର ତାଲିମ ଦିଆଯାଇ ଶାସନ ପରିଚାଳନାରେ ଟ୍ରେନିଂ ଦିଆଯାଏ, ଏମାନଙ୍କୁ ସେମିତି ତାଲିମ ଦିଆଯିବା ଦରକାର । ଏହି ତାଲିମପ୍ରାପ୍ତ ଅଫିସରମାନେ ବିଭିନ୍ନ ବିଭାଗର ମୁଖ୍ୟ, ଉପମୁଖ୍ୟ ଭାବରେ ଯୋଗଦେବା ଉଚିତ ।

ଏହିମାନେ ମଧ୍ୟ ସର୍ବଭାରତୀୟ ସ୍ତରରେ ବଦଳି ହୋଇ ବିଭିନ୍ନ ରାଜ୍ୟରେ ରହିବା ଦରକାର । ସେମାନେ ଗୋଟିଏ ରାଜ୍ୟରେ ପୁରାପୁରି ନ ରହି ଭିନ୍ନ ଭିନ୍ନ ରାଜ୍ୟକୁ ସେହି ସେହି ବିଭାଗରେ ବଦଳି ହୋଇ ନାନା ଅଭିଜ୍ଞତା ଅର୍ଜନ କରିବା ବାଞ୍ଛନୀୟ । ଏହିମାନେ ଯେ କେବଳ ବିଭିନ୍ନ ବିଭାଗର ନିର୍ଦ୍ଦେଶକ ପଦବୀରେ ରହିବେ ତା'ନୁହେଁ, ସେମାନେ ମଧ୍ୟ ବିଭାଗୀୟ ସେକ୍ରେଟେରୀ ପଦବୀରେ ରହି ବିଶେଷଜ୍ଞ ଭାବରେ ସେହି ବିଭାଗର ଶାସନ ପରିଚାଳନା କରିବେ ।

ଆଇ:ଏ:ଏସ:ମାନଙ୍କର ଯେଉଁ ସ୍ତରରେ ପଦୋନ୍ନତି ହୁଏ, ଏମାନଙ୍କର ଠିକ ସେହି ସ୍ତରରେ ପଦୋନ୍ନତି ହେବା ଉଚିତ । ଏହିମାନେ ହେଲେ ଆମ ଦେଶର ଟେକନୋକ୍ରାଟ । ଏମାନେ ବିଭାଗୀୟ ବିଶେଷଜ୍ଞମାନଙ୍କ ଭିତରୁ ହିଁ ବଛା ହେବେ ।

ମୁଁ ଅବଶ୍ୟ ଜାଣେନା, ଆପଣମାନେ ମୋ ମତ ସହିତ ଏକମତ ହେବେ କି କିଅଣ । ଆପଣମାନେ ଯଦି ଏକମତ ହୁଅନ୍ତି, ତେବେ ଏ ସମ୍ପର୍କରେ ଏକ ଯୋଜନା ତିଆରି କରି କେନ୍ଦ୍ର ସରକାରଙ୍କ ସୁପାରିଶ ପାଇଁ ପଠାଯାଇପାରେ ।

କେନ୍ଦ୍ର ସରକାର ଇଚ୍ଛା କଲେ ଏହା ଉପରେ ବିଭିନ୍ନ ରାଜ୍ୟରୁ ମତାମତ ସଂଗ୍ରହ କରିପାରନ୍ତି । ଏହାଯଦି ବହୁଲୋକଙ୍କ ଦ୍ୱାରା ଆଦୃତ ହୁଏ, ତେବେ କେନ୍ଦ୍ର ସରକାର ଏହାକୁ ଗ୍ରହଣ କରିବା ପାଇଁ ଚିନ୍ତାକରି ପାରନ୍ତି । ତା ନହେଲେ ଗୋଟିଏ ସରକାର ଯାଉଥିବ, ଆଉ ଏକ ସରକାର ଆସୁଥିବ । ବ୍ୟୁରୋକ୍ରାଟ୍ ଓ ଟେକ୍‌ନୋକ୍ରାଟ୍ ନେଇ କଳିକଜିଆ ବଢୁଥିବ, ବିଭାଗୀୟ ଅସନ୍ତୋଷ ଓ ବିଶୃଙ୍ଖଳା ବଢୁଥିବ । ଏହାର କିଛି ସମାଧାନ ହୋଇ ପାରିବନି ।

ଦେବସ୍ମାନଙ୍କର ବକ୍ତବ୍ୟ ଅନ୍ୟ ମନ୍ତ୍ରୀମାନଙ୍କ ବେଶ୍ ହୃଦୟଗ୍ରାହୀ ହେଲା । ପରବର୍ତ୍ତୀ କେବିନେଟ୍ ମିଟିଂରେ ଏ ସମ୍ପର୍କରେ ଆହୁରି ଅଧିକ ଆଲୋଚନା ହେବା ଠିକ୍ ହେଲା । ଏହା ଉପରେ ଦେବସ୍ମାନବାବୁଙ୍କୁ ଏକ ବିସ୍ତୃତ ଯୋଜନା ତିଆରିକରି ପରବର୍ତ୍ତୀ ମିଟିଂରେ ପେଶ୍ କରିବାକୁ ଅନୁରୋଧ କରାଗଲା ।

× × × ×

"ଶାନ୍ତି, ଶାନ୍ତି", ଦେବସ୍ମାନ ନିଜ ଅଫିସଘରୁ ଡାକ ପକାଇଲା । ଅଫିସ୍ ଦୁଆରଦେଇ ସେତେବେଳେ ଚାଲି ଯାଉଥିଲା ଶାନ୍ତି । ଦେବସ୍ମାନ କାହିଁକି ଡାକୁଛି ଶୁଣିବା ପାଇଁ ଚାଲି ଆସିଲା ତା ପାଖକୁ ।

"ଶାନ୍ତି, ଆସ ଆସ, ତୁମକୁ ଗୋଟିଏ ମଜାକଥା ଦେଖାଇବି, ବସ । ତୁମେତ ଖାଲି ମୋ ଉପରେ ବିରକ୍ତ ହେଉଥିଲ, ବାପାଙ୍କ କାମକୁ ସମାଲୋଚନା କରୁଥିଲ ବୋଲି । ତୁମେ ଏ ଫାଇଲଟି ଦେଖିଲ । ତୁମ ମନ୍ତବ୍ୟ କ'ଣ ମୋତେ କହିଲ ?"

"ଫାଇଲ, ମୋତେ କ'ଣ ଦେଖାଉଛମ ? ମୁଁ ସେଥିରୁ କ'ଣ ବୁଝିବି ?"

ହସିଲା ଦେବସ୍ମାନ, "ମୁଁ ଆଜି ଯଦି ମନ୍ତ୍ରୀ ନ ହୋଇଥାନ୍ତି ତୁମେତ ଆଜି ମୋ ସ୍ଥାନରେ ମନ୍ତ୍ରୀ ହୋଇଥାନ୍ତ ଶାନ୍ତ । ମୁଁ ଯେତେବେଳେ ଏମ୍.ଏଲ୍.ଏ. ପାଇଁ ଠିଆ ହେବାକୁ ବୋଲି ମନା କରିଦେଲି, ତୁମକୁ ପରା ସେ ଅଞ୍ଚଳର ଲୋକେ କହିଲେ ଏମ୍.ଏଲ୍.ଏ. ଭାବରେ ଠିଆ ହେବାପାଇଁ । ତୁମେତ ଠିଆ ହୋଇଥିଲେ ମୋ ଭଳି ନିର୍ବାଚନରେ ନିର୍ବାଚିତ ହୋଇ ଏମ୍:ଏଲ୍:ଏ: ହୋଇଥାନ୍ତ । ଏମ୍:ଏଲ୍:ଏ: ହେଲାପରେ ତୁମେବି ତ ଆଜି ମନ୍ତ୍ରୀ ହୋଇପାରିଥାନ୍ତ ?"

"ଆଉ, ଆଉ, ମୁଁ ଯାଉଥିଲି ମନ୍ତ୍ରୀ ହେବାକୁ ? ମନ୍ତ୍ରୀ କଏ, ମୁଁ କଏ ?"

"ମନ୍ତ୍ରୀ ନ ହୁଅ, ଏମ୍:ଏଲ୍:ଏ: ହୋଇଥିଲେତ ଏହିଭଳି ବହୁକଥା ତୁମକୁ ବୁଝିବାକୁ ପଡ଼ୁଥାନ୍ତା । ରାଜ୍ୟର ସମସ୍ୟାକୁ ଯଦି ନ ବୁଝିବ, ତେବେ ଏମ୍:ଏଲ୍:ଏ: ହେବ କାହିଁକି ?"

"ମୁଁ କ'ଣ ସତରେ ଏମ୍:ଏଲ୍:ଏ: ହେଉଥିଲି ନା କଅଣ ? ଗ୍ରାମ ଉନ୍ନୟନ କି ପିଲାଙ୍କୁ ପାଠ ପଢ଼ାଇବା ଯା'ର କାମ, ତାକୁ ମନ୍ତ୍ରୀତ୍ୱକୁ ହେଉ ବା ଏମ୍:ଏଲ୍:ଏ:କୁ ହେଉ କ'ଣ ମିଳିବ କହିଲ ? ସେସବୁ ରାଜନୀତି କରିବାଲୋକଙ୍କୁ ପୋଷାଏ । ଆମଭଳି ସାଧାରଣ କର୍ମୀଙ୍କୁ ମୋଟେ ପୋଷାଇବ ନାହିଁ ।"

"ସବୁକଥାରେ ଏଭଳି ପଳାୟନ ମନୋବୃତ୍ତି ନେଲେ କ'ଣ ଚଳିବ ଶାନ୍ତ ? ଶିକ୍ଷା ବିଭାଗରେ ଏକ ଗୁରୁତର ସମସ୍ୟା ବର୍ତ୍ତମାନ ଦେଖା ଦେଇଛି, ତାକୁ କେମିତି ସମାଧାନ କରି ହେବ, ସେଇ ହେଉଚି ଚିନ୍ତା । ଶିକ୍ଷା ବିଭାଗରେ ବିଶୃଙ୍ଖଳା ପୁରାଇବାକୁ ବୁଦ୍ଧିଜୀବୀ-ମାନଙ୍କର ଯେଉଁ ଚକ୍ରାନ୍ତ ଚାଲିଛି, ଶୁଣିଲେ ତୁମେ ଆଶ୍ଚର୍ଯ୍ୟ ନହୋଇ ରହି ପାରିବନି । ଶିକ୍ଷା ବିଭାଗ ଛାରଖାର ହୋଇଯିବ ସେମାନଙ୍କ ଦ୍ୱାରା ।

"କ'ଣ ହୋଇଛି କହିଲ ?" କହୁ କହୁ ଦେବସ୍ମାନର ସାମନା ଚେୟାରରେ ବସିପଡ଼ିଲା ଶାନ୍ତ ।

ଦେବସ୍ମାନ ଆରମ୍ଭକଲା, "ଦେଖ ଶାନ୍ତ ! ବର୍ତ୍ତମାନ ଏକ ବଡ଼ ସମସ୍ୟା ଉପୁଜିଛି ଶିକ୍ଷା ବିଭାଗରେ । ମୁଁ ଯଦି ଟିକିଏ ସାବଧାନ ନ ହୋଇ ମୋ ବିଚାରଧାରାକୁ ଠିକ୍ ଭାବରେ ନ ଖଟାଉଛି, ତେବେ ସାରା ରାଜ୍ୟର ଶିକ୍ଷାବିଭାଗ ଧ୍ୱଂସ ପାଇଯିବ ଅଳ୍ପ କେଇଦିନ ଭିତରେ ।"

"କ'ଣ ଘଟଣା ହୋଇଛି କହିଲ ।"

"ଶୁଣ, ବହୁଦିନ ହେଲା ଆମ ଉଚ୍ଚତର ଶିକ୍ଷା ବିଭାଗରେ ରହି ଆସିଛି, ଯେତେ ଲେକ୍‌ଚରର ହେବେ, ତହିଁର ଶତକଡ଼ା କୋଡ଼ିଏଭାଗ ପ୍ରମୋସନ୍ ପାଇ ରିଡ଼ର ହେବେ । ଏହା ଆବହମାନ କାଳରୁ ଚାଲି ଆସୁଛି । ଇଉ.ଜି.ସି. କେତୁବର୍ଷ ତଳେ ରିଡ଼ରମାନଙ୍କ ଦରମାହାର ବଢ଼ାଇଦେଲେ । ଆମର ଗତ ସରକାର ସେମାନଙ୍କ ଉନ୍ନତ ମର୍ଯ୍ୟାଦାକୁ ବାହାରକଲେ କ'ଣ ନା ଶତକଡ଼ା କୋଡ଼ିଏଭାଗ ରିଡ଼ର ପୋଷ୍ଟକୁ କାର୍ଯ୍ୟକାରୀ ନ କରାଇ

ଅନର୍ସ ସାଥରେ ରିଡ଼ର ପୋଷ୍ଟ ସୃଷ୍ଟି କରିବେ । ଏହାଫଳରେ ରିଡ଼ର ସଂଖ୍ୟା କମି ଆସିବ । ସରକାରଙ୍କୁ ଅଧିକ ଟଙ୍କା ଦେବାକୁ ପଡ଼ିବ ନାହିଁ । ଯେଉଁଠି ଅନର୍ସ ପାଠ ଅଛି, ସେଠି ଜଣେ ରିଡ଼ର ଓ ଯେଉଁଠି ଏମ୍.ଏସ୍‌ସି: ପର୍ଯ୍ୟନ୍ତ ଅଛି ସେଠି ଦୁଇଜଣ ରିଡ଼ର ରହିବେ । ଏହି ପଦ୍ଧତି ଯଦି କାର୍ଯ୍ୟକାରୀ କରାଯାଏ, ତେବେ ବେଶି କ୍ଷତି ହେବ ବିଜ୍ଞାନ ବିଭାଗର ଲେକ୍‌ଚରରମାନଙ୍କର । ତୁମେ ତ ଜାଣ ଶାନ୍ତ, ସବୁଠାରୁ ମେଧାବୀ ପିଲା ବିଜ୍ଞାନ ପଢ଼ିବାକୁ ଆସନ୍ତି । ସାଧାରଣ ପିଲାଏ ଆର୍ଟସ୍ ପଢ଼ନ୍ତି । ବର୍ତ୍ତମାନ ଏହି ପଦ୍ଧତି ଯଦି କାର୍ଯ୍ୟକାରୀ ହେଉଛି, ତେବେ ଆସନ୍ତା କୋଡ଼ିଏବର୍ଷ ଭିତରେ କୌଣସି ବିଜ୍ଞାନ ଲେକ୍‌ଚରର ରିଡ଼ର ପଦକୁ ଉନ୍ନୀତ ହୋଇ ପାରିବେନି । ଆମ ରାଜ୍ୟରେ ଯେଉଁଠି ଆର୍ଟସ୍ କଲେଜଟିଏ ଖୋଲିଲା, ଦୁଇବର୍ଷ ଭିତରେ ସେଠି ଅନର୍ସ ଖୋଲି ଯାଉଛି, ତେଣୁ ଆର୍ଟସ୍ ବିଭାଗର ଲେକଚରରମାନଙ୍କର ପ୍ରମୋସନ ସମ୍ଭାବନା ଢେର୍ ବେଶି । ଆମେ ଯଦି ଏହାକୁ କାର୍ଯ୍ୟକାରୀ କରୁ, ତେବେ ବିଜ୍ଞାନ ଲେକଚରରମାନଙ୍କ ଭିତରେ ବିରାଟ ଅସନ୍ତୋଷ ଓ ନୈରାଶ୍ୟ ଦେଖାଦେବ । ସେମାନଙ୍କଠାରୁ ନିକୃଷ୍ଟ ମେଧାଶକ୍ତିର ପିଲାଏ ପ୍ରମୋସନ ପାଇ ଉପରକୁ ଉଠି ଯାଉଥିବାବେଳେ ଉଚ୍ଚ ମେଧାଶକ୍ତିର ବିଜ୍ଞାନ ଲେକଚରରମାନେ ପ୍ରମୋସନ ନ ପାଇ ସେହି ସ୍କେଲରେ ସଡ଼ୁଥିବେ । ତୁମେ ଆହୁରି ଜାଣିଛ ଶାନ୍ତ, ଆମ ବିଜ୍ଞାନ ବିଭାଗର ଲେକଚରରମାନେ ଗବେଷଣା କରି ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିପାରିଛନ୍ତି । ଏଭଳି ଯୋଗ୍ୟ ଲେକଚରରମାନେ ପ୍ରମୋସନ ନପାଇ ପଡ଼ି ରହିଲେ କେଡ଼େ ଦୁଃଖର କଥା ହେବ କହିଲ ? ଅଥଚ ଯେଉଁମାନେ କଷ୍ଟେମଷ୍ଟେ ଏମ:ଏ: ଖଣ୍ଡେ ପାସ କରି ସ୍କେଲରେ ପଶି ଯାଇଛନ୍ତି, ସେମାନେ ପ୍ରମୋସନ ପାଇ ସେମାନଙ୍କ ଉପରକୁ ଉଠିଯିବେ । ଏହି ଯେଉଁ ଅନ୍ୟାୟ ହେବ, ସେଥିପାଇଁ ଦାୟୀ ହେବ କିଏ କହିଲ ?"

"ଏହାତ ନିହାତି ଅନ୍ୟାୟ, ତୁମେ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଅନୁମତି ଦେଉଛ କାହିଁକି ?"

"ଆମ ପୂର୍ବରୁ ଯେଉଁ ସରକାର ଥିଲେ, ସେ ଏହିଭଳି ଏକ ଅଦ୍ଭୁତ ସିଦ୍ଧାନ୍ତ ନେଇ ଯାଇଥିଲେ । ସେତେବେଳର କେବିନେଟ୍‌ରେ ଏହା ପାସ୍ ହୋଇ ଯାଇଥିଲା । ସେତେବେଳେ ଯେଉଁ ସେକ୍ରେଟେରୀ ଥିଲେ ସେ ଚିଫ ସେକ୍ରେଟେରୀ ଓ ଅନ୍ୟ ସେକ୍ରେ-ଟେରୀଙ୍କ ସହିତ ସଲାସୂତର ହୋଇ ଏହାକୁ କେବିନେଟ ଦ୍ୱାରା ପାସ କରାଇ ନେଇଥିଲେ । ଏହାଯଦି କାର୍ଯ୍ୟକାରୀ ହୁଏ, ତେବେ ଶିକ୍ଷା ବିଭାଗରେ ଯେଉଁ ବିଶୃଙ୍ଖଳା ସୃଷ୍ଟି ହେବ, ତୁମେ ଧାରଣା କରିପାରୁଛ ଶାନ୍ତ ?"

"କିନ୍ତୁ ସେତେବେଳର ଡ଼:ପି:ଆଇ: କ'ଣ କରୁଥିଲେ ? ସେ ତ ଶିକ୍ଷା ବିଭାଗର ଲୋକ । ଏଭଳି ସିଦ୍ଧାନ୍ତ ଶିକ୍ଷା ବିଭାଗ ପ୍ରତି ମାରାତ୍ମକ ହେବ ବୋଲି କହି ପ୍ରତିରୋଧ କରିପାରିଥାନ୍ତେ । ତୁମେ ଯା' କୁହ, ଯିଏ ଡ଼:ପି:ଆଇ: ଥିଲେ, ସେ ତାଙ୍କ ଦାୟିତ୍ୱ ଠିକ ଭାବରେ ତୁଲାଇ ନାହାନ୍ତି ମୋ ମତରେ ।"

"ଜାଣିଛ ଶାନ୍ତ, ସେତେବେଳେ କିଏ ଡ଼ି:ପି:ଆଇ: ଥିଲେ ?"

"କିଏ ଥିଲେ ?"

"ଆଉ କିଏ ଥା'ନ୍ତେ ? ବାପା ପରା ଥିଲେ ।"

"ଆଁ, ବାପା ?" ଚମକିପଡ଼ିଲା ଶାନ୍ତ । ବାପାଙ୍କ ନାଁ ଶୁଣି ଉଠି ପଳାଉଥିଲା ସେଠୁ । ଦେବସ୍ନାନ ହଠାତ୍ ଶାନ୍ତର ଲୁଗାକାନି ଧରି ପକାଇ ଝିଙ୍କିଦେଇ କହିଲା, "ହାଁ, ହାଁ, ପଳାଇଯାଉଛ କୁଆଡ଼େ ? ବାପାଙ୍କର ଭୁଲ କିଏ ଧରିଲା ? ତୁମେ ନା ମୁଁ ?"

"ହେ, ଛାଡ଼ମ । କିଏ ଯଦି ଶୁଣି ଆସିବ, ଦେଖିଲେ କ'ଣ ଭାବିବ କହିଲ ? ମୁଁ ଯାଏଁ, ତେଣେ ରନ୍ଧା କ'ଣ ହେଲା ଦେଖେ । ତୁମ ଶାସନ କିଏ, ମୁଁ କିଏ ? ମୋତେ ସେଥିରେ କାହିଁକି ପୂରାଉଛ ? ମୁଁ ଜଣେ ସାଧାରଣ ଲୋକ, ତୁମ ଫାଇଲ ଉପରେ ମନ୍ତବ୍ୟ ଦେବାକୁ ମୁଁ କିଏ ?"

"ଦେବ କ'ଣ, ଦେଇତ ସାରିଲଣି । ମୋତେ ସେଦିନ କହୁଥିଲ ପରା, ବାପାଙ୍କ କାମର ସମାଲୋଚନା କଲି ବୋଲି । ଆଜି ତୁମେତ ଠିକ୍ ସେହି ସମାଲୋଚନା କଲ । ସେଦିନ ଯେଉଁ କାନ୍ଦ ହେଉଥିଲ, ଆଜି ସେ କାନ୍ଦ କୁଆଡ଼େ ଗଲା ?"

"ମୁଁ ମୋ କଥାକୁ ଫେରାଇ ନେଉଛି । ମୋର ସେ ମନ୍ତବ୍ୟ ନିହାତି ଭୁଲ୍ ହୋଇଛି ।"

"ବାପା ଜଣେ ବିଜ୍ଞାନାଧ୍ୟାପକ ହୋଇ ବିଜ୍ଞାନ ଲେକ୍‌ଚରରମାନଙ୍କ ସ୍ୱାର୍ଥକୁ କେମିତି ଜଳାଞ୍ଜଳି ଦେଲେ, ମୁଁ ତାହାହିଁ ଭାବୁଛି ଶାନ୍ତ ।" ଦେବସ୍ନାନ କହିଲେ ।

"ବାପା ସମ୍ଭବତଃ ସେତେବେଳେ ନୂଆ ହୋଇ ଡ଼ି.ପି.ଆଇ. ଭାବରେ ଜଏନ୍ କରିଥାଇ ପାରନ୍ତି । ତେଣୁ ବିଶେଷ କିଛି ଏହା ଉପରେ ଅନୁଧ୍ୟାନ ନକରି ଛାଡ଼ିଦେଇ ପାରିଥାନ୍ତି ।" ଶାନ୍ତ କହିଲା ।

"ଏହା ବି ହୋଇପାରେ, ବାପାଙ୍କ ଉପରେ ହୁଏତ ଚାପ ପଡ଼ିଥାଇପାରେ, ଯା'ପାଇଁକି ସେ ଜାଣିଶୁଣି ଉଦାସୀନ ରହିଗଲେ । କିନ୍ତୁ..."

"ଯାହାହେଲେବି ବାପାଙ୍କ ଭୁଲ୍ ବୋଲି ଧରିବାକୁ ପଡ଼ିବ ।"

ମୋତେ ଏବେ ଛାଡ଼ । ମୁଁ ଯାଏ, ତେଣେ କ'ଣ ରନ୍ଧା ହେଲା ଦେଖେଁ । ତୁମେ କ'ଣ ଆଜି ସେକ୍ରେଟେରିଏଟ୍ ଯିବନି ନା କଅଣ ?

"ଶୁଣ ଶାନ୍ତ, ବାପାଙ୍କର ଆଉ ଗୋଟିଏ ଭୁଲ ଶୁଣ । ଗତ ସରକାର ସିଦ୍ଧାନ୍ତ ନେଇଥିଲେ ସରକାରୀ କଲେଜମାନଙ୍କରେ ଯେଉଁଠି ସ୍ନାତକୋତ୍ତର ବ୍ୟବସ୍ଥା ଅଛି, ସେଠି ବିଭାଗୀୟ ମୁଖ୍ୟ ରହିବେ ସେହି ବିଭାଗର ସର୍ବପୁରାତନ ଅଧ୍ୟାପକ । ସ୍ନାତକୋତ୍ତର ଶ୍ରେଣୀରେ ତାଙ୍କର ଯୋଗ୍ୟତା ଥାଉ ବା ନଥାଉ । ଏଥିପୂର୍ବରୁ ଗବେଷଣାରେ ଦକ୍ଷତା ଥିବା, ସ୍ୱାଧୀନ ଭାବରେ ଗବେଷଣାକୁ ନିର୍ଦ୍ଦେଶ ଦେଇପାରୁଥିବା ଓ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟାପନା କରୁଥିବା ଅଧ୍ୟାପକମାନେ ସାଧାରଣତଃ ବିଭାଗୀୟ ମୁଖ୍ୟ ହୋଇ

ରହିବା ବ୍ୟବସ୍ଥା ଥିଲା । ଗତ ସରକାରଙ୍କ ଏହି ସିଦ୍ଧାନ୍ତ ପୂର୍ବଗାଡକୁ ପୁରାପୁରି ଓଲଟପାଲଟ କରିଦେଲା । ତୁମେ କହିଲ ଶାନ୍ତ, ବିଶ୍ୱବିଦ୍ୟାଳୟମାନଙ୍କରେ ଯେଉଁମାନେ ବିଭାଗୀୟ ମୁଖ୍ୟ ହେଉଛନ୍ତି, ସେମାନଙ୍କର ଗବେଷଣା ଡିଗ୍ରୀ, ସ୍ୱାଧୀନ ଗବେଷଣାର ଦକ୍ଷତା ଆଦି ଦେଖାଯାଉଥିବା ସ୍ଥଳେ ଠିକ୍ ସେହି ପାଠ ପଢ଼ାଉଥିବା ସ୍ନାତକୋତ୍ତର ସରକାରୀ କଲେଜର ମୁଖ୍ୟ ଅଧ୍ୟାପକମାନଙ୍କର ସେହିସବୁ ଦକ୍ଷତା ଦେଖା ନଯିବ କେମିତି ? ତା ବଦଳରେ ଯିଏ ଯେତେ ବରଷ ଚାକିରୀ କଲା, ସେହି ଗାଡରେ ସବୁ ପୁରାତନ ଲୋକ ବିଭାଗୀୟ ମୁଖ୍ୟ ହେବ । ଏହା କେଡ଼େ ହାସ୍ୟାସ୍ପଦ କଥା କହିଲ ? ଏହାକୁ ଯଦି କାର୍ଯ୍ୟକାରୀ କରାଯାଏ, ତେବେ ସରକାରୀ ସ୍ନାତକୋତ୍ତର କଲେଜର ମର୍ଯ୍ୟାଦା କ'ଣ ଆଉ ରହିବ ? ସେଠି କି ପାଠ ପଢ଼ା ହେବ ଆଉ ! ପିଲାମାନେ ସ୍ନାତକୋତ୍ତର ଡିଗ୍ରୀ ପାଇଁ ଆଉ ଏ କଲେଜକୁ କାହିଁକି ଆସିବେ ? ବିଭାଗୀୟ ମୁଖ୍ୟର ଯୋଗ୍ୟତା ଯଦି ବିଶ୍ୱବିଦ୍ୟାଳୟ ଲେକ୍‌ଚରର ଯୋଗ୍ୟତାଠାରୁ କମ୍ ହେଲା, ତେବେ ସେ ବିଭାଗକୁ ଲୋକେ ଓ ଛାତ୍ରମାନେ କେଉଁ ଦୃଷ୍ଟିରେ ଦେଖିବେ ? ବିଭାଗୀୟ ବ୍ୟୁରୋକ୍ରାଟ୍‌ମାନଙ୍କ ଚକ୍ରାନ୍ତ ସେଥିସହିତ ଡି.ପି.ଆଇ.ଙ୍କ ଉଦାସୀନତା ଏହିଭଳି ଏକ ହାସ୍ୟାସ୍ପଦ ସିଦ୍ଧାନ୍ତ କେବିନେଟ୍‌ରେ ପାସ୍ କରାଇନେବାରେ ସାହାଯ୍ୟ କଲା । ଗତ ସରକାରର ମନ୍ତ୍ରୀମାନେ କ'ଣ ଯେ କରୁଥିଲେ ମୁଁ ଭାବିପାରୁନି । ସେମାନେ ପ୍ରକୃତରେ ମନ୍ତ୍ରୀ ଥିଲେ ନା ପ୍ରଶାସକ ଗୋଷ୍ଠୀଙ୍କ ହାତରେ କ୍ରୀଡ଼ାପୁତ୍ତଳିକା ଥିଲେ ମୁଁ ବୁଝି ପାରୁନି ଶାନ୍ତ ?"

"ତୁମର ବୁଝିବା ଦରକାର ନାହିଁ । ଥାଉ, ଚାଲ ଖାଇବ ।"

"ତୁମେ କ'ଣ ଶୁଭ୍ରାଭଳି ପିଲାଳିଆମି ଦେଖାଉଛ ଶାନ୍ତ ? ଏତେବଡ଼ ସମସ୍ୟାଟାକୁ ତୁମେ ଯେ କେମିତି ହୃଦୟଙ୍ଗମ କରିପାରୁନ ମୁଁ ଦେଖି ଆଶ୍ଚର୍ଯ୍ୟ ହେଉଛି ।"

"ମୁଁ ହୃଦୟଙ୍ଗମ କରୁଛି ଯେ କାଲି ଫେର୍ ବାପାଙ୍କ ଦୋଷ ବାହାରିବ । ଦେଖ, ମୁଁ ତୁମକୁ ହାତଯୋଡ଼ି କହୁଛି, ତୁମେ ବର୍ତ୍ତମାନ କାହାର ଦୋଷ ବାହାର ନକରି ଶିକ୍ଷା ବିଭାଗକୁ କେମିତି ଏଥିରୁ ରକ୍ଷା କରିବ, ତାହିଁର ବାଟ ବାହାର କର ।"

"ବାଟତ ମାତ୍ର ଗୋଟିଏ, ଆଉ ବାହାର କରିବ କ'ଣ ? ଗତ କେବିନେଟ୍ ଯାହା ସିଦ୍ଧାନ୍ତ ନେଇଥିଲା, ଆମେ ତାକୁ କାର୍ଯ୍ୟକାରୀ କରିବାକୁ ବାଧ୍ୟ ନୋହୁଁ । ଏହା ପୁଣି ବର୍ତ୍ତମାନର କେବିନେଟ୍ ମିଟିଂରେ ପଡ଼ି ଗୃହୀତ ହେଲେ ଯାଇଁ ଯାହା ହେବ । ଏହି ଦୁଇଟିଯାକ ବିଷୟ ବର୍ତ୍ତମାନର କେବିନେଟ୍‌ରେ ପଡ଼ିଲେ ମୋର ବିଶ୍ୱାସ, ମୋ ଯୁକ୍ତିକୁ କାଟିଇ ଏହାକୁ ପାସ କରାଇବାକୁ କେହି ସାହସ କରିବେ ନାହିଁ । କି ଧ୍ୱଂସାତ୍ମକ ସିଦ୍ଧାନ୍ତ ? କି ଚକ୍ରାନ୍ତ ପ୍ରଶାସକ ଗୋଷ୍ଠୀଙ୍କର ନିରୀହ ଶିକ୍ଷା ବିଭାଗର ଲୋକଙ୍କ ବିରୁଦ୍ଧରେ । ଏତେଦିନ ଧରି ସୁସ୍ଥ ପରମ୍ପରାରେ ଚାଲି ଆସୁଥିବା ପ୍ରମୋସନ ଗାଡକୁ ଓଲଟାଇ ଦେବାରେ ସେମାନଙ୍କ ଆଗ୍ରହ ଏତେ କାହିଁକି ? ସେଥିରୁ ସେମାନଙ୍କର କ'ଣ ଯେ ଲାଭ ହେବ, ମୁଁ ବୁଝିପାରୁନି ।"

"ଏହାକୁ ଓଲଟପାଲଟ କରଦେଲେ ସେମାନଙ୍କ ଭାଇ, ବନ୍ଧୁ, ସାଙ୍ଗସାଥୀ ଭିତରୁ କେହି ହୁଏତ ଉପକୃତ ହେଉଥିବେ, ତା ନହେଲେ ଏତେବଡ଼ ପୁରାତନ ଘାଟଟାକୁ ସେମାନେ ବଦଳାଇବାକୁ ଯାଆନ୍ତେ କାହିଁକି ? ନ୍ୟସ୍ତସ୍ୱାର୍ଥ ହିଁ ଏହି ଧ୍ୱଂସାତ୍ମକ ମନୋବୃତ୍ତି ମୂଳରେ କାର୍ଯ୍ୟ କରୁଛି ।" ଶାନ୍ତ କହିଲା ।

## ଏକାବନ

ଉଡ଼ାଜାହାଜ ଭିତରକୁ ଦେବସ୍ନାନବାବୁ ପଶି ଆସିଲାବେଳକୁ ସାମନା ଦୁଇନମ୍ବର ସିଟ୍‌ରେ ବସିଛି ଶୁଭ୍ରା । ଦେବସ୍ନାନବାବୁଙ୍କୁ ଦେଖି ଶୁଭ୍ରା ହଠାତ୍ ଉଠିପଡ଼ି ପ୍ରଣାମ ଜଣାଇ ଠିଆହୋଇ କହିଲା, "ଆପଣ ଆଜି ଦିଲ୍ଲୀ ଯାଉଛନ୍ତି ବୋଲି ମୁଁ ଜାଣିଥିଲି ସାର୍ ।"

ଏକନମ୍ବର ସିଟ୍‌ରେ ବସୁ ବସୁ ଦେବସ୍ନାନବାବୁ କହିଲେ, "ମୁଁ ଦିଲ୍ଲୀ ଯାଉଛି ବୋଲି ତୁମେ କେମିତି ଜାଣିଲ ?"

"ସାର, ମୁଁ ସବୁବେଳେ ଉଡ଼ାଜାହାଜର ଏକନମ୍ବର ସିଟ୍‌ରେ ଯାଏ । ଏକନମ୍ବର ଓ ଦୁଇନମ୍ବର ସିଟ୍ ହେଉଛି ଭି.ଆଇ.ପି. ସିଟ୍ । ଉଡ଼ାଜାହାଜ ଛାଡ଼ିବାର ପ୍ରାୟ ଦୁଇଘଣ୍ଟା ପୂର୍ବରୁ ଏହି ସିଟ୍‌ରେ ଯଦି ଭି.ଆଇ.ପି.ମାନେ ଯାଇ ନଥାନ୍ତି ତେବେ ସାଧାରଣ ଯାତ୍ରୀଙ୍କ ପାଇଁ ଛାଡ଼ି ଦିଆଯାଏ । ମୁଁ ଆଜି ଉଡ଼ାଜାହାଜଘାଟିକୁ ଆସି ଜାଣିଲି ଯେ, ଏକନମ୍ବର ଛଡ଼ା ଯାଉନି, କାରଣ ଶିକ୍ଷାମନ୍ତ୍ରୀ ଏହି ଫ୍ଲାଇଟ୍‌ରେ ଦିଲ୍ଲୀ ଯାଉଛନ୍ତି । ତେଣୁ ମୋତେ ଦୁଇନମ୍ବର ସିଟ୍‌ଟି ମିଳିଲା ।"

"ଓଃ, ତୁମେ ଆଜି ତା'ହେଲେ ଜଣେ ଭି.ଆଇ.ପି. ।"

"ନା ସାର, ମୁଁ ନୁହେଁ, ଆପଣ ।"

"ତୁମେ ପରା ଦୁଇନମ୍ବର ସିଟ୍‌ରେ ବସିଛ । ଭି.ଆଇ.ପି. ନୁହେଁତ ଆଉ କ'ଣ ? ଯାହାହେଉ, ଭି.ଆଇ.ପି.ମାନଙ୍କ ସାଙ୍ଗରେ ଯାଉଥିବାରୁ ମୁଁ ନିଜକୁ ଗୌରବାନ୍ୱିତ ମନେକରୁଛି ଶୁଭ୍ରା ।"

"ସାର୍, ଆପଣଙ୍କର ସବୁବେଳେ ଥଟ୍ଟା ।" ନାକରେ କାନ୍ଦିଲା ଭଳି ସ୍ୱରରେ ଶୁଭ୍ରା କହିଲା ।

"ତୁମେ କ'ଣ ପାଇଁ ଦିଲ୍ଲୀ ଯାଉଛ ଶୁଣେ ? କ'ଣ ଏମିତି ବୁଲିବାକୁ ?"

"ହଁ ସାର, ଦିଲ୍ଲୀରେ ମୋ ବଡ଼ ମଉସା ରହନ୍ତି । ସେଠି ଆମ ବ୍ୟବସାୟ ପ୍ରତିଷ୍ଠାନର ହେଡ୍ ଅଫିସ୍ ଅଛି । ମୋ ମଉସା ହେଡ୍ ଅଫିସ୍ ଚାର୍ଜରେ ଥା'ନ୍ତି । ମୁଁ ଆଜି ତାଙ୍କ ଘରକୁ ବୁଲି ଯାଉଛି ।"

"ତୁମ ବାପାଙ୍କର ପରା ଆଉ ଏକ ଅଫିସ ବମ୍ବେରେ ଅଛି ।"

"ହଁ ସାର, ମୋ ସାନ ମଉସା ସେଠି ଥା'ନ୍ତି । ସେ ସେଠାକାର ମେନେଜର ।"

"ତୁମ ବାପା ତା'ହେଲେ କ'ଣ କରନ୍ତି ?"

"ସାରା ବ୍ୟବସାୟର ପୂରା ଦାୟିତ୍ୱ ବାପାଙ୍କ ମୁଣ୍ଡରେ । ସେ ପୃଥିବୀର ବିଭିନ୍ନ ଦେଶ ବୁଲି ଆମଦାନୀ, ରପ୍ତାନି ତଦାରଖ କରନ୍ତି । ନିଉୟର୍କ ଓ ଲଣ୍ଡନ ଅଫିସ ତଦାରଖ ତାଙ୍କ କାମ ।"

"ତୁମେ କେତେଦିନ ଦିଲ୍ଲୀରେ ରହିବ ?"

"ବେଶିଦିନ ନୁହେଁ । ଦୁଇ ଚାରିଦିନ । ସେଠାରୁ ଫେରି ଆମେରିକା ଚାଲିଯିବି । ଆମେରିକା ଯିବାପୂର୍ବରୁ ସାନ ମଉସାଙ୍କ ଘରେ ବମ୍ବେରେ ଦିନଟାଏ ରହିବି ।"

"ସାର, ଆପଣ ଦିଲ୍ଲୀ ଯାଉଛନ୍ତି, କିଛି ଗୋଟାଏ ମିଟିଂ ଅଛି ବୋଧହୁଏ ?"

"ହଁ ଶୁଭ୍ରା, ବିଭିନ୍ନ ରାଜ୍ୟର ଶିକ୍ଷାମନ୍ତ୍ରୀମାନଙ୍କର ସମ୍ମିଳନୀ । ସେଥିରେ କେନ୍ଦ୍ର ଶିକ୍ଷାମନ୍ତ୍ରୀ ସଭାପତିତ୍ୱ କରିବେ । ଆଲୋଚନାର ବିଷୟବସ୍ତୁ ହେଉଛି ବିଶ୍ୱବିଦ୍ୟାଳୟ ସ୍ତରରେ ଇଂରାଜୀ ମାଧ୍ୟମ ରହିବ କି ନାହିଁ । ଯଦି ରହେ, ଆଉ କେତେବର୍ଷ ପାଇଁ ରହିବ ?"

ଦେବସ୍ନାନବାବୁ ଓ ଶୁଭ୍ରା ପାଖ ସିଟ୍‌ରେ ବସି କଥାବାର୍ତ୍ତା ହେଉଥିଲାବେଳେ ସବା ପଛ ସିଟ୍‌ରେ ଲୋକେ ଫୁସ୍‌ଫାସ୍ ହେଉଥାନ୍ତି, "ଆରେ ଆମ ଶିକ୍ଷାମନ୍ତ୍ରୀ ଦିଲ୍ଲୀ ଯାଉଛନ୍ତି । ତାଙ୍କ ପାଖରେ ଯେଉଁ ଭଦ୍ରମହିଳାଜଣକ ବସିଛନ୍ତି, ସେ କିଏ ଜାଣିଛୁ କିରେ ?"

ଅନ୍ୟଜଣେ କହୁଥାନ୍ତି, "ଆରେ ଆଉ କିଏ ହେବେ, ମନ୍ତ୍ରୀଙ୍କ ସ୍ତ୍ରୀ ହୋଇଥିବେମ ? ତାଙ୍କ କଥାବାର୍ତ୍ତାରୁ ଦେଖୁନୁ ?"

ଆଉଜଣେ କହୁଥାନ୍ତି, "ଆରେ ଧେତ୍ତ୍, ତୁ ବୋକାଟାଏ କିରେ ? ସେ ତ ମନ୍ତ୍ରୀଙ୍କ ସ୍ତ୍ରୀ ଭଳି ଜଣାପଡ଼ୁ ନାହାନ୍ତି । ମନ୍ତ୍ରୀ ତ ସାଧାସିଧା ଲୋକ, ତାଙ୍କ ସ୍ତ୍ରୀ ହୋଇଥିଲେ ସେ କ'ଣ ଏତେ ଦାମିକା ଶାଢ଼ୀ, ଗହଣାପତ୍ର ଲଗାଇ ଏତେ ଷ୍ଟାଇଲ ହୋଇ ଆସିଥାନ୍ତେ ।"

"ହଁ, ସତରେ ଏ ପରା ଭୁଦାନୀ ମନ୍ତ୍ରୀ ? ତାଙ୍କ ସ୍ତ୍ରୀ କ'ଣ ଏତେ ଚକଚକିଆ ହୋଇଥିବେ ? ପୋଷାକପତ୍ରର ଆଡ଼ମ୍ବରରୁ କ'ଣ ଜଣାପଡ଼ୁନି ଯେ ସେ କଦାପି ମନ୍ତ୍ରୀଙ୍କ ସ୍ତ୍ରୀ ନୁହଁନ୍ତି ବୋଲି ?"

"ତୁ ତ ସବୁ ଜାଣିଛୁ ? ଆରେ ଆଜିକାଲି ମନ୍ତ୍ରୀମାନେ ଉପରକୁ ବେଶ୍ ସାଧାସିଧା । କିନ୍ତୁ ତାଙ୍କ ସ୍ତ୍ରୀମାନେ ବିଳାସବ୍ୟସନର ଚରମ ସୀମାରେ ।"

"ଧେତ୍ତ୍, ତୋର ସବୁବେଳେ ସେଇମିତା କଥା । ସେ ମନ୍ତ୍ରୀଙ୍କ ସ୍ତ୍ରୀ ବୋଲି କେମିତି ଜାଣିଲୁ କହିଲୁ ? ସେ ତ ମୁଣ୍ଡରେ ଲୁଗା ଦେଇ ନାହାନ୍ତି । ମୁଣ୍ଡରେ କେଉଁଠି ସିନ୍ଦୂରଗାରଟିଏ ବି ନାହିଁ । ସେ ମନ୍ତ୍ରୀଙ୍କ ସ୍ତ୍ରୀ କେମିତି ହେବେ ?"

"ଆରେ ଆଜକାଲିକାର ଓଡ଼ିଆଘରର ବୋହୂମାନେ କ'ଣ ଆଉ ଆଗଭଳି ଓଡ଼ିଆଣୀ ହୋଇ ରହିଛନ୍ତି ? କେତେଟା ବିବାହିତା ସ୍ତ୍ରୀ ଆଜକାଲି ମୁଣ୍ଡରେ ଓଢ଼ଣାଦେଇ ଯିବା ଆସିବା କରୁଛନ୍ତି କହିଲୁ ? ମୁଣ୍ଡରେ ସିନ୍ଦୂର ଲଗାଇବା କଥା କହୁଛୁ ? ସେମାନେ ମୁଣ୍ଡରେ ସିନ୍ଦୂର ଲଗାଇବା କେଉଁ ଦିନରୁ ଭୁଲିଗଲେଣି । ମୁଣ୍ଡରେ ତ ଆଜକାଲି ଷ୍ଟାଇଲ୍‌ରେ ସିନ୍ଥା ରଖୁ ନାହାନ୍ତି, ସିନ୍ଦୂର ଲଗାଇବେ କେଉଁଠି ? ଆଗ ଯୁଗ ଥିଲା, ଗୋଟିଏ ସ୍ତ୍ରୀର ମୁହଁକୁ ଅନାଇ ଦେଉଥିଲେ, ସେ ବିବାହିତା କି ଅବିବାହିତା ଜଣାପଡ଼ି ଯାଉଥିଲା । ଆରେ ଭାଇ ଆଜକାଲିକା ଯୁଗ ଏମିତି ହେଲାଣି ଯେ ପୋଷାକପତ୍ରରୁ ଜାଣି ହେଉନି, ପୁଅ କିଏ କି ଝିଅ କିଏ ? ଝିଅମାନେ ପୁଅଙ୍କ ଭଳି ବାଳ କାଟି ଏମିତି ପେଣ୍ଟ୍ ସାର୍ଟ ପିନ୍ଧିଲେଣି ଯେ ସେମାନଙ୍କୁ ଦେଖିଲେ ପୁଅ କହିବା ଛଡ଼ା ଅନ୍ୟ ବାଟ ନାହିଁ । ଝିଅଙ୍କର କିଛି ଗୁଣ ସେମାନଙ୍କଠାରେ ନାହିଁ । ସେଥିରେ ବିବାହିତା ଅବିବାହିତା କଥା କ'ଣ କହୁଛ ?"

"ହଁ ଭାଇ, ଯୁଗ ତ ସେଇଆ ହେଲା । ଏମିତି ଆଗକୁ ଆଗକୁ ଆହୁରି କେତେ କ'ଣ ନୂଆ ନୂଆ କଥା ଦେଖିବାକୁ ପଡ଼ିବ ।"

"ଆରେ ଟିକିଏ ଅନାଇ ମାର୍କ କଲୁ, ଦି'ଜଣଙ୍କ କଥାବାର୍ତ୍ତା ଓ ବୟସ ତାରତମ୍ୟରୁ ସେମାନେ ସ୍ୱାମୀ-ସ୍ତ୍ରୀ ଭଳିଆ କ'ଣ ଜଣାପଡ଼ୁ ନାହାନ୍ତି ?"

"ନାରେ, ମୁଁ ଥରେ କେଉଁଠି ଆମ ଶିକ୍ଷାମନ୍ତ୍ରୀଙ୍କୁ ତାଙ୍କ ସ୍ତ୍ରୀଙ୍କ ସହିତ ଯିବାର ଦେଖିଥିଲି । ସେ ଭାରି ସାଦାସିଧା, ଦେହରେ ଗହଣାପତ୍ର କିଛି ନାହିଁ । ଇଏ ତାଙ୍କ ସ୍ତ୍ରୀ କଦାପି ହୋଇ ନ ପାରନ୍ତି । ଇଏ କୌଣସି ଧନୀଘରର ଝିଅ, ଏକ ସଙ୍ଗେ ବୁଲି ଯାଉଛନ୍ତି । ଏକ ସଙ୍ଗରେ ଗଲେ ବୋଲି କ'ଣ ସ୍ୱାମୀ-ସ୍ତ୍ରୀ ହୋଇଗଲେ ?"

ଶେଷ କେଇପଦ କଥା ଶୁଭ୍ରା କାନରେ ପଡ଼ିଗଲା । କିଏ କହୁଛି ଜାଣିବା ପାଇଁ ସେ ପଛକୁ ଅନାଇଦେଲା । ନୀଳ ଚଷମା ଭିତରେ ଲକ୍ଷ୍ୟ କରିବାକୁ ଚାହୁଁଥିଲା ଦେବସ୍ଥାନ-ବାବୁଙ୍କ ସହିତ ତା'ର ଏଭଳି ଏକ ସମ୍ପର୍କ ସ୍ଥାପନ କରି କଥା କହିଲାବାଲା କିଏ ? ଶୁଭ୍ରାକୁ ମୁହଁ ବୁଲାଇବା ଦେଖି ସେମାନେ ସମସ୍ତେ ଅଙ୍ଗୁଳି ଖୁଆଖୁଇ ହୋଇ ଚୁପ୍‌ଚାପ୍ ହୋଇଗଲେ । ଶୁଭ୍ରା ସେମାନଙ୍କ ଏଭଳି ହାବଭାବ ଦେଖି ନ ହସି ରହି ପାରିଲାନି !

ପଛରୁ ମୁହଁ ବୁଲାଇ ଆଣି ପଚାରିଲା, "ସାର୍, ଆପଣ ଇଂରାଜୀ ମାଧ୍ୟମ ସପକ୍ଷରେ ନା ବିପକ୍ଷରେ ?"

"ଦେଖ ଶୁଭ୍ରା, ଇଂରାଜୀ ମାଧ୍ୟମ ସପକ୍ଷରେ କ'ଣ କୌଣସି ଭାରତୀୟ କେବେ ରହିପାରେ ? ଯେ ପ୍ରକୃତ ଭାରତୀୟ ହୋଇଥିବ, ଯା' କାନରେ ଭାରତର ଅଗଣିତ କଥା ପ୍ରତିଧ୍ୱନିତ ହେଉଥିବ ସେ କଦାପି ଏକ ବିଦେଶୀ ଭାଷାକୁ ବିଦେଶୀ ଭାଷା ଜାଣି ନଥିବା ଅଜ୍ଞ ଲୋକଙ୍କ ଉପରେ ଜାହିର କରି ରଖିବାକୁ ଚାହିଁବନି । ପୃଥିବୀର ସବୁ ଉନ୍ନତ ଦେଶରେ

ବିଶ୍ୱବିଦ୍ୟାଳୟ ଶିକ୍ଷା ସେମାନଙ୍କ ମାତୃଭାଷା ମାଧ୍ୟମରେ ଦିଆଯାଏ । ଏହା କେବଳ ଆମ ଦେଶ ସ୍ୱାଧୀନ ହୋଇଥିଲେହେଁ ବିଦେଶୀ ଭାଷାର ଗୋଲାମି ଛାଡ଼ିପାରୁ ନାହିଁ ।''

ଆମେ ଯଦି ଇଂରାଜୀ ଭାଷାକୁ ମାଧ୍ୟମ କରି ରଖିବା, ତେବେ କେତେଦିନ ପାଇଁ ରଖି ପାରିବା ? ସବୁଦିନ ପାଇଁ ତ ରଖି ପାରିବା ନାହିଁ । ସବୁଦିନ ପାଇଁ ଯଦି ରଖି ପାରିବା ନାହିଁ, ତେବେ ଯେତେଶୀଘ୍ର ବିଦା କରିଦେବା ସେତେ ଭଲ । ଏହି ଭାଷା ନେଇ ଯେଉଁ ଗୋଳମାଳ ହେଉଛି, ତା'ର ମୂଳ କେଉଁଠି ଜାଣ ? ଆମର କେତେକ ମୁଷ୍ଟିମେୟ ଲୋକ ତା'ର ମୂଳରେ । ଆମେ ଆମ ନିଜ ଭାଷା ପ୍ରତି ଅବହେଳା ଦେଖାଇ ଇଂରାଜୀ ଭାଷା ମାଧ୍ୟମରେ ଆମ ଶିକ୍ଷା-ଦୀକ୍ଷା, ଶାସନ ଆଦି ଚଳାଇଛୁ, ସେଥିପାଇଁ ଆମ ଭବିଷ୍ୟତ ବଂଶଧରମାନେ ଆମକୁ କ୍ଷମା ଦେବେନି ଶୁଭ୍ରା ।

ଆମ ଦେଶ ଯେତେବେଳେ ସ୍ୱାଧୀନ ହେଲା, ସ୍ୱାଧୀନତା ନାଁରେ ଆମେ ଯଦି ସେତେବେଳେ ଇଂରାଜୀ ଭାଷାକୁ ପୁରାପୁରି ଉଠାଇଦେଇ କଷ୍ଟେମଷ୍ଟେ ଆମ ମାତୃଭାଷାରେ ସବୁ କାମ ଚଳାଇ ନେଇଥାନ୍ତୁ ଓ ହିନ୍ଦୀକୁ ସରକାରୀ ଭାଷା କରି ଦେଇଥାନ୍ତୁ, ତେବେ ଏତେବେଳକୁ ଆଉ କିଛି ଅସୁବିଧା ନଥାନ୍ତା । ହିନ୍ଦୀକୁ ରାଷ୍ଟ୍ରଭାଷା କରିବା ପାଇଁ ଦକ୍ଷିଣ ରାଜ୍ୟରୁ ଯେଉଁ ବାଧା ସୃଷ୍ଟି ହେଉଛି ତାହା ନଥାନ୍ତା । ଆମ ଭାଷା ଢେର ଉନ୍ନତ ହୋଇ ଅନ୍ୟ ଭାଷାର ସମକକ୍ଷ ହୋଇ ସାରନ୍ତାଣି । ଆମେ ଯେହେତୁ ଇଂରାଜୀ ଭାଷାକୁ ରଖିଦେଲୁ ବର୍ତ୍ତମାନ ସବୁ ଗୋଳମାଳ ଲାଗିରହିଲାଣି । ଇଂରାଜୀ ଭାଷା ଯୋଗୁଁ ଆମ ମାତୃଭାଷା ଯେତେ ଉନ୍ନତି କରିବା କଥା, ସେତେ କରିପାରୁନି ।

ଆମ ଭାଷାକୁ କେମିତି ଉନ୍ନତ କରି ଇଂରାଜୀ ଭାଷା ସ୍ତରକୁ ଆଣିବୁ, ଆମର ଚେଷ୍ଟା କାହିଁ ? ଆମର ତ ଆତ୍ମବିଶ୍ୱାସ କମ୍, ତେଣୁ ଡରୁଛୁ ଇଂରାଜୀ ଭାଷା ଉଠାଇଦେଲେ କାଳେ ଆମ ପାଠସବୁ ଭୁଲଭାଲ ହୋଇଯିବ । ଯେଉଁମାନଙ୍କର ନିଜ ଉପରେ ବିଶ୍ୱାସ ନାହିଁ, ଯେଉଁମାନେ ନିକମ୍ମା, ସେମାନେ ଅନ୍ୟ ଭାଷାକୁ ଜାବୁଡ଼ି ଧରିଥାନ୍ତି । ଆମ ଲୋକଙ୍କର ଗୋଡ଼ାଣିଆ ଭାବ କେବେ ଯିବ, ଆତ୍ମବିଶ୍ୱାସ କେବେ ଆସିବ, ମୁଁ ସେଇଆ ହିଁ ଭାବୁଛି । ଦୁଇଶହ ବର୍ଷର ଗୋଲାମି କ'ଣ ଏତେଶୀଘ୍ର ଆମ ଉପରୁ ଚାଲିଯିବ ଶୁଭ୍ରା ?

"ସାର୍, ମୁଁ ମଧ୍ୟ ଆମ ଭାରତୀୟ ଭାଷା ବିଶ୍ୱବିଦ୍ୟାଳୟ ଶିକ୍ଷାର ମାଧ୍ୟମ ହେବା ସପକ୍ଷରେ । ମୁଁ ପିଲାଦିନରୁ ଇଂରାଜୀ ମାଧ୍ୟମରେ ସବୁ ପଢ଼ି ଆସିଛି । ବର୍ତ୍ତମାନ ଇଂରାଜୀ ଭାଷାଭାଷୀ ଦେଶରେ ରହୁଛି, ତଥାପି ମୁଁ କହୁଛି ବିଶ୍ୱବିଦ୍ୟାଳୟ ସ୍ତରରେ ଇଂରାଜୀ ମାଧ୍ୟମର କିଛି ଆବଶ୍ୟକତା ନାହିଁ । ଆମେ ଅନ୍ୟ ଏକ ଦେଶର ଭାଷା କହି ନିଜକୁ ସ୍ୱାଧୀନ ବୋଲି କହିବା କେତେ ହାସ୍ୟାସ୍ପଦ, ଆମ ଲୋକେ ଜାଣିପାରୁ ନାହାନ୍ତି, ସେମାନେ ବାହାରକୁ ଯାଆନ୍ତୁ ଜାଣିବେ । ପୃଥିବୀର ବହୁ ଦେଶ ଲୋକଙ୍କ ସହିତ ମୁଁ ମିଶିଛି, ସେମାନେ ନିଜ ଭାଷା ଛଡ଼ା ଇଂରାଜୀ ଭାଷା କି ଅନ୍ୟ ଭାଷା ଜାଣି ନାହାନ୍ତି । ଦେଖିଲାବେଳକୁ ସେମାନେ ପୃଥିବୀର ଖୁବ୍ ବଡ଼ ବଡ଼ ବୈଜ୍ଞାନିକ । ସେମାନେ ଇଂରାଜୀ ଭାଷାର ଧାର୍ ଧାରନ୍ତି ନାହିଁ ।

ଇଂରାଜୀ ଭାଷା ନ ଜାଣି ମଧ୍ୟ ସେମାନେ ଏତେ ବଡ଼ ବୈଜ୍ଞାନିକ । ଇଂରାଜୀ ଭାଷା ସପକ୍ଷରେ କାଣିଚାଏ ବି ଯୁକ୍ତି ନାହିଁ ସାର୍ । ଏହା ଖାଲି ଆମର ଗୋଲାମି ମନୋବୃତ୍ତି ଛଡ଼ା ଅନ୍ୟ କିଛି ନୁହେଁ । ଆମେ ଏହାକୁ ଯେତେଶୀଘ୍ର ଛାଡ଼ିବା ସେତେ ଭଲ । ଆମ ଦେଶର କେତେକ କୁଚକ୍ରୀ ଗୋଷ୍ଠୀ ଯୋଗୁଁ ଏହି ଭାଷା ଉଠିପାରୁନି । ଆମଠାରେ ଇଂରାଜୀଭାଷାର ମାନ ଯେମିତି ଦିନକୁଦିନ କମି କମି ଯାଉଛି, ଏହି ଭାଷାକୁ ଅଯଥା ଜାବୁଡ଼ି ଧରି ଲାଭ କଅଣ ?"

× × × ×

"କ୍ଷମା କରିବେ, ମୁଁ ଆପଣଙ୍କୁ ଆମେରିକାରେ କେଉଁଠି ଦେଖିଲାଭଳି ମନେ ହେଉଛି ।" ବନାରସ ଉଡ଼ାଜାହାଜ ଘାଟିରେ ଉଡ଼ାଜାହାଜ ଅବତରଣ କରିବାପରେ ଜନୈକ ମାର୍କିନ୍‌ଯାତ୍ରୀ ଶୁଭ୍ରା ସିଂହ୍ ପାଖକୁ ଚାଲି ଆସି କହିଲେ, "ଆପଣ କ'ଣ ଆମେରିକାରେ ଥାଆନ୍ତି ?"

"ହଁ, ମୁଁ ଆମେରିକାରେ ରହେ । ମୋ ଘର କିନ୍ତୁ ଓଡ଼ିଶାରେ । ଘରକୁ ବୁଲି ଆସିଥିଲି ।"

"ଆପଣଙ୍କୁ ମୁଁ କଲମ୍ବିଆ ବିଶ୍ୱବିଦ୍ୟାଳୟରେ କେଉଁଠି ଦେଖିଲାଭଳି ମନେ-ହେଉଛି । ଆପଣ କ'ଣ କଲମ୍ବିଆ ବିଶ୍ୱବିଦ୍ୟାଳୟରେ କାମ କରନ୍ତି ?" ଆଗନ୍ତୁକ ଜଣକ ଶୁଭ୍ରାକୁ ପୁଣି ପଚାରିଲେ ।

"ହଁ, ମୁଁ ସେଠା ରସାୟନ ବିଭାଗର ସହକାରୀ ଅଧ୍ୟାପିକା । ମୋ ନାଁ ଶୁଭ୍ରା ସାମନ୍ତରାୟ । ଏଥିପୂର୍ବରୁ ସେଠା ବିଭାଗୀୟ ମୁଖ୍ୟ ଅଧ୍ୟାପିକା କାରୁସୋଙ୍କ ଗବେଷଣା ସହକାରିଣୀ ଥିଲି ।"

"ଠିକ୍ ମନେ ପଡ଼ିଗଲା ଏଥର, ମୁଁ ଆପଣଙ୍କୁ ତାଙ୍କର ରୁମ୍‌ରେ ଦେଖିଛି । ମୁଁ ସେଠା ପ୍ରତ୍ନତତ୍ତ୍ୱ ବିଭାଗର ସହଯୋଗୀ ଅଧ୍ୟାପକ । ବିଭିନ୍ନ ପ୍ରକାର ପରାମର୍ଶରେ ଆମର କାମ ଥାଏ । ସେହି ସନ୍ଧାନରେ ମୁଁ କେତେଥର ଅଧ୍ୟାପିକା କାରୁସୋଙ୍କୁ ଭେଟିଛି ।"

"ଓଃ, ଆପଣ ତା'ହେଲେ ଆମ ବିଶ୍ୱବିଦ୍ୟାଳୟର ଲୋକ ! ବାଃ, ଭଲ ହେଲା, ଦେଖା ହୋଇଗଲା । ବସନ୍ତୁନା ଏଠି । ଆପଣ କୁଆଡ଼େ ଆସିଥିଲେ ? ପୁଣି ଏତେ ଦୂର— ଓଡ଼ିଶାକୁ ?"

"ମୁଁ ପ୍ରତ୍ନତତ୍ତ୍ୱ ବିଭାଗରେ ସିନା ଅଧ୍ୟାପକ, ତେବେ ମୋର ହବି ହେଉଛି ସ୍ଥାପତ୍ୟବିଦ୍ୟା । ମୁଁ ଓଡ଼ିଶାର ପଥର-ଖୋଦେଇ କାମକୁ ଦେଖିବା ପାଇଁ ଆସିଥିଲି । ମୁଁ ଏହି ପଥର-ଖୋଦେଇ କଳା ଉପରେ ଖଣ୍ଡିଏ ବହି ଲେଖୁଛି । ଓଡ଼ିଶାର ପଥର-ଖୋଦେଇ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ପାଇଁ ଚାଲି ଆସିଥିଲି ପୁରୀ ।"

"ବାଃ, ଚମତ୍କାର ଆପଣଙ୍କ ଯୋଜନା ! ଓଡ଼ିଶା ପଥର-ଖୋଦେଇ କାମ କେମିତି ଲାଗିଲା ଆପଣଙ୍କୁ ?"

"ଚମତ୍କାର ! ଅତି ଚମତ୍କାର ! ଆହୁରି ଚମତ୍କାର ଆପଣଙ୍କ ଦେଶର ପଥର କାରିଗରମାନେ । ପୁରୀରେ ଗୋଟିଏ ସାହି ଅଛି, ନାଁଟା ଠିକ୍ ମନେପଡୁନି, ସେଠାରେ କାମ କରୁଥିବା କାରିଗରମାନଙ୍କୁ ଦେଖିଛି । ସେମାନଙ୍କ କାମ ଅତୀବ ଚମତ୍କାର । ସେମାନଙ୍କୁ ଯଦି ସୁବିଧା ଦିଆଯାଆନ୍ତା, ତେବେ ସେମାନେ କୋଣାର୍କର ସୂର୍ଯ୍ୟମନ୍ଦିରଠାରୁ ଆହୁରି ବେଶ୍ ସୁନ୍ଦର ଉଚ୍ଚକୋଟୀର କାରୁକାର୍ଯ୍ୟପୂର୍ଣ୍ଣ ସୂର୍ଯ୍ୟମନ୍ଦିର ତିଆରି କରିପାରନ୍ତେ । ସେମାନେ କୋଣାର୍କର ପ୍ରତ୍ୟେକ ମୂର୍ତ୍ତିକୁ ଅବିକଳ ଅନୁକରଣ କରି ସେହିଭଳି କାହିଁକି, ତା'ଠାରୁ ଅଧିକ ସୁନ୍ଦର ମୂର୍ତ୍ତି ତିଆରି କରି ପାରୁଛନ୍ତି । ମୋର ମନେହେଉଛି କ'ଣ ଜାଣନ୍ତି ଡକ୍ଟର ସାମନ୍ତରାୟ, ଆମେରିକାର ଯଦି କୌଣସି କୋଟିପତି ଖୋଦ୍ ନିଉୟର୍କରେ କୋଣାର୍କ ଭଳି ମନ୍ଦିର ବସାଇବାକୁ ଚାହାନ୍ତେ, ତେବେ ଏମାନେ ସେଠାରେ ବର୍ତ୍ତମାନର କୋଣାର୍କ ମନ୍ଦିରଠାରୁ ଆହୁରି ସୁନ୍ଦର, ଆହୁରି କାରୁକାର୍ଯ୍ୟପୂର୍ଣ୍ଣ କୋଣାର୍କ ମନ୍ଦିର ଗଢ଼ି ଠିଆ କରାଇ ଦେଇପାରନ୍ତେ । ମୁଁ ସେମାନଙ୍କ କାର୍ଯ୍ୟ ଦେଖି ହତବାକ୍ ହୋଇଯାଇଛି ଶୁଭ୍ରାଦେବୀ ।"

"ଆପଣ ହାତରେ ଏଇଟା କ'ଣ ଧରିଛନ୍ତି··· ।" ଭଦ୍ରଲୋକଙ୍କ ନାମ ଜାଣି ନ ଥିବାରୁ ଶୁଭ୍ରା ଅମ ଅମ ହୋଇଗଲା ପଚାରିଲାବେଳେ ।

"କ୍ଷମା କରିବେ ମିସ୍ ସାମନ୍ତରାୟ, ମୋ ନାଁ ଜେମ୍ସ୍ ହିନ୍‌ସେଲ୍‌ଉଡ୍ । ମୁଁ ବଡ଼ ଦୁଃଖିତ, ମୋ ନାଁ ଏପର୍ଯ୍ୟନ୍ତ ଆପଣଙ୍କୁ କହିନି ବୋଲି । ମୋର କେତେବଡ଼ ଶିଷ୍ଟାଚାର ବହିର୍ଭୂତ କାମ କହିଲେ ?"

"ସେଥିରେ କିଛି ନାହିଁ । ହଁ, ଏଇଟା କି ଯନ୍ତ୍ର କହିଲେ ଡଃ ହିନ୍‌ସେଲ୍‌ଉଡ୍ ?"

"ଏଇଟା ଗୋଟାଏ ଭାଷାନ୍ତରକାରୀ ଯନ୍ତ୍ର ।"

"ଭାଷାନ୍ତରକାରୀ ଯନ୍ତ୍ର ? ମାନେ ଗୋଟିଏ ଭାଷାରୁ ଅନ୍ୟ ଭାଷାକୁ ଅନୁବାଦ କରି ପାରୁଥିବା ଯନ୍ତ୍ର ?"

"ହଁ, ଠିକ୍ ଅନୁମାନ କରିଛନ୍ତି ଆପଣ । ଏହା ଭାଷା ଅନୁବାଦ କରିପାରୁଥିବା ଏକ ଯନ୍ତ୍ର ।"

"ଏ ଯନ୍ତ୍ର କ'ଣ ପାଇଁ ଆଣିଛନ୍ତି ?"

"ଏ ଯନ୍ତ୍ରରେ ଇଂରାଜୀରେ କହିଲେ, ହିନ୍ଦୀରେ ଶୁଭେ । କେହି ଯଦି ହିନ୍ଦୀରେ କହିବ, ତେବେ ମୋତେ ତାହା ଇଂରାଜୀରେ ଶୁଭିବ ।"

"ଆପଣ କ'ଣ ପାଇଁ ଏ ଯନ୍ତ୍ର ସଙ୍ଗରେ ଆଣିଛନ୍ତି ଯେ ?"

"ମୁଁ ପୁରୀର ପଥର-କାରିଗରମାନଙ୍କ ସହିତ କଥାବାର୍ତ୍ତା ହେବାପାଇଁ ଏହାକୁ ଆଣିଥିଲି । ମୁଁ ସେଠାରେ ୪।୫ ଦିନ ଥିଲି । ସବୁବେଳେ ସେମାନଙ୍କ ସହିତ କଥାବାର୍ତ୍ତା । ସେମାନେ ତ ଇଂରାଜୀ ବୁଝି ପାରିବେନି । ତେଣୁ ଏହି ଯନ୍ତ୍ରରେ କହିଲେ ମୁଁ ଯାହା ଇଂରାଜୀରେ କହିବ, ତାହା ଏହି ଯନ୍ତ୍ର ସାହାଯ୍ୟରେ ହିନ୍ଦୀରେ ଅନୁବାଦିତ ହୋଇ ହିନ୍ଦୀ

ଭାଷାରେ ସେମାନଙ୍କୁ ଶୁଭିବ । ସେମାନେ ମୋ କଥା ବୁଝିପାରିବେ । ସେମାନେ ହିନ୍ଦୀରେ ଉତ୍ତର ଦେଲେ ମୋତେ ଇଂରାଜୀରେ ଶୁଭେ, ମୁଁ ସେମାନଙ୍କ କଥା ବୁଝିପାରେ ।"

"ଏହି ଯନ୍ତ୍ର ତା'ହେଲେ ଏକ ଅଦ୍ଭୁତ ଯନ୍ତ୍ର ! ଆପଣ ଇଂରାଜୀରେ କହି, ହିନ୍ଦୀରେ କେମିତି ଶୁଭୁଛି ଟିକିଏ ଦେଖାଇଦେଲେ ?"

ଡକ୍ଟର ହିନ୍‌ସେଲ୍‌ଉଡ୍‌ ଇଂରାଜୀରେ ଦି'ପଦ କଥା କହିଲେ । ସଙ୍ଗେ ସଙ୍ଗେ ତହିଁର ହିନ୍ଦୀ ଅନୁବାଦ ଯନ୍ତ୍ରରୁ ଶୁଭ୍ରାକୁ ଶୁଭିଲା, ପୁଣି ହିନ୍‌ସେଲ୍‌ଉଡ୍‌ଙ୍କ ନିଜ ସ୍ୱରରେ ।

ଶୁଭ୍ରା କହିଲା, "ମୁଁ ଆମେରିକାରେ ଏତେଦିନ ହେଲା ରହିଲିଣି, କାହିଁ ଏଭଳି ଏକ ଯନ୍ତ୍ର ତ କେଉଁଠି ଦେଖିପାରିନି !"

"ଏହି ଯନ୍ତ୍ର ଏବେ ବାହାରିଛି ଶୁଭ୍ରାଦେବୀ । ଏହା ଆମେରିକା ତିଆରି ନୁହେଁ, ଜାପାନ ତିଆରି । ଏହା ଆମେରିକାରେ ବିକ୍ରି ହେଉଛି । ପ୍ରାୟ ସବୁ ବଡ଼ ବଡ଼ ଭାଷାରେ ଏହି ଭାଷାନ୍ତରକାରୀ ଯନ୍ତ୍ର ତିଆରି ହେଲାଣି । ମୁଁ ଭାରତ ଆସିଛି ବୋଲି ଗୋଟିଏ ଇଂରାଜୀ-ହିନ୍ଦୀ ଯନ୍ତ୍ର ସାଙ୍ଗରେ ନେଇ ଆସିଥିଲି ।"

"ଇଂରାଜୀରୁ ଓଡ଼ିଆ ଯନ୍ତ୍ର କ'ଣ ମିଳେନି ? ତା ହୋଇଥିଲେ ସେଭଳି ଯନ୍ତ୍ର ଆପଣଙ୍କର ଢେର୍ ଅଧିକ ସୁବିଧା ହୋଇଥାନ୍ତା ।"

"ନା, ଇଂରାଜୀରୁ ଓଡ଼ିଆ ଯନ୍ତ୍ର ତିଆରି ହୋଇନି । ତା'ହେଲେ ତ ମୋର ଆହୁରି ସୁବିଧା ହୋଇଥାନ୍ତା । କେବଳ ଭାରତୀୟ ଭାଷାରେ ହିନ୍ଦୀର ଭାଷାନ୍ତରକାରୀ ଯନ୍ତ୍ର ମିଳୁଛି, ଅନ୍ୟ ଭାଷାରେ ନାହିଁ । ଆଉ ଅଳ୍ପଦିନ ଭିତରେ ହୁଏତ ମିଳିପାରେ ।"

ଦେବସ୍ମାନବାବୁଙ୍କୁ ଯନ୍ତ୍ରଟିକୁ ଦେଖାଇ ଦେଖାଇ ଶୁଭ୍ରା କହିଲା, "ସାର୍, ଏ ଯନ୍ତ୍ରଟି ଦେଖିଲେଣି ? ଏହା ଇଂରାଜୀରୁ ହିନ୍ଦୀ ଓ ହିନ୍ଦୀରୁ ଇଂରାଜୀକୁ ଭାଷାନ୍ତର କରି ପାରୁଥିବା ଏକ ଯନ୍ତ୍ର । ଏହା ଜାପାନ ତିଆରି, ଆମେରିକାରେ ମିଳୁଛି । ଏଥିରେ ଗୋଟିଏ ଭାଷା ଅନ୍ୟ ଭାଷାକୁ ମନକୁମନ ଅନୂଦିତ ହୋଇଯାଏ ।"

"ଆଁ, ଭାଷାନ୍ତରକାରୀ ଯନ୍ତ୍ର ? କାହାର ଏ ଯନ୍ତ୍ର ?"

"ଅଧ୍ୟାପକ ହିନ୍‌ସେଲ୍‌ଉଡ୍‌ଙ୍କର ।" ଏତକ କହି ଶୁଭ୍ରା ଦେବସ୍ମାନବାବୁଙ୍କୁ ଅଧ୍ୟାପକ ହିନ୍‌ସେଲ୍‌ଉଡ୍‌ଙ୍କ ସହିତ ପରିଚୟ କରାଇଦେଲା ।

ଦେବସ୍ମାନବାବୁଙ୍କୁ ଓଡ଼ିଶାର ଏକ ମନ୍ତ୍ରୀ ବୋଲି ଜାଣି ଖୁବ୍ ସମ୍ମାନର ସହିତ ନମସ୍କାର ଜଣାଇଲେ ହିନ୍‌ସେଲ୍‌ଉଡ୍ ।

ଏହି ଯନ୍ତ୍ରଟି କେମିତି ଭାଷାନ୍ତର କରିପାରୁଛି, ଅଧ୍ୟାପକ ହିନ୍‌ସେଲ୍‌ଉଡ୍‌ ଟିକିଏ ଦେଖାଇଲେ । ଦେଖାଇଦେଲାରୁ ଦେବସ୍ମାନବାବୁ ଆଶ୍ଚର୍ଯ୍ୟ ହୋଇ ଯନ୍ତ୍ରଟିକୁ ଅନାଇ ରହିଲେ ।

ସଙ୍ଗେ ସଙ୍ଗେ ପଚାରି ପକାଇଲେ, "ଏଭଳି ଯନ୍ତ୍ର କ'ଣ ସବୁ ଭାଷା ପାଇଁ ରହିଛି ?"

"ହଁ ଆଜ୍ଞା, ପୃଥିବୀର ସବୁ ବଡ଼ ବଡ଼ ଭାଷା ପାଇଁ ଏଭଳି ଯନ୍ତ୍ର ତିଆରି ହେଲାଣି ।"

"ଅତି ଚମତ୍କାର । ଆଉ ପୃଥିବୀର ଅନ୍ୟ ଦେଶକୁ ଗଲେ ଭାଷା ନେଇ କିଛି ଅସୁବିଧା ହେବନାହିଁ । ଯେଉଁ ଦେଶକୁ ଚାଲିଗଲ, ସେହି ଦେଶ ଭାଷାର ଯନ୍ତ୍ରଟିଏ ଧରି ଗଲ । ତୁମେ ତୁମ ଭାଷାରେ କହିଲେ, ସେମାନେ ବୁଝିପାରିଲେ । ସେମାନେ ସେମାନଙ୍କ ଭାଷାରେ କହିଲେ, ତୁମେ ବୁଝିପାରିଲ । ଆଉ ଭାଷାନ୍ତରକାରୀ ଲୋକର ଆବଶ୍ୟକତା କ'ଣ ? ସତରେ କେଡ଼େ ସୁବିଧା ! ଏହାର କାର୍ଯ୍ୟପ୍ରଣାଳୀ କେମିତି ଜାଣିଛ ଶୁଭ୍ରା ?"

"ମୁଁ ଅନୁମାନ କରୁଛି ସାର୍, ଏଥିରେ ଗୋଟିଏ ଭାଷାନ୍ତର କମ୍ପ୍ୟୁଟର ଥିବ । ସେ ଇଂରାଜୀଭାଷାକୁ ପ୍ରଥମତଃ ହିନ୍ଦୀରେ ଅନୁବାଦ କରିପକାଉଛି ।"

"ହେଲେ, କହିଲାବାଲାର ସ୍ୱରରେ କେମିତି ଶୁଭୁଛି ?"

"ଏଥିରେ ଥିବା କମ୍ପ୍ୟୁଟର ସ୍ୱରକୁ ବିଶ୍ଳେଷଣ କରି ଏହାର କୃତ୍ରିମ ଉତ୍ପାଦନ କରିପାରୁଛି । ଭାଷାଟା ଅନୁବାଦ ହୋଇଯିବାରୁ ସେହି ସଂଶ୍ଳେଷିତ ସ୍ୱରରେ ଶୁଭୁଛି । ଆମକୁ ଜଣାପଡ଼ୁଛି ସେହି ଲୋକ କହିଲା ଭଳି ।"

"ଯନ୍ତ୍ର କେମିତି ଭାଷା ଅନୁବାଦ କରୁଛି ? ଶବ୍ଦ ଅନୁବାଦ ଅବଶ୍ୟ ସହଜ । ଶବ୍ଦକୁ ବାକ୍ୟରେ ପରିଣତ କରିବା କଷ୍ଟ । ତାକୁ ଆମ ଗ୍ରାମାର୍‌ର ନିୟମ ଆଦି ଜଣାଇ ଦିଆଯାଇଥିବ, ନଚେତ୍ ସେ ବାକ୍ୟ ଗଠନ କରିବ କେମିତି ?"

"ବାକ୍ୟ ଗଢ଼ିବାରେ କିଛି ଅସୁବିଧା ନାହିଁ ସାର୍ ।" ହିନ୍‌ସେଲ୍‌ଉଡ୍ କହି ଉଠିଲେ । ମନେକରନ୍ତୁ, ଇଂରାଜୀରେ ବାକ୍ୟ ଅଛି—I will be going home, କମ୍ପ୍ୟୁଟର ମେମୋରିରେ ଥିବା ଅଭିଧାନରେ "I"ର ହିନ୍ଦୀ 'ହାମ୍', homeର ହିନ୍ଦୀ 'ଘର୍', will be goingର ହିନ୍ଦୀ 'ଜାଏଙ୍ଗେ' ଥିବ । ସେଗୁଡ଼ିକୁ ଗୋଟିକ ପରେ ଗୋଟିଏ ଥୋଇଦେଲେ ହେଲା—'ହାମ୍ ଯାଏଙ୍ଗେ ଘର୍' । କମ୍ପ୍ୟୁଟରକୁ ହିନ୍ଦୀ ବ୍ୟାକରଣ ଜଣାଅଛି । ସେ ସଙ୍ଗେ ସଙ୍ଗେ ଶୁଦ୍ଧ ବାକ୍ୟ ତିଆରି କରିଦେଲା—"ହାମ୍ ଘର ଜାଏଙ୍ଗେ" ।

ଦେବସ୍ଥାନବାବୁ ପଚାରିଲେ, "ଏହି ଛୋଟିଆ ଯନ୍ତ୍ରଟି କ'ଣ ସବୁ ପ୍ରକାର ଇଂରାଜୀଭାଷାକୁ ହିନ୍ଦୀରେ ଅନୁବାଦ କରିପାରିବ ? ଏମିତିକି ଟେକ୍‌ନିକାଲ ଶବ୍ଦ ଥିବା ଭାଷାକୁ ?"

"ନା ସାର, ଏଇ ଯନ୍ତ୍ରଟି କେବଳ କଥିତ ଭାଷା ପାଇଁ । ଇଂରାଜୀର କଥିତ ଭାଷାରେ ୩୦୦।୪୦୦ ଇଂରାଜୀ ଶବ୍ଦ ଥାଏ । ତେଣୁ କେବଳ ତାହାରି ହିନ୍ଦୀ ଅନୁବାଦ ଏଥିରେ ଅଛି । ତେଣୁ ଏହି ଯନ୍ତ୍ରରେ କଥିତ ଭାଷାର ଭାଷାନ୍ତର କରିବାରେ କିଛି ଅସୁବିଧା ନାହିଁ ।"

"ମନେକର ଡକ୍ଟର, କଥା କହୁଁ କହୁଁ ଆପଣ ଏମିତି ଗୋଟିଏ ଶବ୍ଦ କହି ପକାଇଲେ, ଯାହାର ହିନ୍ଦୀ ପ୍ରତିଶବ୍ଦ ଏହି ଯନ୍ତ୍ରରେ ନାହିଁ, ସେ କ୍ଷେତ୍ରରେ କେମିତି ଅନୁବାଦ ହେବ ?" ଦେବସ୍ଥାନବାବୁ ପଚାରିଲେ ।

"ସେ କ୍ଷେତ୍ରରେ ସେ ହିନ୍ଦୀ ବାକ୍ୟରେ ଇଂରାଜୀ ଶବ୍ଦ ଥାଇ ଶୁଭିବ । ଦେଖନ୍ତୁ ମୁଁ କହୁଛି—"Washing soda gives an alkaline solution in water." ଏହାର ହିନ୍ଦୀ ଅନୁବାଦ ଶୁଣନ୍ତୁ—"କପଡ଼ା ସାଫ୍ ସୋଡ଼ା ପାନିମେଁ alkaline ଘୋଲ୍ ଦେତା ହୈ ।" ଏହି ଯନ୍ତ୍ରରେ alkalineର ପ୍ରତିଶବ୍ଦ ନାହିଁ । ତେଣୁ ଇଂରାଜୀ ଶବ୍ଦଟି ସେମିତି ବାହାରି ଆସିଲା ।

ଏହାଠାରୁ ବଡ଼ ଯନ୍ତ୍ର, ଯେଉଁଥିରେ ଦୁଇହଜାର, ତିନିହଜାର ଇଂରାଜୀ ଶବ୍ଦର ପ୍ରତିଶବ୍ଦ ଅଛି, ସେଥିରେ ଏ ଅସୁବିଧା ନାହିଁ । ଯେଉଁ ଯନ୍ତ୍ର ବୈଜ୍ଞାନିକ ଶବ୍ଦ ପାଇଁ ବ୍ୟବହୃତ ହେବ, ସେଥିରେ ବ୍ୟବହୃତ ବୈଜ୍ଞାନିକ ଶବ୍ଦର ହିନ୍ଦୀ ପ୍ରତିଶବ୍ଦ ଅଛି । ସଙ୍ଗେ ସଙ୍ଗେ ଅନୂଦିତ ହୋଇ ବାହାରି ଆସିବ । ଏହି ଯନ୍ତ୍ରକୁ ଏକ ଟାଇପ୍ ରାଇଟିଂ ମେସିନ୍ ସହିତ ଲଗାଇଦେଲେ ଏହା ଅନ୍ୟ ଭାଷାକୁ ମଧ୍ୟ ଟାଇପ୍ କରିପକାଇବ ।

"ଏହି ଯନ୍ତ୍ର ସିନା ଏବେ ବାହାରିଲା, ନିଉୟର୍କର ଜାତିସଂଘରେ ତ ଏହି ଭାଷାନ୍ତରୀକରଣ ଢେର ଦିନ ହେଲା ପ୍ରଚଳିତ ଅଛି ।" ସେଠି କ'ଣ ଏହି ପଦ୍ଧତିରେ ହେଉଛି ?

"ନାହିଁ ସାର, ସେଠାରେ ଭାଷାନ୍ତରକାରୀ ଲୋକମାନେ କାର୍ଯ୍ୟରତ ଅଛନ୍ତି । ଜାତିସଂଘ ଆସେମ୍ବ୍ଲିରେ ଜଣେ ଇଂରାଜୀରେ କହିଲେ, ଏହା ଅଲଗା ଅଲଗା ଭାଷା ଜାଣିଥିବା ଭାଷାନ୍ତରକାରୀମାନଙ୍କଠାକୁ ଯାଏ । ସେମାନେ ସଙ୍ଗେ ସଙ୍ଗେ ଏହାର ଭାଷାନ୍ତର କରି ପକାନ୍ତି ଓ ତାହା ସେହି ଭାଷା ବୁଝୁଥିବା ଲୋକଙ୍କ କାନ ପାଖକୁ ଯୋଗାଇ ଦିଆଯାଏ । ତେଣୁ ସଦସ୍ୟମାନେ ନିଜ ନିଜ ଭାଷାରେ ଶୁଣି ପାରନ୍ତି ।" ଶୁଭ୍ରା କହିଲା ।

"ଏହି କିଛିଦିନ ହେଲା ସେଠାରେ ଏହି ଯନ୍ତ୍ର ଲାଗିଗଲାଣି ଶୁଭ୍ରାଦେବୀ । ଡକ୍ଟର ହିନ୍‌ସେଲ୍‌ଉଡ୍ କହିଲେ, "ଆପଣ ବୋଧେ ଜାଣି ନାହାନ୍ତି, ଆଗଭଳି ସେଠି ଆଉ ଭାଷାନ୍ତରକାରୀମାନେ ବସୁ ନାହାନ୍ତି । ସବୁ ଭାଷାନ୍ତର କାମ ଏହାଠାରୁ ବଡ଼ ବଡ଼ ଯନ୍ତ୍ର କରିପାରୁଛି । ସେଥିରେ ବିଭିନ୍ନ ଭାଷାରେ ହଜାର ହଜାର ଶବ୍ଦର ପାରିଭାଷିକ ଶବ୍ଦ ଯନ୍ତ୍ରର ସ୍ମୃତିଭଣ୍ଡାରରେ ଗଚ୍ଛିତ ଅଛି । ତେଣୁ ସଭ୍ୟମାନେ ଯେଉଁ ଭାଷାରେ ଯେତେ କଷ୍ଟ କଷ୍ଟ ବା ଟେକ୍‌ନିକାଲ ଶବ୍ଦ ଥିବା ବାକ୍ୟ ବ୍ୟବହାର କଲେ ମଧ୍ୟ ତାହାର ଉପଯୁକ୍ତ ଭାଷାନ୍ତର ବାକ୍ୟ ସେହି ଭାଷାଭାଷୀଙ୍କ କାନ ପାଖରେ ଶୁଭେ । ଟିକିଏ ବି ଭୁଲ୍ ହୁଏନି ।"

"ଯାହାକୁହ ଶୁଭ୍ରା, ଏହା ସତରେ ବଢ଼ିଆ ଯନ୍ତ୍ରଟିଏ । ଏଭଳି ଯନ୍ତ୍ର ହେଲେ ପୃଥିବୀର ଯେକୌଣସି ଦେଶକୁ ଯିବା ସହଜ । ପ୍ରତ୍ୟେକ ଲୋକ ପ୍ରତ୍ୟେକକୁ ଭଲ ଭାବରେ ବୁଝି ପାରିବେ । ସେମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ବଢିବ । ଲୋକେ ଯେ ପ୍ରତ୍ୟେକଙ୍କୁ ଅଲଗା ଅଲଗା ଭାବୁଥିଲେ, ତାହା ଦୂର ହେବ । ସାରା ପୃଥିବୀକୁ ଗୋଟିଏ ପରିବାର ବୋଲି ସମସ୍ତେ ଭାବିବେ ।"

× × × ×

ଉପରଓଳି ଘରଟା ସୃଷ୍ଟି ଉଡ଼ାଜାହାଜ ଦଳ୍ଷୀ ବିମାନଘାଟିରେ ଓହ୍ଲାଇଲା ! ପ୍ରଥମେ ଦେବସ୍ଥାନ, ତା ପଛେ ପଛେ ଶୁଭ୍ରା ଉଡ଼ାଜାହାଜରୁ ଓହ୍ଲାଇଲେ । ସେମାନେ ଉଡ଼ାଜାହାଜ ପଡ଼ିଆ ଦେଇ ଲାଉଞ୍ଜରେ ପହଞ୍ଚିଛନ୍ତି କି ନାହିଁ, ଶୁଭ୍ରାକୁ ନେବା ପାଇଁ ଆସିଥିବା ଡ୍ରାଇଭର ଶୁଭ୍ରାକୁ ସଲାମ ପକାଇଲା । ଦେବସ୍ଥାନ କିଛି ସମୟ ଲାଉଞ୍ଜରେ ଅପେକ୍ଷା କରିବାପରେ କହିଲା, "ଏ କ'ଣ, ଓଡ଼ିଶା ଭବନ ଗାଡ଼ି ଆସି ନାହିଁ ନା କଅଣ ? ଓଡ଼ିଶା ଭବନର କୌଣସି କର୍ମଚାରୀ କ'ଣ ଦେଖାଯାଉ ନାହାନ୍ତି ? କିଛି ସମୟ ପରେ ପୁଣି କହିଲେ, "ଦେଖ ଶୁଭ୍ରା, ତୁମ ଗାଡ଼ି ତ ଆସି ଯାଇଛି, ତୁମେ ଚାଲିଯାଅ । ଓଡ଼ିଶା ଭବନ ଗାଡ଼ି ଆସିଲେ ମୁଁ ଯିବି । ତୁମେ କାହିଁକି ଅଯଥା ମୋ ପାଇଁ ଅପେକ୍ଷା କରିବ କହିଲ ?"

"ନାହିଁ ସାର, ଓଡ଼ିଶା ଭବନ ଗାଡ଼ି ଆସୁ । ଆପଣ ଯାଇସାରନ୍ତୁ, ତା'ପରେ ମୁଁ ଯିବି । ମୋର ସେମିତି କିଛି ତରତର ନାହିଁ । ମୁଁ ତ ଏମିତି ବୁଲି ଆସିଛି । ଆଉ ଘଣ୍ଟାଏ ଡେରି ହେଲେବି କିଛି କ୍ଷତି ନାହିଁ ।"

"ତେଣେ ତୁମ ମଉସା ମାଉସୀ ଅପେକ୍ଷା କରି ବ୍ୟସ୍ତ ହେଉଥିବେ ?"

"କିଛି ନାହିଁ ସାର, ସେମାନେ କିଛି ବ୍ୟସ୍ତ ହେବେନି । ସେମାନେ ତ ଜାଣିଛନ୍ତି, ସେମାନଙ୍କ ଗାଡ଼ି ଯାଇଛି, ଡ୍ରାଇଭର ଯାଇଛି, ଅସୁବିଧା କିଛି ହେବନି ମୋ ଆସିବାରେ । କାଳେ ଉଡ଼ାଜାହାଜ ଡେରି ଥିବ, ତେଣୁ ମୋ ପହଞ୍ଚିବା ଡେରି ହେଉଛି ବୋଲି ସେମାନେ ଭାବିବେ ।"

ଓଡ଼ିଶା ଭବନ ଗାଡ଼ି ନ ଆସିବା ଦେଖି ବଡ଼ ବ୍ୟସ୍ତ ହୋଇପଡ଼ିଲେ ଦେବସ୍ଥାନ-ବାବୁ । ଓଡ଼ିଶା ଭବନ ଗାଡ଼ି ଖରାପ ହୋଇଯାଇଛି ନା କଅଣ ? କେବେ ତ ସେମାନେ ଏତେ ଡେରି କରନ୍ତିନି !"

"ସାର, ଆପଣ ବସିଥାନ୍ତୁ, ମୁଁ ଓଡ଼ିଶା ଭବନକୁ ଫୋନ୍ କରି ବୁଝି ଆସେ ।" ଏତକି କହି ଶୁଭ୍ରା ଚାଲିଗଲା ଉଡ଼ାଜାହାଜଘାଟି ଅଫିସ୍‌କୁ । କିଛି ସମୟ ପରେ ଫେରିଆସି କହିଲା, "ନାଇଁ ସାର, ଟେଲିଫୋନ୍ ଲାଇନ୍ ବି ସମ୍ଭବତଃ ଖରାପ ହୋଇଯାଇଛି । କେହିତ ଧରୁ ନାହାନ୍ତି । ଫୋନ୍‌ଟା ଖରାପ ହୋଇଥିବ । ଫୋନ୍‌ର ଟୋନ୍‌ରୁ ସେଇଆ ଜଣାପଡ଼ୁଛି ।"

"ତା'ହେଲେ—"

"ସାର, ଆପଣ ଯଦି କିଛି ମନେ ନ କରିବେ, ଆମ ଗାଡ଼ି ଆପଣଙ୍କୁ ଓଡ଼ିଶା ଭବନରେ ପହଞ୍ଚାଇଦେବ । ଆପଣ ଏଠି କେତେ ସମୟ ଅପେକ୍ଷା କରିବେ ? ସନ୍ଧ୍ୟା ଆସିବା ଉପରେ । ସେଠାରେ ପହଞ୍ଚିଲେ ଆପଣ ଟିକିଏ ଧୂଆଁଧୋଇ ହୋଇ ଶାନ୍ତିରେ ବିଶ୍ରାମ ନେଇପାରନ୍ତେ ।"

ହସିଲେ ଦେବସ୍ମାନ, କହିଲେ—"ମୁଁ ଦେଖୁଛି ଶୁଭ୍ରା, ତୁମେ ମୋତେ ଛାଡ଼ି ଯିବନି । ମୋର ଟିକିଏ ଅସୁବିଧା ହୋଇଗଲେ ତୁମକୁ ଯେ କାହିଁକି କଷ୍ଟ ହୁଏ ମୁଁ ବୁଝିପାରେନି । ମୁଁ ଅଧ୍ୟାପକ ଥିଲାବେଳେ ମୋର ଟିକିଏ ଅସୁବିଧାକୁ ତୁମେ ଯେମିତି ସହ୍ୟ କରିପାରୁ ନଥିଲ, ମୁଁ ଆଜି ବର୍ତ୍ତମାନ ମନ୍ତ୍ରୀ ହେଲିଣି, ତଥାପି ତୁମର ମୋ ପ୍ରତି ସେଇ ମମତା ରହିଛି, ଟିକିଏ ବି ବଦଳି ନାହିଁ । ମୁଁ ଜାଣେ, ମୁଁ ନ ଗଲା ପର୍ଯ୍ୟନ୍ତ ତୁମେ ଏଠୁଁ ଯିବନି । ହେଉ, ତୁମରି କଥା ରହୁ, ଚାଲ, ମୋତେ ଓଡ଼ିଶା ଭବନରେ ପହଞ୍ଚାଇଦେଇ ତୁମେ ତୁମ ମଉସାଙ୍କ ଘରକୁ ଯିବ । ତୁମ ମଉସାଙ୍କ ଘର କେଉଁଠି ?"

"କନଟ୍‌ପ୍ଲେସ୍‌ରେ । ତଳେ ଅଫିସ୍, ଉପରେ ରହିବା ଘର"—ଶୁଭ୍ରା କହିଲା ।

"ତୁମେ ମୋତେ ଚାଣକ୍ୟପୁରୀରେ ଛାଡ଼ିଦେଇ କନଟ୍‌ପ୍ଲେସ୍‌କୁ ଯିବ । ବହୁତ ବୁଲିବାକୁ ପଡ଼ିବ ତୁମକୁ ।"

"ସେଥିରେ କିଛି ଯାଏ ଆସେ ନାହିଁ ସାର, କେତେ ସମୟ ଲାଗିବ ଯେ ?"

× × × ×

"କିଏ ଶୁଭ୍ରା, ତୁମେ କେତେବେଳେ ଆସିଲ ? ତୁମେ ଟିକିଏ ଆଗରୁ ଆସିଥାନ୍ତ କି ତୁମକୁ ଦେଖାଇ ଦେଇଥାନ୍ତି—"

"କ'ଣ ସାର ?" ପ୍ରଣାମ କରି ଗୋଡ଼ଧୂଳି ନେଇ ନେଇ ପଚାରିଲା ଶୁଭ୍ରା ।

"ଆରେ, ତୁମେ ଗେଟ୍‌ରେ ପଶିଲାବେଳେ ଜଣେ ଭଦ୍ରଲୋକଙ୍କୁ ଗେଟ୍ ଦେଇ ବାହାରି ଯାଉଥିବାର ଦେଖିଥିବ ?"

"ହଁ ସାର, ଦେଖିଛି । ମୋ ଗାଡ଼ି ଗେଟ୍‌ରେ ଠିକ୍ ପଶିଲାବେଳେ ଜଣେ ଭଦ୍ରଲୋକ ଗେଟ୍‌ରୁ ବାହାରି ଗୋଟିଏ ରେକ୍‌ସାରେ ବସୁଥିଲେ ।"

"ସିଏ କିଏ ଚିହ୍ନି ପାରିଲ ?"

"ନା ସାର, ସିଏ କିଏ ? ମୁଁ ତ ଚିହ୍ନି ପାରିଲିନି ।"

"ଆରେ ସିଏ ପରା ଡକ୍ଟର ନାଏକ । ତୁମେ ରାଏଣ୍ଟ୍ କଲେଜରେ ପଢ଼ିଲାବେଳେ ସେ ତୁମର ଅଧ୍ୟାପକ ନ ଥିଲେ ? ଯିଏ ତୁମ ପ୍ରତି ଅସଦାଚରଣ କରିବାରୁ ରାଏଣ୍ଟ୍ କଲେଜରେ ଷ୍ଟ୍ରାଇକ୍ ହୋଇଥିଲା ।"

"ହଁ ହଁ, ଏଥର ମନେପଡ଼ିଲା ସାର । କିନ୍ତୁ ଚିହ୍ନି ହେଉନି । ସେ କ'ଣ ପୂରାପୂରି ଚନ୍ଦା ହୋଇଗଲେଣି ! ଜଣେ ଲକ୍ଷ୍ମୀଛଡ଼ା ଭଳିଆ ଦିଶୁଛନ୍ତି !"

"ଦିଶିବେନିତ ଆଉ କ'ଣ ? ତାଙ୍କ ସ୍ତ୍ରୀ ଦେଢରଦିନୁ ତାଙ୍କୁ ଛାଡ଼ିପକି ଦେଇ ପିଲାପିଲିଙ୍କୁ ନେଇ ତାଙ୍କ ବାପଘରେ ରହୁଛନ୍ତି । ଇଏ ତୁମଠାରୁ ଚାପୁଡ଼ା ଖାଇବାଦିନୁ ନିଜ କୁ-ସ୍ୱଭାବକୁ ନ ସୁଧାରି ଗୋଟିଏ ପରେ ଗୋଟିଏ କେତେ କାଣ୍ଡ କରି ଚାଲିଛନ୍ତି, ଯା'ପାଇଁ କି ସେ ଚାକିରିରେ ଉଠିପାରୁ ନାହାନ୍ତି ।"

"କଏ, ଶୁଭ୍ରାଦେବୀ ଯେ ! ଆପଣ କେତେବେଳୁଁ ଆସିଲେଣି ? ଆପଣଙ୍କଠାରୁ କଏ ଚାପୁଡ଼ା ଖାଇଲେ ?" କହୁ କହୁ ଶାନ୍ତିଦେବୀ ପଶି ଆସିଲେ ।

"ଆଉ କଏ ଖାଇବେ ମେଡେମ୍ ? ଏଇ ଯେଉଁ ଅଧ୍ୟାପକଜଣକ ଆସିଥିଲେ, ସେଇ ।"

"ତାଙ୍କୁ ଆପଣ ଚାପୁଡ଼ା ମାରିଲେ କ'ଣ ପାଇଁ ?—ଶାନ୍ତିଦେବୀ ପଚାରିଲେ ।

"ସେ ଶୁଭ୍ରା ପ୍ରତି ଅସଦାଚରଣ କଲେ ବୋଲି । ଅସଦାଚରଣର ଉତ୍ତର—ଚଟି, ନ ହେଲେ ଚାପୁଡ଼ା ତ ?" ଦେବସ୍ମାନବାବୁ କହିଲେ ।

"ଆପଣ ଆପଣଙ୍କ ଅଧ୍ୟାପକଙ୍କୁ ଚାପୁଡ଼ା ମାରି ପାରିଲେ ? ବାଃ, ଆପଣତ ଖୁବ୍ ସାହସୀ ? ଛାତ୍ରୀମାନଙ୍କ ପ୍ରତି ଅସଦାଚରଣ କରୁଥିବା ଲୋକେ ଚାକିରିରେ କେମିତି ଅଛନ୍ତି ମୁଁ ବୁଝିପାରୁନି । ସେମାନଙ୍କୁ ସରକାରୀ ଚାକିରିରୁ ବିଦା କରି ହେଉନାହିଁ କାହିଁକି ?"

"ସିଏ କ'ଣ ପାଇଁ ଆପଣଙ୍କ ପାଖକୁ ଆସିଥିଲେ ସାର ?"

"ଆଉ କ'ଣ ପାଇଁ ଆସିଥାନ୍ତେ ? ବଦଳି ବନ୍ଦ କି ପ୍ରମୋସନ ପାଇଁ ଆସିଥିବେ ।" ଶାନ୍ତି କହିଲା ।

"ହଁ, ସେ ବହୁତ ଦିନ ହେଲା ଜୟପୁର କଲେଜରେ ପଡ଼ିଛନ୍ତି । ସେ ଏଆଡ଼କୁ ଆସିପାରୁ ନାହାନ୍ତି । ତା'ଛଡ଼ା ତାଙ୍କ ଜୁନିୟରମାନେ ତାଙ୍କୁ ସୁପରସିଡ୍ କରିଗଲେଣି । ସେ ଯେଉଁଠି ସେଇଠି । ସେ ତୁମ ପ୍ରତି ଅସଦାଚରଣ କଲାପରେ ଗୋଟିକ ପରେ ଗୋଟିଏ କେତେ କାଣ୍ଡ କରିଛନ୍ତି, ଜାଣିଛ ?"

ଶୁଭ୍ରା ଦେବସ୍ମାନବାବୁଙ୍କ ମୁହଁକୁ ବଲବଲ କରି ଅନାଇ ରହିଲା ।

"ସେ ରାଏଣ୍ଟ୍ସ କଲେଜରୁ ଅନୁଗୋଳ କଲେଜକୁ ଆସି ସର୍ବପ୍ରଥମ ସରକାରୀ ଚାକିରିରେ ପଶିଲେ । ଅନୁଗୋଳ କଲେଜରେ ଥିଲାବେଳେ ଜଣେ ଭଦ୍ରଲୋକଙ୍କ ଝିଅ ପ୍ରତି ପ୍ରାକ୍ଟିକାଲ କ୍ଲାସ୍‌ର ଅନ୍ଧକାର ଗୃହରେ ଅସଦାଚରଣ କରି ସେଠାରୁ ତଡ଼ା ଖାଇଲେ । ସେଠୁ ତାଙ୍କ ବଦଳି ହେଲା ଫୁଲବାଣୀ କଲେଜକୁ । ସେଠାରେ ସେ ଜଣେ ଆଦିବାସୀ ଛାତ୍ରୀ ପ୍ରତି ଅସଦାଚରଣ କରିବାରୁ ସେହି ଅଞ୍ଚଳର ଆଦିବାସୀମାନେ ଧନୁଶର ଧରି ଆସିଲେ ତାଙ୍କୁ ମାରିଦେବା ପାଇଁ । ସେଠୁ ସରକାର ତାଙ୍କୁ ବଦଳି କଲେ ଜୟପୁର । ଫୁଲବାଣୀ କଲେଜରେ ଥିଲାବେଳେ ଏହି ଘଟଣାପରେ ତାଙ୍କ ସ୍ତ୍ରୀ ତାଙ୍କୁ ଛାଡ଼ପତ୍ର ଦେଇ ବାପଘରକୁ ଚାଲିଗଲେ । ସେ ବର୍ତ୍ତମାନ ଏକା ଏକା ରହି ଆହୁରି କ'ଣ ଜଘନ୍ୟ କାଣ୍ଡ କରୁଥିବେ, ତାହା ଭଗବାନଙ୍କୁ ଜଣା । କି ଦୁର୍ଭାଗ୍ୟ ! ତୁମେ ଜାଣିଛ ଶୁଭ୍ରା, ସେ ଲଣ୍ଡନରେ ଥିଲାବେଳେ ଜଣେ ଖୁବ୍ ନାମଜାଦା ପ୍ରୋଫେସରଙ୍କ ଅଧୀନରେ ଖୁବ୍ ଭଲ କାମ କରିଥିଲେ । ସେ ଗବେଷଣାରେ ନିଷ୍ଠାର ସହିତ ଲାଗିଥିଲେ ଏତେବେଳକୁ କେତେ ଉପରକୁ ଉଠି ସାରନ୍ତେଣି । ତାଙ୍କର ଏହି ଚାପୁଡ଼ାଖିଆ ରୋଗ ଯୋଗୁଁ ସେ ଉଠିପାରୁ ନାହାନ୍ତି । ତାଙ୍କ ବାପା ମୋର ଗୁରୁ ଥିଲେ । ଦିନେ ତାଙ୍କ ସପକ୍ଷରେ କହିବା ପାଇଁ ସେ

ମୋ'ଠାକୁ ଆସିଥିଲେ । ମୁଁ ତାଙ୍କ ଫାଇଲ ଦେଖିଲିଣି, କିଛି ସାହାଯ୍ୟ କରିଲାଭଳିଆ ଦିଶୁନି ।"

"ସେଭଳି ଲୋକଙ୍କୁ ପ୍ରମୋସନ ଦେବାତ ଦୂରର କଥା, ଚାକିରିରୁ ବାହାର କରିଦେବା ଉଚିତ । ସେ ଆମ ସମାଜ ପାଇଁ ଏକ କଳଙ୍କ ।" ଶାନ୍ତିଦେବୀ ଉତ୍ତ୍ୟକ୍ତ ହୋଇ କହିପକାଇଲେ ।

ଏହି ସମୟରେ ହଠାତ୍ ପି.ଏ. ପଶିଆସି କହିଲା, "ସାର୍, ଡ.ପି.ଆଇ. ଓ ସେକ୍ରେଟେରୀ ଆସିଗଲେଣି । ସେମାନେ ଅଫିସ୍ ଘରେ ବସିଛନ୍ତି ।"

"ହେଉ ରୁହ, ମୁଁ ଯାଉଛି । ଓଭିରି ନାଏକଙ୍କ ଫାଇଲ ଟେବୁଲ ଉପରେ ଅଛି ତ ?"

"ହଁ ସାର, ଅଛି ।"

## ତେପନ

"ଆରେ ମା, କୁଆଡ଼େ ଗଲୁକି ? କହୁ କହୁ ସୀମନ୍ତିନୀ ଦେବୀ ଘର ଭିତରକୁ ପଶି ଆସିଲେ । ସେତେବେଳକୁ ଦେବବାବୁ ଜଳଖିଆ ଖାଇ ଟୁରରେ ବାହାରିଗଲେଣି । ଗୁରୁକର ସନ୍ଦିଆ ମା'ଙ୍କୁ ଦେଖି ଘର ଭିତରକୁ ପାଛୋଟି ଆଣିଲା । ସେତେବେଳକୁ ବୋହୂ ପିଲା ଦୁଇଟିକୁ ପଢ଼ାଉଥିଲା ପଢ଼ାଘରେ । ସ୍କୁଲମାନଙ୍କରେ ଯେମିତି ବେଞ୍ଚ୍ ଟେବୁଲ ଆଦି ପଡ଼ିଥାଏ, ଏଠି ଠିକ୍ ସେମିତି । ସେହି ବେଞ୍ଚ୍ ଟେବୁଲରେ ପିଲା ଦୁଇଟି ବସି ବହିପତ୍ର ରଖି ପଢ଼ୁଥାନ୍ତି । ବୋହୂ ବ୍ଲାକ୍‌ବୋର୍ଡ଼ ପାଖରେ ଠିଆହୋଇ ପିଲା ଦୁଇଟିକୁ ପଢ଼ାଉଥାଏ ଠିକ୍ ସ୍କୁଲରେ ପଢାଇଲା ଭଳି । ସ୍କୁଲଘର ଭଳି କାନ୍ଥରେ ବ୍ଲାକ୍‌ବୋର୍ଡ଼, ଶିକ୍ଷୟିତ୍ରୀ ବସିବା ପାଇଁ ବ୍ଲାକ୍‌ବୋର୍ଡ଼ ସାମନାକୁ ଚେୟାର ଟେବୁଲ । ବୋହୂ ଶିକ୍ଷୟିତ୍ରୀ ପୋଷାକ ପିନ୍ଧି ପଢ଼ାଇବାରେ ଲାଗି ଯାଇଥାଏ ।

ନିଜ ବୋହୂକୁ ଶିକ୍ଷୟିତ୍ରୀ ବେଶରେ ଦେଖି ଚମକିପଡ଼ିଲେ ସୀମନ୍ତିନୀ ଦେବୀ । ଶାଶୁକୁ ଏତେ ସକାଳୁ ଆସିବା ଦେଖି ଅପ୍ରସ୍ତୁତ ହୋଇପଡ଼ିଲା ଶାନ୍ତି ।

ଶାଶୁଙ୍କୁ ଦେଖି ତାଙ୍କ ଗୋଡ଼ଧୂଳି ନେଉ ନେଉ କହିଲା, "କ'ଣ ଆଜି ଅବେଳଟାରେ ଚାଲି ଆସିଲେ ବୋଉ ?"

"ମୁଁ ଶୁଣିଲି, ଆଜି ପୁଅ ଟୁରରେ ଯାଇଛି । ତୋ ଶ୍ୱଶୁର ବି ତା'ର ସଙ୍ଗରେ ଯାଇଛନ୍ତି । ମୁଁ ଭାବିଲି ଯାଏଁ, ବୋହୂଟାକୁ ଡାକି ଆଣେ, ସାଙ୍ଗରେ ଏଠି ଖାଇବା । ପିଲାଗୁଡ଼ିକ ସାଆନ୍ତଙ୍କ ଘରେ କେବେ ଦିନେ ଖାଇଲେନି ?"

"ଆଜି ତ ଆମର ରନ୍ଧା ବନ୍ଦ କରି ଦେଇଛୁ ବୋଉ । ସଜନା, ପୁଷ୍ପାଶ୍ରୀ, ଆମେ ସମସ୍ତେ ଆଜି ପଖାଳ ଖାଇବୁ ବୋଲି ଠିକ୍ କରିଛୁ । ଆଜି ଭାରି ଗରମ ପଡ଼ୁଛି । ଭୁବନେଶ୍ୱରରେ ବହୁତ ଗରମ, ଆମ ଗୋବିନ୍ଦପୁରରେ ଏତେ ଗରମ ନୁହେଁ । ବହୁଦିନ ହେଲା ଆମେ ପଖାଳ ଖାଇନୁ । ସିଏ ନଥିଲେ ଆମ ସମସ୍ତଙ୍କୁ ପଖାଳ ଖାଇବାକୁ ଭଲ ଲାଗେ । ସିଏ ଥିଲେ ପଖାଳ ଭୁଲରେ ବି କରେନି । କାଲେ କିଏ ଖାଦିବ ମନ୍ତ୍ରୀଙ୍କ ଘରେ ପଖାଳ ହେଉଛି ।"

"ତୁ ଜାଣିଛୁ ମା, ପୁଅ ମନ୍ତ୍ରୀ ହେବା ପୂର୍ବରୁ ବାପାଙ୍କୁ ଲୁଚି ଘରକୁ ଯାଇ ପଖାଳ ଖାଇ ପଳାଇ ଆସେ । ସେ ତ ପଖାଳ ଖାଇବାକୁ ଭାରି ଭଲ ପାଏ । ଆଉ ଏ ଯେଉଁ ଖରାଦିନ, ସେଥିରେ ଗରମ ଖାଇବାକୁ କ'ଣ କାହାରି ଇଚ୍ଛା ହେଉଛି ମା ? ତୁ ମଝିରେ ମଝିରେ ପଖାଳ କରୁନାହୁଁ କାହିଁକି ମା ?"

"ଆପଣ ଜାଣିଛନ୍ତି ବୋଉ, ସେ ବର୍ତ୍ତମାନ ମନ୍ତ୍ରୀ । ସବୁବେଳେ ପି.ଏ., ପ୍ରାଇଭେଟ୍ ସେକ୍ରେଟେରୀ, ବଡ଼ ବଡ଼ ଅଫିସରମାନେ ଆମ ଘରେ ଚଳପ୍ରଚଳ । ପ୍ରତିଦିନ କେତେ ଲୋକ ତାଙ୍କୁ ସାକ୍ଷାତ ପାଇଁ ଆସୁଛନ୍ତି । ସିଏ ଯଦି ପଖାଳ ଖାଇବେ, ସେମାନେ ସବୁ ଜାଣିଯିବେ ଓ କଥାଟା ଦିନେ ପଦାକୁ ବାହାରି ପଡ଼ିବ । ମନ୍ତ୍ରୀ ଘରେ ପଖାଳ ଖାଆନ୍ତି ଏକଥା ଯଦି ଜଣାପଡ଼ିଯାଏ, ସବୁ ଗଲା । ପଖାଳଖିଆ ମନ୍ତ୍ରୀ ବୋଲି ଗୁଜବ ଆଡ଼େ ଚାରି ପଡ଼ିଯିବ । ଏହି ଦୁର୍ନାମ ହେବା ଭୟରେ ମୁଁ କେବେ ପଖାଳ କରେନି । ସେ ବି ପଖାଳ କରିବା ପାଇଁ ମୋତେ କେବେ କହି ନାହାନ୍ତି । ଆଜି ସିଏ ନାହାନ୍ତି । ତାଙ୍କ ଦଳ ବି ନାହାନ୍ତି । ତେଣୁ ଆମେ ଠିକ୍ କରିନୁ, ଆଜି ଆମ ସମସ୍ତଙ୍କର ପଖାଳ ।"

"ଆଜି ମୁଁ ନିଜେ ତୋ ପାଇଁ ରାନ୍ଧିଛି ମା, ତୁ ଖାଇବୁ, ପିଲମାନେ ଖାଇବେ, ଏହି ଆଶାରେ ଦୌଡ଼ି ଆସିଛି ତୋ ଠାକୁ । ପୁଅ ଥିଲେ ଆସି ନଥାନ୍ତି । ପୁଅକୁ ତ ମୁଁ ମନ୍ତ୍ରୀ ହେବା ଦିନଠାରୁ କେବେ ଖାଇବାକୁ ଡାକିନି । ସାହସ ବି କରିନି ଡାକିବାକୁ । ତୋ ଶ୍ୱଶୁରଙ୍କର ଭାରି ଡର, ମନ୍ତ୍ରୀ କ'ଣ ଯିବେ ଡି.ପି.ଆଇ.ଙ୍କ ଘରକୁ ଖାଇବାକୁ ? ଲୋକେ କେତେ କଥା ବଢ଼ାଇ କରି କହିବେ । ତୋ ଶ୍ୱଶୁରଙ୍କର ସେଥିପ୍ରତି ଭାରି ଡର, ପୁଅ ମନ୍ତ୍ରୀ ହେବା ଦିନଠାରୁ ସେ କ'ଣ କମ୍ ଡରି ଡରି ଚଳୁଛନ୍ତି କି ମା ?"

"ବୋଉ, ଆପଣ ନିଜେ ଯେତେବେଳେ ଆସିଛନ୍ତି ଆମେ ନଯିବୁ କେମିତି ? ଆଜି ଏଠି ଆମ ପଖାଳଖିଆ ଥାଉ । ପୁଷ୍ପାଶ୍ରୀ ଓ ସଜନା ଖାଇଦେବେ । ଚାଲନ୍ତୁ, ଆଜି ଆମେ ସେଠି ଖାଇବା ।"

"ବୋଉ, ଆପଣ ଆସିଥିଲେ କେଉଁଥିରେ ? ଫେର୍ ସେଇ ରିକ୍ସାରେ ?"

"ଆଉ କେଉଁଥିରେ ଆସିଥାନ୍ତି ମା ? ତୋ ଶ୍ୱଶୁରତ ଆମ ନିଜ ଗାଡ଼ି ନେଇ ଯାଇଛନ୍ତି । ତାଙ୍କର ପୁଣି ତାଗିଦ୍, ଘରକାମରେ ସରକାରୀ ଗାଡ଼ି ବ୍ୟବହାର କରିବା ଉଚିତ ନୁହେଁ । ଆମ କ୍ୱାର୍ଟରରେ ତିନି ତିନିଟା ଗାଡ଼ି ବର୍ତ୍ତମାନ ଥୁଆ ହୋଇଛି ।

ଡ୍ରାଇଭରଗୁଡ଼ାକ ଡ.ପି.ଆଇ. ନାହାନ୍ତି ବୋଲି ବାରଣ୍ଡାରେ ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି । ମୁଁ ଯେତେବେଳେ ରିକ୍ସା ଡକାଇଲି ଏଠାକୁ ଆସିବା ପାଇଁ, ସେଥିଭିତରୁ ଦି' ଜଣଙ୍କ ଧାଇଁ ଆସି ମୋତେ କହିଲେ, "ଆପଣ କ'ଣ ମନ୍ତ୍ରୀଙ୍କ କୋଠିକୁ ରିକ୍ସାରେ ଯିବେ ମା ? ଆମେ କ'ଣ ଆପଣଙ୍କୁ ସେଠି ଛାଡ଼ିଦେଇ ଆସି ପାରୁନୁ ?"

ମୁଁ ମନାକଲି । କହିଲି, "ଆରେ ତୁମେସବୁ କ'ଣ ଜାଣିନ ବାବୁଙ୍କର ପସନ୍ଦ ମନା !"

"ବାବୁ ଜାଣିବେ କେମିତି ମା ? ଆମେ କ'ଣ କିଛି କହିବୁ ତାଙ୍କୁ ?"

"ଆରେ, ତୁମର ସବୁ କେତେଟା ଲେଖାଏଁ କାନ କହିଲ ?"

ଜଣେ ତା କାନ ଦି'ଟାକୁ ଅଣ୍ଡାଳି ପକାଇ କହିଲା, "କାହିଁକି ମା, ଆମର ତ ଦି'ଟା କାନ ।"

"କିନ୍ତୁ ତୁମ ବାବୁଙ୍କର ଚାରିଟା କାନ । ତୁମେ ନ କହିଲେବି ସେ ଜାଣିଯିବେ । ଥାଉ, ଥାଉ, ମୁଁ ରିକ୍ସାରେ ମନ୍ତ୍ରୀଙ୍କ କୋଠିକୁ ଯାଇପାରିବି । ତୁମ ଗାଡ଼ି ଦରକାର ନାହିଁ ।"

"ତା'ହେଲେ ଆମେ ବର୍ତ୍ତମାନ ଯିବା କେମିତି ବୋଉ ? କ'ଣ ରିକ୍ସାରେ ଯିବା ?" ଶାନ୍ତି ପଚାରିଲା ।

ମନ୍ତ୍ରୀଙ୍କ ସ୍ତ୍ରୀ, ମା ଓ ପିଲାମାନେ ବାହାରକୁ ବାହାରୁଥିବା ଦେଖି କୋଠିରେ ଥିବା ଦୁଇଟା ଗାଡ଼ି ଭିତରୁ ଗୋଟିଏ ଆସି ସେମାନଙ୍କଠାରେ ହାଜର ହୋଇଗଲା । ଶାନ୍ତି ଅନ୍ୟମନସ୍କ ଭାବରେ ଗାଡ଼ିର ଦରଜା ଖୋଲିବାକୁ ଯାଉଛି— ଶ୍ରୀମନ୍ତିନୀ ଦେବୀ ବାଧାଦେଇ କହିଲେ, "ହାଁ, ହାଁ, ତୁ କ'ଣ କରୁଛୁ ମା ? ପୁଅକୁ ଏଠି ମନ୍ତ୍ରୀ ହୋଇ ରହିବେବୁ ନାହିଁ ନା କଅଣ ? ତୁ ଯଦି ସରକାରୀ ଗାଡ଼ିରେ ଆମ ଘରକୁ ଯାଉ, ତା ବିରୁଦ୍ଧ ଦଳ ଆସେମ୍ବ୍ଲିରେ ପ୍ରଶ୍ନ ଉଠାଇବେ, ମନ୍ତ୍ରୀଙ୍କ ସ୍ତ୍ରୀ ଘରୋଇ କାମରେ ସରକାରୀ ଗାଡ଼ି ବ୍ୟବହାର କଲେ । ପୁଅ କ'ଣ ଆଉ ମୁଣ୍ଡ ସଳଖ କରି ଚାଲିପାରିବ ଏଠି ? ସେ ସଙ୍ଗେ ସଙ୍ଗେ ଇସ୍ତଫା ଦେଇଦେବ ଏହି ମନ୍ତ୍ରିତ୍ୱରୁ ।"

"ହଁ, ସତକଥା ତ ବୋଉ, ମୋର ସେ ଆଡ଼କୁ ମୋଟେ ଖିଆଲ ନାହିଁ । ସେ ଶୁଣିଲେ ଭାରି ରାଗିବେ । ଆମେ ରିକ୍ସାରେ ଚାଲିଯିବା । ମୁଁ କେବେ ଏଠାକୁ ଆସିଲାଦିନୁ ବାହାରକୁ ଯାଇନି । ବଜାରରୁ ଯାହା କିଣିବା ଦରକାର ପଡ଼େ, ଚାକର ପୂଝାରୀଙ୍କ ହାତରେ ମଗାଇ ଆଣେ । ସେଦିନ ଯାହା ମୁଁ ଆପଣଙ୍କ ଗାଡ଼ିରେ ବାହାରକୁ ଯାଇଥିଲି ।"

ଇଏତ ଏ ପର୍ଯ୍ୟନ୍ତ ଗାଡ଼ି କିଣି ନାହାନ୍ତି । ଗାଡ଼ି କିଣିବା ନାଁ ବି ତ ଧରୁନାହାନ୍ତି । କହୁଛନ୍ତି, ସରକାରୀ ଗାଡ଼ି ତ ଅଛି, ଆଉ ଗାଡ଼ିଟେ କିଣିବା କାହିଁକି ? ସବୁବେଳେ ତାଙ୍କ ମୁହଁରେ ତ ଗୋଟିଏ କଥା । ଆମେ ଏଠି କେତେଦିନ ରହିବା ଯେ ଗାଡ଼ିଟାଏ ଫେର କିଣିବା ?

ବେଳେବେଳେ ଭାବେ, ବାପା ଯେଉଁଦିନ ଘରେ ଥା'ନ୍ତି, ସେଦିନ ଆପଣଙ୍କଠୁ ଗାଡ଼ି ମଗାଇନେବ । ଆପଣଙ୍କର ତ ନିଜ ଗାଡ଼ି, ଅସୁବିଧା ହୁଅନ୍ତାନି । କିନ୍ତୁ ଇଏ ରାଗିବେ । ଲୋକଙ୍କ ମୁହଁକୁ କ'ଣ ବନ୍ଦ କରି ହେବ ? ଲୋକେ କହିବେ ମନ୍ତ୍ରୀଙ୍କ ସ୍ତ୍ରୀ ଡି.ପି.ଆଇ.ଙ୍କ ଗାଡ଼ିରେ ବଜାର ବୁଲି ଯାଉଛନ୍ତି । ତେଣୁ ଏହି ଟଙ୍କା ଛଡ଼ା ଆଉକିଛି ଆମକୁ ସୁବିଧା ନୁହେଁ ବୋଉ ।

ଶାନ୍ତି ଓ ସୀମନ୍ତିନୀ ଦେବୀ ରିକ୍ସା ଡାକିବା ପାଇଁ ଠିକ ଗେଟ ପାର ହେବାକୁ ଯାଉଛନ୍ତି, ହଠାତ୍ ଶୁଭ୍ରା ଏକ ବଗ୍ଗି ଗାଡ଼ି ନେଇ ଗେଟ୍ ପାଖରେ ପହଞ୍ଚିଗଲା । ଦେବବାବୁଙ୍କ ମା'ଙ୍କୁ ଦେଖି ଗାଡ଼ିରୁ ଓହ୍ଲାଇପଡ଼ି ତାଙ୍କୁ ପ୍ରଣାମ କରି ଗୋଡ଼ଧୂଳି ନେଲାବେଳକୁ ସୀମନ୍ତିନୀ ଦେବୀ ଶୁଭ୍ରାକୁ କୁଣ୍ଢାଇ ପକାଇଲେ । "ତୁ କେବେଠୁ ଆମେରିକାରୁ ଆସିଲୁଣି ମା ?"

"ମୁଁ କେତେଦିନ ହେଲା ଆସିଲିଣି ମାଉସୀ । ଆଜି ସାରଙ୍କୁ ଦେଖା କରିବାପାଇଁ ଆସିଥିଲି । ଆପଣମାନେ ଏମିତି କୁଆଡ଼େ ଚାଲି ଚାଲି ବାହାରିଛନ୍ତି ଯେ ? ସାର କ'ଣ ଘରେ ନାହାନ୍ତି କି ?"

"ନା, ଶୁଭ୍ରାଦେବୀ, ସେ ଆଜି ଘରେ ନାହାନ୍ତି । ଟୁରରେ ଯାଇଛନ୍ତି ।"

"ଆପଣମାନେ ଯିବେ କେଉଁଠାକୁ ?"

"ଡି.ପି.ଆଇ.ଙ୍କ କୋଠିକୁ , ବୋଉଙ୍କ ସାଥିରେ ।"

"ଆପଣଙ୍କ ହାତରେ ଦୁଇ ଦୁଇଟା ଗାଡ଼ି ଥୁଆ ହୋଇଛି, ଅଥଚ ଆପଣମାନେ ରିକ୍ସାରେ ଯିବେ ଡି.ପି.ଆଇ.ଙ୍କ କୋଠିକୁ ?"

"ତୁମେ କ'ଣ ତୁମ ସାରଙ୍କୁ ଚହ୍ନିନି ଶୁଭ୍ରାଦେବୀ ? ତାଙ୍କ ପାଖରେ ଏତେଦିନ କ'ଣ ପଢୁଥିଲ ଯେ ?"

ହସିଲା ଶୁଭ୍ରା, "ମୁଁ ବୁଝିଲି ଶାନ୍ତିଦେବୀ, ଘରୋଇ କାମରେ ସରକାରୀ ଗାଡ଼ି ବ୍ୟବହାର କରିବା ମନା । ମୋତେ ଦୁଃଖଲାଗେ ଶାନ୍ତିଦେବୀ, ଆଜିକାଲି ଯୁଗରେ ଲୋକେ ସାରଙ୍କ ଏହି ଆଦର୍ଶକୁ ବୁଝିବେ ତ ? ଓଲଟି ଯଦି ନ କୁହନ୍ତି ଡରୁଆ ମନ୍ତ୍ରୀ !"

"ତୁମର ସବୁବେଳେ ସେମିତି ଖିଆଲିଆ କଥା ଶୁଭ୍ରାଦେବୀ । ତୁମ ସହିତ କଥା ହେବାକୁ ଖୁସିଲାଗେ ସେଥିପାଇଁ ।"

"ଦେଖନ୍ତୁ ଶାନ୍ତିଦେବୀ, ଆପଣମାନେ ଯଦି କିଛି ମନେ ନ କରନ୍ତି, ତେବେ ମୋ ଗାଡ଼ିରେ ବସିପାରନ୍ତି, ମୁଁ ଆପଣଙ୍କୁ ଡି.ପି.ଆଇ.ଙ୍କ କୋଠିରେ ପହଞ୍ଚାଇଦେବି । ମନେରଖନ୍ତୁ ଇଏ ସରକାରୀ ଗାଡ଼ି ନୁହେଁ, ଏହା ମୋ ବାପାଙ୍କ ଗାଡ଼ି । ତେଣୁ ନ ଡରି ସୁରୁଖୁରୁରେ ଏଥିରେ ବସିପାରନ୍ତି ।"

"ନା, ଥାଉ ଶୁଭ୍ରାଦେବୀ, ଆପଣଙ୍କୁ ହଇରାଣ କରିବାକୁ ଇଚ୍ଛା ହେଉନି । ଆମେ ସୁବିଧାରେ ରିକ୍ସାରେ ଚାଲିଯାଇ ପାରିବୁ । ଏଇ ପାଖରେ ତ ଘର । ଆପଣ କାହିଁକି ଆମ ପାଇଁ ଅଯଥା ହଇରାଣ ହେବେ କହିଲେ ?"

"ସରକାରୀ ଗାଡ଼ିରେ ଗଲେ ଡର । ମୋ ଗାଡ଼ିରେ ଗଲେ ବି ଡର ? ଡରୁଆ ମନ୍ତ୍ରୀଙ୍କ ଆହୁରି ଡରୁଆଣି ମନ୍ତ୍ରିଆଣୀ" ଏତିକ କହି ଠୋ ଠୋ ହସିଦେଲା ଶୁଭ୍ରା ।

ଏଥର ଗାଡ଼ିରୁ ଓହ୍ଲାଇପଡ଼ି ଗାଡ଼ିର ଦରଜା ଖୋଲି ଠିଆହେଲା ଶୁଭ୍ରା । "ଆପଣମାନେ ଗାଡ଼ିରେ ନ ବସିଲେ ଏଠି ରାସ୍ତା ବନ୍ଦ ।"

ସୀମନ୍ତିନୀ ଦେବୀ, ଶାନ୍ତ ଓ ପିଲାମାନେ ବାଧ୍ୟହୋଇ ଗାଡ଼ିରେ ବସିଲେ । ସେମାନେ ବସିଲାରୁ ନିଜେ ଦରଜା ବନ୍ଦକରି ଗାଡ଼ିରେ ଷ୍ଟାର୍ଟ ଦେଲା ଶୁଭ୍ରା ।

"ଆଜି କ'ଣ ତୁମ ବାପା ଘରେ ଅଛନ୍ତିକି ଶୁଭ୍ରାଦେବୀ ? ତୁମେ ତାଙ୍କ ଗାଡ଼ି ନେଇଆସିଛ ନା କଅଣ ?"

"ବାପା ତ ବାହାରକୁ ଯାଇଛନ୍ତି । ଆମର ତିନୋଟି ଗାଡ଼ି । ବାପା ଗୋଟିଏ ନେଇ ଯାଇଛନ୍ତି । ମୁଁ ଗୋଟିଏ ନେଇ ଆସିଛି ।"

"ତୁମେ କ'ଣ ଆଜି ନିଜେ ଗାଡ଼ି ଚଲାଉଛ ? ସେଥର ତ ଡ୍ରାଇଭର ଚଲାଉଥିଲା !"

"ଆମେରିକାରେ ରହିଲାଦିନୁଁ ନିଜେ ଗାଡ଼ି ଚଲାଇବାକୁ ଭଲ ଲାଗେ । ଅଭ୍ୟାସ ହୋଇଯାଇଛି ତ ? ସେଠି ଆମ ଡ୍ରାଇଭର ମୋ ଗାଡ଼ି ଚଳାଏ ନାହିଁ, ମୁଁ ନିଜେ ଚଲାଏ ।"

"ତୁମ ଗାଡ଼ିଟା ଏତେବଡ଼ କେମିତି ହୋଇଛି ମ ? ସରକାରୀ ଗାଡ଼ି ତ ଏତେବଡ଼ ନୁହେଁ । ଲାଟ୍‌ସାହେବଙ୍କ ଗାଡ଼ିଟା ବଡ଼ । ଏ ଗାଡ଼ିଟା ଲାଟ୍‌ସାହେବଙ୍କ ଗାଡ଼ିଭଳି ହୋଇଛି ।"

"ଏଇଟା, ଏ ଦେଶ ତିଆରି ଗାଡ଼ି ନୁହେଁ । ଏହା ଫରେନ୍ ଗାଡ଼ି । ଆମେରିକା ତିଆରି । ଆମେରିକାରେ ମୋର ଠିକ୍ ଏମିତି ଗାଡ଼ିଟିଏ ଥିବାରୁ ମୋତେ ଏଇ ଗାଡ଼ିଟି ଚଲାଇବାକୁ ଖୁବ ଭଲ ଲାଗେ ।"

"ତୁମେ କେବେ ଫେରି ଆମେରିକା ଯାଉଛ ?"

"ଆଉ ଚାରି ପାଞ୍ଚଦିନ ପରେ । ସାର୍ ଟୁର୍‌ରୁ ଫେରିଥିବେତ ? ସାର୍‌ଙ୍କୁ ଦେଖା ନ କରି ମୁଁ କ'ଣ ଆମେରିକା ଯାଉଛି ? ମୁଁ ଯେଉଁଦିନ ଯିବି, ଆପଣମାନେ କ'ଣ ଜାଣିବେନି ?"

ଏତିକ କହୁ କହୁ ଗାଡ଼ି ଡି.ପି.ଆଇ.ଙ୍କ ଫାଟକ ଭିତରକୁ ପଶିଲା । କୋଠିର ପୋର୍ଟିକୋରେ ଗାଡ଼ିକୁ ଥୋଇଦେଇ ଶୁଭ୍ରା ଗାଡ଼ିରୁ ବାହାରି ଆସି ଗାଡ଼ିର ଦରଜା ଖୋଲି ଠିଆହେଲା ।

ଶାନ୍ତିଦେବୀ ଗାଡ଼ିରୁ ଓହ୍ଲାଉ ଓହ୍ଲାଉ କହିଲେ, "ଆମେ ତୁମକୁ କେମିତି ଧନ୍ୟବାଦ ଦେବୁ ଜାଣିପାରୁନୁ ।"

"ଜାଣି ନାହାନ୍ତି ଖୁବ ଭଲ ହୋଇଛି ଶାନ୍ତିଦେବୀ । ଜାଣିଲେ ଖରାପ ହେବ ।" କହୁ କହୁ ଖିଲ୍ ଖିଲ୍ କରି ହସିଦେଲା ଶୁଭ୍ରା ।

ଶୁଭ୍ରା ସେମାନଙ୍କୁ ଓହ୍ଲାଇଦେଇ ଗାଡ଼ିନେଇ ଚାଲିଗଲା । ଶୁଭ୍ରା ଚାଲିଗଲା ପରେ ସୀମନ୍ତିନୀ ଦେବୀ କହିଲେ, "ଶୁଭ୍ରା ଭାରି ଦରଦୀ ଝିଅଟେ । ଭଗବାନ ତାକୁ କୋଟି ପରମାୟୁ ଦେଇଥାନ୍ତୁ । ପୁଅର ଭାରି ଘନିଷ୍ଠ ଏ ଝିଅଟି ।"

"ହଁ ବୋଉ, ଏଇ ଝିଅଟି ଆପଣଙ୍କ ପୁଅଙ୍କ ଅତି ପ୍ରିୟ ଛାତ୍ରୀ । ବହୁତ ବଡ଼ଲୋକର ଝିଅ । ଆପଣ ତ ତାଙ୍କ ଘରେ ଥିଲେ, ଦେଖିଥିବେ ସେମାନଙ୍କ ବଡ଼ଲୋକୀ ।"

"ହଁ ମା, ଦେଖିଛି । ବଡ଼ଲୋକ ଭଳି ବଡ଼ଲୋକ । ଅତି ବଡ଼ଲୋକ ।"

"ଶୁଭ୍ରା ଏ ପର୍ଯ୍ୟନ୍ତ ବାହା ହୋଇନି ବୋଧେ ?"

"ନା ବୋଉ, ବାହା ହୋଇନାହାନ୍ତି । ଆପଣଙ୍କ ପୁଅଙ୍କ ସହିତ ଏହାଙ୍କର ବାହାଘର କଥା ପରା ଠିକ୍ ହୋଇଥିଲା । ଆପଣ ମୋତେ ବୋହୂକରି ଏହାଙ୍କ ପ୍ରତି କମ୍ ବଡ଼ ଅନ୍ୟାୟ କରିନାହାନ୍ତି ବୋଉ ।"

"ଆଉ ସେକଥା କହନା ମା । ଯାହା ହୋଇଯାଇଛି,—ହୋଇଯାଇଛି । ବାହାଘର ଘଟସୂତ୍ର ମଣିଷ ହାତରେ ନଥାଏ ମା । କିଏ କାହା ହାଣ୍ଡିରେ ଚାଉଳ ପକାଇଛି, ଭଗବାନଙ୍କ ଛଡ଼ା ଆଉ କେହି ଜାଣନ୍ତିନି ।"

## ଚଉବନ

"ତୁମେ କ'ଣ ଆଜି ଏତେ ସକାଳ ସକାଳ ବାହାରି ପଡ଼ିଲଣି ? ଆଜି ପରା ଛୁଟି ?"

"ହଁ ଶାନ୍ତି, ଆଜି ଛୁଟି । ହେଲେ ମୁଁ ଅଫିସ୍ ଯାଉନି । ମୁଖ୍ୟମନ୍ତ୍ରୀ କ'ଣ ପାଇଁ ଡକାଇଛନ୍ତି, ତାଙ୍କ କୋଠିକୁ ଯାଉଛି ।"

"କିନ୍ତୁ ଆଜି ତ କେବିନେଟ୍ ମିଟିଂ ନାହିଁ ?"

"ନା ।"

"ତୁମକୁ ଆଜିକାଲି ମୁଖ୍ୟମନ୍ତ୍ରୀ ଏତେ ଡକାଉଛନ୍ତି କାହିଁକି ? ଏଥର ମନ୍ତ୍ରୀ ଚାକିରିରେ ମୁକରର ହୋଇଯାଉଛ ନା କଅଣ ?" ଶାନ୍ତି ମୁହଁରେ ଦୁଷ୍ଟାମିର ହସ ।

ହସିଲେ ଦେବସ୍ନାନବାବୁ, "ହଁ, ଆଉ କହିବାକୁ ଅଛି ? ମନ୍ତ୍ରୀ ଚାକିରି ଭଳିଆ ଚାକିରି କ'ଣ ଆଉ ଦୁନିଆରେ ଅଛି ?"

ଦେବସ୍ନାନ ମୁଖ୍ୟମନ୍ତ୍ରୀଙ୍କ କ୍ୱାର୍ଟରରେ ପହଞ୍ଚିଲାବେଳକୁ ମୁଖ୍ୟମନ୍ତ୍ରୀ ତାଙ୍କୁ ଅପେକ୍ଷା କରି ବୈଠକଖାନାରେ ବସିଥିଲେ । ଦେବବାବୁଙ୍କୁ ଦେଖି ପାଛୋଟି ନେବାପାଇଁ ଧାଇଁ ଆସିଲେ । ପାଛୋଟି ନେଇ ନେଇ ପଚାରିଲେ, "କିଛି ଜରୁରୀ କାମ କରୁଥିଲ ନା କଅଣ ? ମୁଁ ଡାକିଲି ବୋଲି କିଛି ଅସୁବିଧା ହୋଇନାହିଁ ତ ?"

"ନାହିଁ ଆଜ୍ଞା, ଫାଇଲ ଦେଖୁଥିଲି । ଆପଣ ଡାକିଲାରୁ ଚାଲି ଆସିଲି । ଅସୁବିଧା କିଛି ନାହିଁ ।"

"ଦେଖନ୍ତୁ ଦେବସ୍ନାନବାବୁ । ବଡ଼ ଅଡ଼ୁଆରେ ପଡ଼ିଯାଇଛି ମୁଁ । ଦିଲ୍ଲୀରେ ଦୁଇଥର ପ୍ରଧାନମନ୍ତ୍ରୀଙ୍କ ସହିତ ଦେଖାହେଲାଣି । ଆମ ରାଜ୍ୟରେ ଆଇନଶୃଙ୍ଖଳା ଭାଙ୍ଗି ପଡ଼ୁଛି ବୋଲି ସେ ବଡ଼ ବିରକ୍ତ ହେଉଥିଲେ । ତୁମେ ଦେଖୁଛତ, ଚାରିଆଡ଼େ ଲୁଟତରାଜ, ନରହତ୍ୟା, ନାରୀଧର୍ଷଣ, ଚୋରାବଜାରୀ, ଅପମିଶ୍ରଣ, ଭୂକାଳି ଭୂଷାଭୁଷି କେମିତି ବଢ଼ି ବଢ଼ି ଚାଲିଛି । ଆମ ଶାସନ ଏଗୁଡ଼ିକୁ ଆୟତ୍ତ କରିପାରୁନି ବୋଲି ପ୍ରଧାନମନ୍ତ୍ରୀ ବଡ଼ କ୍ଷୋଭ କରୁଥିଲେ ।"

ଆଜି ସକାଳେ ମୋତେ ଦିଲ୍ଲୀରୁ ପୁଣି ଫୋନ୍ କରିଥିଲେ । ଆମ ରାଜ୍ୟରେ କେଉଁଠି କ'ଣ ଅସାମାଜିକ କ୍ରିୟା ହେଉଛି, ସେ ତା'ର ଠିକଣାଷି ଖବର ସେଠା କଂପ୍ୟୁଟରରୁ ପାଇ ଯାଉଛନ୍ତି । ଆଜି ବଡ଼ ବିରକ୍ତ ହୋଇ କହିଲେ, "ଆପଣ ଯଦି ଠିକ୍ ଭାବରେ ଶାସନ ପରିଚାଳନା କରିପାରୁ ନାହାନ୍ତି, ତେବେ ଶାସନଗାଦି ଛାଡ଼ି ଅଲଗା ହୋଇଯାଉ ନାହାନ୍ତି କାହିଁକି ? ଯେଉଁମାନେ ଦକ୍ଷ, ଯେଉଁମାନେ ପାରିବେ, ଆପଣ ସେମାନଙ୍କୁ ବାଟ ଛାଡ଼ି ଦିଅନ୍ତୁ ।

ଆମ ଦଳର ମନ୍ତ୍ରୀମାନେ ଏହାକୁ ଆୟତ୍ତ କରିପାରୁ ନ ଥିବାରୁ ମୁଁ ବଡ଼ ବ୍ୟଥିତ । ଶାସନକଳ ବି ପୂରାପୂରି ଢିଲା ହୋଇଗଲାଣି । ଏହାକୁ କେମିତି ଠିକ୍ ବାଟକୁ ଅଣାଯିବ ତାହାହିଁ ମୋର ଚିନ୍ତା । ଆପଣ ଆମ ଦଳରେ ନୁହଁନ୍ତି ସତ, କିନ୍ତୁ ଆପଣଙ୍କର ଶାସନ କ୍ଷେତ୍ରରେ ପଟୁତା ଦେଖି ଆପଣଙ୍କ ସହିତ ପରାମର୍ଶ ପାଇଁ ଆପଣଙ୍କୁ ଡକାଇଲି । ଆପଣଙ୍କ ଭଳି ଦକ୍ଷ ପ୍ରଶାସକ ଆମ ଦଳରେ ଖୁବ୍ କମ୍ ଅଛନ୍ତି । ଆପଣଙ୍କ ପରାମର୍ଶ ଯେ ମୋତେ ଏ ଦିଗରେ ଠିକ୍ ବାଟ ଦେଖାଇବ, ଏଥିରେ ମୋର ସନ୍ଦେହ ନାହିଁ ।

"ଦେଖନ୍ତୁ ଆଜ୍ଞା", ଦେବସ୍ନାନ କହିଲେ,"ଆମ ରାଜ୍ୟରେ ଯେଉଁସବୁ ଅସାମାଜିକ କ୍ରିୟାକଳାପ ଚାଲିଛି, ସେସବୁ ପାଇଁ ଆମ ମନ୍ତ୍ରିମଣ୍ଡଳ ଦାୟୀ ବୋଲି ମୋର ବିଶ୍ୱାସ । ଆମ ରାଜ୍ୟରେ ଯେଉଁ ଅରାଜକତା ଚାଲିଛି, ତାହାର ସ୍ରଷ୍ଟା ଆମେ ନିଜେ । ଆପଣ ପ୍ରତ୍ୟେକ ଘଟଣାକୁ ଅନୁଧ୍ୟାନ କରି ଦେଖନ୍ତୁନାହାନ୍ତି । ଏବେ ଖୋର୍ଦ୍ଧା, ଭଦ୍ରକ, ପୁରୀ, କଟକ, ବ୍ରହ୍ମପୁର ସ୍ଥାନମାନଙ୍କରେ ଯୁବତୀମାନଙ୍କ ଉପରେ ଯେଉଁ ଗଣଧର୍ଷଣ ହୋଇଗଲା, ସେସବୁ ମୂଳରେ କିଏ ? ଆପଣଙ୍କ ଦଳ ସମର୍ଥିତ କେତେଗୁଡ଼ିଏ ଲୋକତ ? ସେମାନେ ମନ୍ତ୍ରୀଙ୍କ ଲୋକ, ସେମାନଙ୍କର କିଏ କ'ଣ କରିବ ? ଏହି ଦମ୍ଭରେ ସେମାନେ ଯାହାପାରି ତାହା କରିଗଲେ । ଲୋକେ ବହୁତ ପାଟିତୁଣ୍ଡ କଲେ । ଖବର କାଗଜମାନେ କଡ଼ା ଭାବରେ ଶାସନକଳକୁ ଭର୍ତ୍ସନା କଲେ । ଦୋଷୀମାନେ ଧରାପଡ଼ିଲେ । କିନ୍ତୁ ହେଲା କଅଣ ? ଲୋକମାନଙ୍କୁ କୁହାଗଲା, ଦୋଷୀମାନଙ୍କୁ ଦଣ୍ଡ ଦିଆଯିବ । ଦୋଷୀମାନେ ଅଟକ ହୋଇ ରହିଲେ । କିଛିଦିନ ପରେ ପୋଲିସକୁ ନିର୍ଦ୍ଦେଶ ଗଲା, କୋହଳ ମିଛ ଧର ।

ଲୋକମାନଙ୍କ ମନରୁ ଏ ଘଟଣା କଥା ଯେମିତି ପାଶୋରିଗଲା, ଦୋଷୀମାନେ ଉପଯୁକ୍ତ ପ୍ରମାଣ ଅଭାବରୁ ଖଲାସ ହେଲେ ବା ସାମାନ୍ୟ ଦଣ୍ଡ ପାଇଲେ, ଲୋକେ ସେସବୁ ଜାଣି ପାରିଲେନି । ଏହିଭଳି ନାରକୀୟ ଘଟଣାରେ ଯଦି ସଙ୍ଗେ ସଙ୍ଗେ ଦୋଷୀକୁ ଧରାଯାଇ ଲୋକମାନଙ୍କ ସମ୍ମୁଖରେ କଠିନ ଦଣ୍ଡ ଦିଆଯାଇ ଥାଆନ୍ତା, ତେବେ ଅନ୍ୟମାନେ ଏହିଭଳି କାର୍ଯ୍ୟ କରିବାକୁ ସାହସ ପାଇ ନଥାନ୍ତେ । ଆପଣମାନଙ୍କ ଦଳର ଲୁକ୍କାୟିତ ହସ୍ତକ୍ଷେପ ଯୋଗୁଁ ପୋଲିସ ବିଭାଗ ନିଷ୍କ୍ରିୟ ହୋଇଗଲା । ତେଣୁ ଦୋଷୀମାନେ ଭୟ ପାଇବା ପରିବର୍ତ୍ତିରେ ଅଧିକ ସାହସ ପାଇଗଲେ । ଘଟଣାପରେ ଘଟଣା ବଢ଼ି ଚାଲିଲା ।

ଚୋରଆଡ଼େ ଯେଉଁ ଚୋରାବଜାରୀ, ଅପମିଶ୍ରଣ ଚାଲିଛି, ସେମାନେ ତ ଆପଣଙ୍କ ଦଳର ବିଭିନ୍ନ ସଦସ୍ୟଙ୍କୁ ବେଶ୍ ମୋଟା ରକମର ଭାଗ ଦେଉଛନ୍ତି । ତେଣୁ ସେମାନଙ୍କୁ ଧରିବ କିଏ ? ପୋଲିସ, ଭିଜିଲାନ୍ସ ବିଭାଗ ଜାଣିଶୁଣି ମଧ୍ୟ ଚୁପ୍ ରହୁଛନ୍ତି । ତେଣୁ ଏସବୁ କାର୍ଯ୍ୟ ଦିନକୁଦିନ ନ ବଢ଼ି କମିବ କେମିତି ? ଲୋକମାନେ ଯଦି ସେମାନଙ୍କୁ ଧରିଲେ, ଖବରକାଗଜବାଲା ପାଟିକଲେ, ତେବେ ପୋଲିସକୁ ଖବର ଦିଆଗଲା 'କୋହଲ ଗଣ୍ଠି ଧରି' । ବେଳେବେଳେ ପ୍ରମାଣକୁ ନଷ୍ଟ କରାଯାଇ ଦୋଷୀକୁ ଖଲାସ କରି ଦିଆଗଲା ।

ରାତିରେ ବାଟରେ ଯେଉଁ ଡକାୟତି ହେଉଛି, ସେହି ଡକାୟତମାନେ ତ ଆପଣଙ୍କ ଦଳର ଦଲାଲମାନଙ୍କ ଇଙ୍ଗିତରେ ଚାଲିତ । ତେଣୁ ମୋଟାମୋଟି କହିବାକୁ ଗଲେ ସାରା ରାଜ୍ୟରେ ଯଦି ଅସାମାଜିକ କ୍ରିୟା ବଢ଼ି ବଢ଼ି ଚାଲିଛି, ତେବେ ସେଥିପାଇଁ ଶାସନକଳ, ମାନେ ଆମେ ସମସ୍ତେ ମୋଟାମୋଟି ଦାୟୀ । ଆପଣମାନଙ୍କ ମନ୍ତ୍ରୀମାନେ ଯଦି ନ୍ୟାୟକୁ ଆଖି ସାମନାରେ ଆଦର୍ଶ କରି ରଖନ୍ତେ, ଯାହାହେଲେ ବି ଆମେ ନ୍ୟାୟଠାରୁ ତିଳେମାତ୍ର ଖସିବୁ ନାହିଁ, ତେବେ ଆଖିପିଛୁଳାକେ ସବୁ ଅସାମାଜିକ କ୍ରିୟାକଳାପ ବନ୍ଦ ହୋଇଯାନ୍ତା । ସେମାନେ କ'ଣ ଜାଣୁ ନାହାନ୍ତି ଏହିସବୁ ଅସାମାଜିକ କ୍ରିୟାରେ ଦୋଷୀ କେଉଁମାନେ ? ସେମାନଙ୍କ ଭୟ, ସେମାନଙ୍କୁ ଯଦି ଦଣ୍ଡ ଦିଆଉଛନ୍ତି, ତେବେ ଆସନ୍ତା ଭୋଟବେଳକୁ ସେମାନେ ଭୋଟ ପାଇବେନି । ଭୋଟ ନ ପାଇଲେ ମନ୍ତ୍ରୀ ହେବେ କେମିତି ? ମନ୍ତ୍ରିତ୍ୱ ପାଇଁ ସେମାନଙ୍କର ଏହି ଯେଉଁ ଅହେତୁକ ଲାଳସା, ତାହାହିଁ ସେମାନଙ୍କୁ ଏଭଳି ଗଣ୍ଠି ଧରିବାକୁ ବାଧ୍ୟ କରୁଛି । ଆଜି ଆପଣଙ୍କ ମନ୍ତ୍ରୀମାନଙ୍କର ଯଦି ସତ୍ସାହସ ଉଦୟ ହୁଅନ୍ତା, ଆମେ ଭୋଟ ପାଉ ବା ନ ପାଉ, ଆମେ ମନ୍ତ୍ରୀ ହୋଇ ଆସୁ ବା ନ ଆସୁ , ଆମେ ଦୋଷୀମାନଙ୍କୁ ଉପଯୁକ୍ତ ଦଣ୍ଡ ନ ଦିଆଇ ଛାଡ଼ିବୁନି, ତେବେ ଗୋଟିଏ ସୁଦ୍ଧା ଅସାମାଜିକ କାର୍ଯ୍ୟକଳାପ ଦେଖା ଦିଅନ୍ତାନି ଆମ ରାଜ୍ୟରେ ।

ଆପଣ ଦେଖୁଛନ୍ତି ତ କଲେଜମାନଙ୍କରେ କେତେ ଗଣ୍ଡଗୋଳ ହେଉଥିଲା । ଆପଣଙ୍କ ଦଳୀୟ ନେତାମାନଙ୍କ ପ୍ରରୋଚନାରେ ଛାତ୍ରମାନେ କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କୁ ମାନୁନଥିଲେ । ଛାତ୍ରମାନଙ୍କ ନିର୍ଦ୍ଦେଶରେ କଲେଜ ଶାସନ ଚାଲୁଥିଲା । ମୁଁ ଆସିଲାପରେ ଅଧ୍ୟକ୍ଷମାନଙ୍କୁ ଅଖଣ୍ଡ କ୍ଷମତା ଦେଲି । ଦଳୀୟ ନେତାମାନେ ଯେମିତି

କଲେଜରେ ମୁହଁ ନ ପୂରାନ୍ତି ତହିଁର ବ୍ୟବସ୍ଥା କଲି । ଅସାମାଜିକ କାର୍ଯ୍ୟରେ ଲିପ୍ତଥିବା ଛାତ୍ରମାନଙ୍କୁ କଠିନ ଦଣ୍ଡାଦେଶର ବ୍ୟବସ୍ଥା କଲି । ଅଧ୍ୟକ୍ଷମାନଙ୍କ ସିଦ୍ଧାନ୍ତ ଉପରେ ଯେଉଁ ହସ୍ତକ୍ଷେପ ଉପରୁ କରାଯାଉଥିଲା, ତାହା ବନ୍ଦହେବା ଫଳରେ ଆପଣମାନେ ମୋ ଉପରେ ଖାଲି ବିରକ୍ତ ହେଲେ ସିନା, କଲେଜମାନଙ୍କରେ ଶାନ୍ତିଶୃଙ୍ଖଳା କେମିତି ଫେରିଆସିଲା, ଆପଣମାନେ କ'ଣ ଜାଣନ୍ତିନି ? ଆଜିକାଲି ଯେଉଁଠି କାଁ ଭାଁ ଗଣ୍ଡଗୋଳ ହେଉଛି, ଛାତ୍ରମାନଙ୍କ ସହିତ ଆଲୋଚନା କରି ସେସବୁ ଦୂର କରି ଦିଆଯାଉଛି । ମୁଁ ଯଦି ପିଲାଙ୍କ କଥା ଶୁଣି ଅଧ୍ୟକ୍ଷଙ୍କ ଶାସନରେ ହସ୍ତକ୍ଷେପ କରିଥାନ୍ତି, ତେବେ ଅଧ୍ୟକ୍ଷ ଓ ଅଧ୍ୟାପକମାନେ ନିଷ୍କ୍ରିୟ ହୋଇ ପଡିଥାନ୍ତେ, ପିଲାମାନଙ୍କୁ ଆୟତ୍ତରେ ରଖିବା ସମ୍ଭବ ହୋଇ ନ ଥାନ୍ତା । ଆପଣମାନେ ମନେ ମନେ ମୋ ଉପରେ ଖୁବ୍ ବିରକ୍ତ ହେଉଥିବେ, ହେଲେ ମୁଁ ସେଆଡ଼କୁ ଦୃଷ୍ଟି ନ ଦେଇ ଏହି କଠୋର ନୀତି ଗ୍ରହଣ ଫଳରେ ଛାତ୍ର ସମାଜରେ ଆଜି ଶାନ୍ତିଶୃଙ୍ଖଳା ବିରାଜମାନ କଲା । ମୁଁ ଆଇନକୁ ତା ବାଟରେ ଯିବାକୁ ଦେଇଛି, ପ୍ରତିରୋଧ କରିନି । ଆପଣମାନେ ଆଇନକୁ ତା ବାଟରେ ଯିବାକୁ ଦିଅନ୍ତୁ, ଶାସନକଳ ତା ବାଟରେ ଚାଲୁ, ଆପଣମାନେ ପ୍ରତିରୋଧ କରନ୍ତୁନି, ଦେଖିବେ ଆଜ୍ଞା ସବୁ ଠିକ୍ ହୋଇଯିବ ।"

ହଠାତ୍ ବୈଠକଖାନା ଭିତରକୁ ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟେରୀ ତରତର ହୋଇ ପଶି ଆସି କହିଲେ, "ସାର୍, ପ୍ରଧାନମନ୍ତ୍ରୀ ପୁଣି ଦିଲ୍ଲୀରୁ ଫୋନ୍ କରିଛନ୍ତି ।" ଦେବବାବୁଙ୍କ ସହିତ ଆଲୋଚନାକୁ ଅଧାରଖି ମୁଖ୍ୟମନ୍ତ୍ରୀ ଅଫିସ୍‌କକ୍ଷରେ ଥିବା ଫୋନ୍ ପାଖକୁ ଦୌଡ଼ିଲେ ।

## ପଞ୍ଚାବନ

ରେଭେନ୍‌ସା କଲେଜର ବିଜ୍ଞାନ ସଂସଦର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ । ଏହା ମହାସମାରୋହରେ ପାଳିତ ହେବା ସ୍ଥିର ହୋଇଥିଲେହେଁ ସଂସଦର ଜନ୍ମ ତାରିଖ ନେଇ ନାନା ମତଭେଦ ଥିବାରୁ ସଂସଦର କର୍ମକର୍ତ୍ତାମାନେ ବଡ଼ ଅଡୁଆରେ ପଡ଼ି ଯାଇଥାନ୍ତି । ସଂସଦର ଜନ୍ମ ତାରିଖ କେତେକଙ୍କ ମତରେ ୧୯୩୪ ମସିହା ବୋଲି କୁହାଯାଉଥିଲେହେଁ ଆଉ କେତେକେ ଏହାକୁ ୧୯୪୩ ମସିହା ଓ ଆଉ କେତେକେ ୧୯୧୯ ମସିହା ବୋଲି କହିବା ଦ୍ୱାରା ଗୋଳମାଳ ଆହୁରି ତୀବ୍ର ହୋଇ ଉଠିଥାଏ । ବଡ଼ ବିଚିତ୍ର, ରାଜ୍ୟର ସର୍ବ ପୁରାତନ ଓ ସର୍ବ ବୃହତ୍ତମ ବିଜ୍ଞାନ ସଂସଦର ଜନ୍ମ ତାରିଖ ନେଇ ଏତେ ବାଦାନୁବାଦ । ବର୍ତ୍ତମାନର ଶିକ୍ଷାମନ୍ତ୍ରୀ ଦେବସ୍ଥାନବାବୁ ରେଭେନ୍‌ସାରେ ଅଧ୍ୟାପକ ଥିଲାବେଳେ କଲେଜର ପୁରୁଣା ପୁରୁଣା ଅଧ୍ୟାପକମାନଙ୍କଠାରୁ ନାନା ସାକ୍ଷ୍ୟ ନେଇ

ଏସବର ପ୍ରକୃତ ଜନ୍ମ ତାରିଖ ଠିକ୍ କରିଥିଲେହେଁ ଅନେକେ ସେଥିସହିତ ଏକମତ ହେଉ ନଥାନ୍ତି । ସେମାନେ ଦେଉଥିବା ଜନ୍ମବର୍ଷ ସପକ୍ଷରେ ସେମିତି କିଛି ସାକ୍ଷ୍ୟ ପ୍ରମାଣ ନ ଥିବାରୁ ଦେବସ୍ଥାନବାବୁଙ୍କ ସ୍ଥିରୀକୃତ ବର୍ଷଟି ଶେଷରେ ଏସବର ଜନ୍ମବର୍ଷ ବୋଲି ଗୃହୀତ ହେବାଛଡ଼ା ଅନ୍ୟ ଉପାୟ ନଥିଲା । ତେଣୁ ସେହି ଜନ୍ମବର୍ଷ ଅନୁସାରେ ଚଳିତବର୍ଷ ଏହାର ସୁବର୍ଣ୍ଣ ଜୟନ୍ତୀ ହେବା ସ୍ଥିର ହୋଇଥାଏ । ଏହି ଉତ୍ସବରେ ଶିକ୍ଷାମନ୍ତ୍ରୀଙ୍କୁ ପ୍ରଧାନ ଅତିଥି ଭାବରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରାଯାଇଥାଏ ।

ଏହି ସୁବର୍ଣ୍ଣଜୟନ୍ତୀ ଅବସରରେ ରେଭେନ୍‌ସା କଲେଜର ପୁରାତନ ଛାତ୍ରୀ ଓ ବର୍ତ୍ତମାନ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟର ରସାୟନାଧ୍ୟାପିକା କୁମାରୀ ଶୁଭ୍ରା ସାମନ୍ତରାୟଙ୍କୁ ତାଙ୍କର ବୈଜ୍ଞାନିକ ପ୍ରତିଭା ପାଇଁ ସମ୍ବର୍ଦ୍ଧିତ କରିବା ସ୍ଥିର ହୋଇଥାଏ । ଭାରତରୁ ବହୁ ବୈଜ୍ଞାନିକ ଆମେରିକାର ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଗବେଷଣାରତ ଥିଲେହେଁ ଶୁଭ୍ରାଦେବୀଙ୍କ ଭଳି ବିଶ୍ୱରେ ପ୍ରସିଦ୍ଧି ଅର୍ଜନ କରିଥିବା ଅଧ୍ୟାପକ ବିରଳ । ଆମେରିକାରେ ପୃଥିବୀର ଏକ ଶ୍ରେଷ୍ଠ ବୈଜ୍ଞାନିକ ଭାବରେ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ରେଭେନ୍‌ସା କଲେଜର ଛାତ୍ରୀ ଭାବରେ ରେଭେନ୍‌ସା କଲେଜର ଗୌରବକୁ ସେ ଯେତେ ବଢ଼ାଇଦେଇ ପାରିଛନ୍ତି ଅନ୍ୟମାନେ ସେତେ ପାରିନାହାନ୍ତି । ତେଣୁ ତାଙ୍କଭଳି ଜଣେ ଖ୍ୟାତନାମା ବୈଜ୍ଞାନିକଙ୍କୁ ଏସବର ସୁବର୍ଣ୍ଣ ଜୟନ୍ତୀ ଅବସରରେ ସମ୍ବର୍ଦ୍ଧନା କରାଯିବ ନାହିଁ ତ ଆଉ କାହାକୁ କରାଯିବ ? ଏସବର ସୁବର୍ଣ୍ଣ ଜୟନ୍ତୀ ଉତ୍ସବଟି ଯେମିତି ଖୁବ୍ ଜାକଜମକରେ ପାଳିତ ହୁଏ ସେଥିପାଇଁ ପିଲାମାନେ ଦିନରାତି ଲାଗି ପଡ଼ିଥାନ୍ତି । ରେଭେନ୍‌ସା କଲେଜର ଐତିହାସିକ ହଲରେ ଏହି ସଭା ଅନୁଷ୍ଠିତ ହେବା ସ୍ଥିର ହୋଇଥାଏ । ସେଥିପାଇଁ ହଲଟିକୁ ନାନା ଦିଗରୁ ସଜାସଜି କରି ଏହାର ବାହାର ଓ ଭିତର ରୂପ ପୁରାପୁରି ବଦଳାଇ ଦିଆଯାଇଥାଏ । ଶିକ୍ଷାମନ୍ତ୍ରୀ ଏହି ଉତ୍ସବକୁ ଆସୁଥିବାରୁ ପ୍ରିନ୍‌ସପାଲ୍ ମହୋଦୟ କଲେଜର ସଫାସୁତୁରା, ସଜାସଜି ପ୍ରତି ଖୁବ୍ ଧ୍ୟାନ ଦେଇଥାନ୍ତି । ଛାତ୍ରମାନଙ୍କ ଜିଦ୍ ସୁବର୍ଣ୍ଣ ଜୟନ୍ତୀ ଦିନ ସାରା କଲେଜଟି ବିଭିନ୍ନ ରଙ୍ଗୀନ୍ ଆଲୋକମାଳାରେ ସଜ୍ଜିତ ହୋଇ ଏମିତି ଭାବରେ ଉଦ୍‌ଭାସିତ ହେବ, ଯେମିତିକି ବାହାରର ଲୋକେ ଏହି ସୁବର୍ଣ୍ଣ ଜୟନ୍ତୀ ଉତ୍ସବଟିକୁ ସବୁଦିନ ପାଇଁ ମନେ ରଖିଥିବେ ।

ଉତ୍ସବ ଆରମ୍ଭ ହେବା ଅଳ୍ପ ସମୟ ବାକି ଥାଏ । ରେଭେନ୍‌ସା କଲେଜର ବରିଷ୍ଠ ବିଜ୍ଞାନାଧ୍ୟାପକମାନେ ପ୍ରିନ୍‌ସପାଲଙ୍କ ଅଫିସଗୃହରେ ଆସି ଏକତ୍ରିତ ହେଲେଣି ଶିକ୍ଷାମନ୍ତ୍ରୀଙ୍କୁ ସ୍ୱାଗତ ଜଣାଇବା ପାଇଁ । ଏହି ଉତ୍ସବକୁ ଶିକ୍ଷାମନ୍ତ୍ରୀ ଆସୁଥିବାରୁ ରେଭେନ୍‌ସା କଲେଜର ସମସ୍ତ ଅଭାବ ଅସୁବିଧା କଥା ତାଙ୍କ ନଜରକୁ ଯେମିତି ଆସିବ, ସେଥିପ୍ରତି ଦୃଷ୍ଟି ଦେବାକୁ ସେମାନେ ପ୍ରିନ୍‌ସିପାଲଙ୍କୁ ବାରମ୍ବାର ଅନୁରୋଧ ଜଣାଉଥାନ୍ତି । ବିଗତ ସରକାର ରେଭେନ୍‌ସା କଲେଜକୁ ଓଡ଼ିଶାର ଏକ ସାଧାରଣ କଲେଜ ସହିତ ସମାନ କରି ପୂର୍ବ ପ୍ରଚଳିତ ବହୁ ସୁବିଧା ତଥା ଅନୁଦାନକୁ କାଟି ଦେଇ ଯେଉଁ ଅନ୍ୟାୟ କରିଛନ୍ତି, ସେଥିପ୍ରତି

ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ ପାଇଁ ଚେଷ୍ଟା କରିବା ଉଚିତ ବୋଲି ସେମାନେ ମତବ୍ୟକ୍ତ କରୁଥାନ୍ତି । ଅନ୍ୟ କେତେକେ କହୁଥାନ୍ତି, ଶିକ୍ଷାମନ୍ତ୍ରୀ ତ ଏହି କଲେଜରେ ଅଧ୍ୟାପକ ଭାବରେ ଏତେଦିନ ଥିଲେ, ସେ ଏହାର ଅଭାବ ଅସୁବିଧା କଥା କ'ଣ ଜାଣି ନାହାନ୍ତି ଯେ ପୁଣିଥରେ ତାଙ୍କୁ ଏକଥା ବୁଝାଯିବ ? ତେବେ ଅନେକଙ୍କ ମତ, ସେ ଯେତେବେଳେ ମନ୍ତ୍ରୀ ଆସନରେ ଆସୀନ, ତାଙ୍କୁ ସବୁକଥା ଖୋଲି ନ କହିଲେ ସେ ସେସବୁ ଅଭାବ ପୂରଣ ପାଇଁ ଚେଷ୍ଟା କରିବେ କେମିତି ? ବରିଷ୍ଠ ଅଧ୍ୟାପକମାନଙ୍କ ଆଲୋଚନାରୁ ପ୍ରିନ୍‌ସିପାଲ ଠିକ୍ କରି ନେଇଥାନ୍ତି, ସେ ତାଙ୍କ ସ୍ୱାଗତ ଭାଷଣରେ କେଉଁ କେଉଁ ବିଷୟକୁ କେମିତି ଭାବରେ ଉପସ୍ଥାପନ କରିବେ ।

ମିଟିଂ ଆରମ୍ଭ ହେବାକୁ ପ୍ରାୟ ପନ୍ଦର ମିନିଟ୍ ବାକି । କୁମାରୀ ଶୁଭ୍ରା ସାମନ୍ତରାୟ ତାଙ୍କ ବାପାଙ୍କ ବିରାଟ କେଡ଼ିଲାକ ଗାଡ଼ିରେ ପ୍ରିନ୍‌ସିପାଲଙ୍କ ଅଫିସ ସାମନାରେ ଆସି ପହଞ୍ଚିଗଲେ । ସେଠାରେ ଅପେକ୍ଷା କରିଥିବା ଛାତ୍ରନେତାମାନେ ତାଙ୍କୁ ପାଛୋଟି ନେଇଗଲେ ପ୍ରିନ୍‌ସିପାଲଙ୍କ ରୁମ୍‌କୁ । ସେଠାରେ ସେ କଲେଜର ବରିଷ୍ଠ ବିଜ୍ଞାନାଧ୍ୟାପକ-ମାନଙ୍କୁ ଏକତ୍ରିତ ହେବା ଦେଖି ସେମାନଙ୍କୁ ଯଥୋଚିତ ସମ୍ମାନ ନ ଜଣାଇ ରହିପାରିଲେନି । ସେ ପ୍ରିନ୍‌ସିପାଲଙ୍କ ଅନୁରୋଧକ୍ରମେ ପାଖ ଚେୟାରରେ ବସିଛନ୍ତି କି ନାହିଁ କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପିକା ଡକ୍ଟର ରେଖା ମହାନ୍ତି କେଉଁଠି ଥିଲେ, ହଠାତ୍ ତାଙ୍କଠାକୁ ଚାଲି ଆସି ତାଙ୍କୁ ସ୍ୱାଗତ ଜଣାଇ ତାଙ୍କର ଭଲ ମନ୍ଦ ପଚାରି ବସିଲେ । ଗବେଷଣାରେ ଶୁଭ୍ରାର କୃତିତ୍ୱରେ ସେ ଏତେ ଖୁସି ହୋଇ ଯାଇଥାନ୍ତି ଯେ, ବସୁ ବସୁ କହିଲେ, "ତୁମେ ଜାଣିନ ଶୁଭ୍ରା, ମୋର ଜନୈକ ଛାତ୍ର ବର୍ତ୍ତମାନ ପୋଷ୍ଟ ଡକ୍ଟରାଲ ବୃତ୍ତି ପାଇ କଲମ୍ବିଆରେ ଜଏନ୍ କରିଛି । ସେଠାରେ ତୁମର ଅପୂର୍ବ ଖ୍ୟାତି କଥା ଏଇ କେତେଦିନ ତଳେ ମୋତେ ଚିଠିରେ ଜଣାଇଥିଲା । ତା'ଠାରୁ ତୁମର ଦିଗନ୍ତ-ବିସ୍ତାରୀ ଖ୍ୟାତି ଶୁଣି ଆମେ ଓଡ଼ିଶାରେ ଥାଇ କମ୍ ଗୌରବାନ୍ୱିତ ନୋହୁଁ । ତୁମେ ଯେ ଦିନେ ଗବେଷଣାରେ ଓଡ଼ିଶାର ଏଭଳି ମୁଖୋଜ୍ଜ୍ୱଳ କରିବ, ଦେବସ୍ନାନବାବୁଙ୍କଠାରେ ଗବେଷଣା କରିବା ଦିନୁଁ ମୁଁ ତାହା ଜାଣିଥିଲି । ସେଠାରେ ତୁମ ଗବେଷଣାର ନିଷ୍ଠା ଦେଖି ମୁଁ ନିଶ୍ଚିତ ହୋଇ ଯାଇଥିଲି ଯେ, ତୁମେ ଦିନେ ନା ଦିନେ ଓଡ଼ିଶାର ସମ୍ମାନକୁ ବହୁ ଉପରକୁ ନେଇଯାଇ ପାରିବ । ଭଗବାନ କରନ୍ତୁ, ତୁମେ ଦୀର୍ଘାୟୁ ହୁଅ, ଓଡ଼ିଶାର ସମ୍ମାନକୁ ବିଶ୍ୱରେ ଏହିଭଳି ଭାବରେ ବଢ଼ାଇ ଚାଲ ।"

ମିଟିଂ ଆରମ୍ଭ ହେବା ଯେତେ ପାଖେଇ ଆସୁଥାଏ, ପ୍ରିନ୍‌ସିପାଲ ସେତେ ଚିନ୍ତିତ ହୋଇ ପଡ଼ୁଥାନ୍ତି । ତାଙ୍କର ଚିନ୍ତା, ଶିକ୍ଷାମନ୍ତ୍ରୀ କ'ଣ ଠିକ୍ ସମୟରେ ଆସି ଏଠି ପହଞ୍ଚି-ପାରିବେ ନାହିଁ ନା କ'ଣ ? ଅନ୍ୟ ମନ୍ତ୍ରୀମାନଙ୍କ ଭଳି କଥା ଦେଇ ଯଦି ନ ଆସନ୍ତି, ତେବେ ସବୁ ଗଲା ।

ପ୍ରିନ୍‌ସିପାଲଙ୍କ ଚଞ୍ଚଳତା ଦେଖି ରେଖାଦେବୀ କହିଲେ, "ଶିକ୍ଷାମନ୍ତ୍ରୀ ଠିକ୍ ସମୟରେ ଆସି ପହଞ୍ଚିଯିବେ ସାର୍, ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁନି । ଶିକ୍ଷାମନ୍ତ୍ରୀ ଖବ୍ ସମୟାନୁବର୍ତ୍ତୀ । ସେ ଯେଉଁ ମିଟିଂମାନଙ୍କୁ ଆସନ୍ତି ଅନ୍ୟ ମନ୍ତ୍ରୀମାନଙ୍କ ଭଳି ଡେରି କରି ଆସନ୍ତିନି । ବହୁବର୍ଷ ତଳେ ଆମର ଏହି କଲେଜରେ ଯେଉଁ ପ୍ରିନ୍‌ସିପାଲ ଥିଲେ ଡକ୍ଟର ପ୍ରାଣକୃଷ୍ଣ ପରିଜା, ତାଙ୍କର ସମୟାନୁବର୍ତ୍ତିତା ଥିଲା ଇତିହାସ-ପ୍ରସିଦ୍ଧ । ଦେବବାବୁଙ୍କ ସମୟାନୁବର୍ତ୍ତିତା ପରିଜା ସାହେବଙ୍କ ସମୟାନୁବର୍ତ୍ତିତାଠାରୁ କୌଣସି ଗୁଣରେ ହୀନ ନୁହେଁ ।

"ସାର୍ ଠିକ୍ ସମୟରେ ପହଞ୍ଚିଯିବେ ଆପଣ ବ୍ୟସ୍ତ ହୁଅନ୍ତୁନି ।" ଶୁଭ୍ରା କହିଲା । "ତାଙ୍କ ପାଖରେ ମିଟିଂ ବେଳ ପାଞ୍ଚଟା ମାନେ ପାଞ୍ଚଟା, ମିନିଟିଏ ଏପଟ କି ସେପଟ ହେବନି ।"

ପ୍ରିନ୍‌ସିପାଲଙ୍କଠାରୁ ଅଳ୍ପ ଦୂରରେ ବସିଥିଲେ ପ୍ରାଣିବିଜ୍ଞାନ ବିଭାଗର ଅଧ୍ୟାପକ ଡକ୍ଟର ପ୍ରହରାଜ । ସେ ହସି ହସି କହିଲେ, "ମନ୍ତ୍ରୀମାନେ ମନ କରି ଡେରିରେ ଆସନ୍ତିନା ? ଡେରିରେ ନ ଆସିଲେ ଲୋକେ ଜାଣିବେ କେମିତି ମନ୍ତ୍ରୀ ଖୁବ୍ କାର୍ଯ୍ୟବ୍ୟସ୍ତ ବୋଲି । ଦେବସ୍ମାନବାବୁଙ୍କର ସେମିତି ଲୋକଦେଖାଣିଆ ପ୍ରକୃତି ତ ନାହିଁ । ତେଣୁ ସେ ଡେରି କରି ଆସିବେ କାହିଁକି ? ମୋ ଆଶା ସେ ଠିକ୍ ସମୟରେ ଏଠି ପହଞ୍ଚିଯିବେ ।"

"ସାର୍, ଶିକ୍ଷାମନ୍ତ୍ରୀ ଆସିଗଲେ", କହୁ କହୁ ଦଳେ ପିଲା ପ୍ରିନ୍‌ସିପାଲଙ୍କ ରୁମ୍ ଭିତରକୁ ପଶି ଆସିଲେ । ପ୍ରିନ୍‌ସିପାଲ ଓ ବରିଷ୍ଠ ଅଧ୍ୟାପକମାନେ ଏହାଶୁଣି ହଠାତ୍ ଉଠିପଡ଼ି ଅଫିସ୍ ସାମନା ଗେଟ୍ ପାଖକୁ ଦୌଡ଼ିଲେ ।

ଶିକ୍ଷାମନ୍ତ୍ରୀ କାରରୁ ଓହ୍ଲାଉ ଓହ୍ଲାଉ କହିଲେ, "ଅନେକଦିନ ପରେ ଆଜି ରେଭେନ୍‌ସା କଲେଜ ଦର୍ଶନ ମୋ ଭାଗ୍ୟରେ ଜୁଟିଛି ଡକ୍ଟର ସେନ୍‌ଗୁପ୍ତ । ଏହି କେତେବର୍ଷ ଭିତରେ କଲେଜରେ ସେମିତି କିଛି ଆଖି ଦିଶିଆ ପରିବର୍ତ୍ତନ ହେଲାଭଳି ତ ମୋତେ କାହିଁକି ଦିଶୁନି ?"

"ଆପଣମାନଙ୍କ ବେଳେ ଓଡ଼ିଶାର କଲେଜମାନଙ୍କ ଭିତରେ ରେଭେନ୍‌ସା କଲେଜର ଯେଉଁ ପ୍ରତିପତ୍ତି, ପ୍ରତିଷ୍ଠା ଥିଲା, ତାହାକୁ ବିଗତ ସରକାର ତ ଭାଙ୍ଗିଦେଇ ଏହାକୁ ଓଡ଼ିଶାର ସାଧାରଣ କଲେଜ ସହିତ ସମାନ କରିଦେଲେ । ଏହାଫଳରେ କଲେଜର ଅବସ୍ଥା ଦିନକୁଦିନ ତଳକୁ ଯାଉଛି । ଏଥିରେ ଆପଣ କ'ଣ ପରିବର୍ତ୍ତନ ଆଶା କରୁଛନ୍ତି ଆଜ୍ଞା । ଆପଣ ଏଠି ଥିଲାବେଳେ ରେଭେନ୍‌ସା କଲେଜରେ ଯେଉଁ ଅବସ୍ଥା ଥିଲା, ବର୍ତ୍ତମାନର ଅବସ୍ଥା ତା'ଠାରୁ ଆହୁରି ଖରାପ ।"

କାର୍‌ରୁ ଓହ୍ଲାଉ ଓହ୍ଲାଉ ଦେବବାବୁଙ୍କର ହଠାତ୍ ଆଖି ପଡ଼ିଗଲା ରେଖାଦେବୀଙ୍କ ଉପରେ । "କିଏ ରେଖାଦେବୀ ଯେ ! କେମିତି ଅଛନ୍ତି ? ଆପଣଙ୍କର ସବୁ ଭଲ ତ ? ଆପଣ ବର୍ତ୍ତମାନ ଏଠା ଡିପାର୍ଟମେଣ୍ଟ ହେଡ୍ ତ ?"

"ହଁ, ସାର୍ । ଡକ୍ଟର ମହାନ୍ତି ବର୍ତ୍ତମାନ ପଦାର୍ଥବିଜ୍ଞାନ ବିଭାଗର ହେଡ୍ ଅଛନ୍ତି ।" ରେଖାଦେବୀ ଉତ୍ତର ଦେବା ପୂର୍ବରୁ ଶୁଭ୍ରା କହି ପକାଇଲା ।

"କିଏ ଶୁଭ୍ରା, ତୁମେ କେତେବେଳୁ ଆସିଲଣି ? ମୋର ଡେରି ହୋଇଯାଇ ନାହିଁ ତ ?"

"ନା ସାର୍, ଆପଣ ଠିକ୍ ସମୟରେ ଆସି ପହଞ୍ଚିଛନ୍ତି । ଆପଣ ଠିକ୍ ସମୟରେ ଆସିବେ ଜାଣି ମୁଁ ଟିକିଏ ଆଗରୁ ଚାଲି ଆସିଥିଲି ।"

ଶିକ୍ଷାମନ୍ତ୍ରୀ ପ୍ରିନ୍‌ସିପାଲଙ୍କ ରୁମ୍‌ରେ ବସିଛନ୍ତି କି ନାହିଁ, ସଂସଦର କର୍ମକର୍ତ୍ତାମାନେ ଆସି ସେମାନଙ୍କୁ କଲେଜ ହଲ ଅଭିମୁଖେ ଯିବାପାଇଁ ଅନୁରୋଧ ଜଣାଇଲେ । କଲେଜ ହଲରେ ଦର୍ଶକମାନଙ୍କ ଭିଡ଼ ଆଶାତୀତ ଭାବରେ ବଢି ଯାଇଥିବାରୁ ଶୀଘ୍ର ମିଟିଂ ଆରମ୍ଭ ନକଲେ ଶାନ୍ତିଶୃଙ୍ଖଳା ବ୍ୟାହତ ହୋଇପାରେ ବୋଲି ସେମାନେ ଆଶଙ୍କା କରୁଥାନ୍ତି ।

ହଲ ଅଭିମୁଖେ ଯାଉ ଯାଉ ପୋର୍ଟିକୋଠାରେ ଦେବସ୍ଥାନବାବୁ କଲେଜ କ୍ୱାଡ୍ରେଙ୍ଗଲ ଆଡ଼େ ଅନାଇଦେଇ ଚମକି ପଡ଼ିଲେ । ତାଙ୍କ ପାଖେ ପାଖେ ଯାଉଥିଲେ ରେଖାଦେବୀ । ସେ ରେଖାଦେବୀଙ୍କ ଆଡ଼କୁ ଅନାଇ କହି ପକାଇଲେ, "ଏ କ'ଣ ଡକ୍ଟର ମହାନ୍ତି, କଲେଜ କ୍ୱାଡ୍ରେଙ୍ଗଲର ଏଭଳି ଦୁରବସ୍ଥା କାହିଁକି ? ତା'ର ସେ ପୂର୍ବ ସୌନ୍ଦର୍ଯ୍ୟ କୁଆଡ଼େ ଗଲା ? ରାସ୍ତା ଧାରରେ ଫୁଲଗଛ ସବୁ କ'ଣ ନାହିଁ ? ଝାଉଁଗଛଗୁଡ଼ାକ ଭାଙ୍ଗି ଯାଇ ପଡ଼ିଆଟାକୁ କି ଅସୁନ୍ଦର କରୁଛି ସତରେ ।"

"ଆପଣଙ୍କ ବେଳର କ୍ୱାଡ୍ରେଙ୍ଗଲ କ'ଣ ବର୍ତ୍ତମାନ ଆଉ ଅଛି ଆଜ୍ଞା ? ସେତେ-ବେଳେ ଯେଉଁ ଅଧ୍ୟାପକ ଏହି କ୍ୱାଡ୍ରେଙ୍ଗଲ ଦାୟିତ୍ୱରେ ଥିଲେ, ସେ ଅବସର ନେଲା ଦିନରୁ କ୍ୱାଡ୍ରେଙ୍ଗଲର ଦୁରବସ୍ଥା ଆରମ୍ଭ ହୋଇଯାଇଛି । ଆଗଭଳି ଫୁଲଗଛ ରାସ୍ତାଧାରରେ ଲଗାଯାଉନି କି ମେସିନ୍ ସାହାଯ୍ୟରେ ପଡ଼ିଆର ଘାସକଟା ଆଉ ନାହିଁ । ପଡ଼ିଆରେ ପିଲାମାନେ ଚଲାଚଲି କରି ପଡ଼ିଆରେ ରାସ୍ତାର ଚିହ୍ନସବୁ ସୃଷ୍ଟି କରି ପଡ଼ିଆଟାକୁ ପୂରାପୂରି ଅସୁନ୍ଦର କରି ପକାଇଲେଣି । ଠାଏ ଠାଏ ଝାଉଁଗଛ ମରି ଯାଇଥିବାରୁ ଓ ସେ ସ୍ଥାନରେ ନୂଆ ଗଛ ଲଗାଯାଇ ନ ଥିବାରୁ କ୍ୱାଡ୍ରେଙ୍ଗଲର ସୌନ୍ଦର୍ଯ୍ୟ ଆଉ ପୂର୍ବଭଳି ନାହିଁ ।"

"ମୁଁ ବଡ଼ ଦୁଃଖ କରୁଛି ରେଖାଦେବୀ, ଏଇ ଦିନ କେଇଟା ଭିତରେ କ୍ୱାଡ୍ରେଙ୍ଗଲର ଏଭଳି ଦୁରବସ୍ଥା ହୋଇଗଲା ? ଏହି ପଡ଼ିଆ ଦାୟିତ୍ୱରେ ବର୍ତ୍ତମାନ କେହି ନାହାନ୍ତି ନା କ'ଣ ?"

ପୂର୍ବରୁ ଯେଉଁ ଅଧ୍ୟାପକ ଦାୟିତ୍ୱରେ ଥିଲେ, ସେ ଏହି କ୍ୱାଡ୍ରେଙ୍ଗଲକୁ ନିଜ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ । ତାଙ୍କ ସାମନାରେ କୌଣସି ପିଲା ଏହି ପଡ଼ିଆର ଘାସ ଗାଲିଚା ଉପରେ ଚାଲି ଯାଇପାରୁ ନ ଥିଲା । ଆପଣଙ୍କର ମନେଥିବ, ଦିନେ ଆପଣ ଓ ମୁଁ ନୂଆ କରି ଜଏନ କରିଥାନ୍ତି, କଲେଜଛକ ଜଳଖିଆ ଦୋକାନରୁ ଜଳଖିଆ ଖାଇସାରି ଏହି କ୍ୱାଡ୍ରେଙ୍ଗଲ ଦେଇ ବଟାନି ଡିପାର୍ଟମେଣ୍ଟକୁ ଯାଉଥିଲେ. । ଅଧ୍ୟାପକ ମହାଶୟ

କେଉଁଠି ଥିଲେ, ହଠାତ୍ ଦୌଡ଼ି ଆସି ଆମକୁ ଯେଉଁ ଭର୍ତ୍ସନା କରିଥିଲେ, ଆପଣଙ୍କ ମନେଥିବ କି କ'ଣ ଜାଣିନି, ମୁଁ କିନ୍ତୁ ଭୁଲି ପାରିନି । ଦାୟିତ୍ୱ ପାଳନରେ ତାଙ୍କ ନିଷ୍ଠା ଆଜି କା'ଲିକାର ଲୋକଙ୍କଠାରେ କ'ଣ ଅଛି ? ନିଷ୍ଠାର ଅଭାବ ହିଁ ଏହି ଦୁର୍ଦ୍ଦଶାର ମୂଳ ।

ତା'ଛଡ଼ା କଲେଜ ପିଲାମାନେ ମଧ୍ୟ ପଢ଼ିଆ ପ୍ରତି ଆଗଭଳି ସେତେ ଯତ୍ନବାନ ନୁହନ୍ତି । ସେମାନେ ଏଥିପ୍ରତି ଏତେ ଉଦାସୀନ ଯେ, ଏହା ସେମାନଙ୍କ ପଢ଼ିଆ, ଏହାର ସୌନ୍ଦର୍ଯ୍ୟ ରକ୍ଷଣ ସେମାନଙ୍କ କର୍ତ୍ତବ୍ୟ ବୋଲି ସେମାନେ କେଉଁଦିନରୁ ଭୁଲିଗଲେଣି । ଆଗକାଳର ପିଲାମାନେ ଏହି କ୍ୱାଡ୍ରେଙ୍ଗଲ ପ୍ରତି ବେଶ୍ ସଚେତନ ଥିଲେ । ଫୁଲଗଛ କେହିଜଣେ ଚୋରି କରି ନେଲେ ସେମାନେ କର୍ତ୍ତୃପକ୍ଷଙ୍କଠାରେ ସଙ୍ଗେ ସଙ୍ଗେ ଯାଇ ଆପତ୍ତି ଜଣାଉଥିଲେ, ଯଦି ପାରୁଥିଲେ, ଚୋରକୁ ଧରି ଆଣି କର୍ତ୍ତୃପକ୍ଷଙ୍କ ଆଗରେ ହାଜର କରାଉ-ଥିଲେ ।''

''କ୍ୱାଡ୍ରେଙ୍ଗଲର ଅବସ୍ଥା ଏତେ ଖରାପ ହୋଇଯିବ ବୋଲି ମୁଁ ଆଶାକରି ନଥିଲି ରେଖାଦେବୀ ।'' ପ୍ରିନ୍‌ସିପାଲଙ୍କ ଆଡ଼କୁ ଅନାଇ, ''ଏ କ'ଣ ଡକ୍ଟର ସେନ୍‌ଗୁପ୍ତ । ଆପଣ କ'ଣ ଏହି କ୍ୱାଡ୍ରେଙ୍ଗଲ ଆଡ଼େ ଦୃଷ୍ଟି ଦେଉ ନାହାନ୍ତି ନା କଅଣ ? ଏହା କେଡ଼େ ହତଶ୍ରୀ ଦିଶୁଛି କହିଲେ ।''

''କ'ଣ କରିବି ଆଜ୍ଞା । ଯେଉଁମାନଙ୍କୁ ଏହାର ଦାୟିତ୍ୱରେ ରଖିଲି, ସେମାନେ ଯଦି ଗୁରୁତ୍ୱର ସହିତ ନ ବୁଝିବେ, ତେବେ ଏହା ଶ୍ରୀହୀନ ଦିଶିବ ନାହିଁ ତ ଆଉ କ'ଣ ଦିଶିବ ?''

''ମୁଁ ବଡ଼ ଦୁଃଖିତ ଡକ୍ଟର ସେନ୍‌ଗୁପ୍ତ । ଏଥିପାଇଁ କିଛି ଗୋଟାଏ ବ୍ୟବସ୍ଥା କରିବାକୁ ପଡ଼ିବ । ମିଟିଂ ପରେ ମୁଁ ଆପଣମାନଙ୍କ ସହିତ ଏ ସମ୍ପର୍କରେ ଆଲୋଚନା କରିବା ପାଇଁ ଇଚ୍ଛୁକ । ଏହାର ପୂର୍ବ ସୌନ୍ଦର୍ଯ୍ୟ ଫେରାଇ ଆଣିବା ପାଇଁ କ'ଣ କରାଯାଇ ପାରିବ, ଆଜି ମିଟିଂ ପରେ ଆଲୋଚନା କରିବା ।''

× × × ×

ଠିକ୍ ସମୟରେ ସମାରୋହର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଆରମ୍ଭ ହେଲା । ପ୍ରିନ୍‌ସିପାଲ ଡକ୍ଟର ସେନ୍‌ଗୁପ୍ତ ସ୍ୱାଗତ ଭାଷଣ ଛଳରେ କଲେଜର ଅଭାବ ଅସୁବିଧା କଥା ଅତି ପ୍ରାଞ୍ଜଳ ଭାବରେ ଉପସ୍ଥାପନ କଲେ । ରାଜ୍ୟର ସର୍ବପୁରାତନ କଲେଜ ପ୍ରତି ସରକାରଙ୍କ ଉଦାସୀନତାକୁ ସମାଲୋଚନା ନ କରି ରହି ପାରିଲେନି । ଯେଉଁ କଲେଜ ରାଜ୍ୟର ଶହ ଶହ ଯୋଗ୍ୟ ସନ୍ତାନଙ୍କୁ ଜନ୍ମ ଦେଇ ସେମାନଙ୍କୁ ଦେଶର ଖୁବ୍ ଉଚ୍ଚ ଉଚ୍ଚ ଆସନରେ ବସାଇବାର ସୁଯୋଗ ଦେଇଛି, ସେହି କଲେଜର ଦୈନ୍ୟ, ଅଭାବ, ଅନାଟନ କଥା ଦେଖିଲେ କାହାର ହୃଦୟ ବ୍ୟଥିତ ନ ହେବ ? ଶିକ୍ଷାଦାନ ତଥା ଗବେଷଣାରେ ରେଭେନ୍‌ସା କଲେଜର ଯେଉଁ ସମ୍ମାନ ଭାରତବିଖ୍ୟାତ ଥିଲା, ଆଜି ତାହା କ୍ଷୟିତ ହେବାକୁ ଆରମ୍ଭ କରିଛି, ସରକାରଙ୍କ ଏହି କଲେଜ ପ୍ରତି ଉଦାସୀନତା ହେତୁ । ଆଜି ଆମର

ମୁଖ୍ୟଅତିଥି ଭାବରେ ଯୋଗ ଦେଇଛନ୍ତି ବର୍ତ୍ତମାନର ଶିକ୍ଷାମନ୍ତ୍ରୀ ଦେବସ୍ଥାନବାବୁ, ଯିଏକି କିଛିଦିନ ତଳେ ଏହି କଲେଜର ଅଧ୍ୟାପକ ଥିଲେ ଓ ସାରା ଭାରତରେ ଏହାର ସୁନାମ ଯେମିତି ବଜାୟ ରହିପାରିବ, ସେଥିପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କରିଥିଲେ । ଆଜି ସେହି ଦେବସ୍ଥାନବାବୁ ଆମର ଏକମାତ୍ର ସାହାଭରସା, ସେ ଯଦି ଚାହିଁବେ, ତେବେ କଲେଜର ପୂର୍ବ ଗୌରବ ଫେରାଇ ଆଣିପାରିବେ । ସେ ଚେଷ୍ଟାକଲେ ସାରା ଭାରତରେ ଏକ ଉତ୍କୃଷ୍ଟ କଲେଜ ଭାବରେ ଏହା ତାହାର ପୂର୍ବ ଗୌରବକୁ ଫେରି ପାଇବ ।”

ସେ କହି ଚାଲିଲେ, “ବିଜ୍ଞାନ ସଂସଦର ଆଜି ହେଉଛି ପଚ୍ଚିଶବର୍ଷର ପୂର୍ତ୍ତି ଉତ୍ସବ । ସେହି ଉପଲକ୍ଷେ ଆଜି ଅନୁଷ୍ଠିତ ହେଉଛି ଏହାର ସୁବର୍ଣ୍ଣ ଜୟନ୍ତୀ । ଏହି ଜୟନ୍ତୀ ଅବସରରେ ଆମେ ଆଜି ସମ୍ବର୍ଦ୍ଧନା ଜ୍ଞାପନ କରିବାକୁ ଯାଉଛୁ, ଏହି କଲେଜର ଜଣେ ପ୍ରାକ୍ତନ ଛାତ୍ରୀ ଡକ୍ଟର ଶୁଭ୍ରା ସାମନ୍ତରାୟଙ୍କୁ । ଶୁଭ୍ରା ଆମ ସମସ୍ତଙ୍କର ଛାତ୍ରୀ ହେଲେହେଁ ଗବେଷଣାର ଟ୍ରେନିଂ ପାଇଥିଲା ଆମର ବର୍ତ୍ତମାନର ଶିକ୍ଷାମନ୍ତ୍ରୀ ଦେବସ୍ଥାନବାବୁଙ୍କଠାରୁ । ସେହି ଟ୍ରେନିଂ ବଳରେ ସେ ଆଜି ଯୁକ୍ତରାଷ୍ଟ୍ର ଆମେରିକାରେ ଏକ ଖ୍ୟାତନାମା ବୈଜ୍ଞାନିକ ଭାବରେ ପ୍ରତିଷ୍ଠା ଅର୍ଜନ କରିପାରିଛି । ତାଙ୍କର ଉଚ୍ଚଦରର ଗବେଷଣା ପାଇଁ ସେ ଆଜି ସାରା ବିଶ୍ୱରେ ବନ୍ଦନୀୟା । ରେଭେନ୍‌ସା କଲେଜର ଛାତ୍ରୀ ହୋଇଥିବାରୁ ତାଙ୍କ ଖ୍ୟାତିସହି ରେଭେନ୍‌ସା କଲେଜ ଯୋଡ଼ି ହୋଇ ରେଭେନ୍‌ସା କଲେଜର ସୁନାମ ସାରାବିଶ୍ୱରେ ଯେଉଁଭଳି ଭାବରେ ପ୍ରତିଧ୍ୱନିତ ହେଉଛି, ଏହାଦେଖି ଆଜି ରେଭେନ୍‌ସା କଲେଜର ପ୍ରତି ଧୂଳିକଣା ଆନନ୍ଦ ସାଗରରେ ଉଚ୍ଛ୍ୱସିତ ହେବା ସ୍ୱାଭାବିକ । ରେଭେନ୍‌ସା କଲେଜର ସମ୍ମାନକୁ ଯିଏ ଏତେ ଊର୍ଦ୍ଧ୍ୱକୁ ନେଇ ଯାଇଛନ୍ତି, ତାଙ୍କୁ ଆମେ ଯେ କିଭଳି ଭାବରେ ସମ୍ବର୍ଦ୍ଧନା କରିବୁ ଓ ତାହା ତାଙ୍କଦ୍ୱାରା କିଭଳି ଭାବରେ ଗ୍ରହଣୀୟ ହେବ, ଆମେ ଭାବିପାରୁନୁ । ସେ ନିଜ ଗବେଷଣା ପାଇଁ ପୃଥିବୀର ବହୁ ବଡ଼ ବଡ଼ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ହେଉଥିବା ବେଳେ ଆମ ସମ୍ବର୍ଦ୍ଧନାକୁ ସେ କିଭଳି ଭାବରେ ଗ୍ରହଣ କରିବେ ତାହା ଆମ ଚିନ୍ତାର ବିଷୟ । ତେବେ ଆମ ସମସ୍ତଙ୍କ ଆଶୀର୍ବାଦ ଯେ, ତାଙ୍କୁ ଆହୁରି ଉଚ୍ଚତର ଆସନକୁ ନେଇଯିବ ଏହା ହିଁ ଆମ ସମସ୍ତଙ୍କର ଆଶା । ଭଗବାନ ତାଙ୍କୁ ଦୀର୍ଘାୟୁ କରିଥାନ୍ତୁ, ଏହା ଆମ ସମସ୍ତଙ୍କ ଭଗବାନଙ୍କଠାରେ ପ୍ରାର୍ଥନା ।” ଘନ ଘନ କରତାଳିରେ ସଭାକକ୍ଷ କମ୍ପି ଉଠିଲା ।

ପ୍ରିନ୍‌ସିପାଲଙ୍କ ସ୍ୱାଗତ ଭାଷଣ ପରେ ସେକ୍ରେଟେରୀଙ୍କ ବାର୍ଷିକ ରିପୋର୍ଟ ପଢ଼ାଗଲା । ବିଜ୍ଞାନ ସଂସଦର ସେକ୍ରେଟେରୀ ତତ୍ପରେ ଶୁଭ୍ରାଦେବୀଙ୍କୁ ଦିଆଯାଉଥିବା ମାନପତ୍ର ପାଠ କଲେ । ସେ ଏହି ମାନପତ୍ରଟିକୁ ଏମିତି ଏକ ଆବେଗମୟ କଣ୍ଠରେ ପଢିଲେ ଯେ, ସାରା ହଲର ଶ୍ରୋତାମଣ୍ଡଳୀ ନିଶ୍ଚଳ ନିସ୍ତବ୍ଧ ହୋଇଗଲେ । ମାନପତ୍ରର ଭାଷା ଏତେ ହୃଦୟସ୍ପର୍ଶୀ ହୋଇଥିଲା ଯେ, ପଢ଼ିଲାବେଳକୁ ମନେ ହେଉଥାଏ ଯେମିତି ସାରା ଶ୍ରୋତା-ମଣ୍ଡଳୀ ଶୁଭ୍ରାଦେବୀଙ୍କ କୃତିତ୍ୱରେ ଉତ୍ଫୁଲ୍ଲ ହୋଇ ଉଠୁଥାନ୍ତି । ନିଜର ପ୍ରିୟ ଛାତ୍ରୀ ତାଙ୍କରି ସାମନାରେ ସମ୍ବର୍ଦ୍ଧିତ ହେଉଥିବାରୁ ଦେବବାବୁଙ୍କ ଆନନ୍ଦର ସୀମା ଥାଏ ।

ସଭାପତିଙ୍କ ଅନୁରୋଧକ୍ରମେ ଶିକ୍ଷାମନ୍ତ୍ରୀ ଯେତେବେଳେ ମାନପତ୍ରଟିକୁ ଶୁଭ୍ରା ହାତକୁ ବଢ଼ାଇଦେଇ ଶୁଭ୍ରା ବେକରେ ଶ୍ୱେତ ପାଟ ଉତ୍ତରୀୟ ପିନ୍ଧାଇଦେଲେ, ସାରା ହଲଟି ଘନଘନ କରତାଳିରେ କମ୍ପି ଉଠିଲା । ସମସ୍ତଙ୍କ ମୁହଁରେ ଶୁଭ୍ରାର ଉଚ୍ଛ୍ୱସିତ ପ୍ରଶଂସା । ସେ ଯେଉଁଭଳି ଭାବରେ ରେଭେନ୍‌ସା କଲେଜର ନାମ ସାରା ବିଶ୍ୱରେ ପ୍ରତିଧ୍ୱନିତ କରାଇଛନ୍ତି, ଅନ୍ୟ କୌଣସି ଗବେଷକ ସେପରି କରିପାରି ନାହାନ୍ତି ।

ଶୁଭ୍ରାଦେବୀଙ୍କ ସମ୍ବର୍ଦ୍ଧନା ପରେ ଶିକ୍ଷାମନ୍ତ୍ରୀଙ୍କୁ ତାଙ୍କ ବକ୍ତବ୍ୟ ପ୍ରଦାନ ପାଇଁ ଅନୁରୋଧ କରାଗଲା । ସେ ଠିଆହୋଇ ଆରମ୍ଭ କଲେ, "ଆଜି ମୋର ବଡ଼ ସୌଭାଗ୍ୟ ଯେ, ମୋର ଆଗରେ ମୋର ଜଣେ ଛାତ୍ରୀ ପୃଥିବୀର ଜଣେ ଶ୍ରେଷ୍ଠ ବୈଜ୍ଞାନିକ ଭାବରେ ସମ୍ବର୍ଦ୍ଧିତ ହେଉଛି, ଏହାଠାରୁ ଅଧିକ ଆନନ୍ଦର କଥା ମୋ ପାଇଁ ଆଉ କ'ଣ ହୋଇପାରେ ? ଶୁଭ୍ରା ଆଜି ପଲିମର୍ ବିଜ୍ଞାନରେ ଗବେଷଣା କରି ଯେଉଁ ସାଫଲ୍ୟ ଅର୍ଜନ କରିଛି, ସେହି ସାଫଲ୍ୟ ହୁଏତ ଦିନେ ଆମ ଜୀବନଧାରଣ ପ୍ରଣାଳୀକୁ ପୁରାପୁରି ଓଲଟପାଲଟ କରିଦେବ । କିଏ ଜାଣେ ଏହାଫଳରେ ପୃଥିବୀରେ ଏକ ନୂତନ ଯୁଗର ଆରମ୍ଭ ନ ହେବ ବୋଲି ? ଏହା ଅସମ୍ଭବ ନୁହେଁ, ଶୁଭ୍ରା ନିଜର ବିରାଟ ଆବିଷ୍କାର ପାଇଁ ନୋବେଲ ପୁରସ୍କାର ବିଜେତା ମଧ୍ୟ ହୋଇପାରେ । ସେ ଆଜି ଯଦି ନୋବେଲ ପୁରସ୍କାର ପାଏ, ତେବେ ସେ ଜଣେ ଭାରତୀୟ ବୈଜ୍ଞାନିକ ଭାବରେ ନୋବେଲ ପୁରସ୍କାର ଗ୍ରହଣ କରିବ । ସମ୍ମାନାସ୍ପଦ ହରଗୋବିନ୍ଦ ଖୁରାନା ଓ ଚନ୍ଦ୍ରଶେଖରଙ୍କ ଭଳି ଭାରତମାତାର କୋଳରେ ଜନ୍ମ ନେଇ ମାର୍କିନ୍ ବୈଜ୍ଞାନିକ ଭାବରେ ନୋବେଲ ପୁରସ୍କାର ଗ୍ରହଣ କରି ଭାରତମାତାର ଆଖିରେ ଦୁଃଖର ଅଶ୍ରୁ ଭରି ଦେବନି । ଭଗବାନ କରନ୍ତୁ, ଶୁଭ୍ରା ନୋବେଲ ପୁରସ୍କାରରେ ଭୂଷିତ ହୋଇ ଭାରତମାତାର ସେଇ ଲୋତକଭରା ଚକ୍ଷୁର ଉଷ୍ଣ ଲୋତକ ପୋଛିଦେଉ ଏହା ହିଁ ଆମ ସମସ୍ତଙ୍କର ଭଗବାନଙ୍କଠାରେ ପ୍ରାର୍ଥନା ।

କିଛି ସମୟ ରହି "ରେଭେନ୍‌ସା କଲେଜ ହେଉଛି ମୋର ପୂର୍ବତନ ମନ୍ଦିର । ଏହି ମନ୍ଦିରରେ ବର୍ଷ ବର୍ଷ ଧରି ପୂଜା ଅର୍ଚ୍ଚନା କରି ମୁଁ ମୋ ଅଧ୍ୟାପକ ଜୀବନ ଆରମ୍ଭ କରିଥିଲି । ଆଜି ମୁଁ ସେଇ ମନ୍ଦିରରେ ଠିଆ ହୋଇ ମୋର ପୂର୍ବ ସ୍ମୃତିଗୁଡ଼ାକୁ ମନେ ପକାଇବାର ସୌଭାଗ୍ୟ ଅର୍ଜନ କରିଥିବାରୁ ଆପଣମାନଙ୍କୁ ଧନ୍ୟବାଦ ନଦେଇ ରହି-ପାରୁନି । ରେଭେନ୍‌ସା କଲେଜର ଅଭାବ, ଅସୁବିଧା କଥା ଶୁଣି ମୁଁ ବ୍ୟଥିତ । ଏ ଭିତରେ ଏହା ଏତେ ବଢ଼ିଯାଇଛି ଶୁଣି ମୁଁ ମର୍ମାହତ । ଏଥିପାଇଁ ରେଭେନ୍‌ସା କଲେଜର ଅଧ୍ୟାପନାର ମାନ ହ୍ରାସ ପାଇବା ସଙ୍ଗେ ଛାତ୍ର ଅଶାନ୍ତି ବଢ଼ି ଯାଇଛି ଶୁଣି ମୁଁ ଆନ୍ତରିକ ଦୁଃଖିତ ହେଉଛି । ବିଗତ ସରକାର ରେଭେନ୍‌ସା କଲେଜକୁ ଓଡ଼ିଶାର ସାଧାରଣ କଲେଜ ସହିତ ସମାନ କରି, ସେହି ଅନୁସାରେ ଏହାର ସୁବିଧା ସୁଯୋଗ କମାଇଦେଇ ଉଚିତ କାର୍ଯ୍ୟ କରି ନାହାନ୍ତି । ବିଗତ ବହୁବର୍ଷ ଧରି ରେଭେନ୍‌ସା କଲେଜ ଭାରତର ବଡ଼ ବଡ଼ କଲେଜ ସହିତ ତୁଳନୀୟ ଥିଲା । ସେହି ଲକ୍ଷ୍ୟରେ ଏହାର ଉତ୍କର୍ଷ ବଢ଼ାଇ ଏହାକୁ ଉନ୍ନତି

ପଥରେ ଆଗେଇ ନିଆ ଯାଉଥିଲା । ଏହାକୁ ଓଡ଼ିଶାର ସାଧାରଣ କଲେଜ ସହିତ ସମାନ କରିଦେଇ ଏହାର ଅନୁଦାନ ପ୍ରତି ଅବହେଳା ପ୍ରଦର୍ଶନ ଉଚିତ ହୋଇନ । ରେଭେନ୍‌ସା କଲେଜ ହେଉଛି ରେଭେନ୍‌ସା କଲେଜ, ଏହା ଓଡ଼ିଶାର ଅନ୍ୟ କଲେଜ ସହିତ ସମାନ ହୋଇ ନ ପାରେ । ଯେଉଁମାନେ ତାହା କରିଛନ୍ତି, ସେମାନେ ବିରାଟ ଭୁଲ କରିଛନ୍ତି ବୋଲି ମୁଁ କହିବ ।

ରେଭେନ୍‌ସା କଲେଜ ଆମ ରାଜ୍ୟର କେବଳ ସର୍ବ ପୁରାତନ ଓ ସର୍ବ ବୃହତ୍ତ କଲେଜ ନୁହେଁ, ଏହା ରେଭେନ୍‌ସା ସଂସ୍କୃତିର ଜନକ । କେମ୍ବ୍ରିଜର ବିଭିନ୍ନ କଲେଜର ଯେମିତି ସେମାନଙ୍କ ନିଜସ୍ୱ ସଂସ୍କୃତି ଅଛି, ରେଭେନ୍‌ସାର ସେହିଭଳି ନିଜର ଏକ ସଂସ୍କୃତି ଅଛି । ତାହାକୁ ବଜାୟ ରଖିବା ଆମ ସମସ୍ତଙ୍କର କର୍ତ୍ତବ୍ୟ । କଥାରେ ଅଛି, "ଏନିବଡି, ହୁ ଇଜ୍ ସମ୍‌ବଡି ଇନ୍ ଓଡ଼ିଶା, ମଷ୍ଟ୍ ବି ଏ ରେଭେନ୍‌ସାଭିଆନ୍ ।" ଏହି ଉକ୍ତିଟି ଅକ୍ଷରେ ଅକ୍ଷରେ ସତ । ଆଜି ଓଡ଼ିଶାରେ ଯେଉଁମାନେ ସୁନାମ ଅର୍ଜନ କରି ଉଚ୍ଚ ଆସନର ଅଧିକାରୀ ହୋଇଛନ୍ତି, ସେମାନେ ସମସ୍ତେ ଦିନେ ରେଭେନ୍‌ସା କଲେଜର ଛାତ୍ର ଥିଲେ । ରେଭେନ୍‌ସା କଲେଜର ଏହି ଅପୂର୍ବ ଗୌରବକୁ ଆମ ସମସ୍ତଙ୍କର ରକ୍ଷା କରିବା କର୍ତ୍ତବ୍ୟ । ବିଗତ ସରକାର ରେଭେନ୍‌ସା ପ୍ରତି ଯେଉଁ ଅନ୍ୟାୟ କରିଛନ୍ତି, ମୁଁ ସେଥିପାଇଁ ପ୍ରାୟଶ୍ଚିତ୍ତ କରି ଏହାର ପୂର୍ବ ଗୌରବ ଫେରାଇ ଆଣିବାକୁ ଚାହେଁ । ଏହା ଆମର ଭୁଲିଯିବା ଉଚିତ ନୁହେଁ, ରେଭେନ୍‌ସା କଲେଜର ସମ୍ମାନ ହିଁ ଓଡ଼ିଶାର ସମ୍ମାନ । ରେଭେନ୍‌ସା କଲେଜର ସରକାରୀ ଅନୁଦାନକୁ ବଢ଼ାଇବା ପାଇଁ ମୁଁ ଏକ କମିଟି ନିଯୁକ୍ତ କରୁଛି । ସେମାନେ କଲେଜର ସମସ୍ତ ବିଭାଗ ବୁଲି କେଉଁ ବିଭାଗର କି କି ଅଭାବ ଅସୁବିଧା ରହିଛି ଦେଖି ଅନୁଦାନର ପରିମାଣ ନିର୍ଦ୍ଧାରଣ କରିବେ । ମୁଁ ସେହି ଅନୁସାରେ ଅନୁଦାନ ବଢ଼ାଇବାକୁ ଚେଷ୍ଟା କରିବ । ଆପଣମାନେ ସମସ୍ତେ ମନେ ରଖିବେ, ରେଭେନ୍‌ସା କଲେଜ ହେଉଛି ରେଭେନ୍‌ସା କଲେଜ, ଅନ୍ୟ କଲେଜ ସହ ଏହା ସମାନ ହୋଇ ନ ପାରେ । ସାରା ଭାରତରେ ଏହାର ଏକ ବିଶିଷ୍ଟ ସ୍ଥାନ ଅଛି, ଯାହା ଅନ୍ୟ ବହୁ କଲେଜର ନାହିଁ । ଆଜି ଆପଣମାନେ ରେଭେନ୍‌ସା କଲେଜର ବିଜ୍ଞାନ ସଂସଦର ଷଷ୍ଠି ଜୟନ୍ତୀ ପାଳନ କଲେ, ଆଉ କିଛିଦିନ ପରେ ଏହାର ହୀରକ ଜୟନ୍ତୀ, ପ୍ଲାଟିନମ୍ ଜୟନ୍ତୀ ପାଳନ କରନ୍ତୁ, ଏତିକି ଆଶାରଖି ମୁଁ ବିଦାୟ ନେଉଛି । ଧନ୍ୟବାଦ ।

ଘନ ଘନ କରତାଳିରେ ସଭାକକ୍ଷଟି କମ୍ପି ଉଠିଲା ।

## ଛପନ

"ହଇହେ, ଶୁଣିଲଣି, ତୁମେତ ସବୁ ସ୍କୁଲ ଇନ୍‌ସପେକ୍‌ସନ କରୁଛ ପ୍ରାଇମେରୀ ସ୍କୁଲଠାରୁ କଲେଜ ପର୍ଯ୍ୟନ୍ତ । ମନ୍ତ୍ରୀଙ୍କ ଘରେ ଏବେ ଯେଉଁ ସ୍କୁଲଟି ହୋଇଛି, ତାକୁ ବାଦ୍ ପକାଇଦେଇଛ କାହିଁକି ? ସେ ସ୍କୁଲଟିକୁ ଇନ୍‌ସପେକ୍‌ସନ କରନାହଁ ତ ? କ'ଣ ମନ୍ତ୍ରୀଙ୍କ ଘର ବୋଲି ଡରଯାଉଛ ନା କଅଣ ?"

"ତୁମେ କ'ଣ ସେ କହୁଛ, ମୁଁ ବୁଝିପାରୁନ ସୀମନ୍ତିନୀ ? ମନ୍ତ୍ରୀଙ୍କ ଘରେ କି ସ୍କୁଲ ?"

"ହଁ ମ, ମନ୍ତ୍ରୀଙ୍କ ଘରେ ପରା ଏବେ ଗୋଟିଏ ପ୍ରାଇମେରୀ ସ୍କୁଲ ହୋଇଛି । ପିଲାଙ୍କୁ ପଢ଼ାଇବା ପାଇଁ ଜଣେ ଟ୍ରେନିଂ ପାସ୍ ଶିକ୍ଷୟିତ୍ରୀ ମଧ୍ୟ ସେଠି ଅଛନ୍ତି ।"

"ଆଁ, ମନ୍ତ୍ରୀଙ୍କ ଘରେ ସ୍କୁଲ ? କାହିଁ ମୁଁ ତ କିଛି ଜାଣିନି ?" ଚେତେବେଠାରୁ ସେ ସ୍କୁଲ ବସିଲା ଶୁଣେ ?"

"ତୁମେ ଏତେବଡ଼ ରାଜ୍ୟର ଡି.ପି.ଆଇ. ହୋଇ ଆଉ କ'ଣ ଖବର ରଖିଛ ? ମନ୍ତ୍ରୀଙ୍କ ଘରେ ଏବେ ପ୍ରାଇମେରୀ ସ୍କୁଲଟିଏ ହୋଇଛି ତୁମେ ଜାଣିନ ?"

"ପ୍ରାଇମେରୀ ସ୍କୁଲ ?"

ହସିଲେ ସିମନ୍ତିନୀ ଦେବୀ, "ହଁ, ପ୍ରାଇମେରୀ ସ୍କୁଲ । ସେ ସ୍କୁଲରେ ଶିକ୍ଷୟିତ୍ରୀ କିଏ ଜାଣ ?"

"କିଏ ?"

"ଆଉ କିଏ ହୁଅନ୍ତା ? ତୁମ ହୋବୁ, ଶାନ୍ତି ପରା ।"

"ଆଁ, ଆମ ବୋହୂ ଶାନ୍ତି ? ତୁମେ କ'ଣ ସେ କହୁଛ ମୁଁ ବୁଝିପାରୁନ ।"

"ହଁ, ମୁଁ ସେଦିନ ପରା ପୁଅଘରକୁ ବୁଲି ଯାଇଥିଲି । ତୁମେ ତ ଟୁର୍‌ରେ ଯାଇଥିଲ । ମୁଁ ଭାବିଲି ଘରେ ତ କେହି ନାହାନ୍ତି, ଯାଏ ଟିକିଏ ପୁଅ ଘରଆଡ଼େ ବୁଲି ଆସେ । ଗଲାବେଳକୁ ଗୋଟିଏ ଘରେ ତୁମ ବୋହୂ, ତୁମ ନାତି ନାତୁଣୀଙ୍କୁ ପାଠ ପଢ଼ାଉଛି ଠିଆ ହୋଇ । ଶିକ୍ଷକ ଶିକ୍ଷୟିତ୍ରୀମାନେ ସ୍କୁଲରେ ଯେମିତି କ୍ଲାସ୍ ନିଅନ୍ତି ଠିକ୍ ସେଇମିତି । ମୁଁ ଗଲାବେଳକୁ ସେ ବ୍ଲାକ୍‌ବୋର୍ଡ଼ ପାଖରେ ଠିଆ ହୋଇ ପିଲାମାନଙ୍କୁ ଅଙ୍କ ପଢ଼ାଉଥିଲା । ଠିକ୍ ସ୍କୁଲ ଶିକ୍ଷୟିତ୍ରୀଙ୍କ ଭଳି ପୋଷାକ । ଦେଖିଲେ ଯିଏ କହିବ କେଉଁ ପ୍ରାଇମେରୀ ସ୍କୁଲର ମାଷ୍ଟ୍ରାଣୀଟିଏ । ପିନ୍ଧିଛି ଧଳା ସିନ୍ଦୁପାଡ଼ିଆ ଧଡ଼ିର ମିଲ୍ ଲୁଗା । ପ୍ରାଇମେରୀ ସ୍କୁଲର ମାଷ୍ଟ୍ରାଣୀମାନେ ଯେଉଁ ଲୁଗା ପିନ୍ଧନ୍ତି ଠିକ୍ ସେଇ ଲୁଗା ।"

"ଯାହା କୁହ ସୀମନ୍ତିନୀ, ଆମ ବୋହୂଟା, ବୋହୂମାନଙ୍କ ଭିତରେ ଖଣ୍ଡିଏ । ଏଡ଼େ ଆଦର୍ଶ ବୋହୂ ମୁଁ ସାରା ମହୀମଣ୍ଡଳରେ କେଉଁଠି ଦେଖିନି । ପୁଅ ଯେମିତି ଧୁନାମୁଣ୍ଡା, ବୋହୂ ଜାଣ ସାରା ମୁଣ୍ଡା । ଭଗବାନ ଦୁହିଁଙ୍କୁ ଠିକ୍ ଭାବରେ ଜୁଟାଇଛନ୍ତି ।"

"ତୁମେତ ଦେଖିନ, ବୋହୂର ପାଠପଢ଼ା ସବୁ ଅତି ଚମତ୍କାର । ମୁଁ ଢେର୍ ମାଷ୍ଟ୍ରାଣୀଙ୍କୁ ଦେଖିଛି, ସେମାନଙ୍କ ପାଠପଢ଼ା ବୋହୂ ପଢ଼ାର ପାସଙ୍ଗରେ ପଡ଼ିବେନି । ପାଠପଢ଼ା ଛଡ଼ା କାମଦାମରେ କେହି ତାକୁ ଟପାଇ ପାରିବେନି । ହାତ ବୁଲାଇ ଆଣିଲେ ଛଅ ତରକାରି ନଅ ଭଜା ।"

"ହଁ, ମୁଁ ଶୁଣୁଛି ହୋହୂ ଖୁବ ଯୋଗ୍ୟ, ଆଉ ଖୁବ ପରିଶ୍ରମୀ । ସବୁବେଳେ ଘର କାମରେ ଲାଗିଥାଏ । ସେ ଜଣେ ଏତେବଡ଼ ମନ୍ତ୍ରୀଙ୍କ ସ୍ତ୍ରୀ, ସେ କେବେ ନିଜକୁ ସେମିତି ଭାବେନି ।"

"ପରିଶ୍ରମୀ ଭଲି ପରିଶ୍ରମୀ । ସକାଳ ନଅଟାରେ ପୁଅ ଅଫିସ୍‌କୁ ଯିବ । ଶୁକର ପୁଝାରୀ ରାନ୍ଧିଲେ ବି ବୋହୂ ଯଦି ହାଣ୍ଡିଶାଳ ଘରେ ପଶି କିଛି ଗୋଟାଏ ପ୍ରକାର ନ କଲା, ପୁଅ ମନ ପାଇବନି । ପୁଅକୁ କ'ଣ ଶୁକର ପୁଝାରୀ ଦେଲେ ଖାଇବ ? ସେହି ବୋହୂ ପରଶିଲେ ଯାଇ ଖାଇବ ।"

"ତା ତ ସତ, ପୁଅ ମନ ବୋହୂ ଯେତେ ଜାଣିପାରିବ, ଅନ୍ୟମାନେ କ'ଣ ଜାଣିପାରିବେ ?" ନାରଣବାବୁ କହିଲେ ।

"ମଂତ୍ରୀଙ୍କ ଘରେ ରାନ୍ଧିବା ପାଇଁ ପୁଝାରୀ ଅଛନ୍ତି, ପୁଅ କ'ଣ ପୁଝାରୀ ରନ୍ଧାରେ କେବେ ସନ୍ତୁଷ୍ଟ ? ବୋହୂ ହାଣ୍ଡିଶାଳକୁ ନ ଗଲେ ନ ହୁଏ । ପିଲାଗୁଡ଼ାକ ବି ବାପ ପରି । ମା ନ ଦେଲେ ଖାଇବେନି ।"

ପୁଅ ଅଫିସ୍‌କୁ ବାହାରିଗଲେ ବୋହୂର ମାଷ୍ଟ୍ରାଣୀ କାମ ଆରମ୍ଭ । ପିଲାଙ୍କୁ ସ୍କୁଲରେ ପଢ଼ାଇଲା ଭଳି ପଢ଼ାଇବ ନଅଟାରୁ ବାରଟା ପର୍ଯ୍ୟନ୍ତ । ଗୋଟାଏବେଳକୁ ପୁଅ ଅଫିସ୍‌ରୁ ଆସିବ ମଧ୍ୟାହ୍ନଭୋଜନ ପାଇଁ । ସେଥିପାଇଁ ରନ୍ଧାରନ୍ଧି ତଦାରଖ କରିବ । ନିଜେ ବି ରାନ୍ଧି ବସିବ । ପୁଅ ଖାଇସାରି ଦୁଇଟାବେଳକୁ ଗଲେ, ସେ ପୁଣି ପିଲାଙ୍କ ପଢ଼ାରେ ଲାଗିଯିବ । ପଢ଼ା ସରୁ ସରୁ ସନ୍ଧ୍ୟା ପାଞ୍ଚଟା ।

ଫେର ପୁଅ ପାଇଁ ଜଳଖିଆ ତିଆରି । ବୋହୂଟା ଛଅମାସ ହେଲା ଭୁବନେଶ୍ୱର ଆସିଲାଣି, ହେଲେ ଭୁବନେଶ୍ୱର ସହର କ'ଣ ଦେଖିଲାଣି ? ଆମ ଘରଛଡ଼ା ସେ ଆଉ କାହା ଘର ଦେଖିନାହିଁ । ଯାହା ମୁଁ ଥରେ ଦୁଇଥର ଆମ ଘରକୁ ଘେନି ଆସିଥିଲି ସେତିକି । ଅନେ ବି ସୁଦ୍ଧା ବଜାର ବୁଲିଯାଇନି କି ସିନେମା ଥିଏଟର ଯାଇନି ।

"ମୁଁ ଖାଲି ମିଛରେ କହୁଛି ସୀମନ୍ତିନୀ, ସେ ବୋହୂ ନୁହେଁ ସାକ୍ଷାତ ମୁଣ୍ଡା । ଏତେ ଅଳ୍ପ ବୟସର ଝିଅଟେ, ଭଗବାନ ତାକୁ କି ଉଚ୍ଚ ଆସନ ଦେଇ ନାହାନ୍ତି । କିନ୍ତୁ ସେଥିପାଇଁ କେବେ ଗର୍ବ କି ଅହଂକାର ମୁଁ ତା'ଠାରେ ଶୁଣିନି ।"

"ସେ ଜଣେ ମନ୍ତ୍ରୀଙ୍କ ସ୍ତ୍ରୀ ବୋଲି କେବେ ନିଜେ ଭାବିବା ମୁଁ ଦେଖିନି । ମନ୍ତ୍ରୀ-ମାନଙ୍କ ସ୍ତ୍ରୀଙ୍କୁ ମୁଁ ଦେଖିନି ଏଇ ଭୁବନେଶ୍ୱରରେ ? କି ଗର୍ବ କି ଅହଂକାରରେ ସେମାନେ ଫାଟି ପଡ଼ୁଛନ୍ତି ? କି ଷ୍ଟାଇଲରେ ପୋଷାକପତ୍ର, ଦାସୀପରିବାରି ନେଇ କି ଆଡ଼ାରେ ରହୁ

ନାହାନ୍ତି ? ତାଙ୍କ ଘରର ପୁଅଝିଅ ବି ସରକାରୀ ଗାଡ଼ି ନ ହେଲେ ଚଳନ୍ତି ନାହିଁ । ସେମାନଙ୍କ ଘରେ ଦେଖିବ, ଗଜଗଜୁଡ଼ା କାରବାର । କିନ୍ତୁ ଆମ ବୋହୂକୁ ଦେଖିଲେ କେହି ଭୁଲରେ ଭାବିବେନି, ତା ସ୍ୱାମୀ ଜଣେ ଏତେବଡ଼ ମନ୍ତ୍ରୀ ବୋଲି ।"

"ସେମିତି ବୋହୂ ଭାଗ୍ୟରେ ଥିଲେ ମିଳେ ଶ୍ରୀମନ୍ତିନୀ, ଭାଗ୍ୟରେ ଥିଲେ ମିଳେ ।"

ମୁଁ ସେଦିନ ଟୁର୍‌ରେ କେଉଁଠିକି ଯାଇଥିଲି ଜାଣ ? ଗୋବିନ୍ଦପୁର । ପୁଅ ବୋହୂଙ୍କ କାର୍ତ୍ତିକ୍ଷେତ୍ରକୁ । ସେ ଅଞ୍ଚଳରେ ଅସମ୍ଭବ ପ୍ରକାର ଉନ୍ନତି କଥା ଶୁଣି ଦିନେ ମୁଖ୍ୟମନ୍ତ୍ରୀ ମୋତେ ଆଦେଶଦେଲେ ସେ ଅଞ୍ଚଳ ଦେଖିଯିବାକୁ ଓ ସେଠାରୁ ଫେରି ସେଠାକାର ଉନ୍ନତି ସମ୍ବନ୍ଧରେ ସରକାରଙ୍କୁ ଏକ ରିପୋର୍ଟ ଦେବାକୁ । ହଁ ଯିବି, ହଁ ଯିବି ବୋଲି କହି ଗଡ଼ାଇ ଗଡ଼ାଇ ଆସୁଥିଲି ।

ସେଦିନ ନିଜେ ମୁଖ୍ୟମନ୍ତ୍ରୀ ଶିଳ୍ପମନ୍ତ୍ରୀଙ୍କୁ ଧରି ବାହାରିପଡ଼ିଲେ ସେ ଅଞ୍ଚଳକୁ ବୁଲି ଯିବାପାଇଁ । ମୁଁ ଆଉ ନ ଯାଇ ରହିପାରୁଛି କେମିତି ? ମୁଁ ସେଦିନ ସେମାନଙ୍କ ଗହଣରେ ଯାଇଥିଲି । ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶରେ ବିଭିନ୍ନ ବିଭାଗର ନିର୍ଦ୍ଦେଶକମାନେ ବି ଯାଇଥିଲେ ସେସବୁ ଅଞ୍ଚଳରେ କ'ଣ କ'ଣ ଉନ୍ନତି ହୋଇଛି ଦେଖିବାପାଇଁ । ମୁଁ ସେ ଅଞ୍ଚଳର ପ୍ରାଇମେରୀ ସ୍କୁଲଠାରୁ ଆରମ୍ଭ କରି ହାଇସ୍କୁଲ ପର୍ଯ୍ୟନ୍ତ ସବୁ ଦେଖିଲି । କି ଚମତ୍କାର କରିଛି ପୁଅ ସେ ଅଞ୍ଚଳକୁ , ସାକ୍ଷାତ ଜାଣ ବୈକୁଣ୍ଠପୁର ।

ହାଇସ୍କୁଲରେ କ'ଣ ଶିକ୍ଷା ଦିଆ ନ ଯାଉଛି ସେଠି ? ସିଲେଇ ଶିକ୍ଷାଠାରୁ କୃଷି କାମ, ବଢ଼େଇ କାମ, କମାର କାମ, କୁମ୍ଭାର କାମ, କାଗଜ ତିଆରି, ମହୁଚାଷ, ଡାଏରି ଫାର୍ମ, କୁକୁଡ଼ା ଫାର୍ମ, ମାଛଚାଷ ପର୍ଯ୍ୟନ୍ତ ସବୁ ବିଷୟରେ ପିଲାମାନଙ୍କୁ ଶିକ୍ଷା ଦିଆଯାଉଛି । ଏଇସବୁ କର୍ମଗତ ଶିକ୍ଷା ପାଇଁ ଭଲ ଭଲ ଶିକ୍ଷକ ମଧ୍ୟ ରଖାଯାଇଛି ସେଠି । ସେମାନେ ସବୁ ଗ୍ରାମଦାନ ସଂସ୍ଥାର ପରିଚାଳନାଧୀନରେ ରହିଛନ୍ତି ।

ତୁମ ସମୁଦୀଙ୍କ ସହିତ ସେଦିନ ଦେଖାହେଲା ମୋର । ବଡ଼ ଅମାୟିକ ଲୋକ ସେ । ମଣିଷ ଭିତରେ ମଣିଷଟିଏ । ମୋତେ କେତେ ଆଦର ଅଭ୍ୟର୍ଥନା କଲେ ।

ପୁଅର ନିର୍ଦ୍ଦେଶରେ କାର୍ଯ୍ୟକାରୀ ସମିତିର କର୍ମକର୍ତ୍ତାମାନେ ଆମକୁ ଗାଁ ସାରା ସବୁ ବୁଲାଇ ଦେଖାଇଲେ । ପୁଅ କ'ଣ ସତେ ନ କରିଛି ସେଠି ?

କେଉଁ ଚାଷ ନାହିଁ ସେଠି ? ଜମିରେ ପାଣିମଡ଼ା ଚାଲିଛି, ରବି ଫସଲ, ପନିପରିବା ଚାଷଠାରୁ ଆରମ୍ଭ କରି ସବୁ ପ୍ରକାର ଚାଷ ଚାଲିଛି । ବର୍ଷକୁ ତିନି ପ୍ରକାର ଧାନଚାଷ ହେଉଛି ସେଠି ।

ଏଣେ ମାଛ ଚାଷ, କୁକୁଡ଼ା ଚାଷ, ଛେଳି ଚାଷ, ଡାଏରୀ ଫାର୍ମ । ଗାଁରେ ଯାହା କ୍ଷୀର ଘିଅ ମହୁ ଭାସି ଯାଉଛି । ପୁଅ ସେ ଗାଁକୁ କ'ଣ କରି ନ ଗଢ଼ିଛି ? ସ୍କୁଲ ପିଲାଗୁଡ଼ିକ କି ହୃଷ୍ଟପୁଷ୍ଟ ? ପ୍ରତିଦିନ ସେମାନଙ୍କୁ ମାଗଣାରେ ଦୁଧ ପିଇବାକୁ ଦିଆଯାଉଛି, ତା'ଛଡ଼ା

ମଧ୍ୟାହ୍ନଭୋଜନ । ପ୍ରତି ମାସରେ ପିଲାମାନଙ୍କ ସ୍ୱାସ୍ଥ୍ୟ ଡାକ୍ତର ମାଗଣାରେ ଆସି ପରୀକ୍ଷା କରି ଦେଖିଦେଇ ଯାଉଛନ୍ତି ।

ଗୋବିନ୍ଦପୁରର ଉନ୍ନତି ଦେଖି ପାଖଆଖ ସବୁ ଗାଁ ସେଇ ଗ୍ରାମଦାନ ନୀତିକୁ ଧରି ଆଗେଇ ଚାଲିଛନ୍ତି । ଆମ ଗାଁ ମଧ୍ୟ ସେଥିରୁ ବାଦ୍ ଯାଇନି । ଆମ ଗାଁର ଲୋକଗୁଡ଼ାକ କି ଗରିବ ଥିଲେ, ବର୍ତ୍ତମାନ ଦେଖିବ, ସମସ୍ତଙ୍କ ଅବସ୍ଥା ଏବେ ଖୁବ୍ ଭଲ । ସମସ୍ତେ ଆନନ୍ଦରେ ଗାଁର ଉନ୍ନତିରେ ଲାଗିପଡ଼ିଛନ୍ତି । ଆମ ବୋହୂରାଣୀଙ୍କ ନିର୍ଦ୍ଦେଶରେ ଆମ ଗାଁରେ ଗ୍ରାମଦାନ ପନ୍ଥା ଚାଲୁଥିଲା । ପୁଅ ବେଳେବେଳେ ଯାଏ ସତ, କିନ୍ତୁ ସବୁ ଦାୟିତ୍ୱ ବୋହୂ ବୁଝି ଥିଲା ।

ମୁଖ୍ୟମନ୍ତ୍ରୀ ସେସବୁ ଅଞ୍ଚଳ ଦେଖି ଭାରି ଖୁସି ହୋଇଗଲେ । ଗୋବିନ୍ଦପୁର ଗାଁରେ ସରକାରଙ୍କ ପାଇଁ ଆଉ କିଛି କରିବାକୁ ବାକି ନାହିଁ । ମୁଖ୍ୟମନ୍ତ୍ରୀ ଯେଉଁସବୁ ଅଞ୍ଚଳକୁ ଯାଆନ୍ତି ଲୋକମାନେ ତାଙ୍କୁ ଘେରିଯାଇ କହନ୍ତି ଆମର ସ୍କୁଲ ଦରକାର, ଆମର ରାସ୍ତା ଦରକାର । ଆମ ଗାଁର କିଛି ନାହିଁ । ଆମ ପାଇଁ ସ୍କୁଲ କରିଦିଅ, ରାସ୍ତା କରିଦିଅ ଏମିତି କେତେ କ'ଣ । କିନ୍ତୁ ଗୋବିନ୍ଦପୁର ଗାଁରେ ଠିକ୍ ତା'ର ଓଲଟା । ସେମାନେ ଓଲଟି ମୁଖ୍ୟମନ୍ତ୍ରୀଙ୍କୁ ଦେଖାଇ ଚାଲିଛନ୍ତି, ଆମେ ସ୍କୁଲ କରିଛୁ, ଆମେ ରାସ୍ତା କରିଛୁ, ଆମର ସ୍କୁଲକୁ ଦେଖ, ଆମର ସେ ବିଷୟଟି ଦେଖ ଇତ୍ୟାଦି । କେହି ଭୁଲରେ ମାଗୁ ନାହାନ୍ତି ଆମର ସ୍କୁଲ ନାହିଁ, ଆମର ସ୍କୁଲ ଦରକାର, ଆପଣ ଆସିଛନ୍ତି, ସେତିକି କରିଦେଇ ଯାଆନ୍ତୁ ।

ମୁଖ୍ୟମନ୍ତ୍ରୀ ଏସବୁ ଦେଖିସାରି ଫେରି ଆସୁ ଆସୁ ଗ୍ରାମବାସୀମାନଙ୍କୁ କହିଲେ, "ହଇହେ, ମୁଁ ତ ଏ ଅଞ୍ଚଳକୁ ଆସିଛି । ତୁମେମାନେ ତ ମୋତେ କେତେ ସାହାଯ୍ୟ ମାଗି ପାରନ୍ତ ? ଅନ୍ୟ ଗାଁର ଲୋକେ ଯେମିତି ମାଗୁଛନ୍ତି । ତୁମ୍ଭେମାନେ କ'ଣ ଚୁପ୍ , ମୋତେ କ'ଣ କିଛି ମାଗୁନ ?"

ହସିଲେ ଗ୍ରାମବାସୀମାନେ । "ଆଜ୍ଞା, ମାଗିବୁ କଅଣ ? ଆମର କ'ଣ ନାହିଁ ଯେ ଆମେ ଆପଣଙ୍କୁ ମାଗିବୁ ? ଦେବସ୍ମିତାବାବୁ ଆମକୁ ଶିଖାଇ ଦେଇଛନ୍ତି, ଆମ ହାତ, ଆମର ପରିଶ୍ରମ ଆମର ସବୁକିଛି । ଆମେ ଯଦି ମେହନ୍ତ କରିବୁ, ଆମର ସବୁ ହୋଇପାରିବ । ମାଗିକରି କେହି କେବେ କାହା ଗାଁକୁ ଉନ୍ନତ କରି ପାରିଲଣି ? କଥାରେ ଅଛି ପରି ମାଗି ଆଣିଲ ଚିଅଣ ସୁଡ଼ୁକେ । ସେଥିରେ କ'ଣ ପେଟ ପୂରିବ ? ଆମେ କାମ କରି ଜାଣିଛୁ ଆଜ୍ଞା, ମାଗି ଶିଖିନୁ ।"

ଆମେ କ'ଣ ଦେଖୁନୁ ଆଜ୍ଞା, ପାଖ ଗାଁମାନଙ୍କରେ ସରକାରୀ ସାହାଯ୍ୟ କେମିତି ହରିଲୁଟ୍ ହେଉଛି । ସେହି ହରିଲୁଟ୍‌ଠାରୁ ଦୂରରେ ରହିବାକୁ ଦେବସ୍ମିତାବାବୁ ଆମକୁ ଶିଖାଇଛନ୍ତି ।

ଆପଣ ଆମ ଗାଁକୁ ଦେଖିଯାଇ ଯଦି ଖୁସି ହୋଇଗଲେ, ସେତିକି ଆମର ଯଥେଷ୍ଟ । ଆମେ ଆପଣଙ୍କୁ ମାଗିବୁ କ'ଣ ଆଜ୍ଞା ? ଆମେ ବର୍ତ୍ତମାନ ପରି ପାଖ ଗାଁଗୁଡ଼ିକୁ

ସାହାଯ୍ୟ କରିବା ଅବସ୍ଥାକୁ ଆସିଗଲାଣି । ହେଇ ଆମ ଏ ଗାଁଠାରୁ ସାତ ଆଠ ମାଇଲ ଦୂର ହରିପୁର ଗାଁ ଗ୍ରାମଦାନ ସଂସ୍ଥାକୁ ଛଅମାସ ତଳେ ଆମେ ସେଠାରେ ଗୋଟିଏ ନାଳ ଖୋଳିବା ପାଇଁ ଦେଢ଼ଲକ୍ଷ ଟଙ୍କା ଦାନ କରିଛୁ । ସେଥିସହିତ ଯଦି ଦରକାର ପଡ଼ିବ, ତେବେ ଆଉ ବି କିଛି ଋଣ ଆକାରରେ ଦେବାକୁ ଆମେ ରାଜି ହୋଇଛୁ ।

ଗୋବିନ୍ଦପୁର ଗାଁର ଲୋକଙ୍କଠାରୁ ଏକଥା ଶୁଣି ମୁଖ୍ୟମନ୍ତ୍ରୀ ଘଡ଼ିଏ କାଳ ସେମାନଙ୍କ ମୁହଁକୁ ଅନାଇ ଠିଆ ହୋଇଗଲେ । ଏ ଗାଁର ଲୋକଙ୍କର ସାହସ ପ୍ରକୃତରେ କମ୍ ନୁହେଁ ? ନିଜର ସବୁ ପ୍ରକାର ଉନ୍ନତି କରିସାରି ଅନ୍ୟ ଗ୍ରାମଗୁଡ଼ିକୁ ଆଗେଇବା ପାଇଁ ସାହାଯ୍ୟ ଦେବାକୁ ଆରମ୍ଭ କରି ଦେଲେଣି । ବାସ୍ତବିକ ସମସ୍ତେ ମିଳିମିଶି ନିଜ ହାତରେ କାମ କଲେ ସବୁ ପ୍ରକାର ଅସମ୍ଭବ କାମକୁ ସମ୍ଭବ କରି ହେବ । ମୁଖ୍ୟମନ୍ତ୍ରୀ ସେହି ଗାଁକୁ ଆସି ଅନ୍ତତଃ ସେତିକି ଶିଖିକରି ଆସିଲେ ସେଠୁ ।

ମୁଖ୍ୟମନ୍ତ୍ରୀ ବାଟସାରା କହି କହି ଆସିଲେ ଖାଲି ଗୋବିନ୍ଦପୁର ଅଞ୍ଚଳର ପ୍ରଶଂସା । ସେଠାକାର ଲୋକେ ତାଙ୍କର ଆଖି ପ୍ରକୃତରେ ଖୋଲି ଦେଇଛନ୍ତି । ବିନା ସରକାରୀ ସାହାଯ୍ୟରେ କ'ଣ କରିହୁଏ ଗୋବିନ୍ଦପୁର ହେଲା ତାହାର ଜ୍ୱଳନ୍ତ ପ୍ରମାଣ । ଆମ ଗାଁର ଯେଉଁସବୁ ଉନ୍ନତି ହୋଇଛି ମୁଁ ଦେଖି ତାଟଙ୍କା ସୀମନ୍ତିନୀ । ଆମ ଘରଛଡ଼ା ଗ୍ରାମବାସୀଙ୍କର ସମସ୍ତଙ୍କ ନୂଆ ଘର ହୋଇଗଲାଣି । ଆମ ଘର ସେମିତି ଭଙ୍ଗା ହୋଇ ପଡ଼ିରହିଛି । ଶୁଣିଲି, ସେ ଘର ଭଙ୍ଗାଯାଇ ସେଠି ଗୋଟିଏ ଆଦର୍ଶ ସ୍କୁଲ ବସିବ । ସେହି ସ୍କୁଲର ପିଲାମାନେ ସବୁ ହଷ୍ଟେଲରେ ରହିବେ । ପାଠପଢ଼ା ସଙ୍ଗେ ସଙ୍ଗେ ସେମାନଙ୍କ ଚରିତ୍ର ଗଠନ କରାଯିବ । କାମ ଧନ୍ଦା ଶିକ୍ଷା ଦିଆଯିବ । ଏ ଯୋଜନା କାହାର ଜାଣ ?

"କାହାର ?"

"ଆଉ କାହାର ହୁଅନ୍ତା, ଆମ ବୋହୂରାଣୀଙ୍କର ପରା । ମୁଁ ଏତେଦିନ କାଳ ସମସ୍ତଙ୍କର ଗୁରୁ ହୋଇ ଆସିଥିଲି । ଏସବୁ ଦେଖିଲାପରେ ମୋର ଆଖି ଖୋଲି ଯାଇଛି ସୀମନ୍ତିନୀ । ପୁଅ ବୋହୂ ଯାହା କରିଛନ୍ତି, ସେ ମୋର ବର୍ତ୍ତମାନ ଗୁରୁ ହେବା କଥା, ସେମାନଙ୍କଠାରୁ ମୋର ବହୁତ କିଛି ଶିଖିବାର ଅଛି ।"

ମୁଖ୍ୟମନ୍ତ୍ରୀ ଫେରି ଆସି ଆସେମ୍ବ୍ଲିରେ ଯେଉଁ ଭାଷଣ ଦେଲେ, ସାରା ଆସେମ୍ବ୍ଲି ସରଗରମ ହୋଇ ଉଠିଲା । ସେ ପ୍ରତ୍ୟେକ ଅଞ୍ଚଳର ଏମ.ଏଲ.ଏ.ଙ୍କୁ ଚ୍ୟାଲେଞ୍ଜ କଲେ, "ତୁମେମାନେ ଯଦି ପ୍ରକୃତରେ ଜନ-ପ୍ରତିନିଧି, ତେବେ ସେ ଅଞ୍ଚଳ ଯାଇ ଦେଖିଆସ, ସେଠାକାର ଲୋକମାନେ ବିନା ସରକାରୀ ସାହାଯ୍ୟରେ ଗାଁଗୁଡ଼ିକର କି କି ଉନ୍ନତି କରି ପାରିଛନ୍ତି, ଦେଖି ଆସିଲେ ତୁମ୍ଭମାନଙ୍କ ଆଖି ଖୋଲିଯିବ । ପ୍ରକୃତରେ ଦେଶସେବା, କି ଗଠନମୂଳକ କାମ, କି ରଚନାତ୍ମକ କାମ କାହାକୁ କହନ୍ତି ସେହିଠାରେ ଦେଖ । ମୁଁ ଆମ ଦଳ ଓ ଆମ ବିରୁଦ୍ଧ ଦଳ ସମସ୍ତଙ୍କୁ କହୁଛି, ସେ ଅଞ୍ଚଳକୁ ଯାଇ ଥରେ ଥରେ ବୁଲି ଆସନ୍ତୁ । ଲୋକେ କେମିତି ଉତ୍ସାହରେ ଗ୍ରାମ ଗଠନ କାର୍ଯ୍ୟରେ ଲାଗି ପଡ଼ିଛନ୍ତି, ଦେଖନ୍ତୁ ।

ସେମାନେ କେମିତି ସରକାରୀ ସାହାଯ୍ୟକୁ ଘୃଣା କରୁଛନ୍ତି, ସେମାନଙ୍କଠାରୁ ଶିଖନ୍ତୁ । ସେମାନେ ଓଲଟି କହୁଛନ୍ତି ଆମେ ତ ଅନ୍ୟ ଗାଁକୁ ସାହାଯ୍ୟ ଦେବାକୁ ଆରମ୍ଭ କଲୁଣି, ଆମକୁ ସରକାର କ ସାହାଯ୍ୟ ଦେବେ ? ଆମର କୌଣସି ଜନକଷ୍ଟା ବାକ ନାହିଁ ଯେ ସରକାରୀ ସାହାଯ୍ୟ ଦରକାର ହେବ । ଯେଉଁ ଗ୍ରାମଗୁଡ଼ିକ ଅସ୍ୱଚ୍ଛ, ସେମାନଙ୍କୁ ସାହାଯ୍ୟ ଦିଆଯାଉ, ଆମର ଦରକାର ନାହିଁ । ଗ୍ରାମଦାନର ଅପୂର୍ବ ସୁଫଳ, ଆମ ସମସ୍ତଙ୍କ କଳ୍ପନା ବାହାରେ । ଖାଲି ଗ୍ରାମଦାନ କରିଦେଲେ ଯେ ଏଭଳି ସୁଫଳ ମିଳେ ତା ନୁହେଁ, ତାକୁ ଠିକ୍ ଭାବରେ କାର୍ଯ୍ୟକାରୀ କରିପାରିଲେ ସୁଫଳ ମିଳେ । ଏହି ଉନ୍ନତିର ପଥ ପ୍ରଦର୍ଶକ ହେଲେ ଆମର ଦେବସ୍ଥାନବାବୁ ।"

## ସ୍ୱଭାବନ

ସେଦିନ ଦେବସ୍ଥାନବାବୁଙ୍କ ଘରକୁ ଶୁଭ୍ରା ପଶି ଆସିଲାବେଳକୁ ଦେବବାବୁଙ୍କଠାରୁ ବିଦାୟ ନେଇ ତାଙ୍କର ପଦଧୂଳି ନେଉଥିଲେ ମିଷ୍ଟର ଗୁପ୍ତା । ମିଷ୍ଟର ଗୁପ୍ତାଙ୍କୁ ଦେବବାବୁଙ୍କ ଘରେ ଦେଖି ହଠାତ୍ ଆଶ୍ଚର୍ଯ୍ୟ ହୋଇଗଲା ଶୁଭ୍ରା । ଏହି ଗୁପ୍ତା କ ସମ୍ମାନ ନ କରିଛୁ ସାର୍‌ଙ୍କୁ ସେ କଟକ ରେଭେନ୍‌ସା କଲେଜରେ ଅଧ୍ୟାପକ ଥିଲାବେଳେ । ବାର ତେରବର୍ଷ ତଳର ଘଟଣା ଗୋଟି ଗୋଟି ହୋଇ ନାଚିଗଲା ଶୁଭ୍ରାର ମାନସପଟରେ ଠିକ୍ ରୁପେଲି ପରଦାରେ ଚଳଚ୍ଚିତ୍ର ଭଳି । ମିଷ୍ଟର ଗୁପ୍ତା ଚାଲିଗଲା ପରେ ଶୁଭ୍ରା ପଚାରିଲା, "ସାର, ଏ ମହାତ୍ମା କ'ଣ ଆଜି ଆପଣଙ୍କ ପାଦଧୂଳି ନେଉଛନ୍ତି ?"

"ହଁ ଶୁଭ୍ରା, ଆଜି ମୁଁ ମନ୍ତ୍ରୀ ହୋଇଛି ବୋଲି ଯେ ସେ ମୋ ଗୋଡ଼ଧୂଳି ନେଉଛି ତା ନୁହେଁ, ଚାକିରିରେ ଅସୁବିଧା ହୋଇଛି ବୋଲି ଆଜି ଏତେ ଗୁରୁଭକ୍ତ । ମନ୍ତ୍ରୀହେବା ଆଗରୁ ତ ଆଡ଼ଆଖିରେ ଚାହୁଁ ନ ଥିଲା । ଆଜି ମୋର ପରମଭକ୍ତ ଛାତ୍ର ଭାବରେ ଆସି ଗୋଡ଼ଧୂଳି ନେଉଛି । ମୋ ସହିତ ତା'ର ସମ୍ପର୍କ ତୁମେତ ଜାଣ ଶୁଭ୍ରା, ମୁଁ ଆଉ ଅଧିକ ତୁମକୁ କ'ଣ କହିବ ?"

"କିଛି ଗୋଟାଏ ବଡ଼ ଧରଣର ଅସୁବିଧା ପଡ଼ି ନ ଥିଲେ ଏ ମହାତ୍ମା ଆପଣଙ୍କ ଛାତ୍ର ଭାବରେ ଆପଣଙ୍କ ପାଦତଳେ ଲୋଟିପଡ଼ୁ ନ ଥାନ୍ତେ ।"

"ହଁ ଶୁଭ୍ରା, ତୁମେ ଠିକ୍ ସନ୍ଦେହ କରିଛ । ବଡ଼ ଅସୁବିଧାରେ ପଡ଼ିଯାଇଛି ବିଚରା । ଭିଜିଲାନ୍‌ସ ବିଭାଗ ଧରିଛି । ଏ ତାଙ୍କ ଚାକିରିକାଳ ଭିତରେ ଓଡ଼ିଶାର ସବୁ ବଡ଼ ବଡ଼ ସହରରେ ଏକାଧିକ ପ୍ରାସାଦ କେମିତି ତିଆରି କଲେ ? ନିଜ ଭାଇ ବନ୍ଧୁ କୁଟୁମ୍ବଙ୍କ ନାଁରେ ଓଡ଼ିଶାର ବଡ଼ ବଡ଼ ବେଙ୍କର ଲକରରେ ହୀରାଖଚିତ ସୁନା ଗହଣା ଆଦି କେମିତି

ରଖିଲେ ? ଏଇ ବାର ଚଉଦବର୍ଷ ଚାକିରିକାଳ ଭିତରେ ସେ ଏତେ ଅର୍ଥ କେମିତି ଉପାର୍ଜନ କଲେ ତାଙ୍କୁ ପଚରାଯାଇଛି । ଆୟକର ବିଭାଗ ଏବେ ତାଙ୍କର ସବୁ ଘର ଓ ବେଙ୍କ୍ ଲକର ଖାନତଲାସ କରି ଏହାଙ୍କ ସମ୍ପତ୍ତିର ମୂଲ୍ୟ କୋଟିଏ ଟଙ୍କା ପାଖାପାଖି ବୋଲି ଅଟକଳ କରିଛି । କିନ୍ତୁ ସେ କୈଫିୟତ ଦେବାକୁ କିଛି ବାଟ ପାଉନି । ଏଇଥିଯୋଗୁଁ ଆଜି ତା'ର ଏତେ ଭକ୍ତ ବାହାରିପଡ଼ୁଛି ମୋ ଠାରେ ।"

"ସାର୍, ଆପଣ ତାଙ୍କୁ କ'ଣ କହିଲେ ? ରକ୍ଷା କରିବାର ପ୍ରତିଶ୍ରୁତି ଦେଇ ନାହାନ୍ତି ତ ?"

"ଇଏତ ଭିଜିଲାନ୍‌ସ ଓ ଆୟକର ବିଭାଗ କଥା, ମୋ କ୍ଷମତା ପରିସର ବାହାରେ । ମନ୍ତ୍ରୀ ଭାବରେ ଏଭଳି ଅନ୍ୟାୟକାରୀଙ୍କୁ ମୁଁ ବା କି ସାହାଯ୍ୟ ଦେଇପାରେ ? ତୁମେତ ଜାଣିଛ ଶୁଭ୍ରା, ଏଭଳି ଅନ୍ୟାୟ କାମ ଦେଖିଲେ ମୋ ହାଡ଼ କେମିତି ଜଳେ ?"

"ଠିକ୍ କରିଛନ୍ତି ସାର୍, ଏଭଳି ଅସାଧୁ ଲୋକଙ୍କୁ ଦୟା ଦେଖାଇବା ମାନେ ମହାପାପ ।"

"ଭିଜିଲାନ୍‌ସ ବିଭାଗ ଏହାଙ୍କୁ ଏମିତି ଭାବରେ ଧରିଛି ଯେ ଖସିଯିବାର ଉପାୟ ନାହିଁ । ଆୟକର ବିଭାଗ ତ ଏହାଙ୍କ ଉପରେ ଖପ୍ପା । ଚିଫ୍ ସେକ୍ରେଟେରୀ ତ ଏହାଙ୍କ ବିରୁଦ୍ଧରେ । ମୁଖ୍ୟମନ୍ତ୍ରୀଙ୍କୁ ଭାରି ଜୋରରେ ଧରାଧରି କରିଛି ଇଏ । ମୁଖ୍ୟମନ୍ତ୍ରୀ ମୋ ଉପରେ ଏହାଙ୍କୁ ରକ୍ଷା କରିବାର ପ୍ରତିଶ୍ରୁତି ଦେଇପାରୁ ନାହାନ୍ତି । ଦଳୀୟ ପାଣ୍ଠିକୁ ମୋଟା ଆକାରରେ ଦେଣନେଣ ହୋଇଛି ମଧ୍ୟ, ହେଲେ ସବୁ ଅକାରଣ । ତଥାପି ରକ୍ଷା ପାଇବାର ଭରସା ପାଉ ନାହାନ୍ତି ଇଏ । ମୋତେ ପ୍ରଭାବିତ କରିବାପାଇଁ ଯେତେ ପ୍ରକାର ଉପାୟ ସବୁ କରି ଥକି ଗଲେଣି । ଏମିତିକି ଏ ମୋ ବାପା ବୋଉଙ୍କୁ ମୁଣ୍ଡିଆ ମାରି ମାରି ଏହାଙ୍କ ଆଗ ବାଳ ସବୁ ଉପୁଡ଼ି ଗଲାଣି ।"

"ଏ ଲୋକଟାକୁ ମୋଟେ ଦୟା ଦେଖାଇବେନି ସାର୍, ଇଏ ଏକନମ୍ବର ଚରଣଚୁଟିଆ । ଏମାନେ ଲାଞ୍ଚ ନେଇ ନେଇ ଧରାକୁ ସରା ବୋଲି ମନେକଲେଣି । ଦେଶଟା ଏହିଭଳି ଲୋକଙ୍କ ଦ୍ୱାରା ଛାରଖାର ହୋଇଗଲାଣି । ଆମ ଦେଶ ତଥା ସମାଜର ଏଇମାନେ ହେଲେ ପହିଲା ନମ୍ବର ଶତ୍ରୁ । ଭଗବାନ ବି ଏମାନଙ୍କୁ କ୍ଷମା ଦେଇପାରିବେନି ସାର୍ ।"

"ମୁଁ ଯାହା ଖବର ପାଇଛି ଶୁଭ୍ରା, ଇଏ ଖସିଯାଇ ପାରିବନି । ଆୟକର ବିଭାଗ ଏହାଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରିନେବା ଉପରେ । ଭିଜିଲାନ୍‌ସ ମୋକଦ୍ଦମା ଯୋଗୁଁ ଏହାଙ୍କ ଚାକିରି ଯିବ ଓ ଏ ମଧ୍ୟ କିଛିଦିନ ସଶ୍ରମ କାରାଦଣ୍ଡ ଭୋଗ କରିବେ ।"

ଏହିଭଳି କେତୋଟି ଆଦର୍ଶ ଦଣ୍ଡ ଏହି ଅସାଧୁତା ପାଇଁ ମିଳିଗଲେ ବଡ଼ ବଡ଼ ଅଫିସରମାନଙ୍କର ଏଇ ସରକାର ପ୍ରତି ଟିକିଏ ଡର ଆସିବ ସାର୍ । ନଚେତ୍ ଏମାନେ

ବେପରବାସ୍ତ ହୋଇ ଯା'ପାଉ ତାହା କରି ଯାଉଛନ୍ତି । ଆମ ନେତାମାନେ ଏମାନଙ୍କ ମୁହଁକୁ ଆହୁରି ଯାହା ବଢ଼ାଇ ଦେଉଛନ୍ତି, ତା ବି କମିଯିବ ।

"ତୁମେ ଆଜି କୁଆଡ଼େ ଚାଲି ଆସିଲ ଶୁଭ୍ରା ? ତୁମେ ଆଉ କେତେଦିନ ଓଡ଼ିଶାରେ ରହୁଛ ଶୁଣେ ?"

"ନାହିଁ ସାର୍, କାଲି ମୁଁ ଏଠୁ ଆମେରିକା ଚାଲି ଯାଉଛୁ । ବୋମ୍ବେରେ ସାନ ମଉସାଙ୍କ ଘରେ ଦିନଟାଏ ରହି ସେଠୁ ଆମେରିକା ଯିବି । ଆପଣଙ୍କୁ ଓ ଶାନ୍ତିଦେବୀଙ୍କୁ ଦେଖା କରିବା ପାଇଁ ଚାଲି ଆସିଲି ଆଜି ।"

"ଆରେ, ତୁମେ କ'ଣ ଏତେଶୀଘ୍ର ଚାଲି ଯାଉଛ ? ହଉ ବୁଝ, ମୁଁ ଶାନ୍ତିକୁ ଖବର ଦିଏ ।"

ଶାନ୍ତିଦେବୀ ଘର ଭିତରକୁ ପଶି ଆସୁ ଆସୁ କହିଲେ, "ଆପଣ ଏତେଶୀଘ୍ର ଆମେରିକା ଚାଲିଯିବେ ଶୁଭ୍ରାଦେବୀ ? ଯିବା ପୂର୍ବରୁ ଟିକିଏ ମୁହଁ ମିଠା ନ କରି ଯିବେ କେମିତିକି ?"

ଏତିକି କହି ଶାନ୍ତିଦେବୀ ଘର ଭିତରକୁ ପୁଣି ଫେରିଯାଇ ଗୋଟିଏ ପ୍ଳେଟ୍‌ରେ କିଛି ମିଠା ଓ ଗିଲାସରେ କିଛି ଜଳ ଧରି ହାଜର ହୋଇଗଲେ । ସଙ୍ଗେ ସଙ୍ଗେ ଶୁଭ୍ରା ହାତରେ ସେତକ ଧରାଇଦେଇ ସୋଫାରେ ବସୁ ବସୁ କହିଲେ, "ଆପଣଙ୍କର ଆମ ପ୍ରତି ଆଦର କଦାପି ଭୁଲି ହେବନି ଶୁଭ୍ରାଦେବୀ । ଆମ ପାଇଁ ଭୁବନେଶ୍ୱର ଭଳି ଏକ ମରୁଭୂମିରେ ଆପଣ ଥିଲେ ଏକ ଓଏସିସ୍ । ଏହି ମାସେ କାଳ ଆପଣଙ୍କ ସହିତ ଆମ ଦିନଗୁଡ଼ାକ ବେଶ୍ ଆନନ୍ଦରେ କଟି ଯାଉଥିଲା ।"

"ଫେରି କେବେ ଆସିବ ଶୁଭ୍ରା ?" ଦେବସ୍ମାନ ପଚାରିଲା ।

"ସାର୍, କହି ହେଉନି । କେବେ ପୁଣି ସୁବିଧା ଜୁଟିଲେ ଚାଲି ଆସିବି ।"

"ଆରଥରକୁ ଆପଣ ଆସିଲାବେଳକୁ ଆମେ ହୁଏତ ଏଠି ନଥିବୁ ଶୁଭ୍ରାଦେବୀ ।" ଶାନ୍ତି କହିଲା ।

"ଏଠି ଥିବୁ କି ଅନ୍ୟ କେଉଁଠି ଥିବୁ, ତା ବି ଏକ ସନ୍ଦେହବାଚକ ପ୍ରଶ୍ନ ଶୁଭ୍ରା । ଭାଗ୍ୟରେ ଥିଲେ ପୁଣି ଦେଖା ହେବ ।" ଦେବସ୍ମାନ କହିଲା ।

"ଆପଣ ଏମିତି କ'ଣ କହୁଛନ୍ତି ସାର୍ ?"

"ସମୟର ଗତିରେ କେତେବେଳେ କ'ଣ ଘଟିବ, କହିହେବ ଶୁଭ୍ରା ? ତୁମ ଯାତ୍ରା ସଫଳ ହେଉ, ଏତିକିମାତ୍ର ଆମର ଦୟାମୟଙ୍କଠାରେ ପ୍ରାର୍ଥନା ।"

× × × ×

"ଆମେ ଭୁବନେଶ୍ୱର ଆସିଲେଣି ବର୍ଷେ ପାଖାପାଖି ହେବ । ମୁଁ ଶୁଣୁଛି ଏଠି କାଲେ ମିନର୍ଭା ସିନେମାହଲରେ ଗୋଟାଏ ଭଲ ପିକ୍‌ଚର ପଡ଼ୁଛି । ଭାରି ଶିକ୍ଷଣୀୟ ହୋଇଛି ଫିଲ୍ମଟି । ପିଲାମାନଙ୍କ ପାଇଁ ଖୁବ୍ ଭଲ ହୋଇଛି । ଆମେ ଟିକିଏ ଦେଖି

ଯାଆନ୍ତେନ ? ବୋଉ ଯାଇ ଦେଖି ଆସିଲେଣି । ମୋତେ କହୁଥିଲେ ଦେଖି ଆସିବା ପାଇଁ ।”

“ବୋଉ ଯେଉଁଦିନ ଗଲା, ତୁମକୁ ନେଇଗଲାନି ସାଙ୍ଗରେ ?”

“ତୁମକୁ ତ ବୋଉଙ୍କର ଖୁବ ଡର । ମନ୍ତ୍ରୀଙ୍କ ଛୁଆପିଲା ଡି.ପି.ଆଇ.ଙ୍କ ଗାଡ଼ିରେ ଗଲେ ଲୋକେ କ’ଣ କୁହାକୁହି ହେବେ, ସେଇ ଡରରେ ସେ ମୋତେ ଡାକିଲେନି । ନଚେତ୍ ତାଙ୍କ ଇଚ୍ଛା ଥିଲା ମୋତେ ସାଙ୍ଗରେ ନେବା ପାଇଁ ।”

“ହେଉ, କେଉଁଦିନ ଯିବ କୁହ । ସନିଆକୁ ପଠାଇଦେଇ ଏଡ଼୍‌ଭାନ୍‌ସଡ଼୍ ଟିକେଟ କରି ଆଣିଥିବ । ଦେଖ, ସରକାରୀ ଚପରାଶିଙ୍କୁ ପଠାଇବ ନାହିଁଟି ?”

“ତୁମେ ଯିବଟି ?”

“ମୁଁ ନଗଲେ କ’ଣ ହେବନି ? ତୁମେ ଆଗତୁରା ଟିକେଟ କରିଆଅ । ଦେଖିବା କ’ଣ ହେଉଛି । ମୋର ଯଦି ମିଟିଂ ପଡ଼ିଯିବ, ଟିକିଏ ଅସୁବିଧା ହୋଇଯାଇପାରେ ।”

“ରବିବାର ଦେଖି ଟିକଟ କଲେ ତ ଭଲ ହେବ ? ରବିବାର ଦିନ ତ ତୁମର ଖୁବ୍ କମ୍ ମିଟିଂ ପଡ଼େ ?”

“ହେଉ କରି ଆଣ ।”

“କେତେଟା କରିବି ?”

“ଚାରିଟା କରିବ । ଆଉ କେତେଟା କରନ୍ତିକି ? ମୁଁ ତ ନଗଲେ ତୁମେ ଯିବନି । ଆଜିକାଲି ସିନେମା ଯାହା ହେଲାଣିନା, ସ୍ତ୍ରୀ ଲୋକମାନେ ଏକା ଏକା ଯିବା ମୋଟେ ନିରାପଦ ନୁହେଁ ।”

ଯେଉଁଦିନ ସନିଆ ସିନେମା ଟିକେଟ ଆଣିଲା, ସେଦିନ ଘରେ ପିଲାମାନଙ୍କ ଆନନ୍ଦ କହିଲେ ନସରେ । ସେମାନେ ତ ଖୁବ୍ କମ୍ ସିନେମା ଦେଖନ୍ତି, ସିନେମା ନାଁ ଶୁଣିଲେ ଖୁସି ନହେବେ ବା କେମିତି ? ସିନେମା ଯିବା ଦୁଇଦିନ ଆଗରୁ ପିଲାମାନଙ୍କ ଆଖିକୁ ମୋଟେ ନିଦ ନାହିଁ । ପାଠପଢ଼ା ବି ଗୋଳମାଳ ହୋଇଗଲାଣି ।

ଟିକଟ କରିବା ପରଦିନ ଦେବସ୍ମାନ କହିଲା, “ଦେଖ ଶାନ୍ତି, ଟିକଟ ଯିନା କରିଦେଲ, ଗୋଟିଏ ଅସୁବିଧା ହୋଇଗଲା ।”

“କ’ଣ ହେଲା କି ?” ଶାନ୍ତି ପଚାରିଲା ।

“ରବିବାର ଦିନ ଦୁଇଟାରେ ଛାତ୍ର ପ୍ରତିନିଧିମାନଙ୍କ ସହିତ ଏକ ମିଟିଂ କରିବା ପାଇଁ ରାଜି ହୋଇଗଲି । ମୋର ଖିଆଲ ନାହିଁ, ତୁମ ସିନେମା କଥା । ମିଟିଂ ହେବ ବି.ଜେ.ବି. କଲେଜରେ । ମିଟିଂ ଆରମ୍ଭ ହେବ ଦିନ ଦୁଇଟାରେ । ସବୁ ସବୁ ପାଞ୍ଚଟା ଛଅଟା ହୋଇଯାଇପାରେ । ଛାତ୍ରମାନଙ୍କ ସହିତ ଆଲୋଚନା କେତେବେଳେ ସରିବ କ’ଣ କହି ହେବ ? ତୁମ ସିନେମାବେଳତ ସନ୍ଧ୍ୟା ଛଅଟା । ତେବେ ଗୋଟିଏ କଥା କରିବ । ତୁମେ ସାଢ଼େ ପାଞ୍ଚଟା ସୁଦ୍ଧା ପିଲାମାନଙ୍କୁ ନେଇ ସିନେମାହଲଠାରେ ପହଞ୍ଚିଯାଇ ମୋତେ

ଅପେକ୍ଷା କରିଥିବ । ମୁଁ ମିଟିଂ ସାରି ସିଧାସଳଖ ଆସିବ ସିନେମାହଲକୁ । ସିନେମାହଲରେ ଆମେ ସାଙ୍ଗ ହୋଇ ଦେଖିବା । ତୁମେ ପିଲାମାନଙ୍କୁ ନେଇ ଏକା ଯାଇପାରିବ ତ ? ରିକ୍‌ସାରେ ଚାଲିଯିବ ।"

"ହଁ, ଯାଇପାରିବ ।"

"ମୁଁ ବି.ଜେ.ବି. କଲେଜରୁ ଘରକୁ ଫେରିବା ବାଟରେ ମିନର୍ଭା ସିନେମାହଲ ଆଗରେ ଓହ୍ଲାଇ ପଡ଼ିବ । ତୁମେତ ସେଠି ଥିବ । ମିଶି ସିନେମାହଲକୁ ଯିବା ।"

ସେଦିନ ଛାତ୍ର ପ୍ରତିନିଧିମାନଙ୍କ ସହିତ କଥାବାର୍ତ୍ତା ଚାଲିଲା ଢେର୍ ସମୟ । ସହଜେ କ'ଣ କଥାବାର୍ତ୍ତା ଶେଷ ହେଉଛି ? କଥାବାର୍ତ୍ତା ଯଦି ବିଫଳ ହେଉଛି, ତେବେ ଛାତ୍ର ଧର୍ମଘଟ ଆରମ୍ଭ ହୋଇଯିବ । ଦେବସ୍ମାନ ଛାତ୍ର ଧର୍ମଘଟ ଆରମ୍ଭ କରିବାକୁ ଦେବା ମତଲବରେ ମୋଟେ ନୁହେଁ । ପିଲାଙ୍କ ଦାବୀ ଯେତେ ଗ୍ରହଣ କରାଯାଇପାରେ, ସେ ଗ୍ରହଣ କରିବାକୁ ତିଆର । ପିଲାମାନଙ୍କ ଦାବୀ ସେମିତି କିଛି ଅଯୌକ୍ତିକ ବି ନୁହେଁ । ମନ୍ତ୍ରୀଙ୍କ ସହ କଥାବାର୍ତ୍ତାରେ ପିଲାଏ ଭାରି ଖୁସି । ଯାହାହେଉ, ଏ ମନ୍ତ୍ରୀ ପ୍ରକୃତରେ ସେମାନଙ୍କ କଥା ଶୁଣୁଛନ୍ତି । କଥାବାର୍ତ୍ତା ସରୁ ସରୁ ପାଞ୍ଚଟା ପଇଁଚାଳିଶ ମିନିଟ୍ ହୋଇଗଲା ।

ଦେବସ୍ମାନ ପିଲାମାନଙ୍କୁ ବିଦା କରିଦେଇ ସଙ୍ଗେ ସଙ୍ଗେ ଚାଲି ଆସିଲା ସିନେମା-ହଲକୁ । ବି.ଜେ.ବି. କଲେଜରୁ ନିଜ ସରକାରୀ କ୍ୱାର୍ଟର୍ସକୁ ଯେଉଁ ରାସ୍ତାରେ ଫେରିବା କଥା, ଠିକ୍ ସେଇ ରାସ୍ତାରେ ପଡ଼େ ମିନର୍ଭା ସିନେମାହଲ । ତେଣୁ ସେ ଯେଉଁ ସରକାରୀ ଗାଡ଼ିରେ ବି.ଜେ.ବି. କଲେଜକୁ ଯାଇଥିଲା, ମିନର୍ଭା ସିନେମାହଲ୍ ଆଗରେ ସେଇ ଗାଡ଼ିରୁ ଓହ୍ଲାଇପଡ଼ି ଗାଡ଼ିଟିକୁ ପଠାଇଦେଲା ନିଜ କୋଠିକୁ । ସେ ସିନେମା ଦେଖିସାରି ପିଲାମାନଙ୍କ ସହ ରାତିରେ ଫେରିବ ରିକ୍‌ସାରେ ।

ଦେବସ୍ମାନ ମିନର୍ଭା ସିନେମାହଲ ସମ୍ମୁଖରେ ସରକାରୀ ଗାଡ଼ିରୁ ଓହ୍ଲାଉଛି, ଜଣେ ପ୍ରେସ୍ ସମ୍ବାଦଦାତା ସେଠି ବୁଲୁଥିଲେ । ମନ୍ତ୍ରୀଙ୍କୁ ସରକାରୀ ଗାଡ଼ିରୁ ଓହ୍ଲାଇବା ଦେଖି ସେ ତାଙ୍କ ଗାଡ଼ିରୁ ଓହ୍ଲାଇବା ଫଟୋ ସଙ୍ଗେ ସଙ୍ଗେ ଉଠାଇନେଲେ । ପ୍ରେସ୍ ସମ୍ବାଦଦାତା ହେଉଛି ବିରୋଧୀଦଳ ଖବର କାଗଜର ।

ସେଦିନ ରାତିରେ ସଙ୍ଗେ ସଙ୍ଗେ ବିରୁଦ୍ଧଦଳର ଖବର କାଗଜରେ ବାହାରିପଡ଼ିଲା "ଭୂଦାନମନ୍ତ୍ରୀଙ୍କ ସରକାରୀ ଗାଡ଼ିରେ ସିନେମା ଦେଖା" । ସକାଳୁ ଉଠି ଦେବସ୍ମାନ ସକାଳ ଖବର କାଗଜ ଖୋଲି ଦେଇଛି କି ନାହିଁ, ପ୍ରଥମପୃଷ୍ଠାରେ ବାହାରିପଡ଼ିଛି ଏହି ଖବର । ସେଥିସହ ସରକାରୀ ଗାଡ଼ିରୁ ସିନେମାହଲ ସମ୍ମୁଖରେ ତା'ର ଓହ୍ଲାଇବା ଫଟୋ ମଧ୍ୟ ବାହାରି ପଡ଼ିଥାଏ । ସେ ଏହାକୁ ଦେଖି ଚମକି ପଡ଼ିଲା ।

ନିଜ ସମ୍ମାନ ପ୍ରତି ବଡ଼ ଆଘାତ ଲାଗିଲା ଦେବସ୍ମାନର । ସଙ୍ଗେ ସଙ୍ଗେ ମନ୍ତ୍ରୀପଦରୁ ଇସ୍ତଫା ଦେଇ ଇସ୍ତଫାପତ୍ର ମୁଖ୍ୟମନ୍ତ୍ରୀଙ୍କଠାକୁ ପଠାଇଦେଲା । ତତ୍ପରେ ସ୍ତ୍ରୀଙ୍କୁ ଡାକି କହିଲା, "ଶାନ୍ତି, ଜିନିଷପତ୍ର ବନ୍ଧାବନ୍ଧି କର, ଆମେ ଆଜି ଚାଲିଯିବା ଗୋବିନ୍ଦପୁର । ତୁମେ

ଗୋବିନ୍ଦପୁର ଯିବା ପାଇଁ ପରା ବ୍ୟସ୍ତ ହେଉଥିଲ ? ଦିନ ଦଶଟାରେ ଏଠୁ ବସ୍ ଧରିବାକୁ ପଡ଼ିବ ଗୋବିନ୍ଦପୁରକୁ ।"

ଶାନ୍ତି ଏଇ କଥା କେଇପଦରେ ଚମକି ପଡ଼ିଲା । "ଆଁ, କ'ଣ ହେଲା କି ? ହଠାତ୍ ଏମିତି କ'ଣ କହୁଛ ମ ?"

"ହେଇ ଦେଖ, ଏହି ଖବର କାଗଜ । ଆମ ପ୍ରଶଂସା କେମିତି ବାହାରିପଡ଼ିଛି ଏଥିରେ ।"

ଶାନ୍ତି ଖବର କାଗଜରୁ ପ୍ରକୃତ କଥାଟା ଜାଣିନେଲା । ସେ ବି ତ ଗୁହୁଁଥିଲା, ଏଠୁ କେମିତି ପଳାଇବାକୁ । ଯାହାହେଉ, ଏତେ ଦିନକେ ଭଗବାନଙ୍କର ସୁଦୟା ହେଲା ।

ସେ ପିଲାମାନଙ୍କୁ ତରତର କରି ଗାଧୋଇ-ପାଧୋଇ ଖୁଆଇ-ପିଆଇ ବାହାରି-ପଡ଼ିଲା ବସ୍ ଷ୍ଟେସନ ଅଭିମୁଖେ । ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ଘର ଦାୟିତ୍ୱ ବୁଝାଇଦେଇ ଦେବସ୍ଥାନ ଓ ଶାନ୍ତିଦେବୀ ଗୋଟିଏ ରିକ୍ସାରେ ବାହାରିପଡ଼ିଲେ । ସେମାନେ ତ ଆସିଲା-ବେଳେ ଗୋଟିଏ ଦୁଇଟି ସୁଟ୍‌କେଶ୍ ନେଇ ଆସିଥିଲେ ଗୋବିନ୍ଦପୁରରୁ । ସେଇ ସୁଟ୍‌କେଶ୍ ଦି' ଗୁଟିକ ଧରି ସେମାନେ ଗ୍ଲଲେ ବସ୍‌ଷ୍ଟାଣ୍ଡ୍ ।

ଦେବସ୍ଥାନ, ଶାନ୍ତି ଓ ଛୁଆପିଲାଙ୍କୁ ଗୋବିନ୍ଦପୁରରେ ଦେଖି ସମସ୍ତେ ତାଟଙ୍କା । ପ୍ରଥମେ ପ୍ରଥମେ ଭାବିଲେ ମନ୍ତ୍ରୀ ବୋଧହୁଏ ନିଜ ଅଞ୍ଚଳକୁ ଗସ୍ତରେ ଆସିଛନ୍ତି । ଆସିଥିଲେ ତ ସରକାରୀ ଗାଡ଼ିରେ ଆସିଥାନ୍ତେ । ସାଧାରଣ ବସ୍‌ରେ କାହିଁକି ? ଶୁଣ୍ଟ୍ ଶୁଣ୍ଟ୍ ଦେବବାବୁ ମନ୍ତ୍ରିତ୍ୱ ଛାଡ଼ିଦେଇ ନିଜ କର୍ମକ୍ଷେତ୍ରକୁ ଫେରି ଆସିଛନ୍ତି । ଦେବବାବୁଙ୍କୁ ଦେଖି ଆଖପାଖ ଗାଁର ଲୋକମାନେ ଦୌଡ଼ି ଆସିଲେ । ମନ୍ତ୍ରିତ୍ୱ ଛାଡ଼ି ଆସିଥିବାରୁ ସମସ୍ତେ ଦୁଃଖ କଲେ । କିନ୍ତୁ ପରମୁହୂର୍ତ୍ତରେ ପୁଣି ଆନନ୍ଦ । ଯାହାହେଉ, ବର୍ତ୍ତମାନ ଗାଁର ଉନ୍ନୟନ କାମ ଅଧିକ ବେଗରେ ଆଗେଇ ଗ୍ଲଲିବ ।

## ଅଠାବନ

ଦେବସ୍ଥାନଠାରୁ ଇସ୍ତଫାପତ୍ର ପାଇ ମୁଖ୍ୟମନ୍ତ୍ରୀ ଏ କ'ଣ ହେଲା ଭାବି ନପାରି ଗୁମ୍‌ମାରି କିଛି ସମୟ ବସିଗଲେ । କେତେବଡ଼ ଗୁଣ୍ଡ ଧର୍ମଘଟକୁ କେତେ ଦକ୍ଷତାର ସହିତ ଏଡ଼ାଇଦେଇ ଏତେବଡ଼ କୃତିତ୍ୱ ହାସଲକଲା ପରେ ସଙ୍ଗେ ସଙ୍ଗେ ଇସ୍ତଫା ? ଇସ୍ତଫାର କାରଣ କିଛି ଦିଆଯାଇନି । ପାରିବାରିକ ଅସୁବିଧା ହେତୁ ସେ ଇସ୍ତଫା ଦେବାକୁ ଗୁହିଁଲେ ।

ମୁଖ୍ୟମନ୍ତ୍ରୀ ସେତେବେଳକୁ ଖବର କାଗଜ ପଢ଼ି କଥାଟା କ'ଣ ଜାଣିଗଲେଣି । ବି.ଜେ.ବି. କଲେଜରୁ ମିଟିଂ ସାରି ଘରକୁ ଫେରିବା ବାଟରେ ଦେବସ୍ଥାନବାବୁ ଗାଡ଼ିରୁ

ସିନେମାହଲଠାରେ ଓହ୍ଲାଇଗଲେ । ସେହି ଗାଡ଼ିଟି ତାଙ୍କୁ ଘରକୁ ଆଣିବା କଥା । ଏଥିରେ ସରକାରୀ ଗାଡ଼ି କେଉଁଠି ଘରୋଇ କାମ ପାଇଁ ବ୍ୟବହୃତ ହେଲା, ଯା'ପାଇଁକି ଏତେବଡ଼ ଦୁର୍ନାମ ଖବର କାଗଜରେ ରଟିଗଲା ମନ୍ତ୍ରୀଙ୍କ ସଚ୍ଚୋଟପଣିଆ ନେଇ । ଏହାକୁ ତ ସରକାରୀ ଗାଡ଼ିର ଅପବ୍ୟବହାର ବୋଲି ଧରାଯାଇ ନପାରେ ?

ସେଦିନ ବିଧାନସଭା ଥାଏ । ଦେବବାବୁଙ୍କ ଇସ୍ତଫାପତ୍ର ଧରି ମୁଖ୍ୟମନ୍ତ୍ରୀ ବିଧାନସଭାକୁ ଆସିଲେ । ଖବର କାଗଜ ପଢ଼ି ବିରୋଧୀଦଳର ନେତାମାନେ ପ୍ରଶ୍ନ ପଚାରିବାକୁ ଜାଗରୁଆର ହୋଇ ରହିଥାନ୍ତି । ପ୍ରଥମ ଘଣ୍ଟାଟି ପ୍ରଶ୍ନୋତ୍ତର ବେଳ ।

ବିରୋଧୀଦଳ ନେତା ଠିଆ ହୋଇ ପ୍ରଶ୍ନ ପଚାରିଲେ, "ମୁଖ୍ୟମନ୍ତ୍ରୀ ମହାଶୟ କହିବେ କି, ଆମ ଶିକ୍ଷା ବିଭାଗର ମନ୍ତ୍ରୀ ଦେବସ୍ମାନବାବୁ ଗତକାଲି ସରକାରୀ ଗାଡ଼ିରେ ମିନର୍ଭା ହଲକୁ ସିନେମା ଦେଖି ଯାଇଥିଲେ କି ? ଯଦି ଯାଇଥାନ୍ତି ତେବେ ଏହାକୁ ସରକାରୀ ଗାଡ଼ିର ଅପବ୍ୟବହାର ହେଲା ବୋଲି କୁହାଯିବ କି ନାହିଁ ?"

ମୁଖ୍ୟମନ୍ତ୍ରୀ ବଡ଼ ବିମର୍ଷ ବଦନରେ ଉଠି ଠିଆ ହୋଇ କହିଲେ, "ମୁଁ ମାନ୍ୟବର ବିରୋଧୀଦଳ ନେତାଙ୍କୁ ଉତ୍ତର ଦେବା ପୂର୍ବରୁ ଗୋଟିଏ ଦୁଃଖଦାୟକ କଥା ସାରା ଗୃହକୁ ଜଣାଇଦେବାକୁ ଚାହେଁ । ଏତେଦିନ ଧରି ଏକ ଦକ୍ଷ ମନ୍ତ୍ରୀ ଭାବରେ ଦେବସ୍ମାନବାବୁ ଆମ ଭିତରେ ଥିଲେ । ସେ ବର୍ତ୍ତମାନ ତାଙ୍କ ମନ୍ତ୍ରୀପଦରୁ ଇସ୍ତଫାଦେଇ ତାଙ୍କ ନିଜ କାର୍ଯ୍ୟକ୍ଷେତ୍ରକୁ ବାହୁଡ଼ିଗଲେଣି । ତାଙ୍କ ଇସ୍ତଫାକୁ ମୁଁ ବାଧହୋଇ ଗ୍ରହଣ କରି ନେଇଛୁ ।"

ଏହି ଖବରରେ ସାରା ଗୃହରେ ଏକ ଚହଳ ପଡ଼ିଗଲା—ସେମାନଙ୍କର ଅତି ପ୍ରିୟ ଦେବସ୍ମାନବାବୁ ହଠାତ୍ ଇସ୍ତଫା ଦେଇଦେଲେ, ଏହା ବହୁ ସଭ୍ୟଙ୍କ ମନରେ ଆଘାତ ଦେଲା । ତାଙ୍କଭଳି ନିଃସ୍ୱାର୍ଥପର କର୍ମୀ ଦେଶରେ ବିରଳ । ସେ ଯେ ଇସ୍ତଫା ଦେଇ ଚାଲିଗଲେ, ରାଜ୍ୟ ପକ୍ଷରେ ଏହା ଏକ ଅଶୁଭ ଲକ୍ଷଣ ଛଡ଼ା ଆଉ କ'ଣ ହୋଇପାରେ ?

ମୁଖ୍ୟମନ୍ତ୍ରୀ କହିଲେ, "ଆଜି ବିରୋଧୀଦଳ ଖବର କାଗଜରେ ଯେଉଁ ଖବର ଓ ଫଟୋ ବାହାରିଛି, ମୁଁ ତାହା ଦେଖିଛି । ସେଥିରୁ ଦେବସ୍ମାନବାବୁଙ୍କ ଦୋଷ ଥିଲା ଭଳି ମୋର ମନେହେଉନି । ଦେବସ୍ମାନବାବୁ ତାଙ୍କ ପିଲାପିଲିଙ୍କ ସହିତ ସିନେମା ଦେଖି ଯିବା ପାଇଁ ତିନିଦିନ ଆଗରୁ ଟିକଟ କରିଥିଲେ । ରବିବାର ଦିନ ଗ୍ରନ୍ଥ ପ୍ରତିନିଧିମାନଙ୍କ ସହିତ ଏକ ଜରୁରୀ ମିଟିଂ ପଡ଼ିଯିବାରୁ ସେ ସରକାରୀ ଗାଡ଼ିରେ ବି.ଜେ.ବି. କଲେଜକୁ ଯାଇ-ଥିଲେ । ସେଠି ମିଟିଂ ସରୁ ସରୁ ପାଞ୍ଚଟା ପଇଁତ୍ରିଶ ମିନିଟ ହୋଇଗଲା ।

ଘରବେଳେ ସେ ତାଙ୍କ ସ୍ତ୍ରୀଙ୍କୁ କହି ଯାଇଥିଲେ ସେମାନେ ରିକ୍ସାରେ ଯାଇ ସିନେମାହଲଠାରେ ତାଙ୍କୁ ଅପେକ୍ଷା କରିଥିବେ । ସେ ମିଟିଂ ସାରି ସରକାରୀ ଗାଡ଼ିରେ ଘରକୁ ଫେରିବା ବାଟରେ ମିନର୍ଭା ସିନେମାହଲଠାରେ ଓହ୍ଲାଇପଡ଼ିବେ । ଆପଣମାନେ ସମସ୍ତେ ଜାଣନ୍ତି, ଦେବସ୍ମାନବାବୁ ବି.ଜେ.ବି. କଲେଜରୁ ଯେଉଁ ରାସ୍ତାରେ ଘରକୁ ଫେରିବା କଥା, ଠିକ୍ ସେଇ ରାସ୍ତାରେ ମିନର୍ଭା ସିନେମାହଲ ପଡ଼େ । ସରକାରୀ ଗାଡ଼ି ତାଙ୍କୁ

ହଲ ସାମନାରେ ଓହ୍ଲାଇଦେଇ ତାଙ୍କ ନିଜ କୋଠିକୁ ଚାଲିଗଲା । ସିନେମା ଦେଖିସାରି ସେ ଓ ତାଙ୍କ ପିଲାମାନେ ରିକ୍ସାରେ କୋଠିକୁ ଫେରିଲେ ।

ଆପଣମାନେ ବର୍ତ୍ତମାନ ବିଚାର କରନ୍ତୁ, ଏଥିରେ ସରକାରୀ ଗାଡ଼ିର ଅପ-ବ୍ୟବହାର କେଉଁଠି ହେଲା ଓ ଖବର କାଗଜରେ ଦେବସ୍ନାନବାବୁଙ୍କ ଯାହା ଆକ୍ଷେପ କରାଯାଇଛି ତାହା କେତେଦୂର ଯୁକ୍ତିଯୁକ୍ତ । ପ୍ରେସ୍ ସମ୍ବାଦଦାତା ଫଟୋଟି ବାହାର କରିଦେଇ ତାଙ୍କୁ ନିନ୍ଦିତ କରିବା ଉଦ୍ଦେଶ୍ୟରେ ଯାହା ପ୍ରକାଶ କରିଛନ୍ତି ତାହା ଦେଶ ଓ ଜାତି ପକ୍ଷରେ କମ୍ ବଡ଼ ଦୁଃଖଦାୟକ କଥା ନୁହେଁ ।

ବିରୋଧୀଦଳ ନେତା ବଡ଼ ଦୁଃଖର ସହିତ ଠିଆହୋଇ ଜଣାଇଲେ, "ମୁଁ ଅତ୍ୟଧିକ ମର୍ମାହତ ମୁଖ୍ୟମନ୍ତ୍ରୀ ମହାଶୟ, ଦେବସ୍ନାନବାବୁ ଇସ୍ତଫା ଦେଇ ଚାଲିଗଲେ । ନିଜର ଲେଶମାତ୍ର ଦୋଷ ନଥାଇ ଏତେବଡ଼ ମିଥ୍ୟା ଦୁର୍ନାମକୁ ନିଜ ମୁଣ୍ଡରେ ନେଇ ଚାଲିଯିବା କମ୍ ବଡ଼ ସାହସର କଥା ନୁହେଁ ।"

ଖବର କାଗଜ ଓ ରିପୋର୍ଟରଙ୍କ ଚରମ ଦାୟିତ୍ୱହୀନତା ଯୋଗୁଁ ଏତେବଡ଼ କାଣ୍ଡ ଘଟିଗଲା । ସେଥିପାଇଁ ଆମ ଦଳ ଅତ୍ୟନ୍ତ ଦୁଃଖିତ ଓ ଲଜ୍ଜିତ ମଧ୍ୟ । ତାଙ୍କଭଳି ଜଣେ ସଚ୍ଚୋଟ ଓ ନିଃସ୍ୱାର୍ଥପର କର୍ମୀଙ୍କୁ ଆମେ ଆମ ମେଳରେ ରଖିପାରିଲୁନି, ଏହାଠାରୁ ଅଧିକ ଦୁଃଖଦାୟକ ଘଟଣା ଆଉ କ'ଣ ହୋଇପାରେ ? ଖବର କାଗଜର ସମ୍ପାଦକ ଓ ସମ୍ବାଦଦାତା ଏହି ଖବର ଛାପିବା ପୂର୍ବରୁ ଯଦି ପୁରା ବିଷୟଟି ଅନୁସନ୍ଧାନ କରିଥାନ୍ତେ, ତେବେ ହୁଏତ ଏତେବଡ଼ ଭୁଲ ହୋଇ ନଥାନ୍ତା ।"

ସାରା ରାଜ୍ୟରେ ସୃଷ୍ଟି ହୋଇଗଲା ଦେବସ୍ନାନବାବୁଙ୍କ ଇସ୍ତଫା ଦେବା କଥା । ଯେଉଁ କାଗଜ ତାଙ୍କୁ ଦୋଷୀ ବୋଲି କହି ତାଙ୍କ ଫଟୋ ପ୍ରକାଶ କରିଥିଲା, ସେଇ କାଗଜ ନିଜ ଭୁଲ ପାଇଁ ସମ୍ପାଦକୀୟରେ ଖୁବ୍ ଦୁଃଖ ପ୍ରକାଶ କଲା । ସରକାରୀ କାଗଜ ଓ ଅନ୍ୟ କାଗଜ ସେହି କାଗଜର ଦାୟିତ୍ୱହୀନତା ପାଇଁ ନାନା ପ୍ରକାର ଭର୍ତ୍ସନା କଲେ । ଦିଲ୍ଲୀ କାଗଜରେ ମଧ୍ୟ ଭୁବନେଶ୍ୱରର ଏହି ଖବରଟି ଓ ସେଥିରେ ଦେବସ୍ନାନବାବୁଙ୍କ ଇସ୍ତଫା କଥା ବଡ଼ ବଡ଼ ଅକ୍ଷରରେ ବାହାରିଗଲା । ପ୍ରଧାନମନ୍ତ୍ରୀ ଖବର କାଗଜରୁ ଦେବସ୍ନାନବାବୁଙ୍କର ଇସ୍ତଫା କଥା ଶୁଣି ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ ।

ପ୍ରଧାନମନ୍ତ୍ରୀ ସଙ୍ଗେ ସଙ୍ଗେ ମୁଖ୍ୟମନ୍ତ୍ରୀଙ୍କୁ ଫୋନ୍ କରି ସବୁକଥା ଠିକ୍‌ଠିକ୍ କରି ବୁଝିଲେ । ଏତେବଡ଼ ଯୋଗ୍ୟଲୋକଙ୍କୁ ରାଜ୍ୟର ଲୋକେ ମନ୍ତ୍ରିତ୍ୱରେ ରଖିଦେଲେ ନାହିଁ, ଶୁଣି ବଡ଼ କ୍ଷୋଭ କଲେ । ଯେଉଁ ବର୍ଷଟାଏ ସେ ଶାସନରେ ଥିଲେ, ତାଙ୍କ ନିଃସ୍ୱାର୍ଥପର ଶାସନରେ ବିରୋଧୀଦଳ ମଧ୍ୟ ସନ୍ତୋଷ ପ୍ରକାଶ କରୁଥିଲେ । ସରକାରରେ ସେ ହେଉଛନ୍ତି ଏକମାତ୍ର ମନ୍ତ୍ରୀ, ଯାହାଙ୍କ ଶାସନ ପରିଚାଳନା ନେଇ କେହି କେବେହେଲେ ଆସେମ୍ବ୍ଲିରେ ତାଙ୍କୁ ସମାଲୋଚନା କରି ନାହାନ୍ତି । ଏତେବଡ଼ ଯୋଗ୍ୟ ଲୋକଙ୍କୁ ସେମାନେ ରଖି-ପାରିଲେନି, ଏହାଠାରୁ ଅଧିକ ଦୁଃଖଦାୟକ ଘଟଣା ଆଉ କ'ଣ ହୋଇପାରେ ?

ଦେବସ୍ମାନ ପୂର୍ବରୁ ଗୋବିନ୍ଦପୁରରେ ଯେଉଁ ଘରେ ରହୁଥିଲା, ବର୍ତ୍ତମାନ ଯାଇ ସେହି ଘରେ ରହିଲା । ଦେବସ୍ମାନ ଯାଇ ଗୋବିନ୍ଦପୁର ଗାଁରେ ପହଞ୍ଚିଛି କି ନାହିଁ, ତାଙ୍କ ବାପା ଓ ମା ତାଙ୍କ ପଛେ ପଛେ ଗୋବିନ୍ଦପୁରରେ ଯାଇ ହାଜର ହୋଇଗଲେ ।

ଦିନେ ହଠାତ୍ ବାପାଙ୍କ ଗାଡ଼ି ନିଜ ଘର ସାମନାରେ ଠିଆ ହେବାର ଦେଖି ଦେବସ୍ମାନ ଘରୁ ଗାଡ଼ି ପାଖକୁ ଦୌଡ଼ି ଆସିଲା । ସେ ବାପା ମା'ଙ୍କୁ ଦେଖି ସେମାନଙ୍କ ଗୋଡ଼ତଳେ ପ୍ରଣାମ କରି ସେମାନଙ୍କ ପାଦଧୂଳି ନେଇ ଘର ଭିତରକୁ ପାଛୋଟି ନେଲା । ବାପା ଘର ଭିତରେ ଯାଇ ବସୁ ବସୁ କହିଲେ, "ତୁ ଏକ ସାମାନ୍ୟ ମିଥ୍ୟା ଅଭିଯୋଗରେ ମନ୍ତ୍ରିତ୍ୱ ଛାଡ଼ିଦେଇ ଚାଲିଆସିବୁ ବୋଲି ମୁଁ ଆଶା କରି ନଥିଲି ବାପ । ତୋ ବିରୁଦ୍ଧରେ ସେ ଖବର କାଗଜରେ, ଯେଉଁ କୁତ୍ସାରଟନା ହେଲା ସେଥିରେ ତୋର ତ ଟିକିଏ ବୋଲି ଦୋଷ ଥିଲାଭଳି ମୋତେ ଜଣାପଡୁନି । ବି.ଜେ.ବି. କଲେଜରୁ ଘରକୁ ଫେରୁଥିବା ବାଟରେ ସିନେମାହଲଠାରେ ଓହ୍ଲାଇ ପଡ଼ିଲୁ । ଏଥିରେ ସରକାରୀ ଗାଡ଼ିର ଅପ-ବ୍ୟବହାର ହେଲା କେଉଁଠି ? ଯେଉଁମାନେ ସତ୍ୟାସତ୍ୟ ନିର୍ଣ୍ଣୟ ନକରି ତୋ ଚରିତ୍ରହାନି ପାଇଁ ଏହି ପଦକ୍ଷେପ ନେଲେ, ସେମାନଙ୍କ ମେଳରେ ତୁ ଯେ ରହିପାରିବୁନି ମୁଁ ଏହା ଜାଣିଥିଲି । ତୋ ସତ୍ସାହସ ଦେଖି ତୋତେ ଧନ୍ୟବାଦ ନଦେଇ ରହିପାରୁନି ବାପ । ମୋର ମଧ୍ୟ ଇଚ୍ଛା ହେଉଛି ସରକାରୀ ଚାକିରିରୁ ଅବସର ନେଇ ତୋ ଭଳି ଗଠନମୂଳକ କାମରେ ଲାଗିଯିବା ପାଇଁ ।

"ନାହିଁ ବାପା, ଆପଣ ବର୍ତ୍ତମାନ କାହିଁକି ଅବସର ନେବେ ? ଆପଣଙ୍କ ଚାକିରି ତ ଆହୁରି କିଛିଦିନ ଅଛି । ହଠାତ୍ ତା ଆଗରୁ ଅବସର ନେଇଯିବେ କାହିଁକି ?"

"ଆଉ ଚାକିରି କରିବି କାହାପାଇଁ ବାପ ? ତୋର ଗଠନମୂଳକ ଓ ଜନ-କଲ୍ୟାଣକର କାମ ଦେଖି ମୋର ସେ କ୍ଷମତାପୂର୍ଣ୍ଣ ଚାକିରିକୁ ଫେରିଯିବାକୁ ଆଉ ଇଚ୍ଛା ହେଉନି । କ୍ଷମତା ଜାହିର କରି କି ଲାଭ ? ସେଥିରୁ କି ଆନନ୍ଦ ମିଳିବ ମଣିଷକୁ ? ଏଭଳି ଗଠନମୂଳକ କାମ କଲେ ମଣିଷକୁ ଅପାର ଆନନ୍ଦ ମିଳିବ ଜୀବନର ଶେଷ ପର୍ଯ୍ୟାୟରେ । ଆମେତ ଆସି ବୁଢ଼ାବୁଢ଼ୀ ହେଲୁ , ତୋ ପାଖରେ ରହି ଏହି ଗ୍ରେଟ ଗ୍ରେଟ ପିଲାମାନଙ୍କ ମେଳରେ ସମସ୍ତ କଟାଇଦେଲେ ଆମ ଦିନ ଯିବ ।"

"ଆଉ କେତେଟା ଦିନ କଟିଯିବନି ବାପା । ଆପଣ ଏତେ ବ୍ୟସ୍ତ ହୋଇ ଚାକିରି ଛାଡ଼ିଦେବେ କାହିଁକି ?"

"ତୋ ବୋଉର ଇଚ୍ଛା ନୁହେଁ ଏଠା ଛାଡ଼ି ଯିବାକୁ । ମୁଁ ଆଉ ଏକା କ'ଣ ପାଇଁ ଭୁବନେଶ୍ୱରକୁ ଫେରିବି ? ମୁଁ ବର୍ତ୍ତମାନ ଠିକ୍ କରିଛି ବାପ, ମୋର ଯେଉଁ ଅର୍ଜିତ ସମ୍ପତ୍ତି ଅଛି କଟକରେ, ସେସବୁକୁ ବିକିଦେଇ ସେହି ଟଙ୍କାରେ ଆମ ଗାଁରେ ଏକ ନୂତନ ଧରଣର ଆବାସିକ ସ୍କୁଲ୍ ଟିଏ କରିଦେବି ଆମ ଘର ଯେଉଁଠି ଥିଲା ଠିକ୍ ସେଇଠି । ତୁ ତ ବାପ ଏଠି ରହିବୁ । କଟକରେ ଘର ଥାଇ କି ଲାଭ ? ସେଠାକାର ଘର ଓ ସମ୍ପତ୍ତି ବିକିଦେଲେ ଦିନ

ସ୍ଵଶଲକ୍ଷ ଟଙ୍କା ହେବ । ସେଇ ଟଙ୍କାରେ ଆମ ଗାଁରେ ବୋଧ୍ହୁଏ ଯାହା କହୁଥିଲେ ଚରିତ୍ର ଗଠନ ପାଇଁ ଏକ ଆବାସିକ ସ୍କୁଲ, ସେମିତି ସ୍କୁଲ ବସାଇବା ପାଇଁ ମନସ୍ଥ କରିଛୁ । ସ୍ୱକଶରୁ ଅବସର ନେଲାପରେ ଗାଁରେ ରହି ତୋ ଭଳି ଗଠନମୂଳକ କାମରେ ନିଜକୁ ଲଗାଇଲେ ଏ ପରିଣତ ବୟସରେ ଶାନ୍ତି ଟିକିଏ ମିଳିବ । ମୁଁ ଯାହା ପେନ୍‌ସନ୍‌ଗ୍ରାଚ୍ୟୁଇଟି ପାଇବି ସେତକ ମଧ୍ୟ ସେହି ସ୍କୁଲର ଉନ୍ନତିରେ ଲଗାଇଦେବି । ଆମେ ବୁଢ଼ାବୁଢ଼ୀ ଦି'ଟାଙ୍କର ଆଉ କେତେ ଖରଚ ହେବ ଯେ ? ତୋ ସହିତ ପରାମର୍ଶ କରିବା ପାଇଁ ଆମେ ଦି'ଜଣ ତୋ'ଠାକୁ ଚାଲି ଆସିଲୁ ବାପ ।

## ଅଣଷଠି

ଦେବସ୍ମାନ ମନ୍ତ୍ରୀତ୍ୱରୁ ଇସ୍ତଫାଦେବା ପରେ ପରେ ନାରଣବାବୁ ମଧ୍ୟ ସ୍ୱକଶରୁ ଅବସର ନେଇ ନିଜ ଗାଁକୁ ଚାଲି ଆସିଲେ । କଟକରେ ଯାହା ଘରଦ୍ୱାର ସମ୍ପତ୍ତିବାଡ଼ି ଥିଲା, ସେତକ ବିକି କରିଦେଇ ବିକିଲବ୍‌ଧ ଧନକୁ ନିଜ ଗାଁରେ ଏକ ଆବାସିକ ସ୍କୁଲ ତିଆରି ପାଇଁ ଗ୍ରାମଦାନ ସଂସ୍ଥାକୁ ଦାନ କରିଦେଲେ ।

ଦେବସ୍ମାନ ରହିଲା ଗ୍ରାମଦାନ ସଂସ୍ଥାର ମୂଳକେନ୍ଦ୍ର ଗୋବିନ୍ଦପୁରରେ । ଦେବସ୍ମାନର ନିଜ ଗାଁ ରଘୁନାଥପୁରରେ ରହିଲେ ନାରଣବାବୁ । ଶାନ୍ତି ଓ ପିଲାମାନେ ମଧ୍ୟ ସେଠି ରହିଲେ । ନିଜ ଗ୍ରାମର ଉନ୍ନୟନ ନାରଣବାବୁଙ୍କର ହେଲା ପ୍ରଧାନ ଚିନ୍ତା । ରଘୁନାଥପୁର ଦାୟିତ୍ୱରେ ଶାନ୍ତି ଥିଲା ମୂଳରୁ । ବର୍ତ୍ତମାନ ଶ୍ୱଶୁର ଆସିଯିବାରୁ ଶ୍ୱଶୁର ବୋହୂ ଉଭୟେ ସେଇ ଦାୟିତ୍ୱରେ ରହିଲେ ।

ନାରଣବାବୁଙ୍କ ଭଳି ଲୋକ ତାଙ୍କର ସମସ୍ତ ଅର୍ଜିତ ସମ୍ପତ୍ତି ବିକ୍ରୟ କରି ଗ୍ରାମଦାନ ସଂସ୍ଥାକୁ ଦାନ କରିବା ଦେଖି ଲୋକମାନେ ତାଙ୍କ ପ୍ରଶଂସାରେ ପାଗଳ ହୋଇ ଉଠିଲେ । ଶାନ୍ତି ଯେଉଁ ଚରିତ୍ର ଗଠନ ସ୍କୁଲ କରିବା ସ୍ୱପ୍ନ ଦେଖୁଥିଲା, ଶ୍ୱଶୁରଙ୍କ ଅର୍ଥ ସାହାଯ୍ୟ ଫଳରେ ତାହା କାର୍ଯ୍ୟରେ ରୂପାୟିତ ହେବାର ଆଶା ଜଳ ଜଳ ଦିଶିଲା । ଶ୍ୱଶୁର ତ ରାଜ୍ୟର ଜଣେ ବଡ଼ ଶିକ୍ଷାବିତ୍ତ । ତାଙ୍କ ଅଭିଜ୍ଞତା ଓ ପରାମର୍ଶକୁ ନେଇ ସେ ଏହି ଆଦର୍ଶ ସ୍କୁଲର ଏକ ଯୋଜନା ତିଆରିରେ ଲାଗିପଡ଼ିଲା ।

ଏହି ସ୍କୁଲରେ ଖାଲି ଚରିତ୍ର ଗଠନ ପାଇଁ ପିଲାମାନଙ୍କୁ ଶିକ୍ଷା ଦିଆଯିବ ନାହିଁ, କୌଳିକ ବୃତ୍ତିକୁ ଅଧିକ ଦକ୍ଷତାର ସହିତ କେମିତି କରିହେବ, ସେଥିପାଇଁ ଆବଶ୍ୟକୀୟ ଶିକ୍ଷା ମଧ୍ୟ ଦିଆହେବ ଏଠି । ଦେବସ୍ମାନ ଯଦିଚ ଗୋବିନ୍ଦପୁର ଗ୍ରାମଦାନ ସଂସ୍ଥାର ମୂଳ ଦାୟିତ୍ୱରେ ଥାଏ, ତଥାପି ପାଖଆଖର ଆଠ ଦଶଗୋଟି ଗ୍ରାମଦାନ ସଂସ୍ଥାର ପ୍ରଧାନ

ପ୍ରଯୋଜକ ଭାବରେ ସେସବୁ କାମ ତଦାରଖ କରେ । ତାଙ୍କର ସାହାଯ୍ୟରେ ଏସବୁ ତ ଆଗେଇ ଚାଲିଛି, ସେଗୁଡ଼ିକୁ ସେ ତଦାରଖ ନ କରିବ ବା କେମିତି ?

ନିଜ ପିଲାପିଲି ବାପା ମା ରଘୁନାଥପୁରରେ ରହୁଥିବାରୁ ଦେବସ୍ମିନ ସେଠି ସେମାନଙ୍କ ସହିତ ନିଜ ଘରେ ରହେ । ପ୍ରତିଦିନ ସାଇକେଲରେ ଗୋବିନ୍ଦପୁରକୁ ଆସି ଏଠା କାମ ଦେଖାଶୁଣା କରେ । ତା ଛଡ଼ା ଅନ୍ୟ ଗ୍ରାମଦାନ ସଂସ୍ଥାଗୁଡ଼ିକର ଅଗ୍ରଗତି କେମିତି ହେଉଛି ତଦାରଖ କରିବା ପାଇଁ ସେସବୁ ଅଞ୍ଚଳକୁ ସପ୍ତାହରେ ଥରେ ଦୁଇଥର ଯାଇ ବୁଲିଆସେ ।

କେଉଁଠି କିଛି ଅସୁବିଧା ହେଲେ ଦେବସ୍ମିନର ପରାମର୍ଶକୁ ସମସ୍ତେ ଅପେକ୍ଷା କରିଥାନ୍ତି । ତା'ର ପରାମର୍ଶ ଓ ସଦୁପଦେଶ ସେହିସବୁ ସଂସ୍ଥାକୁ ଆଗେଇଯିବାରେ ସାହାଯ୍ୟ କରେ । ମୂଳ ସଂସ୍ଥାର ଆର୍ଥିକ ସ୍ଥିତି ଅନ୍ୟମାନଙ୍କଠାରୁ ଯଥେଷ୍ଟ ଭଲ ଥିବାରୁ ଓ ସେମାନଙ୍କର ଉନ୍ନୟନ ଅନ୍ୟମାନଙ୍କଠାରୁ ଅଧିକ ହୋଇଥିବାରୁ ଏ ଅଞ୍ଚଳମାନଙ୍କରେ ଆଉ ସେମିତି ଆଗଭଳି ଅଧିକ ଖରଚ ହେଉ ନଥାଏ ।

ନିଜ ସଂସ୍ଥାର ଆୟ ଦିନକୁଦିନ ଯଥେଷ୍ଟ ବଢ଼ି ଯାଉଥିବାରୁ ସେହି ଆୟର କିୟଦଂଶ ଅନ୍ୟ ଅଭାବଗ୍ରସ୍ତ ଗ୍ରାମଦାନ ସଂସ୍ଥାକୁ ସାହାଯ୍ୟ ଓ ଋଣ ଆକାରରେ ଦିଆଯିବାର ବ୍ୟବସ୍ଥା କରିବା ଦ୍ୱାରା ଏହି ସଙ୍ଗଠନଗୁଡ଼ିକୁ ଗୋଟିଏ ପରିବାର ଭଳି ବାନ୍ଧିରଖିବା ସମ୍ଭବ ହେଲା । ସବୁର ମୂଳରେ ତ ଦେବସ୍ମିନ । ସମସ୍ତଙ୍କୁ ତ ସମାନ ଭାବରେ ଦେଖିବାକୁ ପଡ଼ିବ ।

ବାପା ଓ ସ୍ତ୍ରୀଙ୍କର ସହଯୋଗ ଫଳରେ ତାକୁ ନିଜ ଗ୍ରାମ ରଘୁନାଥପୁର ସଂସ୍ଥାକୁ ବେଶି ଦେଖିବାକୁ ପଡ଼େନି । ହେଲେ ବେଳେ ବେଳେ ତା ଉପଦେଶ ତା ବାପା ବି ନିଅନ୍ତି । କେଉଁଠି କିଛି ଅସୁବିଧା ହେଲେ ବାପା ଓ ଶାନ୍ତି ତାକୁ ନାନା କଥା ପଚାରି ସେହି ଅନୁସାରେ କାମ କରନ୍ତି । ଦେବସ୍ମିନ ଯେତେବେଳେ ବାପା ମା'ଙ୍କଠାରେ ରହୁଛି, ବେଳେ ବେଳେ ଶାନ୍ତିକୁ ପଚାରି ସେ ଅଞ୍ଚଳର ଅଗ୍ରଗତି ଓ ସୁବିଧା ଅସୁବିଧା କଥା ବୁଝେ ।

ଦିନେ ସନ୍ଧ୍ୟାବେଳେ ବାପା ମା ସ୍ତ୍ରୀକୁ ନେଇ ଦେବସ୍ମିନ ରଘୁନାଥପୁର ଗାଁର ଉନ୍ନୟନ କଥା ଆଲୋଚନା କରୁଛି, କାର୍ଯ୍ୟକାରୀ ସମିତିର କେତେଜଣ ସଭ୍ୟ ଆସି ସେଠି ଜୁଟି ଯାଇଥାନ୍ତି । ଏହି ସମୟରେ ହଠାତ୍ ମୁଖ୍ୟମନ୍ତ୍ରୀଙ୍କ ଗାଡ଼ି ଆସି ତା ଦୁଆରେ ହାଜର ।

ମୁଖ୍ୟମନ୍ତ୍ରୀ ଗାଡ଼ିରୁ ଓହ୍ଲାଇଛନ୍ତି କି ନାହିଁ, ଦେବସ୍ମିନ ଦୌଡ଼ିଯାଇ ତାଙ୍କୁ ପାଛୋଟି ଆଣିଲା । ହଠାତ୍ ଏ ଅସମୟରେ ସେ ଅଞ୍ଚଳର ସମସ୍ତେ ମୁଖ୍ୟମନ୍ତ୍ରୀଙ୍କୁ ଦେଖି ଅବାକ୍ । ମୁଖ୍ୟମନ୍ତ୍ରୀଙ୍କ ଅଭ୍ୟର୍ଥନା ପାଇଁ ନାରଣବାବୁ ବଡ଼ ବ୍ୟସ୍ତ ହୋଇପଡ଼ିଲେ ।

ବସୁ ବସୁ ମୁଖ୍ୟମନ୍ତ୍ରୀ ପଚ୍ଚରିଲେ, "ଦେବସ୍ନାନବାବୁ, ସାରା ରାଜ୍ୟ ଆପଣଙ୍କ ଇସ୍ତଫା ନେଇ ଦୁଃଖିତ । ତେବେ ମୁଁ ଆପଣଙ୍କୁ ସେହି ମନ୍ତ୍ରିମଣ୍ଡଳ ଭିତରକୁ ପୁଣି ଡାକ ନେବାପାଇଁ ଆସିନି । ପ୍ରଧାନମନ୍ତ୍ରୀ ମୋତେ ଆପଣଙ୍କ ପାଖକୁ ଖାସ୍ ପଠାଇଛନ୍ତି । ଆପଣଙ୍କ ଇସ୍ତଫା କଥା ଶୁଣି ସେ ବଡ଼ ମର୍ମାହତ । ଆପଣ ଯାହାକଲେ, ପ୍ରକୃତ ଗଣତନ୍ତ୍ର ଦୃଷ୍ଟିରୁ ଠିକ୍ ବୋଲି ସାରା ଦେଶ ପସନ୍ଦ କରିଛି ।

ଗୋଟିଏ ଖବର କାଗଜର ଚରମ ଦାୟିତ୍ୱହୀନତା ଯୋଗୁଁ ଏତେବଡ଼ ଦୁଃଖଦାୟକ ଘଟଣା ଘଟିଗଲା ବୋଲି ପ୍ରଧାନମନ୍ତ୍ରୀ ବଡ଼ ବ୍ୟସ୍ତ । ପ୍ରଧାନମନ୍ତ୍ରୀଙ୍କ ଇଚ୍ଛା ଆପଣଙ୍କୁ କେନ୍ଦ୍ରକୁ ନେବା ପାଇଁ । ଆପଣଙ୍କ ଭଳି ନିଃସ୍ୱାର୍ଥପର ସଚ୍ଚୋଟ କର୍ମୀଙ୍କଠାରୁ ଦେଶ ଆହୁରି ଅଧିକ ଆଶା କରୁଛି । ଆପଣ ଯଦି ସମ୍ମତ ହୁଅନ୍ତି, ତେବେ ସେ ଏ ଦିଗରେ ବିହିତ ବ୍ୟବସ୍ଥା କରିବେ । ଆପଣଙ୍କଠାରୁ ଉପକାର ସାରା ଦେଶ ପାଉ, ଖାଲି ଗୋବିନ୍ଦପୁର କି କଟକ ଜିଲ୍ଲା କାହିଁକି ପାଇବ, ଏହା ପ୍ରଧାନମନ୍ତ୍ରୀଙ୍କ ଇଚ୍ଛା ।

"ଆପଣ ମୋତେ କ୍ଷମା କରନ୍ତୁ ଆଜ୍ଞା । ମୁଁ ଆଉ ଶାସନକ୍ଷେତ୍ରକୁ ଫେରିଯିବାକୁ ମୋଟେ ଚାହେଁନି, କେନ୍ଦ୍ରରେ ହେଉ ବା ରାଜ୍ୟରେ ହେଉ । ମୁଁ ଯେଉଁ କେତେଦିନ ଶାସନ ଭିତରେ ଥିଲି, ବଡ଼ ଅଣନିଃଶ୍ୱାସୀ ହୋଇ ପଡ଼ୁଥିଲି ଆଜ୍ଞା । ଦେଖନ୍ତୁ, ଏ ଅଞ୍ଚଳରେ ଆଠଗୋଟି ଗ୍ରାମଦାନ ସଂସ୍ଥା ମୋ ପରାମର୍ଶ ଉପରେ ନିର୍ଭର କରୁଛନ୍ତି । ସେମାନଙ୍କୁ ଛାଡ଼ିଦେଇ ମୁଁ ପୁଣି ଶାସନକ୍ଷେତ୍ରକୁ କେମିତି ଫେରିବି କହିଲେ ।"

ଆଗରୁ ଦଶ ବାରଗୋଟି ଗାଁର ଦାୟିତ୍ୱରେ ସିନା ଥିଲି, ବର୍ତ୍ତମାନ ଦେଢ଼ଶହରୁ ଅଧିକ ଗାଁ ମୋ ହାତକୁ ଅନାଇ ବସିଛନ୍ତି । ମୋ ଭଳି ଆହୁରି ବହୁ କର୍ମୀ ଏଠି ଦରକାର । ସେଥିପାଇଁ ଅଧିକ କର୍ମୀଙ୍କୁ ତାଲିମ ଦେବା ମୋର ଆଉ ଏକ କାମ । ପ୍ରଧାନମନ୍ତ୍ରୀଙ୍କୁ ମୋ ଆନ୍ତରିକ ଧନ୍ୟବାଦ ଜଣାଇଦେବେ । ସେ ମୋତେ ମନେ ରଖିଥିବାରୁ ମୁଁ ତାଙ୍କଠାରେ ଚିରକୃତଜ୍ଞ । ଆପଣ ଏଇ ସାମାନ୍ୟ କଥା ପାଇଁ ଭୁବନେଶ୍ୱରରୁ ଏତେବାଟ ଦୌଡ଼ି ଆସିଲେ ? ମୋତେ ତ ଖବର ଦେଇଥିଲେ ମୁଁ ଆପଣଙ୍କଠାକୁ ଯାଇ ପାରିଥାନ୍ତି ?

ବଡ଼ ମନକଷ୍ଟରେ ମୁଖ୍ୟମନ୍ତ୍ରୀ ଫେରିଗଲେ । ଯେଉଁମାନେ ପ୍ରକୃତରେ ଜନସେବୀ, ସେମାନଙ୍କୁ ଶାସନ କ୍ଷମତା କ'ଣ କେବେ ଆକୃଷ୍ଟ କରି ପାରିବ ?

## ଷାଠିଏ

ଗୋବିନ୍ଦପୁର ଗ୍ରାମଦାନ କେନ୍ଦ୍ର ଅଫିସରେ କାର୍ଯ୍ୟକାରୀ ସମିତିର ମିଟିଂ ବସିଥାଏ । ଗାଁମାନଙ୍କରେ ହେଉଥିବା ଅର୍ଥକରୀ ଫସଲର ସମୀକ୍ଷା ଚାଲିଥାଏ । ଦେବସ୍ନାନ ସେଠି

ଥିବା ପର୍ଯ୍ୟନ୍ତ ଅର୍ଥକରୀ ଫସଲ ଭିତରୁ ତମାଖୁଟା ବାଦ୍ ଦିଆଯାଉଥିଲା । ପ୍ରଥମେ ପ୍ରଥମେ ଅର୍ଥକାରୀ ଫସଲ ଭିତରେ ତମାଖୁ ଚାଷ ଶୀର୍ଷତମ ସ୍ଥାନ ଅଧିକାର କରିଥିଲା । କିନ୍ତୁ ପରେ ଯେତେବେଳେ ଜଣାପଡ଼ିଲା ଏହି ତମାଖୁ ଚାଷ ହିଁ ଗାଁରେ ମୁଖ-କର୍କଟ ରୋଗର ପ୍ରଧାନ କାରଣ, ସେତେବେଳେ ଏହି ଚାଷ ବନ୍ଦ କରିଦେଇ ତା ସ୍ଥାନରେ ଆଖୁ ଚାଷର ପରିମାଣ ବଢ଼ାଇ ଦିଆଗଲା ।

ଦେବସ୍ମାନ ମନ୍ତ୍ରୀ ହୋଇ ଗୋବିନ୍ଦପୁରରୁ ଯିବା ପର୍ଯ୍ୟନ୍ତ ତମାଖୁଚାଷ ସେ ଅଞ୍ଚଳରେ ନିଷିଦ୍ଧ କରାଯାଇଥିଲା । ତମାଖୁକୁ ବ୍ୟବହାର କରୁଥିବା ବିଡ଼ି, ସିଗାରେଟ ଓ ଅନ୍ୟାନ୍ୟ କମ୍ପାନୀମାନେ ଏହାଦ୍ୱାରା ଖୁବ୍ କ୍ଷତିଗ୍ରସ୍ତ ହେଉଥିଲେ । ଦେବସ୍ମାନ ମନ୍ତ୍ରିତ୍ୱ ଗ୍ରହଣ କରି ଭୁବନେଶ୍ୱର ଚାଲିଗଲା ପରେ ଟବାକୋ କୋମ୍ପାନୀର ଅଫିସରମାନେ ଆସି କାର୍ଯ୍ୟକାରୀ କମିଟିକୁ ଧରାଧରି କରି ପୁନର୍ବାର ଏହାର ଚାଷ ପ୍ରବର୍ତ୍ତନ କରାଇଲେ ।

ଓଡ଼ିଶାର ଏହି ଅଞ୍ଚଳରେ ଖୁବ୍ ଉନ୍ନତ ଧରଣର ତମାଖୁ ଚାଷ ହେଉଥିବାରୁ ସିଗାରେଟ କୋମ୍ପାନୀମାନଙ୍କର ଦୃଷ୍ଟି ସବୁବେଳେ ଏହି ଅଞ୍ଚଳ ଉପରେ । ଏଠି ଯେତେ ତମାଖୁ ଚାଷ ହେବ, ସେମାନଙ୍କର ଲାଭର ପରିମାଣ ସେତେ ବଢ଼ିବ, ସେମାନେ ଏହି ଆଶାରେ କଳେବଳେ କୌଶଳେ ଏହି ଅଞ୍ଚଳଟିକୁ ସେମାନଙ୍କ ହାତରେ ରଖିଥାନ୍ତି ।

ଦେବସ୍ମାନ କାର୍ଯ୍ୟକାରୀ କମିଟିରେ ଯେତେବେଳେ ଶୁଣିଲା ଯେ, ସେ ଗଲାପରେ ଏହି ଅଞ୍ଚଳରେ ତମାଖୁ ଚାଷ ପୁନଃ ପ୍ରବର୍ତ୍ତିତ ହୋଇଛି, ସେ କାର୍ଯ୍ୟକାରୀ କମିଟି ଉପରେ ଭୀଷଣ ବିରକ୍ତ ହେଲା । କାର୍ଯ୍ୟକାରୀ କମିଟିର ସଭ୍ୟ କେତେଜଣଙ୍କୁ ଟବାକୋ କମ୍ପାନୀର କର୍ମକର୍ତ୍ତାମାନେ ଧରିଛନ୍ତି ବୋଲି ତାକୁ ଅଜଣା ରହିଲା ନାହିଁ । ଏହି ଧରାଧରି ପଛରେ କିଛି ମୋଟା ପରିମାଣର ଅର୍ଥ ମେମ୍ବରମାନଙ୍କୁ ଯେ ହସ୍ତାନ୍ତର ହୋଇଛି, ସେ କଥା ମଧ୍ୟ ସେ ଜାଣିପାରିଲା । ଦେବସ୍ମାନ ଦେଖିଲା, ମେମ୍ବରମାନଙ୍କ ଉପରେ ବିରକ୍ତ ହୋଇ ଲାଭ ନାହିଁ, ଯାହାତ ହେବାର ହୋଇଯାଇଛି । ବର୍ତ୍ତମାନ ତାକୁ ସାବଧାନ ହେବାକୁ ପଡ଼ିବ । ତେଣୁ ସେ ପୁଣି ତମାଖୁ ଚାଷ ବନ୍ଦ କରିଦେଲା ।

ତମାଖୁ ଚାଷ ଏ ଅଞ୍ଚଳରେ ବନ୍ଦ ହୋଇଯିବା ଶୁଣି ସିଗାରେଟ କୋମ୍ପାନୀର କର୍ମକର୍ତ୍ତାମାନେ ଦୌଡ଼ିଲେ ଦେବସ୍ମାନ ପାଖକୁ । କିନ୍ତୁ ଦେବସ୍ମାନ ସହଜରେ ଭୁଲିଯିବା ଲୋକ ନୁହେଁ ।

ବଳେ ସିଗାରେଟ କୋମ୍ପାନୀର ବଡ଼ ବଡ଼ କର୍ମକର୍ତ୍ତାମାନେ ଦେବସ୍ମାନକୁ ଦେଖା କଲେ ଓ ତମାଖୁଚାଷ ପୁଣି ଚାଲୁ କରିବାକୁ ଅନୁରୋଧ ଜଣାଇଲେ । ସେଥିପାଇଁ ସେମାନେ ଗ୍ରାମଦାନ ସଂସ୍ଥାକୁ ମୋଟା ପରିମାଣ ଅର୍ଥ ସାହାଯ୍ୟ ଦେବେ ବୋଲି ପ୍ରତିଶ୍ରୁତି ଦେଲେହେଁ ଦେବସ୍ମାନ ନିଜ ନିଷ୍ପତ୍ତିରେ ଅଟଳ । ଗାଁରେ କେନସର ରୋଗକୁ ପ୍ରତିରୋଧ କରିବା ପାଇଁ ଆଉ ଗୋଟିଏ ଭଲ ହସ୍ପିଟାଲ ବସାଇଦେବେ, କେନସର ଡିଟେକ୍ସନ୍

ସେଣ୍ଟର ବସାଇବେ ଆଉ କେତେ ଦାତବ୍ୟ କାର୍ଯ୍ୟ କରିବା କଥା କହିଲେହେଁ ଦେବସ୍ନାନ ନିଜ ସିଦ୍ଧାନ୍ତରୁ ଟିକିଏ ବି ଏପାଖ ସେପାଖ ହେଲେନି ।

ଓଲଟି ପୁଣି ସେମାନଙ୍କୁ ପଚାରିଲେ, "ଆପଣମାନେ କୋଟି କୋଟି ସଂଖ୍ୟାରେ ସିଗାରେଟ ଉତ୍ପାଦନ କରି ଲକ୍ଷ ଲକ୍ଷ ଟଙ୍କା ଲାଭ କରୁଛନ୍ତି । ସିଗାରେଟର ସୁନ୍ଦର ସୁନ୍ଦର ବିଜ୍ଞାପନ ଜରିଆରେ ଦେଶର ନିରୀହ ଲୋକଙ୍କୁ ସିଗାରେଟ ଆଡ଼କୁ ଆକୃଷ୍ଟ କରି ସେମାନଙ୍କୁ ସିଗାରେଟ ପିଆ ଶିଖାଇ ସର୍ବସ୍ୱାନ୍ତ କରୁଛନ୍ତି । ଆପଣମାନଙ୍କର ଏହି ପ୍ରିୟ ଉତ୍ପାଦନକୁ ଆପଣମାନଙ୍କ ଭିତରୁ କିଏ କିଏ ଖାଉଛନ୍ତି କହିଲେ ? ଦେବସ୍ନାନ ପ୍ରତ୍ୟେକଙ୍କୁ ଗୋଟି ଗୋଟି କରି ପଚାରିଗଲେ । ସମସ୍ତେ ସିଗାରେଟ ଛୁଅନ୍ତି ନାହିଁ ବୋଲି କହିଲେ ।

ସେଇଠୁ ଦେବସ୍ନାନ କହିଲେ, "ଦେଖନ୍ତୁ, ଆପଣମାନେ କେହି ସିଗାରେଟ ଖାଆନ୍ତିନି, ଅଥଚ ଏତେବଡ଼ କୋମ୍ପାନୀ ଗଢି ପ୍ରତିବର୍ଷ ଶହ ଶହ ଲୋକଙ୍କୁ ସିଗାରେଟ ପିଆ ଶିଖାଇ ମୃତ୍ୟୁମୁଖକୁ ଠେଲି ଦେଉଛନ୍ତି ।

ଆପଣମାନଙ୍କ ସିଗାରେଟ କେତେ ଲୋକଙ୍କ ମୃତ୍ୟୁର କାରଣ ହୋଇଛି, ସେଆଡ଼କୁ ଆପଣମାନଙ୍କର କାହାରି ନଜର ଅଛି ତ ? ଫୁସ୍‌ଫୁସ୍ କର୍କଟ ରୋଗଠାରୁ ଆରମ୍ଭ କରି ଗଳା କର୍କଟ ରୋଗ ପର୍ଯ୍ୟନ୍ତ କେତେ ଦୁଃସାଧ୍ୟ ରୋଗ ଯେ ହେଉଛି, ସେଆଡ଼କୁ ଆପଣମାନେ ଦିନେ ବି ସୁଦ୍ଧା ଭାବି ନାହାନ୍ତି । ଅଥଚ ଆମେ ତମାଖୁ ଚାଷ ବନ୍ଦ କରିଦେବାରୁ ଆପଣମାନଙ୍କ ଲାଭର ପରିମାଣ କମିଯାଉଛି ବୋଲି ଆପଣମାନେ ଦୌଡ଼ି ଆସିଛନ୍ତି ଆମଠାକୁ । ଏହି ସିଗାରେଟ ଖାଇ କେତେ ଲୋକଙ୍କ ସୁଖର ସଂସାର ଉଜୁଡ଼ିଯାଏ, ଆପଣମାନେ କେବେ ଦିନକ ପାଇଁ ଭାବନ୍ତିକି ସେ କଥା ?

"ଆଜ୍ଞା, ସେଥିପାଇଁ ଲୋକଙ୍କୁ ସାବଧାନ କରାଇଦେବା ପାଇଁ ଆମେ ସିଗାରେଟ ଖୋଳ ଉପରେ ବିଜ୍ଞାପନ ଦେଇଛୁ, "ସିଗାରେଟ ଖାଇବା ସ୍ୱାସ୍ଥ୍ୟ ପକ୍ଷରେ ଭଲ ନୁହେଁ ।"

ହସିଲେ ଦେବସ୍ନାନ, "ଆପଣମାନଙ୍କର ଏହା ଏକ ଚାଲବାଜି । ଧର୍ମକୁ ଆଖିଠାର । ହଜାର ହଜାର ଟଙ୍କା ଖରଚ କରି ବିଜ୍ଞାପନ ଛାପୁଛନ୍ତି, ଅତି ଆକର୍ଷଣୀୟ ଭଙ୍ଗୀରେ ଲୋକମାନଙ୍କୁ ସିଗାରେଟ ଆଡ଼କୁ ଆକୃଷ୍ଟ କରିବା ପାଇଁ । ସେଥିଭିତରେ କେଉଁଠି ଛୋଟ ଛୋଟ ଅକ୍ଷରରେ ଲେଖି ଦେଉଛନ୍ତି ସିଗାରେଟ ଖାଇବା ନିରାପଦ ନୁହେଁ । ଏହା ଧର୍ମକୁ ଆଖିଠାର ବୁଝାଯିବ ନାହିଁତ ଆଉ କ'ଣ ବୁଝାଯିବ ?"

ଆପଣମାନେ ଯଦି ନିଜେ ଜାଣିଛନ୍ତି ଏହା ଲୋକଙ୍କ ମୃତ୍ୟୁର କାରଣ, ତେବେ ଏହାକୁ ତିଆରି କରୁଛନ୍ତି କାହିଁକି ? ଏହାର ଉତ୍ପାଦନ ବନ୍ଦ କରିଦେଇ କୋମ୍ପାନୀଗୁଡ଼ିକୁ ଉଠାଇ ଦେଉନାହାନ୍ତି କ'ଣ ପାଇଁ ? ଯେତେବେଳେ ସରକାର ଚିନ୍ତାକଲେ ସିଗାରେଟ ଉତ୍ପାଦନ ପୁରାପୁରି ବନ୍ଦ କରିଦେବେ ବୋଲି, ଆପଣମାନେ ମନ୍ତ୍ରୀମାନଙ୍କୁ ଧରାଧରି କରି ଏମିତି ଗୋଟିଏ ଚାଲବାଜି ଲେଖା ଲେଖିଦେଇ ଲୋକଙ୍କୁ ସତର୍କ କରିଦେବା ନାଁରେ ସରକାରଙ୍କୁ ଭୁଆଁ ବୁଲାଇଦେଲେ, ଏହା ଆପଣମାନଙ୍କର କମ୍ ବଡ଼ କାରସାଦି ନୁହେଁ ?

ବ୍ୟବସାୟୀମାନେ ଦେବସ୍ମାନଙ୍କୁ ଯେତେ ପ୍ରକାରେ ବୁଝାବୁଝି କଲେହେଁ, ସେ ନିଜ ସିଦ୍ଧାନ୍ତରେ ଅଟଳ । ସେମାନେ ତାଙ୍କୁ ନିଜ ସିଦ୍ଧାନ୍ତରେ ଅଟଳ ରହିବା ଦେଖି ବାଧହୋଇ ମନକଷ୍ଟରେ ଫେରଗଲେ ।

ତମାଖୁ ଚାଷ ପରି ଆଉ ଏକ ଚାଷ ହେଲା ସେ ଅଞ୍ଚଳରେ ଖେସାରି ଚାଷ । ଦେବସ୍ମାନ ଜାଣିଛନ୍ତି ଖେସାରି ଡାଲି ଚାଷକୁ ସରକାର ନିଷିଦ୍ଧ କରିଛନ୍ତି, କାରଣ ଏହି ଡାଲି ଲୋକମାନଙ୍କୁ ପଙ୍ଗୁ କରିପକାଏ । ସେ ଏଠି ଥିଲାବେଳେ ଖେସାରିଡାଲି ଚାଷ ମଧ୍ୟ ନିଷିଦ୍ଧ କରିଥିଲା ।

ଓଡ଼ିଶାର ବହୁ ବେସନ ବ୍ୟବସାୟୀ ବୁଟ ବେସନରେ ଗୋପନରେ ଏହାକୁ ଭେଜାଲ ଭାବରେ ମିଶାଇ ଅଜସ୍ର ଅର୍ଥ ଉପାର୍ଜନ କରନ୍ତି । ଓଡ଼ିଶାର ଏହି ଅଞ୍ଚଳରେ ଖେସାରି ଡାଲି ଅପର୍ଯ୍ୟାପ୍ତ ପରିମାଣରେ ଚାଷ କରାଯାଏ । ଜମିରେ ଯେଉଁଠି ଜଳର ଏକାନ୍ତ ଅଭାବ ଯୋଗୁଁ ଧାନ କି ଅନ୍ୟ ଚାଷ ହୁଏନି, ସେଠି ଖେସାରି ଡାଲି ଚାଷ ସୁବିଧାରେ କରାଯାଏ । ଏହାପାଇଁ ସେମିତି କିଛି ବେଉଷଣ ଦରକାର ନାହିଁ । ତେଣୁ ଏହାର ଚାଷ ଭାରି ସୁବିଧା ଓ ଶସ୍ତା ।

ଦେବବାବୁ ଜାଣିଶୁଣି ଏହାର ଚାଷକୁ ବନ୍ଦ କରିଥିଲେ । ଯେତେବେଳେ ସେ ଭୁବନେଶ୍ୱରରେ ରହୁଥିଲେ, ତାଙ୍କ ଅନୁପସ୍ଥିତିର ଫାଇଦା ନେଇ ବେସନ ବ୍ୟବସାୟୀମାନେ କାର୍ଯ୍ୟକାରୀ କମିଟିର ମେମ୍ବରମାନଙ୍କୁ ଧରାଧରି କରି ଏହି ଚାଷର ପୁନଃ ପ୍ରବର୍ତ୍ତନ କରିଥିଲେ ।

ଦେବସ୍ମାନ ଆସି ଯେତେବେଳେ ଦେଖିଲା ଖେସାରିଡାଲି ଚାଷ ପୁଣି ଆରମ୍ଭ ହୋଇଛି ବଡ଼ ବିରକ୍ତ ହେଲା କାର୍ଯ୍ୟକାରୀ କମିଟି ଉପରେ । ସେ ପୁଣି ଖେସାରି ଚାଷ ନିଷିଦ୍ଧ କଲା । ବେସନ ବ୍ୟବସାୟୀମାନେ ଖେସାରି ଉତ୍ପାଦନ ବନ୍ଦ ହୋଇଯିବାରୁ ମୁଣ୍ଡରେ ହାତଦେଇ ବସିଲେ କ'ଣ କରିବେ ?

## ଏକଷଠି

ଏହି ଦୁଇ ବ୍ୟବସାୟୀ ଗୋଷ୍ଠୀ ଦେଖିଲେ ଦେବସ୍ମାନ ଥିଲା ପର୍ଯ୍ୟନ୍ତ ଏ ଚାଷ ଏ ଅଞ୍ଚଳରେ ହୋଇ ପାରିବନି । ଦେବସ୍ମାନଙ୍କୁ ଯଦି ଏହି ସଂସ୍ଥାରୁ କୌଣସି ପ୍ରକାରେ ହଟାଇ ଦିଆ ନ ଯାଉଛି, ତେବେ ସେମାନଙ୍କ ବ୍ୟବସାୟ ଭାଙ୍ଗିପଡ଼ିବ । ଦେବସ୍ମାନ ବିରୋଧରେ ଲୋକମାନଙ୍କୁ ଉଠାଇ ତାଙ୍କ ଲୋକପ୍ରିୟତାକୁ କମାଇଦେଲେ ସେମାନଙ୍କ ଚାଷ ପୁନଃ

ପ୍ରବର୍ତ୍ତନ କରି ହେବ ଏଠି । କିନ୍ତୁ ଦେବସ୍ମାନଙ୍କୁ ଗାଁ ଲୋକଙ୍କଠାରେ ଅପ୍ରିୟ କରିବା କ'ଣ ସମ୍ଭବ ହେବ ?

ସେମାନେ ସେଥିପାଇଁ ଗୋଟିକ ପରେ ଗୋଟିଏ ନାନା ଯୋଜନା ତାଙ୍କ ବିରୋଧରେ ତିଆରି କଲେ । ଦେବସ୍ମାନ ବିଭିନ୍ନ ଉପାୟରେ ଲାଞ୍ଚ ନେଉଛନ୍ତି ବୋଲି ଗାଁର କେତେଜଣଙ୍କୁ ଧରି ମିଛ ପ୍ରମାଣ ସବୁ ଯୋଗାଡ଼କରି ଅପପ୍ରଚାର ଚଲାଇଲେ । ଗାଁର ଲୋକମାନେ ତ ଦେବସ୍ମାନଙ୍କୁ ଭଲ ଭାବରେ ଜାଣନ୍ତି, ସେମାନଙ୍କର ଏ ଅପପ୍ରଚାରକୁ କେହି ବିଶ୍ୱାସ କଲେନି, ଓଲଟି ହସି ଉଡ଼ାଇଦେଲେ ।

ତା'ପରେ ଦେବସ୍ମାନ ଚରିତ୍ରହୀନ, ସେ ଆଉ ଗୋଟାଏ ସ୍ତ୍ରୀ କଟକରେ ରଖିଛି, ତା'ର ଆଉ ଏକ ସ୍ତ୍ରୀ ଆମେରିକାରେ ଅଛି, ମଝିରେ ମଝିରେ ସେ ଏଠାକୁ ଆସେ···ଏମିତି କେତେ ଅପପ୍ରଚାର ଚାଲିଲା ତାଙ୍କ ବିରୋଧରେ । ଗାଁର କେତେକ ବଦମାସ୍ ପ୍ରକୃତିର ଟୋକାଙ୍କୁ ଭେଳାଇ ବ୍ୟବସାୟୀମାନେ ଦେବସ୍ମାନଙ୍କର ଚରିତ୍ରହନନ କରିବାକୁ ଅପଚେଷ୍ଟା ଚଳାଇଲେ । ଗାଁ ଲୋକମାନେ ଖାଲି ଏ କଥାକୁ ତ ବିଶ୍ୱାସକଲେନି, ବରଂ ଏହି ଅପପ୍ରଚାର ଚଳାଇଥିବା ଟୋକାମାନଙ୍କୁ ଧରି ପିଟିପିଟି ଦେବବାବୁଙ୍କ ପାଖକୁ ଘେନିଆସିଲେ । ଦେବବାବୁ ସେମାନଙ୍କୁ ଦୟା ଦେଖାଇ ଗାଁରେ ଏମିତି ଅପ୍ରୀତିକର ପରିସ୍ଥିତି ସୃଷ୍ଟି ନ କରିବା ପାଇଁ ଉପଦେଶ ଦେଇ ଛାଡ଼ିଦେଲେ ।

ଦେବସ୍ମାନଙ୍କର ଲୋକପ୍ରିୟତାକୁ କୌଣସି ପ୍ରକାରେ ଖଣ୍ଡନ କରିବାର ଉପାୟ ନଦେଖି ସେମାନେ ତାଙ୍କ ବିରୋଧରେ ଗାଁଗୁଡ଼ିକୁ ବିଦ୍ରୋହ କରିବାକୁ ମତାଇଲେ । ଲୋକମାନଙ୍କୁ ନାନା ପ୍ରକାର ଅର୍ଥ ଯାଚି ସେମାନଙ୍କୁ ହାତ କରିବାକୁ ଚେଷ୍ଟାକରି ବିଫଳ ହେଲେ ।

ବାହାର ବ୍ୟବସାୟୀମାନେ ଗାଁର ଲୋକମାନଙ୍କୁ ଲାଞ୍ଚ ଦେଇ ଏହି କାଣ୍ଡ ଭିଆଉଛନ୍ତି ବୋଲି ଯେତେବେଳେ ଲୋକେ ଜାଣିପାରିଲେ, ସେହି ବ୍ୟବସାୟୀ କି ସେମାନଙ୍କ ଏଜେଣ୍ଟ ଗାଁକୁ ଆସିଲେ ସେମାନେ ସେମାନଙ୍କୁ ମାରି ଗୋଡ଼ାଇଲେ । ଦିନକୁ ଦିନ ଗାଁ ଲୋକଙ୍କ ଏକତା ସେହି ବ୍ୟବସାୟୀ ଗୋଷ୍ଠୀଙ୍କ ବିରୁଦ୍ଧରେ ବଢି ଉଠିଲା । ସେମାନେ ଆଉ ଗାଁ ଭିତରକୁ ପଶିବାକୁ ସାହସ କଲେନି ।

ବ୍ୟବସାୟୀମାନେ ବିଫଳ-ମନୋରଥ ହେବାପରେ ସେମାନଙ୍କର ଶେଷ ଅସ୍ତ୍ର ପ୍ରୟୋଗ କରିବାକୁ ସେମାନେ ଦ୍ୱିଧାବୋଧ କଲେନି । ସେମାନେ ଜାଣନ୍ତି ଦେବସ୍ମାନ ଥିଲା ପର୍ଯ୍ୟନ୍ତ ସେମାନଙ୍କ ସ୍ୱାର୍ଥ ସାଧିତ ହୋଇ ପାରିବନି । ତାଙ୍କୁ ଯେକୌଣସି ପ୍ରକାରେ ନ ହଟାଇଲେ ରକ୍ଷା ନାହିଁ । ସେମାନେ ଜାଣନ୍ତି, ଦେବସ୍ମାନ ପ୍ରତିଦିନ ସନ୍ଧ୍ୟା ପରେ ଗୋବିନ୍ଦପୁରରୁ କାମଦାମ ଶେଷକରି ସାଇକେଲରେ ନିଜ ଗାଁ ରଘୁନାଥପୁରକୁ ଫେରନ୍ତି । ଗୋବିନ୍ଦପୁରଠୁ ରଘୁନାଥପୁର ସାତ ଆଠ କିଲୋମିଟର ବାଟ । ପ୍ରତିଦିନ ସେ ସାଇକେଲରେ ଘରୁ ଗୋବିନ୍ଦପୁରକୁ ଆସନ୍ତି, ସନ୍ଧ୍ୟାବେଳେ ଘରକୁ ସାଇକେଲରେ

ଫେରନ୍ତି । ଫେରିଲାବେଳେ ବାଟରେ ଗୋଟିଏ ଛୋଟିଆ ନିଛୁଟିଆ ବଣ ପଡ଼େ । ନାନା ପ୍ରକାର ଛୋଟ ବଡ଼ ଗଛବୁଦାରେ ସେହି ବଣଟି ପୂରିଯାଇଛି ।

ଦିନେ ହଠାତ୍ ଦେଖାଗଲା ଦେବସ୍ନାନର ମୃତ ଶରୀର ସେହି ବଣ ଭିତରେ ଏକ ବୁଦା ଆଢୁଆଳରେ ରାସ୍ତାଠାରୁ ଅଳ୍ପ ଦୂରରେ ପଡ଼ିଛି । ସାଇକେଲଟି ଅଭଙ୍ଗାବସ୍ଥାରେ ତାଙ୍କଠାରୁ କିଛି ଦୂରରେ ପଡ଼ିଛି । ପିସ୍ତଲର ଗୁଳିଚୋଟରେ ଦେବସ୍ନାନଙ୍କୁ କେହି ଆତତାୟୀ ସେଠି ନିର୍ମମ ଭାବରେ ହତ୍ୟାକରି ସୁଚତୁର ଭାବରେ ଖସି ପଳାୟନ କରିଛି ।

ଦେବସ୍ନାନର ହତ୍ୟାକାଣ୍ଡ କଥା ତହିଁ ପରଦିନ ସକାଳେ ଯେତେବେଳେ ଚାରିଆଡ଼େ ପ୍ରଚାରିତ ହୋଇଗଲା ଲୋକେ ଧାଡ଼ି ଛୁଟିଲେ ହତ୍ୟା କରାଯାଇଥିବା ସ୍ଥାନକୁ । ସବୁ ଗ୍ରାମରେ ଦୁଃଖର ଛାୟା ଖେଳିଗଲା । ଘରେ ଘରେ କାନ୍ଦବୋବାଳି ପଡ଼ିଗଲା । ସତେ ଯେମିତି ସେମାନଙ୍କ ପରିବାରରୁ କେହି ଜଣେ ମରିଗଲା । ଦେବସ୍ନାନର ବାପା, ମା, ସ୍ତ୍ରୀ ଓ ପିଲାମାନେ ଏହି ଖବର ଶୁଣି ପାଗଳଙ୍କ ଭଳି ହତ୍ୟାସ୍ଥାନକୁ ଦୌଡ଼ିଯାଇ ଦେବସ୍ନାନର ମୃତ ଶରୀରକୁ ଦେଖି ଧୈର୍ଯ୍ୟ ଧରି ନ ପାରି ସେଇଠି ସଂଜ୍ଞାଶୂନ ହୋଇ ଲୋଟି ପଡ଼ିଲେ । ଚାରିଆଡ଼ୁ ଶହ ଶହ ଲୋକ ଏହି ନିର୍ମମ ହତ୍ୟା ଘଟଣା ଦେଖିବାକୁ ଆସି ଲୋତକ ସମ୍ବରଣ କରି ରହି ପାରିଲେନି । ପୋଲିସ ଖବର ପାଇବା ସଙ୍ଗେ ସଙ୍ଗେ ସେ ସ୍ଥାନକୁ ଆସି ବଡ଼ ବଡ଼ ଅଫିସର ଆସିବା ପର୍ଯ୍ୟନ୍ତ ଜଗି ରହିଲେ ।

ଏହି ସମୟରେ ହଠାତ୍ ଗୋଟିଏ କାର୍ ଆସି ସେଠି ରହିଲା । କାର୍‌ରୁ ଓହ୍ଲାଇଲା ଶୁଭ୍ରା । ସେ କଟକରୁ ଆସୁଥିଲା ଗୋବିନ୍ଦପୁରକୁ ଦେବସ୍ନାନବାବୁଙ୍କୁ ସାକ୍ଷାତ କରିବା ପାଇଁ । ଲୋକ ଗହଳି କାହିଁକି ହୋଇଛି ବୁଝିବା ପାଇଁ ଗାଡ଼ିକୁ ବନ୍ଦ କରି ଓହ୍ଲାଇ ଭିତରକୁ ପଶିଲା । ଦେଖିଲା ଦେବସ୍ନାନର ମୃତ ଶରୀର ସେଠି ଲୋଟି ପଡ଼ିଛି ।

"ହେ ପ୍ରଭୋ, ତୁମେ କ'ଣ ନ କଲ ?" କହି ଦେବସ୍ନାନର ପାଦତଳେ ଲୋଟି ପଡ଼ିଲା ଶୁଭ୍ରା । "ହେ ଭଗବାନ, ମୋତେ ଶେଷରେ ଏଇଆ ଦେଖିବାକୁ ଥିଲା ?" କହି ଶୁଭ୍ରା ମୁଣ୍ଡ ପିଟିଦେଲା ଦେବସ୍ନାନର ଗୋଡ଼ପାଖ ପଥରରେ । ତା ହାତର କାଚଚୁଡ଼ିଗୁଡ଼ିକ ସେଥିସହିତ ପିଟି ହୋଇ ଚୂରମାର ହୋଇଗଲା । ଦେବସ୍ନାନର ବାପା ମା ସ୍ତ୍ରୀଙ୍କ ସହିତ ସେଠି ପଡ଼ିରହିଲା ଶୁଭ୍ରାର ଅଚେତ ଶରୀର । ଦୂର ଦିଗ୍‌ବଳୟରୁ ଉଙ୍କିମାରି ଉଠୁଥିଲା 'ନିସ୍ତବ୍ଧ ଗୋଧୂଳି' ସେହି ଦୁଃଖଦ ମୁହୂର୍ତ୍ତିକୁ ଶତଗୁଣିତ କରି ।

